ଶ୍ରଦ୍ଧାଞ୍ଜଳି-୫ମ ଭାଗ – ଲେଖକ : ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ – ପ୍ରକାଶକ :
ଦି' ଇନ୍‌ଷ୍ଟିଚ୍ୟୁଟ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ ଓରିଶାନ ଷ୍ଟଡିଜ୍, ମୈତ୍ରୀ ସରଣୀ, କଟକ-୧
ମୁଦ୍ରଣ : ଦି' ପ୍ରିଣ୍ଟୋଭର୍ସ, ମୈତ୍ରୀ ସରଣୀ, କଟକ-୭୫୩ ୦୦୧
ପ୍ରଥମ ପ୍ରକାଶ କାଳ : ୨୦୦୧ – ପ୍ରଚ୍ଛଦ : ଶ୍ରୀ ଶିବ ପାଣିଗ୍ରାହୀ – ମୂଲ୍ୟ : **୧୨୦ ଟଙ୍କା ।**

---

Shradhanjali-5th Part — Writer : Sri Girija Bhusan Patnaik
Published by : Institute of Oriental & Orissan Studies, Maitree Sarani, Cuttack-753001 — Printers : The Printoverse, Maitree Sarani, Cuttack-753001 — First Edition: 2001
Graphics : Sri Siba Panigrahi — Price : **Rs. 120.00**

ଯେଉଁମାନଙ୍କର
ଜୀବନ, ଏଇ ମାଟିକୁ ଧନ୍ୟ କରିଛି;
ଯେଉଁମାନଙ୍କର
ଜୀବନ, ଏଇ ମାଟିକୁ ପୁଷ୍ଟ କରିଛି;
ଯେଉଁମାନଙ୍କର
ଜୀବନ, ଉତ୍ତରପୀଢ଼ିକୁ ଯୋଗାଇଛି;
ପ୍ରେରଣା ଓ ସାହାସ;
ସେଇମାନଙ୍କର
ପୁଣ୍ୟସ୍ମୃତି ଉଦ୍ଦେଶ୍ୟରେ
ଏହା
ନିବେଦିତ ।

—ଲେଖକ

# ଭୂମିକା

ଶ୍ରଦ୍ଧାଞ୍ଜଳି ୫ମ ଖଣ୍ଡ ପ୍ରକାଶିତ ହେଉଛି, ଦି' ୟୁନିଭର୍ସ ଆନୁକୂଲ୍ୟରେ । ଚତୁର୍ଥ ଖଣ୍ଡ ପ୍ରକାଶିତ ହେବାପରେ ଅନେକ ବ୍ୟକ୍ତିଗତ ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ପଡ଼ିଛି । ତାରି ଭିତରେ କିଛି ମଣିଷ ହଜି ଯାଇଛନ୍ତି ଆମ ଭିତରୁ, ଯେଉଁମାନଙ୍କର ପ୍ରତି ମୋର ଶ୍ରଦ୍ଧାଞ୍ଜଳି ନିବେଦନ କରିବାର ଶକ୍ତି ନଥିଲା, ତେଣୁ କିଛି ଲୋକ ହୁଏତ ବାଦ ପଡ଼ିଯାଇ ପାରିଥାନ୍ତି । ନିଜେ 'ଶ୍ରଦ୍ଧାଞ୍ଜଳି'ର ଅନ୍ତର୍ଭୁକ୍ତ ହେବାର ଆଶଙ୍କା ଦେଖାଦେଲାବେଳେ ମୁଁ ନିରୁପାୟ ।

ଏବେ ଖବରକାଗଜର ପୃଷ୍ଠା ଆଡ଼େଇବାକୁ ଭୟ ଲାଗୁଛି । ପ୍ରତିଦିନ ଜଣେ କିଏ ବନ୍ଧୁ ପରିଚିତ ବ୍ୟକ୍ତି ଚାଲିଯାଉଛନ୍ତି । ନା ସେମାନଙ୍କର ମରଣଶଯ୍ୟା ପାଖରେ ମୁଁ ଠିଆହୋଇ ପାରୁଛି, ନା ସେମାନଙ୍କ ଉପରେ କିଛି ଲେଖା ପ୍ରକାଶ କରିପାରୁଛି ।

ଆଜିକାଲି ଅନେକ ଲେଖକ 'ଶ୍ରଦ୍ଧାଞ୍ଜଳି' ଅର୍ପଣ କରିବାକୁ ବାହାରିଲେଣି । ଖବରକାଗଜମାନଙ୍କର କର୍ତ୍ତୃପକ୍ଷ ମଧ୍ୟ ସେମାନଙ୍କର ରୁଚି ଅନୁଯାୟୀ ଲେଖା ପ୍ରକାଶ କରିବାପାଇଁ ସ୍ଥିରକରି ସାରିଛନ୍ତି । ଆପଣାର ଲେଖା ପ୍ରକାଶନ ପାଇଁ କାହାକୁ ବିନୟ କରିବା ବା ତେଲ ମାରିବାର ବୟସ ବି ଆଉ ନାହିଁ । ପୁଣି ବାହୁଡ଼ି ସାରିଥିବା ଲୋକ ପାଇଁ ? ତାହା ହେବ ମରିଯାଇଥିବା ବ୍ୟକ୍ତି ପାଇଁ ଅସମ୍ମାନ !

ଏଇ ପଞ୍ଚମଖଣ୍ଡରେ ଶହେରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କର ଜୀବନ ପ୍ରତି ଶ୍ରଦ୍ଧାଞ୍ଜଳି ସନ୍ନିବେଶିତ ହୋଇଛି । ମନେହେଉଛି ଯେପରି ଏଇ ପଞ୍ଚମଖଣ୍ଡ ହିଁ ଶେଷଖଣ୍ଡ ହେବ । ତା' ପୂର୍ବରୁ ମୋ ପାଇଁ ଶ୍ରଦ୍ଧାଞ୍ଜଳି ଲେଖିବା ପାଇଁ ବନ୍ଧୁମାନେ ପ୍ରସ୍ତୁତ ହେବାକୁ ପଡ଼ିବ ।

ଏବଂ ଯଦି ବି ମୁଁ ବଂଚିରହେ ତା'ହେଲେ ବି ପୂରା ବହି ଖଣ୍ଡିଏ ଲେଖିବା ପାଇଁ ଅନେକ ଦିନ ଲାଗିଯିବ । କାରଣ ସମସାମୟିକ ଅନେକ ବାହୁଡ଼ି ଗଲେଣି । ଯେଉଁମାନେ ଅଛନ୍ତି ସେମାନେ ମୋ ପରେ ବାହୁଡ଼ିବା ପାଇଁ ମୋର କାମନା । ଅନ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ବାହୁଡୁଛନ୍ତି ବା ବାହୁଡ଼ିବେ ସେମାନଙ୍କ ସହିତ ମୋର ବ୍ୟକ୍ତିଗତ ପରିଚିତି ନାହିଁ, ସେମାନଙ୍କୁ ଖୁବ୍ ପାଖରୁ ଦେଖିବାର ଭାଗ୍ୟ ମୋର ହୋଇନାହିଁ । ମୋର ଶ୍ରଦ୍ଧାଞ୍ଜଳି ବ୍ୟକ୍ତିର ଜୀବନୀ ନୁହେଁ । ଏହା ଏକ ଉଚ୍ଛ୍ୱାସ ବା ଆକଳନ । ତେଣୁ ସେମାନଙ୍କ ଉପରେ ଲେଖିବା ମୋ ପାଇଁ କଷ୍ଟକର ।

ପଞ୍ଚମଖଣ୍ଡ ପ୍ରକାଶିତ ହେଉଛି ୟୁନିଭର୍ସ ଆନୁକୂଲ୍ୟରେ । ସେଥିପାଇଁ ୟୁନିଭର୍ସର ସହକର୍ମୀ ସନ୍ତୋଷକୁମାର ରାୟଚୌଧୁରୀ, ଉମେଶ ଚନ୍ଦ୍ର ନାୟକ, କୈଳାଶ ଚନ୍ଦ୍ର ଦାସ, ପ୍ରେସର ମ୍ୟାନେଜର କିଶୋର ଚନ୍ଦ୍ର ତ୍ରିପାଠୀ, ବିଭୁରଂଜନ ଦାସଙ୍କୁ ଧନ୍ୟବାଦ ।

କୁମାରୀ ରୀନା ଅମାନ୍ତ, କୁମାରୀ ରାଜଲକ୍ଷ୍ମୀ ମହାରଣା ଲେଖାଗୁଡ଼ିକୁ ସଜାଇଛନ୍ତି, କପି କରିଛନ୍ତି । ଗାଳି ଶୁଣିଛନ୍ତି ତଥାପି କାମ କରିଛନ୍ତି । ସେମାନଙ୍କୁ କୃତଜ୍ଞତା ଜଣାଉଛି । କୁମାରୀ ରୀନା ରୋଗ ଶଯ୍ୟାରେ ମଧ ମୋର ସେବା କରିଛନ୍ତି ନିର୍ବିକାର ଚିତ୍ତରେ ।

ଦେବେନ୍, କୈଳାଶ, ପ୍ରଭାକର, ବିକ୍ରମ ସମସ୍ତେ ମୋର ଧନ୍ୟବାଦାର୍ହ । ମୋର ଛୋଟ ଅକ୍ଷରକୁ ଡିଟିପି କରିବାର କଠିନ କାର୍ଯ୍ୟ ପ୍ରଭାକର କରିଥିବାରୁ ସେ ବିଶେଷ ଧନ୍ୟବାଦାର୍ହ । ଜୀବନର ଏକ କଠୋର ସମୟରେ ୟୁନିଭର୍ସର ସହକର୍ମୀମାନଙ୍କ ଛଡ଼ା ପ୍ରମିଳା ତ୍ରିପାଠୀ (ପମି), ନିଗମାନନ୍ଦ ପାଠକ (ମୁନା), ବିଶ୍ୱଜିତ ପଟ୍ଟନାୟକ, ମଳୟ ଦାସ ପ୍ରଭୃତି ପାଖରେ ଠିଆ ହୋଇଛନ୍ତି । ଝିଅ ପ୍ରଜ୍ଞା ଓ ବିଶ୍ୱଜିତ୍ ମଧ ଅନେକ କଷ୍ଟ ସହିଛନ୍ତି ମୋ ପାଇଁ । ସେମାନେ ସମସ୍ତେ ମୋର ଧନ୍ୟବାଦାର୍ହ । ଡାକ୍ତର ଭାବନୀ ଶଙ୍କର ଦାସ, ଡାକ୍ତର ରତ୍ନାକର ପଣ୍ଡା, ଡାକ୍ତର ଯଦୁନାଥ ପ୍ରସାଦ ଦାସ ଏବଂ ଡାକ୍ତର ସଂଜୀବ ପଟ୍ଟନାୟକଙ୍କ ଯୋଗୁଁ ଆଉଥରେ ଜୀବନ୍ୟାସ ହୋଇଛି ବୋଲି ଲେଖିପାରୁଚି । ସେମାନଙ୍କ ପାଖରେ ମଧ ମୁଁ କୃତଜ୍ଞ ।

ଏପିଲଗ୍ ଉପରେ ବହି ଭାରତୀୟ ଭାଷାରେ ପ୍ରାୟତଃ ନାହିଁ । ଅଧ୍ୟାପକ ବିଧୁଭୂଷଣ ଦାସ ଏଇ ପ୍ରକାର ମନ୍ତବ୍ୟ ଦେଇଥିଲେ, ଗୋଟିଏ ଖଣ୍ଡର ଉନ୍ମୋଚନ ସମୟରେ । ଏଭଳି ଏକ କାର୍ଯ୍ୟ କେତେ ସଫଳ ହୋଇଛି, ତା'ର ବିଚାରକ ପାଠକକୁଳ, ମୁଁ ନୁହେଁ ।

ଅନେକ ବଂଧୁ ଏହି ବହିର ପ୍ରକାଶନରେ ଆଗ୍ରହ ପ୍ରକାଶ କରିଛନ୍ତି । ସେମାନେ ଚାହିଁଥିବା ମଣିଷର 'ଶ୍ରଦ୍ଧାଞ୍ଜଳି' ଖବରକାଗଜରେ ପ୍ରକାଶ ପାଇପାରି ନାହିଁ ବୋଲି ସେମାନେ କ୍ଷୁବ୍ଧ ହୋଇଛନ୍ତି । ସେଥିପାଇଁ ମୁଁ ସେମାନଙ୍କ ପାଖରେ କ୍ଷମା ମାଗିନେଉଛି । ଏକେତ ଲେଖିବା କଠିନ ହୋଇଗଲାଣି, ଖବରକାଗଜରେ ପ୍ରକାଶନ ତ ମୋ ହାତରେ ନାହିଁ । ସେମାନେ ଏହା ଉପଲବ୍ଧ କରିପାରିବେ ବୋଲି ମୋର ଆଶା ।

ଜୀବନର ବିଳମ୍ବିତ ଅପରାହ୍ନ । ସଂଧ୍ୟା କେତେବେଳେ ଆସିବ କହିହେବ ନାହିଁ । 'କଟକ ନଗର ହଜାର ବର୍ଷ' (Cuttack 1000 Years) ବହିରେ କଟକରେ ଜନ୍ମ ହୋଇଥିବା ବା କାର୍ଯ୍ୟ କରିଥିବା ବ୍ୟକ୍ତିମାନଙ୍କର ଜୀବନୀ ସଂଗ୍ରହ କରିବାର ବୟସ ବା ଶକ୍ତି ମୋର ନାହିଁ । ତଥାପି ସଂଗ୍ରହ କରିବି ସେମାନଙ୍କର ପୂର୍ଣ୍ଣ ଜୀବନୀ ବୋଲି ଆଶା ରଖିଚି । ଦେଖାଯାଉ କ'ଣ ହେଉଛି ।

ଅଗଷ୍ଟ ୧୫, ୨୦୦୧

– ଗିରିଜା ଭୂଷଣ ପଟ୍ଟନାୟକ

# ସୂଚୀ

# ଟାଉନହଲ ବାରଣ୍ଡାରୁ ରାଷ୍ଟ୍ରଭାଷା ରୋଡ଼

କଟକ ଟାଉନହଲରୁ ରାଷ୍ଟ୍ରଭାଷା ରୋଡ଼ ବେଶି ବାଟ ନୁହେଁ । ତିନି କିଲୋମିଟର କି ତା'ଠାରୁ କମ୍ ବାଟ । କିନ୍ତୁ ଏଇତକ ବାଟ ଜୀବନରେ ଆସିବା ପାଇଁ କେତେ ଦଶନ୍ଧି ଲାଗିଗଲା ସେଇ ମଣିଷ ପାଇଁ ?

କଟକ ଟାଉନହଲ ବାରଣ୍ଡାରେ ଜାଲି ଲାଗି ନଥିଲା । ତେଣୁ ଏହାର ବାରଣ୍ଡା ବହୁ ଲୋକଙ୍କ ଆଶ୍ରୟସ୍ଥଳ ପାଲଟିଥିଲା, ରାତିରେ ଶୋଇବା ପାଇଁ । ସେଇଠି ଦେଖାଯାଏ ଏଇ ମଣିଷଟିକୁ, ମାସ ମାସ ବର୍ଷ ବର୍ଷ ଧରି ।

ସାଧନା, ନିଷ୍ଠା ଏବଂ ସୁଯୋଗ ମଣିଷକୁ ଫଳ ଆଣିଦିଏ । ପଣ୍ଡିତ ଅନସୂୟା ପ୍ରସାଦ ପାଠକଙ୍କୁ ଅନେକ ଜାଣନ୍ତି ରାଷ୍ଟ୍ରଭାଷା ପ୍ରଚାର ସମିତି, ରାଷ୍ଟ୍ରଭାଷା ପ୍ରେସର ପ୍ରତିଷ୍ଠାତା ଭାବରେ । କାରଣ ଯେଉଁ କଷ୍ଟ ଓ କଷଣ ସହି ସେ ଏଇ ପର୍ଯ୍ୟନ୍ତ ପହଞ୍ଚିଥିଲେ, ତାହା ଦେଖିଥିବା ଲୋକ ଖୁବ୍ କମ ଅଛନ୍ତି ।

ମଧ୍ୟପ୍ରଦେଶର ସତନା ନାମକ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ବର୍ଷ ମାସ ହେଜିବାକୁ କେହି ନଥିଲେ କି ତା'ର ହିସାବ ନିଜେ ପାଠକଜୀ ମଧ୍ୟ ଜାଣନ୍ତି ନାହିଁ ।

କିନ୍ତୁ ୧୯୩୦ ମସିହା ଲବଣ ସତ୍ୟାଗ୍ରହରେ ଯୋଗଦେଇ ଦମଦମ ଜେଲ୍‌ରେ ଛଅମାସ ଜେଲଦଣ୍ଡ ଭୋଗ କରିଥିଲେ । ସେ ଆସିଥିଲେ ପୁରୀ ୧୯୩୨ ମସିହା କଂଗ୍ରେସ ସମ୍ମିଳନୀରେ ଯୋଗଦେବା ପାଇଁ । ଓଡ଼ିଶାରେ ରହିଯିବା 'ବିଧି ଅଭିପ୍ରେତ' ବୋଲି ସେ ନିଜେ କହୁଥିଲେ । ପଣ୍ଡିତ କାଳିକା ପ୍ରସାଦ ଶର୍ମାଙ୍କ ପ୍ରେରଣାରେ କଂଗ୍ରେସ ଦଳରେ ଯୋଗଦାନ ପରେ ସତ୍ୟାଗ୍ରହୀ ପାଠକ ଆବଦ୍ଧ ହୁଅନ୍ତି କଟକ ଜେଲରେ ଏବଂ ପରବର୍ତ୍ତୀ କାଳରେ ପାଟନା ଜେଲକୁ ସ୍ଥାନାନ୍ତରିତ ହୁଅନ୍ତି । ସେଇଠି ହିନ୍ଦୀ ଭାଷା ଶିଖନ୍ତି ଏବଂ ଶିଖାନ୍ତି ସାଥୀ ବନ୍ଦୀମାନଙ୍କୁ । ଦାନ୍ତକାଠି ଥିଲା କଲମ ଏବଂ ମାଟି ଥିଲା ସିଲଟ । ସ୍ୱାଧୀନ ଭାରତର ରାଷ୍ଟ୍ରଭାଷା ହେବ ହିନ୍ଦୀ । ତେଣୁ ଜାତୀୟ ଐକ୍ୟ ପ୍ରତିଷ୍ଠା ପାଇଁ ସମସ୍ତଙ୍କୁ ଜାଣିବାକୁ ହେବ ହିନ୍ଦୀ ବା ହିନ୍ଦୁସ୍ଥାନୀ । ଏହା ଏକ କେବଳ ଭାଷା ଶିକ୍ଷା ନୁହେଁ, ଏହା ଏକ ଜାତୀୟ ଆୟୁଧ ।

ପଣ୍ଡିତ ଉପାଧି ପାଇଲେ ଅନସୂୟା ପ୍ରସାଦ ପାଠକ । ତା'ପରେ କଟକ । ୰ ଗୌରଚନ୍ଦ୍ର ରାଉତ ଏବଂ ୰ ଡକ୍ଟର ମହତାବଙ୍କ ପରାମର୍ଶରେ ଆରମ୍ଭହେଲା ଭାରତୀୟ ଜାତୀୟ କଂଗ୍ରେସର ଗୋପନ କାର୍ଯ୍ୟକ୍ରମ ଓ କାଠଯୋଡ଼ୀ ନଈବାଲି ବା ଟାଉନହଲ ବାରଣ୍ଡାରେ ରାତ୍ରିଶୟନ । ଆଙ୍ଗୁଠି ଓ ନଈବାଲି ପାଲଟିଲା ଶିକ୍ଷାର ମାଧମ ।

ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟଙ୍କ ଦୋକାନ ପିଣ୍ଡାରୁ ରାଧାମୋହନ ମହାପାତ୍ରଙ୍କ ଛୋଟିଆ ଚାଳଘର ହିନ୍ଦୀ ଶିକ୍ଷାର କେନ୍ଦ୍ର ପାଲଟେ । ଏହା ସହିତ ଘର ଘର ବୁଲି ହିନ୍ଦୀ ଶିକ୍ଷାପ୍ରଦାନ ଏବଂ କଂଗ୍ରେସର ଗୋପନ ପ୍ରଚାର ପତ୍ର ବଣ୍ଟନ ପାଠକଜୀଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମ ହୋଇଯାଏ ।୧୯୩୩ ମସିହା । ଉତ୍କଳ ପ୍ରାନ୍ତୀୟ ହିନ୍ଦୀ ପ୍ରଚାର ସଭା ଗଠିତ ହୁଏ । ସ୍ୱାମୀ ବିଚିତ୍ରାନନ୍ଦ ଦାସ, ସଭାପତି ଏବଂ ଶ୍ରୀ ରାଧାନାଥ ରଥ ସଂପାଦକ । ଶ୍ରୀ ଜାନକୀ ନାଥ ବୋଷ ଏହି ଅନୁଷ୍ଠାନ ଉଦ୍‌ଘାଟନ କରନ୍ତି । ବାଙ୍କାବଜାରର ରଂଗାସୁନା ଘର 'ଭୂତକୋଠି'ରେ ଅଫିସ ଆରମ୍ଭ ହୁଏ । ପରେ ରମାଦେବୀ ଘରଭଡ଼ା ପାଇଁ ଅର୍ଥ ସାହାଯ୍ୟ କରନ୍ତି । ହରିଜନ କାର୍ଯ୍ୟକ୍ରମ ମଧ୍ୟ ସେଇଠି ଚାଲେ ।

ଶ୍ରୀ ଜୀବରାମ ଭାଇ ଅଫିସ ପାଇଁ ମାସିକ ଷାଠିଏ ଟଂକା ସାହାଯ୍ୟ କରନ୍ତି ପରବର୍ତ୍ତୀ ସମୟରେ । ରମାଦେବୀଙ୍କ ଦ୍ୱାରା ସ୍ଥାପିତ ମହିଳା ଆଶ୍ରମରେ ହିନ୍ଦୀ ଶିକ୍ଷା ପ୍ରଦାନ ହୁଏ । ସ୍ଥାପିତ ହୋଇଥିବା ପରୀକ୍ଷା କେନ୍ଦ୍ରରେ ପ୍ରଥମ ପରୀକ୍ଷାର୍ଥୀ ଭାବରେ ଅନ୍ନପୂର୍ଣ୍ଣା ମହାରଣା, ମନମୋହନ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବନମାଳୀ ମିଶ୍ର ପ୍ରଭୃତି ଅନ୍ତର୍ଭୁକ୍ତ ।

ରାଷ୍ଟ୍ରଭାଷା କାର୍ଯ୍ୟାଳୟ ଏକ ଦିଗରେ କଂଗ୍ରେସ କାର୍ଯ୍ୟକ୍ରମର କେନ୍ଦ୍ର ଯେପରି ପାଲଟେ, ସଂତ୍ରାସବାଦୀ କ୍ରାନ୍ତିକାରୀମାନଙ୍କର ମଧ୍ୟ ମିଳନ କେନ୍ଦ୍ର ହୁଏ । ବିଶିଷ୍ଟ ସଂତ୍ରାସବାଦୀ ଶ୍ରୀ ରବୀନ୍ଦ୍ର ଘୋଷଙ୍କ ସହିତ ସେଇଠି ପରିଚିତି ହୁଏ ପାଠକଜୀଙ୍କର ।

ମହାନ୍ ବିପ୍ଳବୀ ବିପିନ ବିହାରୀ ଗାଙ୍ଗୁଲି ସେଇଠି ପହଞ୍ଚନ୍ତି । ତାଙ୍କୁ ଜୀବିତ ବା ମୃତ ଧରାଇଦେବା ବ୍ୟକ୍ତିଙ୍କୁ ଦଶହଜାର ଟଙ୍କା ପୁରସ୍କାର ଘୋଷଣା କରିଥାଏ ବ୍ରିଟିଶ ସରକାର । ବିପଦ ଆଶଂକା କରି ତାଙ୍କୁ ନବକୃଷ୍ଣ ଚୌଧୁରୀ ନେଇ ଯାଆନ୍ତି ଅଣଖିଆ ଆଶ୍ରମକୁ ।

ସମୟ ଅତିକ୍ରାନ୍ତ ହୁଏ ।

୧୯୩୪ ମସିହାରେ ଭଦ୍ରଖଠାରେ ସେ ଗାନ୍ଧୀଙ୍କୁ ଭେଟନ୍ତି ଏବଂ ଗାନ୍ଧିଜୀଙ୍କ ପରାମର୍ଶରେ ଶ୍ରୀ ବସନ୍ତଲାଲ ହିନ୍ଦୀ ପ୍ରଚାର ପାଇଁ ମାସିକ ୪୦ଟଙ୍କା ଦେବାପାଇଁ ପ୍ରତିଶ୍ରୁତି ଦିଅନ୍ତି । ୧୯୩୭ ମସିହାରେ ୱାର୍ଦ୍ଧାରେ ରାଷ୍ଟ୍ରଭାଷା ପ୍ରଚାର ସମିତି ଗଠନ ହୁଏ ଏବଂ ଉତ୍କଳ ପ୍ରାନ୍ତୀୟ ରାଷ୍ଟ୍ରଭାଷା ପ୍ରଚାର ସମିତି ତାର ଶାଖା ପାଲଟିଯାଏ । ଏବଂ କଂଗ୍ରେସ ମନ୍ତ୍ରିମଣ୍ଡଳ ୧୯୩୮ ମସିହାରେ ବିଦ୍ୟାଳୟ ତଥା ମହାବିଦ୍ୟାଳୟରେ ହିନ୍ଦୀ ଶିକ୍ଷକ ନିଯୁକ୍ତ କରନ୍ତି । ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭଙ୍କ ପ୍ରେରଣାରେ ରାଷ୍ଟ୍ରଭାଷା ପ୍ରଚାର ସଭା ଦ୍ୱାରା ବିଦ୍ୟାଳୟମାନଙ୍କ ପାଇଁ ହିନ୍ଦୀ ପାଠ୍ୟପୁସ୍ତକ ପ୍ରଣୟନ ହୁଏ ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ।

ପାଠକ କାରାବରଣ କରନ୍ତି । ବ୍ରହ୍ମପୁର ଜେଲରେ ସାଥୀ ବନ୍ଦୀମାନଙ୍କୁ ହିନ୍ଦୀ ଶିକ୍ଷା ଦିଅନ୍ତି । ହିନ୍ଦୀ ଭାଷାରେ ଲିଖିତ ସାହିତ୍ୟ ପୁସ୍ତକମାନଙ୍କର ଅନୁବାଦ କରନ୍ତି । ୧୯୪୫ରେ କାରାଗାରରୁ ମୁକ୍ତିଲାଭ କରନ୍ତି କିନ୍ତୁ ଓଡ଼ିଶା ଭିତରକୁ ପ୍ରବେଶ କରିବା ପାଇଁ ତାଙ୍କ ଉପରେ ନିଷେଧାଦେଶ ଜାରିହୁଏ, ଆନ୍ଧ୍ର ପ୍ରଦେଶର ଇଛାପୁରରେ କିଛିଦିନ ପରେ ସେ କଲିକତା ଚାଲିଯାଆନ୍ତି ।

୧୯୪୬ରେ ମହତାବଙ୍କ ନେତୃତ୍ୱରେ ସରକାର ଗଠନ ହୁଏ । ପାଠକ ଫେରନ୍ତି ଓଡ଼ିଶାକୁ ।

ରାଷ୍ଟ୍ରଭାଷା ପ୍ରେସ ଗଠିତ ହୁଏ । ରାଜକୃଷ୍ଣ ବୋଷଙ୍କ ଠାରୁ ପ୍ରାପ୍ତ ହ୍ୟାଣ୍ଡ୍ ପ୍ରେସରେ 'ରାଷ୍ଟ୍ରଭାଷା ପତ୍ର' ପ୍ରକାଶନ ଆରମ୍ଭ ହୁଏ । ପରବର୍ତ୍ତୀ କାଳରେ ରାଷ୍ଟ୍ରଭାଷା ପ୍ରେସକୁ ରାଷ୍ଟ୍ରଭାଷା ସମବାୟ ପ୍ରେସରେ ରୂପାନ୍ତରିତ କରାଯାଏ । ଏବଂ ଇତିହାସର କ୍ରୁର ପରିହାସରେ ପାଠକଜୀଙ୍କ ଦ୍ୱାରା ନିଯୁକ୍ତ କିଛି କର୍ମୀ ଓ କର୍ମଚାରୀ ଏହାକୁ ସ୍ୱତନ୍ତ୍ର କରିନିଅନ୍ତି, ରାଷ୍ଟ୍ରଭାଷା ପ୍ରଚାର ସମିତିରୁ । ରାଜନୀତିର ପଶାପାଲିର ଖେଳ ଆରମ୍ଭ ହୁଏ ।

୧୯୪୮ ମସିହା ଜାନୁଆରୀ ୧୮ ତାରିଖରେ ଗାନ୍ଧୀଭବନର ଶୁଭାରମ୍ଭ ହୁଏ, ପରେ ପ୍ରେସ କାର୍ଯ୍ୟାଳୟ, ସଭା କାର୍ଯ୍ୟାଳୟ, ପୁସ୍ତକାଳୟ ଏବଂ କର୍ମଚାରୀମାନଙ୍କ ନିବାସ ନିର୍ମାଣ ହୁଏ ।

ପରବର୍ତ୍ତୀ ଘଟଣାବଳୀ ହେଉଛି ଚଳନ୍ତି ଇତିହାସ । ୧୯୫୯ ମସିହାରେ ରାଷ୍ଟ୍ରଭାଷା ପ୍ରଚାର ସଭାର ରଜତ ଜୟନ୍ତୀ ପାଳିତ ହୁଏ । ଏଥିପାଇଁ ପ୍ରକାଶିତ 'ରଜତ ଜୟନ୍ତୀ ଗ୍ରନ୍ଥ' ଉତ୍କଳର ଚାରୁକଳା, ସଂସ୍କୃତି, ବ୍ୟବସାୟ, ଜୀବନଧାରା ଉପରେ ସଂକଳିତ ଏଇ ଗ୍ରନ୍ଥ ପାଠକଜୀଙ୍କୁ ଆଣିଦେଲା ଖ୍ୟାତି ଓ ସମ୍ମାନ ।

ବହୁ ଉତ୍‌ଥାନ, ପତନ ପାଠକଜୀଙ୍କର ଜୀବନରେ ଦେଖାଦେଇଛି । ସେ କିନ୍ତୁ ସଂଗ୍ରାମ କରି ଚାଲିଥିଲେ ଅବିରତ । ୧୯୬୬ ମସିହାରେ ସେ ହୃଦରୋଗରେ ଆକ୍ରାନ୍ତ ହୁଅନ୍ତି ଏବଂ ଚାରିବର୍ଷ ତା' ବିରୁଦ୍ଧରେ ସଂଗ୍ରାମ କରି ଚାଲିଥିଲେ ସେ ।

୧୯୭୦ ମସିହା ଜାନୁଆରୀ ମାସ ୨୦ ତାରିଖ । ହଠାତ୍ ତାଙ୍କର ଜୀବନର ବିରାଟ ନାଟକର ଅନ୍ତ ହୋଇଗଲା । ସେ ଆଖିବୁଜି ଦେଲେ ଚିରଦିନ ପାଇଁ ! ଇତିହାସର ଏକ ଅଧ୍ୟାୟର ସମାପ୍ତି ।

ଆସିଥିଲେ ମଧ୍ୟପ୍ରଦେଶରୁ କିନ୍ତୁ କର୍ମକ୍ଷେତ୍ର ହୋଇଯାଇଥିଲା ଓଡ଼ିଶା । ଓଡ଼ିଆ ଝିଅଟିଏ ବିବାହ କରିଥିଲେ । (ବିନୀତା ପାଠକ) । ଓଡ଼ିଶା ମାଟି, ପରିବାର, ହିନ୍ଦୀ ପ୍ରଚାର ସଭା ସବୁ ରହିଗଲା ପଛରେ । ସେ ଚାଲିଗଲେ ଦୂରକୁ, ବହୁ ଦୂରକୁ ।



# ଜୀବନ ନାଟକର ଶେଷ ଅଭିନୟ

ଜୀବନରେ ବହୁ ନାଟକରେ ସେ ଅଭିନୟ କରିଛନ୍ତି । କେତେଥର ନାଟକରେ ସେ ଅଭିନେତା-ସ୍ୱାମୀଙ୍କ କୋଳରେ ମୁଣ୍ଡରଖି 'ମରି' ଯାଇନାହାନ୍ତି !

ଏପ୍ରିଲ ୧୫, ୨୦୦୦ ମସିହା । ବିଶ୍ୱନାଥଲେନ, କଟକରେ ଆପଣା ଘରେ ସେ ଆଜି ବି ସେଇପରି ସ୍ୱାମୀ ପୁରଞ୍ଜନ ରାୟଙ୍କ କୋଳ ଉପରେ ମୁଣ୍ଡ ରଖି ଶୋଇଗଲେ । କିନ୍ତୁ ଚିରଦିନ ପାଇଁ । ସେ ଆଉ ଉଠିବେ ନାହିଁ । କି ନାଟକୀୟ ମୃତ୍ୟୁ ! ସେକ୍ସପିଅର କହିଥିଲେ–

"All the world is a stage, where men are actors, and women are actresses"

ମଞ୍ଚ-ଅଭିନେତ୍ରୀ ଅଳକା ରାୟ ଜୀବନ-ବ୍ୟାପୀ ବହୁ ବଂଗଳା ଓ ଓଡ଼ିଆ ନାଟକରେ ଅଭିନୟ କରିଛନ୍ତି । ଏପ୍ରିଲ ୧୫, ୨୦୦୦ ଦିନ ତାଙ୍କର ସକାଳେ ଟିକିଏ ବାନ୍ତି ଲାଗିଥିଲା । ସେ ଅବଶ ହୋଇ ପ୍ରଥମେ ପୁଅର କୋଳରେ ମୁଣ୍ଡଦେଇ ଶୋଇ ଯାଇଥିଲେ ଏବଂ ପରେ କିଛି ଚେତା ଲାଭକରି ସ୍ୱାମୀଙ୍କର କୋଳରେ ମୁଣ୍ଡ ରଖି ଶୋଇଗଲେ । ଆଉ ଉଠିଲେ ନାହିଁ । ଜୀବନ-ନାଟକର ଶେଷ ଯବନିକା ପଡ଼ିଗଲା ।

କଟକ ପ୍ରସିଦ୍ଧ ଆଡ଼ଭୋକେଟ ପି.ସି. ଚାଟର୍ଜୀଙ୍କର କନ୍ୟା ଅଳକା ରାୟ ଜନ୍ମ ହୋଇଥିଲେ ୧୯୩୫ ମସିହା ଜାନୁଆରୀ ୨୦ ତାରିଖରେ । କଟକର ସେଣ୍ଟ ଜୋସେଫ କନ୍‌ଭେଣ୍ଟରୁ ସ୍କୁଲ ଶିକ୍ଷା ସମାପ୍ତ କରି, ଶୈଳବାଳା ମହିଳା କଲେଜରୁ ଆଇ.ଏ., ରେଭେନ୍ସା କଲେଜରୁ ଇଂରାଜୀ ଅନର୍ସ ସହିତ ବି.ଏ. ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ଏମ.ଏ. ପାଶ କରି ଓଡ଼ିଶା ସରକାରଙ୍କର ଶିକ୍ଷା ବିଭାଗରେ ଯୋଗ ଦେଇଥିଲେ ଲେକ୍‌ଚରର ଭାବରେ । ରେଭେନ୍ସା କଲେଜରେ ଅଧାପିକା, ବ୍ରହ୍ମପୁର ମହିଳା କଲେଜରେ ଅଧାପିକା, ଶୈଳବାଳା ମହିଳା କଲେଜ ଓ ରମାଦେବୀ ମହିଳା କଲେଜରେ ବିଭାଗୀୟ ମୁଖ୍ୟ, ବାରିପଦା ମହିଳା କଲେଜ, ପୁରୀ ମହିଳା କଲେଜରେ ପ୍ରିନ୍ସିପାଲ, ଜାତୀୟ କବି ବୀରକିଶୋର କଲେଜରେ ବିଭାଗୀୟ ମୁଖ୍ୟ ଭାବରେ ରହି ପରିଶେଷରେ ରେଭେନ୍ସା କଲେଜରୁ ସିନିଅର ରିଡ଼ର ଭାବରେ ଅବସର ଗ୍ରହଣ କରିଥିଲେ ।

କିନ୍ତୁ ନାଟକ ଥିଲା ତାଙ୍କ ଜୀବନର ନିଶା ଏବଂ ସେଇ ନିଶା ତାଙ୍କୁ ଆସକ୍ତ କରି ରଖିଥିଲା ମୃତ୍ୟୁ ପର୍ଯ୍ୟନ୍ତ । ଆର୍ଥର ମିଲର, ଇବସନ, ବ୍ରେଖଟ୍ ତାଙ୍କର ପ୍ରିୟ ନାଟ୍ୟକାରମାନଙ୍କ ଭିତରେ ଅନ୍ତର୍ଭୁକ୍ତ ।

ସେ ଏଇ ବିଶ୍ୱ ପ୍ରସିଦ୍ଧ ନାଟ୍ୟକାରମାନଙ୍କ ଦ୍ୱାରା ରଚିତ ନାଟକ ମାନଙ୍କର (ବଂଗଳା ଓ ଓଡ଼ିଆ ଅନୁବାଦ)ରେ ଅଭିନୟ କେବଳ କଲେ ନାହିଁ, ଗବେଷଣା ମଧ୍ୟ କଲେ । ଅଧ୍ୟାପକ ୰ ବିଧୁଭୂଷଣ ଦାସଙ୍କ ଅଧୀନରେ ସେ ବ୍ରେଖଟ୍‌ଙ୍କର ତିନି ପଇସାର ଓପେରା (Three Penny Opera) ଉପରେ ଗବେଷଣା କରିଛନ୍ତି । ସେ ଗବେଷଣା ପ୍ରସ୍ତୁତ ଲେଖାର ଚିଠାର ସମାପ୍ତି ହୋଇଛି କିନ୍ତୁ ମହାକାଳ ଉଭୟ ଗାଇଡ୍ ଏବଂ ଗବେଷିକାଙ୍କୁ ଟାଣି ନେଇଛି ତାର କୋଳକୁ ।

ନାଟ୍ୟକାର କେଳୁଚରଣ ମହାପାତ୍ରଙ୍କ ଅଧୀନରେ ସେ ନୃତ୍ୟ ଶିଖିଥିଲେ ଏବଂ ଛାତ୍ରାବସ୍ଥାରେ ବେଶ୍ କିଛି ନୃତ୍ୟ ସେ ପରିବେଷଣ କରିଥିଲେ ବିଭିନ୍ନ ସ୍ଥାନରେ । ପରେ ନୃତ୍ୟର ନିଶା ମଉଳି ଯାଇଥିଲା ସତ୍ୟ, କିନ୍ତୁ ନାତୁଣୀ ପାଏଲର ଖଞ୍ଜିର ଧ୍ୱନି ଭିତରେ ସେ ପୁଣି ଶୁଣିଥିଲେ ସେଇ ସ୍ୱପ୍ନର ଝଂକାର ।

ଭଲ ପାଇଥିଲେ ନାଟ୍ୟକାର ଆଡ଼ଭୋକେଟ ପୁରଞ୍ଜିବ ରାୟଙ୍କୁ ଏବଂ କଟକ ତଥା କଲିକତାର ବିଭିନ୍ନ ରଂଗମଂଚରେ ପ୍ରଖ୍ୟାତ ନାଟ୍ୟକାରମାନଙ୍କର ନାଟକ ଦେଖିବାରେ ତାଙ୍କର ପ୍ରେମ ଓ ହନିମୁନ୍ ଉଭୟ କଟି ଯାଇଥିଲା । ଶମ୍ଭୁ ମିତ୍ର, ତୃପ୍ତି ମିତ୍ର, ଉତ୍ପଳ ଦତ୍ତ, ଶୋଭା ସେନ୍ ପ୍ରଭୃତି ପ୍ରସିଦ୍ଧ ପ୍ରଗତିଶୀଳ ନାଟ୍ୟକାର ଏଇ ଦଂପତିର ପାରିବାରିକ ବଂଧୁରେ ପରିଣତ ହୋଇଥିଲେ ।

ପ୍ରଥମେ ବଂଗଳା ଭାଷାର ନାଟକରେ ଅଭିନୟ କରୁଥିଲେ କିନ୍ତୁ ଗୁଣଗ୍ରାହୀ ଆଡ଼ଭୋକେଟ (ପରେ ବିଚାରପତି) ନବକୁମାର ଦାସ ଏବଂ ବଂଧୁ ଆଡ଼ଭୋକେଟ ବିଜୟକୃଷ୍ଣ ମହାନ୍ତିଙ୍କ ପ୍ରେରଣାରେ ସେମାନେ ନାଟକ କଲେ ଓଡ଼ିଆରେ । ଗର୍କିଙ୍କର 'ମା', ବଜଲଗେଟ୍ ନାଟକରେ ତାଙ୍କର ଅଭିନୟ ବହୁ ଦର୍ଶକଙ୍କର ଆଖିରେ ଲୁହ ଆଣିଥିଲା । 'ସମାଜ' ସଂପାଦକ ରାଧାନାଥ ରଥ ନାଟକ ଦେଖି ମୁଗ୍ଧ ହୋଇ ତାଙ୍କୁ ଗୋପବନ୍ଧୁ ଆଓ୍ୱାର୍ଡ଼ ଦେଇଥିଲେ । ଏକ ସାଂସ୍କୃତିକ ପ୍ରତିନିଧି ଦଳରେ ସେ ପୂର୍ବ ଜର୍ମାନୀ ଯାଇଥିଲେ ଏବଂ ବ୍ରେଖଟ୍‌ଙ୍କ ଉପରେ ତାଙ୍କର ଗବେଷଣାକୁ ମାର୍ଜିତ ଏବଂ ସମୃଦ୍ଧ କରିଥିଲେ ।

ଡାଉନ ଟ୍ରେନ (Down Train), ସେଲ୍ସମ୍ୟାନର ମୃତ୍ୟୁ (Death of a salesman), ପ୍ରାୟଶ୍ଚିତ (all my sins), ଇବସନ୍‌ଙ୍କ ଭୂତ (Ghost) ରେ ଅଭିନୟ ତାଙ୍କ ପାଇଁ ଆଣିଦେଇଥିଲା ସ୍ୱତନ୍ତ୍ର ସ୍ୱୀକୃତି ।

ଅବସର ପରେ ସେ ଖୋଲିଥିଲେ 'ଅଳକା ଶିକ୍ଷା ନିକେତନ' ଆପଣା ଗୃହରେ, ଗରିବ ପିଲାମାନଙ୍କୁ ଶିକ୍ଷାଦେବା ପାଇଁ । ସାଇନବୋର୍ଡ଼ ଝୁଲୁଛି କିନ୍ତୁ କର୍ତ୍ତ୍ରୀ ଆଉ ନାହାନ୍ତି ।

ନାଟକରେ ଅଭିନୟ ଯେପରି ଜୀବନ୍ତ, ଜୀବନ ନାଟକର ସମାପ୍ତି ସେଇଭଳି ନାଟକୀୟ । ହିରୋଇନ ଆଉ ନାହାନ୍ତି । ପାଲଟି ଯାଇଛନ୍ତି ଇତିହାସ ।



# ବନ୍ଧୁ ଶିକ୍ଷାବିତ୍‌ର ବିୟୋଗରେ

ହଠାତ୍ ସଂବାଦ ମିଳିଲା ଯେ ଅଧ୍ୟାପକ ଅମୂଲ୍ୟକୃଷ୍ଣ ମିଶ୍ର ଆଉ ନାହାନ୍ତି । ଖବର ପାଇଲା ବେଳକୁ ମୁଁ ନିଜେ ଯାଉ ଯାଉ ଅଟକି ଯାଇଛି । କଳିଙ୍ଗ ହସ୍‌ପିଟାଲରେ ଥାଇ ଶୁଣିଲି ଯେ ଅମୂଲ୍ୟଙ୍କୁ ସେଇ ହସ୍‌ପିଟାଲକୁ ଆଣୁ ଆଣୁ ସେ ଚାଲିଯାଇଛନ୍ତି, ସମସ୍ତଙ୍କ ହାତରୁ ଖସି, ଆଉ ମୁଁ ଅଟକିଯାଇଛି ।

ଅମୂଲ୍ୟ ଥିଲେ ମୋର ସମସାମୟିକ କଲେଜରେ । ପରେ ସେ ମୋର ଘନିଷ୍ଠ ବଂଧୁ ଶରତ ଚନ୍ଦ୍ର ମିଶ୍ରଙ୍କର ଭଉଣୀକୁ ବିବାହ କରିଥିଲେ ।

ମାତ୍ର କିଛି ଦିନ ତଳେ ତାଙ୍କ ସାଂଗରେ ଭେଟ ହୋଇଥିଲା । ଶୁଭିଥିଲା ତାଙ୍କ କଣ୍ଠରୁ ପର୍ବତର ଝରଣାପରି ଅଭିବାଦନ, ଶୁଭେଚ୍ଛା ଏବଂ କୁଶଳ ଜିଜ୍ଞାସା ।

ଆସନ୍ନ ମୃତ୍ୟୁର କୌଣସି ସୂଚନା ନଥିଲା । ମୃତ୍ୟୁ କ'ଣ ସବୁବେଳେ ନୋଟିସ ଦେଇ ଆସେ ?

''ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବଟି ଆଚମ୍ବିତେ ଆସି''

କବିଙ୍କର ଏହି ଆପ୍ତବାଣୀ ପ୍ରଯୁଜ୍ୟ ହୋଇଗଲା ଅମୂଲ୍ୟଙ୍କ କ୍ଷେତ୍ରରେ । ଅମୂଲ୍ୟ ଥିଲେ ମୋ ଠାରୁ ବର୍ଷେ ସାନ । ତାଙ୍କ ପୂର୍ବରୁ ମୋର ଯିବାର କଥା ! କିନ୍ତୁ ମହାକାଳର ନିୟମ ବିଚିତ୍ର ।

ଅମୂଲ୍ୟଙ୍କର ଜନ୍ମ ୧୯୩୨ ମସିହାରେ ବରଗଡ଼ (ଅବିଭକ୍ତ ସମ୍ବଲପୁର ଜିଲ୍ଲାରେ) । ରେଭେନ୍ସା କଲେଜରୁ ପଦାର୍ଥ ବିଜ୍ଞାନରେ ଏମ୍.ଏସ୍‌ସି. ପାଶ କରି ସେ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ । ୧୯୯୦ ମସିହାରେ ସେ ବିଜେବି କଲେଜରେ ଅଧକ୍ଷ ପଦବୀରେ ଥିଲାବେଳେ ଅବସର ଗ୍ରହଣ କରିଥିଲେ । ତା'ପୂର୍ବରୁ ସେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କଲେଜ, ଭଂଗନଗର, ପ୍ରାଣନାଥ ମହାବିଦ୍ୟାଳୟ ଖୋର୍ଦ୍ଧା, ଜାତୀୟ

କବି ବୀରକିଶୋର କଲେଜ, କଟକ, ଏବଂ ରାଜଧାନୀ କଲେଜର ଅଧ୍ୟକ୍ଷ ଭାବରେ ଦକ୍ଷତାର ସହିତ କାମ କରିଥିଲେ । ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ସଭାପତି ଭାବରେ ତାଙ୍କର କାର୍ଯ୍ୟ ପାଇଁ ସେ ସ୍ମରଣୀୟ ହୋଇ ରହିବେ ।

ସେ ଥିଲେ ପଦାର୍ଥ ବିଜ୍ଞାନର ଛାତ୍ର । କିନ୍ତୁ ଓଡ଼ିଆ ସାହିତ୍ୟ ଉପରେ ତାଙ୍କର ଗଭୀର ପ୍ରବେଶ ଥିଲା । ସାଲବେଗ ସାହିତ୍ୟ ଉପରେ ଗବେଷଣା କରି ସେ ଡକ୍ଟରେଟ ଉପାଧି ହାସଲ କରିଥିଲେ ।

ସେ ୩୫ ରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଯାଇଛନ୍ତି । ସେମାନଙ୍କ ମଧ୍ୟରେ ଗଳ୍ପ, ଉପନ୍ୟାସ ପ୍ରବନ୍ଧ ପ୍ରଭୃତି ସାହିତ୍ୟର ସବୁ ବିଭାଗ ଅନ୍ତର୍ଭୁକ୍ତ ପ୍ରାଣନାଥ ମହାବିଦ୍ୟାଳୟର ପ୍ରତିଷ୍ଠାତା ପ୍ରସିଦ୍ଧ ବାମପନ୍ଥୀ ନେତା ପ୍ରାଣନାଥ ପଟ୍ଟନାୟକଙ୍କ ଜୀବନୀ ଉପରେ ତାଙ୍କ ଦ୍ୱାରା ଲିଖିତ 'ଅଲିଭା ଶିଖା ତାହା ମଧ୍ୟରେ ଅନ୍ୟତମ ।

ଏହାଛଡ଼ା ଶାନ୍ତି ସଂଗ୍ରାମ, ଆହୁତି, ଭକ୍ତ ସାଲବେଗ, ଫେରାଇ ଦିଅ ମୋର ଅଖଣ୍ଡ ଭାରତ, କାମଧେନୁର ଲୁହ ପ୍ରଭୃତି ବହି ତାଙ୍କର ଜନପ୍ରିୟତାର ସନ୍ତକ ।

ସେଦିନ । ସେ ଫେରୁଥିଲେ ଖୋର୍ଦ୍ଧାରେ ଏକ ସଭାରେ ଭାଷଣ ଦେଇ । ବାଟରେ ଛାତିରେ ଯନ୍ତ୍ରଣା ଏବଂ ସେଇ ବାଟରେ ହିଁ ତାଙ୍କର ମୃତ୍ୟୁ ।

ସେ ପ୍ରାଣନାଥ ସ୍ମୃତି କମିଟିର ସଭାପତି ଥିଲେ । ବାପା ଦୟାନିଧି ମିଶ୍ର ଥିଲେ ସ୍ୱାଧୀନତା ସଂଗ୍ରାମୀ ।

ଅମୂଲ୍ୟ ପରବର୍ତ୍ତୀ କାଳରେ ଭାରତୀୟ ଜନତା ପାର୍ଟିରେ ଯୋଗ ଦେଇଥିଲେ ।

ବଂଧୁବତ୍ସଳ, ମେଳାପୀ ଅମୂଲ୍ୟ ସ୍ମୃତ ହୋଇ ରହିବେ ଚିରକାଳ ତାଙ୍କର ଅଗଣିତ ବଂଧୁଙ୍କର ସ୍ମୃତିରେ ।



# ହେ ବଂଧୁ ବିଦାୟ !

ଦି' ପହର ଖରାପଡ଼ି ଟିକିଏ ମଉଳିବାକୁ ଆରମ୍ଭ କରିଛି । ଆଜି ଏପ୍ରିଲ ୨୯ ତାରିଖ, ୧୯୯୯ ମସିହା । ଟେଲିଫୋନ ବାଜୁଛି ତୁହାକୁ ତୁହା । ରିସିଭର ଧରିଲା ପୁଅ । ସେ ପଟରୁ ରୀନା କହୁଛି ରେଭେନ୍ସା କଲେଜ ଅଫିସରୁ । 'ଅଧ୍ୟାପକ ଅସିତ କବି ଚାଲିଗଲେ' । ପୁଅ ଫୋନ ଧରିଲା କିନ୍ତୁ ଡାକ୍ତରଙ୍କର ବାରଣ ହେତୁ ଖବର ଦେଲା ସଂଧ୍ୟାରେ । ଅସିତ, ଗଲା କୁଆଡ଼େ ? କେବେ ଗଲା, କାହିଁକି ଗଲା ?

ପଡ଼ୋଶୀ ଡକ୍ଟର ହାଡ଼ିବଂଧୁ ମିର୍ଦ୍ଧାଙ୍କୁ ଫୋନ କଲି । ଶୁଣିଲି, ଅସିତ ଚାଲିଗଲା । ସେ କହିଲେ, ବୋଧହୁଏ ସତ୍ୟ ନୁହେଁ । ହୋଇଥିଲେ ମୁଁ ନିଶ୍ଚୟ ଜାଣନ୍ତିଣି । ତାଙ୍କର ପି.ଏଚ.ଡି. ଉପାଧିର ଗାଇଡ଼ ହେଉଛନ୍ତି ଅସିତ । ଅସିତ ଆପଣାର ଜୀବନକାଳ ଭିତରେ ବହୁ ଛାତ୍ରଛାତ୍ରୀଙ୍କର ଗାଇଡ଼ । କେତେକଙ୍କର ଖୁବ୍ ଅନ୍ତରଙ୍ଗ ମଧ୍ୟ ।

ଅସିତ କେବେ ଅସୁସ୍ଥ ହେଲେ ତା' ଜାଣିନାହିଁ । କି ସେ ଖବର ଅନେକ ଜାଣନ୍ତି ନାହିଁ । କିନ୍ତୁ ସେ ନାହାନ୍ତିର ସମ୍ବାଦ ବିଜୁଳି ବେଗରେ ଖେଳି ଯାଇଛି । ଘର ଫୋନରୁ ଉତ୍ତର ଆସୁନାହିଁ, ଟେଲିଫୋନ ବାଜି ଚାଲିଛି । ବୋଧହୁଏ ସମସ୍ତେ ଡାକ୍ତରଖାନାରେ ।

ମନ ବହୁଦିନ ତଳକୁ ଫେରିଗଲା । ଅସିତ ଜନ୍ମ ହୋଇଥିଲେ ଷଢ଼େଇକଳାରେ । ସ୍ୱାଭାବିକ କାରଣରୁ ଷଢ଼େଇକଳା, ଖରସୁଆଁ ପ୍ରତି ଆମ ପୀଢ଼ିର ଏକ ମାର୍ମିକ ଦୁର୍ବଳତା ରହିଛି । ଆମରି ସମୟରେ ଏଇ ଦୁଇ ଓଡ଼ିଆ ଭାଷାଭାଷୀ ଅଂଚଳ ଯାଇଛି ବିହାରକୁ ଚିରଦିନ ଲାଗି । ଏଥିପାଇଁ ଓଡ଼ିଶା ମାଟି ରକ୍ତସ୍ନାତ ହୋଇଛି, ଅନ୍ତତଃ ଦୁଇ ତିନିଜଣ ପୁଅକୁ ବଳିଦାନ ଦେବାକୁ ପଡ଼ିଛି । ଲୁହ ଏବଂ ଲହୁରେ ମାଟି ଭିଜିଯାଇଛି ।

ଅସିତ ଆସିଥିଲେ ଷଢ଼େଇକଳାରୁ ଏବଂ ପିଲାଦିନରୁ ଓଡ଼ିଶା ସହିତ ମିଶ୍ରଣ ସଂଗ୍ରାମରେ ଲିପ୍ତ ହୋଇ ଯାଇଥିଲେ । ଜୀବନ ବହୁ ଦୁଃଖରେ କଟିଛି ଏବଂ ସେଇଯୋଗୁଁ ତାଙ୍କର ଜୀବନ ନୌକା ଜୀବନ ସ୍ରୋତରେ ଥଳକୁଳ ମାନି ନାହିଁ, ଚାଲିଛି ବେପରୱା ଭାବରେ ।

ପିତାଙ୍କୁ ଶୈଶବରେ ହରାଇ ଅସିତ ପାଠ ପଢ଼ିଥିଲେ ଖୁବ ଦୁଃଖ କଷ୍ଟରେ ! ଷଢ଼େଇକଳା ହାଇସ୍କୁଲରେ ମାଟ୍ରିକ ପାଶ କରି ବାରିପଦାରୁ ଆଇ. ଏ. ପାଶ କରନ୍ତି ସେ । ଓଡ଼ିଶା ସହିତ ମିଶ୍ରଣ ପାଇଁ ତାଙ୍କର କାର୍ଯ୍ୟ ତାଙ୍କୁ ଷଢ଼େଇକଳାରୁ କାଢ଼ି ଆଣିଥିଲା । ଅସିତଙ୍କ ସହ ପରିଚୟ ହୋଇଥିଲା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ଏବଂ ସେ କଟକଚଣ୍ଡୀ ଛକରୁ ପ୍ରକାଶ ପାଉଥିବା 'ଗଣତନ୍ତ୍ର' ପତ୍ରିକାରେ କାର୍ଯ୍ୟ କରିବାର ସୁଯୋଗ ପାଆନ୍ତି ଏବଂ ତା' ସହିତ ପାଠପଢ଼ନ୍ତି ଖ୍ରୀଷ୍ଟ କଲେଜରେ ।

କାମ ଚାଲୁରହେ ତାଙ୍କର । ପଢ଼ିବା ସହିତ ଲେଖିବା ଏବଂ ବିଭିନ୍ନ ସଭା ସମିତିରେ ଭାଷଣ ଦେବା ତାଙ୍କ କାର୍ଯ୍ୟର ଅନ୍ତର୍ଭୁକ୍ତ ହୋଇଯାଏ । ସାହିତ୍ୟର ସବୁ ବିଭାବରେ ସେ ଆପଣାର ଆଲେଖ୍ୟ ରଖିଯାଆନ୍ତି, ଯାହା ପରବର୍ତ୍ତୀ କାଳରେ ଅଧିକ ପରିପକ୍ୱ ହୋଇଯାଏ ଏବଂ ତାଙ୍କୁ ଘେନିଯାଏ ଗବେଷଣାର ଶିଖରକୁ । ଖ୍ରୀଷ୍ଟ କଲେଜରୁ ବି.ଏ. ପାଶ କରି ସେ ରେଭେନ୍ସା କଲେଜରେ ପଢ଼ନ୍ତି ଏମ.ଏ ଏବଂ ଟ୍ୟୁସନ ତାଙ୍କର ଆୟର କିଛି ପରିମାଣ ମେଣ୍ଟାଇଥାଏ । ଏଇ ସମୟରେ ତାଙ୍କର ଏକ କନ୍ୟା ସହିତ ସୌହାର୍ଦ୍ଦ୍ୟ ଜମେ, ଯାହା ପରବର୍ତ୍ତୀ କାଳରେ ବିବାହରେ ପରିଣତ ହୁଏ । ବିଭିନ୍ନ ଛାତ୍ର ଏବଂ ଜନ ଆନ୍ଦୋଳନରେ ଆମେ ଏକା ସାଂଗରେ କାମ କରୁ ଏବଂ ଆମ ଭିତରେ ସୌହାର୍ଦ୍ଦ୍ୟ ଜମି ଉଠେ ।

ବହୁ ପ୍ରତିବନ୍ଧକକୁ ଟପି ସେ ବିବାହ କରନ୍ତି କିନ୍ତୁ ପ୍ରତିବନ୍ଧକ ତାଙ୍କୁ ଗୋଡ଼ାଇ ଚାଲେ । ଦୁଇଟି ପୁତ୍ର, ଗୋଟିଏ କନ୍ୟାର ଜନକ ଅସିତ ପତ୍ନୀକୁ ହରାଇବସନ୍ତି ଅକାଳରେ । ଜୀବନ ନୌକା ସ୍ଥିର ହୋଇ ରହିପାରେନା ଆଉ । କିଛି ପରିମାଣରେ 'ବୋହେମିଆନିଜମ୍' ତାଙ୍କୁ ଗ୍ରାସକରେ ଏବଂ ତାଙ୍କର ପ୍ରତିଭାକୁ ମଧ ଏହା ମଣ୍ଡିତକରେ ।

ବିଭିନ୍ନ କଲେଜରେ ଅଧାପନା, ଗବେଷଣା ଚାଲୁରହେ ଏବଂ ସିଗାରେଟ ପିଇବା ବଢ଼ିଯାଏ ଖୁବ୍ । କିଏ ମନା କରିବ, କିମିତି ମନା କରିବ ଏଇ ବେପଥୁ ମଣିଷକୁ । ହଳଧର, ନରୋତ୍ତମ, ନାରାୟଣ ସମସ୍ତେ ଅଛନ୍ତି, ସେମାନେ ସମାନ ବୟସର । ମୁଁ ବୟସରେ ବଡ଼, ତେଣୁ ଅସିତ ମୋ ସାଂଗରେ ପୂରା ଫ୍ରି ହୋଇ ପାରନ୍ତି ନାହିଁ । ସେମାନେ କହନ୍ତି, କିଛି ବୁଝୁନି ମଣିଷଟା ।

ଅସିତ କିଛିକାଳ ଶାନ୍ତିନିକେତନରେ ଗବେଷଣା କରୁଥିଲେ । ସେଇ ରହଣୀ ତାଙ୍କୁ କରିଦେଲା ଆନ୍ତର୍ଜାତିକ ଏବଂ ଊର୍ଦ୍ଧ୍ୱମୁଖୀ । ସେ ଛୋଟଛୋଟ କଥା, ସମାଲୋଚନା, ଆଲୋଚନାକୁ ଖାତିର କଲେନାହିଁ ।

ପୁଅଝିଅମାନଙ୍କ ପ୍ରତି ତାଙ୍କର ନିବିଡ଼ତା ଖୁବ୍ କିନ୍ତୁ ବାହାରକୁ ପ୍ରକାଶ କରନ୍ତି ନାହିଁ । ପୁଅର କଣ ଗୋଟାଏ ଅସୁବିଧା ହୋଇଛି । ବିଳମ୍ବିତ ପ୍ରହରରେ ଅସିତ ଫୋନ

କରିବେ ଏହା ଅନୁରୋଧ ନୁହେଁ, ଦାବୀ । ଦାବୀ ତାଙ୍କର ସହଯୋଦ୍ଧା, ସହକର୍ମୀ, ସହପାଠୀମାନଙ୍କ ଠାରେ କରିବାକୁ ହେବ । ଅସିତ, ତମେ ତ ଆଉ ଫୋନ କରିବ ନାହିଁ ? ଆସି ତ ପହଞ୍ଚିବ ନାହିଁ ଅବେଳାରେ ।

ଅସିତଙ୍କ ପାଇଁ ପୁରସ୍କାର ଆସିଛି, ପ୍ରତିଷ୍ଠା ମିଳିଛି, ପରିଚିତି ମିଳିଛି କିନ୍ତୁ ତାଙ୍କର ଜୀବନ ନୌକା ଅସ୍ଥିର ହୋଇ ଘୁରିବୁଲୁଛି ଯେପରି ଏବଂ ତାହା ହିଁ ତାଙ୍କୁ ଟାଣି ନେଇଛି ସେ କୂଳକୁ । ଯେଉଁଠାରୁ ସେ ଆଉ ଫେରିବେ ନାହିଁ ।

ଜୀବନ-ଯୁଦ୍ଧରେ ରଣକ୍ଳାନ୍ତ ଅସିତ ଆଜି ପାଲଟି ଯାଇଛି ଇତିହାସ । ବୟସରେ ସାନ ହୋଇ ବି ସେ ଚାଲିଗଲେ ଆଗରୁ, କିଛି ଖବର ନ ଦେଇ । ଠିକ୍ ଯେପରି ସେ ଚାଲିଯାଉଥିଲା ହଷ୍ଟେଲରୁ ବା ଆପଣାର କ୍ୱାଟର୍ସରୁ ସମ୍ବଲପୁରରେ ।



# ସଂଗ୍ରାମୀର ଶେଷ ସଂଗ୍ରାମ

ବୟୋଜ୍ୟେଷ୍ଠ ସ୍ୱାଧୀନତା ସଂଗ୍ରାମୀ ଆକୁଳାନନ୍ଦ ବେହେରା ଆଉ ନାହାନ୍ତି । ଆପଣାର ବାପୁଜୀ ନଗର, ଭୁବନେଶ୍ୱରରେ ୯୦ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି ହୃଦରୋଗରେ ।

ଆଜିଠାରୁ ବହୁବର୍ଷ ତଳେ ୧୯୩୧ ମସିହାରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କାରାବରଣ ଆରମ୍ଭ କରିଥିଲେ । ଓଡ଼ିଶା କଂଗ୍ରେସ ସେବା ଦଳର ସେ ମୁଖ୍ୟ ଥିଲେ, କାରଣ ତାଙ୍କର ଶାରୀରିକ ଦକ୍ଷତା ଯେପରି ଥିଲା ଠିକ୍ ସେଇପରି ଥିଲା ମାନସିକ ଦକ୍ଷତା ଏବଂ ଶୃଙ୍ଖଳା ଜ୍ଞାନ । ୧୯୩୦-୩୧ ରୁ ୧୯୪୨ । କଟକ ଜିଲ୍ଲା ତାଙ୍କର କର୍ମସ୍ଥଳୀ । ଅଗଣିତ ଚାଷୀ ମୂଲିଆ ତାଙ୍କୁ ଚିହ୍ନିଥିଲେ, ଜାଣିଥିଲେ ଏବଂ ଆପଣାର ବୋଲି ଭାବୁଥିଲେ । ୧୯୩୦-୩୧ ମସିହାର ଜୀବିତ ସ୍ୱାଧୀନତା ସଂଗ୍ରାମୀ ଆଜି ଆଙ୍ଗୁଠି ଅଗରେ ଗଣି ହୋଇଯିବ । ସେ ଦିନର ଯୋଦ୍ଧା ଆଉ ନାହାନ୍ତି । ସେ ଦିନର କଥା ବି ଲୋକେ ଭୁଲିଗଲେଣି । ଏଇଭଳି ଆଜିର ବିସ୍ମୃତ ଯୋଦ୍ଧା ଆକୁଳାନନ୍ଦ କିନ୍ତୁ ଦିନେ ଆପଣାର ନିଷ୍ଠା ଓ ସାହସରେ ସମସ୍ତଙ୍କୁ ଚମତ୍କୃତ କରିପାରୁଥିଲେ ।

୧୯୪୨ ମସିହାରେ ସେ ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ କାରାବରଣ କଲେ । ୧୯୪୫ ମସିହା ବେଳକୁ ଜେଲରୁ ଖଲାସ ହେଲାପରେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟରେ ଆପଣାକୁ ନିୟୋଜିତ କରିଥିଲେ ।

କିନ୍ତୁ ବହୁ ବ୍ୟକ୍ତିଙ୍କ ପରି ତାଙ୍କର ମଧ ମୋହଭଂଗ ଘଟିଥିଲା । ଭାରତ ପହଞ୍ଚିଥିଲା ସ୍ୱାଧୀନତାର ଉପକଣ୍ଠରେ । କିନ୍ତୁ ଏଇ କଣ ଥିଲା ଆମର କଳ୍ପିତ ସ୍ୱାଧୀନତା ? କ'ଣ ମିଳିବ ଆମର ଏଇ ସ୍ୱାଧୀନତାରୁ, ଯଦି ତାହା ଚାଷୀ-ମୂଲିଆ, ଶ୍ରମିକ ପାଇଁ ସ୍ୱାଧୀନତା ନୁହେଁ ?

ଆକୁଳାନନ୍ଦ ବାବୁ ଯୋଗଦେଲେ ସୋସଲିଷ୍ଟ ପାର୍ଟିରେ । ଚୌଦ୍ୱାରା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହେଲେ ବିଧାନସଭାକୁ । ଚୌଦ୍ୱାର ଲୁଗାକଳରେ ମଜଦୁରମାନଙ୍କର ସଂଗଠନ ଗଢ଼ିଲେ, ଆପଣାର ଦାବି ହାସଲ ପାଇଁ ।

ସେ ସ୍ୱାଧୀନତା ପୂର୍ବରୁ କଟକ ଜିଲ୍ଲା ଲୋକାଲ ବୋର୍ଡ଼ର ଉପସଭାପତି ଥିଲେ । ସମାଜସେବାକୁ ସେ ଆପଣାର ବ୍ରତ ଭାବରେ ଗ୍ରହଣ କରିନେଇଥିଲେ ଏବଂ ତାହାହିଁ ତାଙ୍କୁ କରିଥିଲା ବିନୟୀ ଏବଂ ଭଦ୍ର । କଟକ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଭାବରେ ତାଙ୍କର କାର୍ଯ୍ୟ ଆଜି ବି ତାଙ୍କର ସେ କାଳର ସହକର୍ମୀମାନେ ସ୍ମରଣ କରନ୍ତି ।

ମହାତ୍ମା ଗାନ୍ଧୀଙ୍କର ୧୯୩୪ ମସିହାରେ ଓଡ଼ିଶାରେ ପଦଯାତ୍ରା ସମୟରେ ଯୁବକ ଆକୁଳାନନ୍ଦ ତାଙ୍କ ସାଂଗରେ ଯୋଗଦେଇଥିଲେ । ସେ ଦିନର ସ୍ମୃତିଚାରଣ କରି ସେ ମନୋମୁଗ୍ଧକର ଭାଷାରେ ଯୁବକମାନଙ୍କୁ ଅନୁପ୍ରାଣିତ କରୁଥିଲେ ।

ତାଙ୍କର ଶେଷଜୀବନ ଥିଲା ଶୋକାବହ । ସ୍ତ୍ରୀ ଏବଂ ପୁଅକୁ ସେ ହରାଇଥିଲେ ଏବଂ ପାରିବାରିକ ଜୀବନ ଦୁଃଖାବହ ହୋଇଥିଲା । ତାହା ହିଁ ତାଙ୍କର ମୃତ୍ୟୁକୁ ଟାଣିଆଣିଲା ।

ଆକୁଳାନନ୍ଦ ବେହେରା ଆଉ ନାହାନ୍ତି । ତାଙ୍କର ପରିକଳ୍ପିତ ସ୍ୱାଧୀନତା ଆଉ ସମାଜବାଦ ମଧ ଏପର୍ଯ୍ୟନ୍ତ ଆସିନାହିଁ । ସେଥିପାଇଁ ଆବଶ୍ୟକ କଠୋର ସଂଗ୍ରାମ ଓ ତ୍ୟାଗ ଏବଂ ସେତିକିବେଳେ ମନେପଡ଼ିବେ ମହାଯୋଦ୍ଧା ଆକୁଳାନନ୍ଦ ବେହେରା ।



# ସମୟ ଯାହାକୁ ଅନୁସରଣ କରୁଥିଲା

ଦୈନିକ 'ସମାଜ' ଅଫିସ । ସେ ନିଶ୍ଚୟ ପହଞ୍ଚିବେ ସକାଳ ସାତଟାରେ । ସାଇକେଲରେ । ସାତଟାରୁ ସାତଟା ପନ୍ଦର ମିନିଟ ମଧ୍ୟରେ ରାତିସାରା ଆସିଥିବା ସଂବାଦକୁ ଟେଲିପ୍ରିଣ୍ଟରରୁ କାଢ଼ି ସଜାଇ ଦେବେ, ତାଙ୍କର ସହଯୋଗୀମାନଙ୍କ ପାଇଁ । ଯିଏ ଯେଉଁ ସ୍ତମ୍ଭ ଲେଖିବ ତା' ଟେବୁଲରେ ଥୁଆହେବ ତା' ପାଇଁ ସମ୍ବାଦ । ସାତଟା ପନ୍ଦର ମିନିଟରେ ସେ ଖୋଲିବେ ରେଡ଼ିଓ ଓଡ଼ିଆ ସମ୍ବାଦ ପାଇଁ । ଦିନେ କି ସେଥିରେ ଡେରି ହୋଇନାହିଁ । ଖରା ବର୍ଷା ଶୀତ କାହାକୁ ସେ ଖାତିର କରି ନାହାନ୍ତି । ତାଙ୍କୁ ଦେଖି ଘଡ଼ି ମିଳାଇ ହୁଏ । ପାଣିବାବୁ ଆସିଲେଣି, ତା'ହେଲେ ସାତଟା ବାଜି ସାରିଲାଣି । ଏଇ ନିୟମିତତା ତାଙ୍କର ସହଯୋଗୀମାନଙ୍କୁ ମୁଗ୍ଧ କରିଛି, ଅନୁଗତ କରିଛି ମଧ୍ୟ । ରାଗନ୍ତି ନାହିଁ । କିନ୍ତୁ ମୁହଁକୁ ଗମ୍ଭୀର କିମିତି ଏକ ଛିଞ୍ଚଡ଼ା କଣ୍ଠରେ ସେ ଯାହା କୁହନ୍ତି, ତାହା ନିର୍ଦ୍ଦେଶ ନୁହେଁ ଆଦେଶ ହୋଇଯାଏ । ସହଯୋଗୀମାନଙ୍କ ପାଇଁ ଦରଦ ବହୁତ । ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ପରେ ସେ ହେଲେ ବାର୍ତ୍ତା ସଂପାଦକ । ବର୍ତ୍ତମାନ ମୁଖ୍ୟ ଟେବୁଲ ଛାଡ଼ି ତାଙ୍କୁ ଯିବାକୁ ହେବ ବାର୍ତ୍ତା ସଂପାଦକଙ୍କ ପାଇଁ ଉଦ୍ଦିଷ୍ଟ ସ୍ୱତନ୍ତ୍ର କୋଠରୀକୁ । ସେ କିନ୍ତୁ ମନା କଲେ । ''ତମମାନଙ୍କୁ ଛାଡ଼ି ମୁଁ କୁଆଡ଼େ ଯିବି ?'' ସେ ଗଲେ ନାହିଁ, ସେଇଠି ରହିଲେ ।

ନିୟମିତତା ଯେମିତି, ଆନୁଗତ୍ୟ ବି ସେମିତି । 'ସମାଜ' କେବଳ ଚାକିରିର ସଂସ୍ଥାନ ନୁହେଁ, ଏହା ଏକ ସାମାଜିକ ଅଙ୍ଗୀକାର । ତେଣୁ ତାଙ୍କର ଆନୁଗତ୍ୟ କେବଳ ବ୍ୟକ୍ତି ପାଇଁ ନୁହେଁ, ଆନୁଗତ୍ୟ ସମଷ୍ଟି ପାଇଁ । ସମାଜ ପାଇଁ ଯାହା ସୁନ୍ଦର ନୁହେଁ ତାହା 'ସମାଜ' ଖବରକାଗଜ ପାଇଁ ମଧ୍ୟ ନୁହେଁ । ସେଇ ଯୋଗୁଁ ଆନନ୍ଦ ପାଣି ସମୟ ସମୟରେ ବେଶ୍ ରୁଷ୍ଟ ହୋଇଛନ୍ତି । ସେଥିରୁ ଖୋଦ୍ 'ସାମାଜ' ସଂପାଦକ ଶ୍ରୀ ରାଧାନାଥ ରଥ ମଧ୍ୟ ମୁକ୍ତ ନଥିଲେ । ମୋର ମନେପଡୁଛି— କୌଣସି ଏକ ଫଟୋ 'ସମାଜ' ପୃଷ୍ଠାରେ ପ୍ରକାଶ ପାଇବା ପାଇଁ ରାଧାନାଥ ବାବୁ ଦେଇଥାନ୍ତି । ଆନନ୍ଦ ପାଣି ଏବଂ ସହଯୋଗୀ ମାନେ ଏହା ଛପାଯିବା ପାଇଁ ପସନ୍ଦକଲେ ନାହିଁ । କିଏ ଯାଇ କହିବ ତାଙ୍କୁ ? ଆନନ୍ଦ ପାଣି

ଉଠିଲେ ଉପରକୁ । କହିଲେ, ଏହା ସୁନ୍ଦର ହେବ ନାହିଁ । ମୁଁ ଆପଣଙ୍କୁ ଏହା ଜଣାଇଦେବାକୁ ଆସିଛି । ମୋର କର୍ତ୍ତବ୍ୟ ଏହା । କିନ୍ତୁ ଆପଣଙ୍କ ଆଦେଶ ଆମର ଶିରୋଧାର୍ଯ୍ୟ । ଆନନ୍ଦ ପାଣି ବାର୍ତ୍ତା ସଂପାଦକ । ସେ ଜାଣନ୍ତି ତାଙ୍କର କର୍ତ୍ତବ୍ୟ । ନିଜର କର୍ତ୍ତବ୍ୟ ପାଇଁ ସେ କାହାରି ଅପ୍ରିୟଭାଜନ ହେଲେ ସେଥିପ୍ରତି ତାଙ୍କର ନିଘା ନାହିଁ । କିନ୍ତୁ ଆନୁଗତ୍ୟ ମଧ୍ୟ ଅତୁଟ ।

ଶ୍ରୀ ଆନନ୍ଦ ପାଣି ସିଂହଭୂମିର ବାସିନ୍ଦା । ତାଙ୍କୁ ମୁଁ ଜାଣିଥିଲି କଲେଜରେ ପଢ଼ିବା ଦିନୁ । ସେତେବେଳେ ବିଚ୍ଛିନାଞ୍ଚଳ କାର୍ଯ୍ୟ ଛାତ୍ର ସମାଜକୁ ମଧ୍ୟ ପ୍ରଭାବିତ କରିଥିଲା । ମୋର ମନେପଡୁଚି ଚିନ୍ତାମଣି ପାଣିଗ୍ରାହୀ, ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ସହିତ ବିଚ୍ଛିନାଞ୍ଚଳ ଗସ୍ତ । ମୋର ମନେହୁଏ ଏଇପରି ଏକ ଗସ୍ତ ସମୟରେ ଆନନ୍ଦ ପାଣିଙ୍କ ନେତୃତ୍ୱ ଏବଂ କାର୍ଯ୍ୟକରିବା ଶକ୍ତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

'ସମାଜ' ପରିବାରକୁ ସେ ଆସନ୍ତି ୧୯୫୧ ମସିହାରେ । ସେଇଠାରୁ ଅବସର ନେଇଛନ୍ତି । ବିଶେଷ କାର୍ଯ୍ୟକ୍ରମରେ ପୁଣି ଫେରିଛନ୍ତି 'ସମାଜ'ର କାର୍ଯ୍ୟ ପାଇଁ । କିଛିକାଳ ପାଇଁ 'ସମାଜ'ର ସମ୍ବଲପୁର ସଂସ୍କରଣରେ କାର୍ଯ୍ୟ । ବିପର୍ଯ୍ୟୟ କାହାକୁ ଆସେ ନାହିଁ ? ନିରଳସ, ସ୍ପଷ୍ଟବାଦୀ ଆନନ୍ଦ ପାଣିଙ୍କର ବେଶ ଯେଉଁପରି ଥିଲା କଲେଜରେ, ସେଇପରି ରହିଗଲା । ଧୋତି, କାମିଜ ନଚେତ ପଂଜାବି ହେଉଛି ତାଙ୍କର ଚିରାନୁଚରିତ ଡ୍ରେସ । ସେଥିରେ କିଛି ପରିବର୍ତ୍ତନ ଘଟିନାହିଁ । କଲେ ପାନ ଚାକିଥିବେ କିନ୍ତୁ କଥା ଏକଦମ ସ୍ପଷ୍ଟ, କଥା ଠକ୍ ଠାକ୍ । ଏପଟ ସେପଟ ନାହିଁ ।

ଆନନ୍ଦ ପାଣି କେବେଠାରୁ ରକ୍ତଚାପ ରୋଗରେ ପୀଡ଼ିତ, ଡାକ୍ତରଖାନା କେବେ ଗଲେ ଏବଂ ତାଙ୍କର ପରଲୋକ କେବେ ହୋଇଗଲା କିଛି ଜାଣି ନାହିଁ, କେହି ଖବର ବି ଦେଇ ନାହାନ୍ତି । ଦେହ ଏତେ ଅସୁସ୍ଥ ଯେ ବାହାରକୁ ବାହାରି ପାରିନାହିଁ । ଖବର କିଏ କାହିଁକି ଦେବ ? ଶୁଣିଲା ବେଳକୁ ତାଙ୍କର ମରଦେହ ପୋଡ଼ି ପାଉଁଶ ହୋଇଗଲାଣି ଖାନ୍‌ନଗର ଶ୍ମଶାନରେ ।

ପାରିବାରିକ ଅଶାନ୍ତି କାହାର ନାହିଁ ? ତାଙ୍କର ବି ଥିଲା । କିନ୍ତୁ ଘଟଣାବଳୀକୁ ସେ ବୋଧହୁଏ ଦିହକୁ, ମନକୁ ନେଇଥିଲେ । ଦିହ ସହିଯାଇଥିଲା, କିନ୍ତୁ ମନ ସହିପାରି ନଥିଲା ବୋଧହୁଏ । ତା' ତାଙ୍କୁ ଘୁଣ କରି ଖାଇଗଲା । ନଚେତ୍ ଇମିତି ହୃଷ୍ଟପୁଷ୍ଟ, ନିୟମିତ ଲୋକଙ୍କର ରକ୍ତଚାପ ହେଲା କାହିଁକି ? ସମାଜରେ ପରିବର୍ତ୍ତନ ବାତ୍ୟା ବୋହୁଛି । ସେ ପରିବର୍ତ୍ତନ ସହିତ ସେ ତାଳ ଦେଇ ରହିପାରିଲେ ନାହିଁ । ଡାଇନୋସର୍‌ସ ତିଷ୍ଠିପାରି ନାହିଁ, ଆଉ ଆନନ୍ଦ ପାଣି ? ଦେଖା ହୋଇଛି । ମୁହଁରେ ସେଇ ଧାରେ ହସ ଉକୁଟି ଲିଭି ଯାଇଛି । ଖୁସିରେ ବିହ୍ୱଳିତ ନୁହନ୍ତି, ଦୁଃଖରେ ଭାଙ୍ଗିପଡ଼ି ନାହାନ୍ତି ।

ପ୍ରତିବର୍ଷ ତାଙ୍କୁ ମୁଁ ଗୋଟିଏ ଭଲ ଡାଇରୀ ଦେଇ ଆସିଛି ଗଲା ବହୁବର୍ଷ ଧରି । ସେ ଖୁସି ହୋଇଛନ୍ତି ଏବଂ ପଚାରିଛନ୍ତି ''ଟେବୁଲର ଅନ୍ୟମାନଙ୍କ ପାଇଁ ?'' ଏଭଳି ପଚାରିବା ମୁଁ ଖୁବ୍ କମ୍ ଲୋକଙ୍କ ଠାରୁ ଶୁଣିଛି । ଆତ୍ମ-କେନ୍ଦ୍ରିକତା ତାଙ୍କୁ ଛୁଇଁ ନାହିଁ । ମୋର ଦରକାର କିନ୍ତୁ ଅନ୍ୟମାନଙ୍କର ମଧ୍ୟ ସେଇପରି ଦରକାର । ସହକର୍ମୀ, ସହଯୋଦ୍ଧା ପାଇଁ କି ଦରଦ !

ବହୁ ଦିନର ପରିଚିତି, ବହୁଦିନର ଆତ୍ମୀୟତା । କୁନିକୁନି କଥା ଆଜି ହାବୁକାମାରେ, ତାଙ୍କ କଥା ହେଜିଲେ । ମନକୁ ରୁନ୍ଧିଦିଏ, ଆଖିକୁ ବି ରୁନ୍ଧିଦିଏ । ସେ ଆଉ ଫେରିବେ ନାହିଁ । ୧୯୯୯ ମସିହା ଡାଇରୀ ଆସିଲାବେଳେ ମନେପଡ଼ିବେ ସେ । ପ୍ରତିବର୍ଷ ନୂଆବର୍ଷରେ ମୁଁ ତାଙ୍କୁ ହେଜିବି ଞ୍ଚୀଇଁଥିବା ପର୍ଯ୍ୟନ୍ତ । ମୋ ଭଳି ଅନେକ, ଅନେକ ବଂଧୁ ତାଙ୍କୁ ହେଜିବେ ।



# ବିଦଳିତ ମଣିଷର କବି

''ମଣିଷର କଥା କୁହ । ସ୍ୱପ୍ନର ବିଳାସର ସମୟ ଏହା ନୁହେଁ । ଏହା ହେଉଛି ସଂଗ୍ରାମର ସମୟ । ସଂଗ୍ରାମ ଜୀବନ ପାଇଁ, ସଂଗ୍ରାମ ଶାନ୍ତି ପାଇଁ'' ଉଦାତ୍ତ କଣ୍ଠରେ ଏହା କହି ବକ୍ତା କ୍ଳାନ୍ତ ହୋଇପଡ଼ିଲା ପରି ମନେହେଲା । ସହଯୋଦ୍ଧାମାନେ ତାଙ୍କୁ ବସିଯିବା ପାଇଁ କହିଲେ । କିନ୍ତୁ ସେ ନାରାଜ । ''ମୁଁ ଶାରୀରିକ ଦୃଷ୍ଟିରୁ କ୍ଳାନ୍ତ, କିନ୍ତୁ ମାନସିକ ଦୃଷ୍ଟିରୁ ନୁହେଁ । ବିଦଳିତ ମଣିଷ ପାଇଁ, ପୃଥିବୀର ମଣିଷ ପାଇଁ ଆହୁରି ଅନେକ କରିବାର ଅଛି, ଲେଖିବାର ଅଛି । ମୁଁ ଯେଉଁ ସ୍ୱପ୍ନ ଦେଖିଆସିଛି ସେଇ ସ୍ୱପ୍ନକୁ ସଫଳ କରିବା ପାଇଁ ସାରାଜୀବନ କାମ କରିଯିବି, ଲେଖିଯିବି । ମୋ କବିତା ହେଉଛି ଏକ ଆୟୁଧ, ସାମାଜିକ ଆୟୁଧ'' କବିଙ୍କର କପାଳରେ ସ୍ୱେଦ ଝରିବା ସ୍ପଷ୍ଟ । କିନ୍ତୁ କାହାରି ସାହସ ନାହିଁ ତାଙ୍କୁ ବଂଦକରିବା ପାଇଁ । ମନେ ହେଉଛି ଯେପରି ଏକ ଆଗ୍ନେୟଗିରିର ଲାଭା ଉଦ୍‌ଗୀରଣ ହେବାକୁ ଲାଗିଛି ।

''ସିଂହର ମୁଣ୍ଡ ଥିବା ଗ୍ରୀକ ଉପକଥାର ଦାନ୍‌ବ ପରି
ସେ ଥିଲା,
ମଣିଷ ସେଥିପାଇଁ ସଂଗ୍ରାମ କରିଛି
ଏବଂ ଜୟ କରିଛି
ଅତ୍ୟାଚାର ଏବଂ ଅଂଧାରକୁ,
ତଥାପି କ୍ରନ୍ଦସୀ ରହିଛି ସବୁଜ
ଆଶାର ଝଲକରେ ଉଦ୍‌ଭାସିତ,
ହୃଦୟ ତଥାପି ସ୍ପନ୍ଦିତ,
ଯନ୍ତ୍ରଣା ଓ ଦୁଃଖର ଗୁଂଫା ଭିତରୁ

ତଥାପି ବି ଅଂଶୁମାଳୀ ଉଦିତ ।
ସ୍ନେହ, ପ୍ରେମର ଦିଗ୍‌ବଳୟରୁ
ତଥାପି ବି ଉଇଁଆସେ ଚନ୍ଦ୍ରମା ।
ଏବଂ ଓଷ୍ଠର ସ୍ପର୍ଶରେ ତଥାପି ବି
ଫୁଟିଉଠେ ପୁଷ୍ପ ।''

କବି କ୍ଲାନ୍ତହୋଇ ପଡ଼ିଲେଣି । ସେ ବର୍ତ୍ତମାନ ବସିଲେ ଚୌକୀରେ ବଂଧୁମାନଙ୍କ ଅନୁରୋଧରେ । ଘନ ଘନ କରତାଳିରେ କଂପି ଉଠୁଥିଲା ସଭାମଂଚ ।

ଏଇଥିଲେ ଉର୍ଦ୍ଦୁ କବିତାର ମୁକୁଟବିହୀନ ସମ୍ରାଟ ଅଲ୍ଲି ସର୍ଦ୍ଦାର ଜାଫ୍ରି । ୧୯୧୩ ମସିହାରେ ଉତ୍ତରପ୍ରଦେଶର ବଳରାମପୁରରେ ତାଙ୍କର ଜନ୍ମ । ଆଲିଗଡ଼ ବିଶ୍ୱବିଦ୍ୟାଳୟରେ ପାଠ ପଢୁଥିବା ସମୟରେ ସମାଜବାଦୀ ଚିନ୍ତାଧାରା ପ୍ରତି ସେ ଆକୃଷ୍ଟ ହୁଅନ୍ତି ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦିଅନ୍ତି । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରବାଦପୁରୁଷ ପି.ସି. ଯୋଶୀ ତାଙ୍କର ଦୀକ୍ଷାଗୁରୁ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାର ଅପରାଧରେ ସେ ବହିଷ୍କୃତ ହୁଅନ୍ତି । ପରେ ସେ କିଛି ସମୟ ପାଇଁ ଦିଲ୍ଲୀ ଏବଂ ଲକ୍ଷ୍ନୌରେ ପାଠ ପଢ଼ନ୍ତି କିନ୍ତୁ ଇତିହାସ ପ୍ରସିଦ୍ଧ ଜାଲିଓ୍ୱାନାଓ୍ୱାଲାବାଗ ଘଟଣା ତାଙ୍କର ପାଠପଢ଼ାରେ ଡୋର ଟାଣିଦିଏ । ଇତିହାସର କ୍ରୁର ପରିହାସରେ ସେଇ ଆଲିଗଡ଼ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନଜନକ ଡି.ଲିଟ୍. ଉପାଧି ପ୍ରଦାନ କରେ, ପରବର୍ତ୍ତୀ କାଳରେ ।

ଏବଂ ସେତେବେଳେ ମଧ ଅଲ୍ଲି ସର୍ଦ୍ଦାର ଜାଫ୍ରି ସାମ୍ପ୍ରଦାୟିକତାବାଦ ଏବଂ ଅର୍ଥନୈତିକ ବୈଷମ୍ୟ ବିରୁଦ୍ଧରେ ତାଙ୍କର ସେ ଦିନର ସ୍ମୃତିକୁ ଉଖାରନ୍ତି ।

ସ୍ୱାଧୀନତା ଆନ୍ଦୋଳନ ତଥା ଶ୍ରମିକ-ଚାଷୀ-ଛାତ୍ରର ସଂଗ୍ରାମ ତାଙ୍କୁ ଟାଣିନିଏ ରାଜପଥକୁ ତଥା କାରାଗାରକୁ ବାରମ୍ବାର । ସେ ଲେଖନ୍ତି କବିତା ସେଇମାନଙ୍କ ପାଇଁ । ମୋ କବିତା ନିରୁତା ନୁହେଁ, ନୁହେଁ ବନ୍ଧ୍ୟା, ଏହା ହେଉଛି ଏକ ହତିଆର ସାମ୍ପ୍ରଦାୟିକତାବାଦ ବିରୁଦ୍ଧରେ ମୌଳବାଦ ବିରୁଦ୍ଧରେ, ତଥା ସାମାଜିକ ନ୍ୟାୟ ପାଇଁ, ଅର୍ଥନୈତିକ ସାମ୍ୟ ପାଇଁ ।

ସେ ବମ୍ବେ ଚାଲିଯାଆନ୍ତି । ପ୍ରଗତିଶୀଳ ସାହିତ୍ୟିକ ଆସୋସିଏସନ ଗଠନ କରନ୍ତି । ହିନ୍ଦୀ ସାହିତ୍ୟର କଥା ସମ୍ରାଟ ମୁନସୀ ପ୍ରେମଚାନ୍ଦ ହୁଅନ୍ତି ତା'ର ସଭାପତି । ସାମ୍ରାଜ୍ୟବାଦ ବିରୋଧୀ ତଥା ଫାସିବାଦ ବିରୋଧୀ ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି । କଲମ ପାକଳ ହୁଏ, କବିତା ଶାଣିତ ହୁଏ, ପ୍ରତିଷ୍ଠା ବଢ଼େ ।

ଏଇ ଲେଖକମାନେ ଅଂଶଗ୍ରହଣ କରନ୍ତି ବମ୍ବେର ପ୍ରସିଦ୍ଧ ନୌବାହିନୀ ଧର୍ମଘଟ, ଆଇ.ଏନ୍.ଏ. ବନ୍ଦୀମାନଙ୍କର ମୁକ୍ତି ପାଇଁ ଆନ୍ଦୋଳନରେ । ଦିଲ୍ଲୀ, ବମ୍ବେ, କଲିକତାର ରାଜପଥ ମନ୍ଦ୍ରିତ ହୁଏ ସେମାନଙ୍କର କବିତା ବା ସଂଗୀତରେ ।

ଖୁନ୍ କି ଲକିର (୧୯୪୯) କାରାଗାର ଭିତରେ ଲିଖିତ ପଥର କି ଦିୱାର, ଏସିଆ ଜାଗ ଉଠା (୧୯୫୧) ପ୍ରଭୃତି କବିତା ପାଇଁ ତାଙ୍କର ପ୍ରସିଦ୍ଧି ବଢ଼େ । ଜାତୀୟ ତଥା ଆନ୍ତର୍ଜାତିକ କ୍ଷେତ୍ରରେ ତାଙ୍କର ନାମ ବିଚ୍ଛୁରିତ ହୁଏ ।

ତାଙ୍କର କବିତା ପାଇଁ ସେ ଯେପରି ସମ୍ମାନ ଲାଭ କରିଛନ୍ତି, ଠିକ୍ ସେଇପରି ବିରୋଧ ମଧ ଲାଭ କରିଛନ୍ତି । ଭାରତରେ ସେ ଯେପରି ଜନପ୍ରିୟ, ପାକିସ୍ଥାନର ଜନସାଧାରଙ୍କ ଭିତରେ ସେଇପରି ଜନପ୍ରିୟ । ବିଶ୍ୱଶାନ୍ତି ମୈତ୍ରୀ ଆନ୍ଦୋଳନର ବିଭିନ୍ନ ଆନ୍ତର୍ଜାତିକ ସମାବେଶରେ ତାଙ୍କର ସଂଗୀତ ଗାନ କରାଯାଇଛି, ପୃଥିବୀରେ ସର୍ବତ୍ର ।

ସାମ୍ପ୍ରଦାୟିକତାବାଦର ସେ ଯେପରି ତୀବ୍ର ବିରୋଧୀ, ଭାରତ ବିଭାଜନର ମଧ ସେ ସେଇପରି ବିରୋଧୀ । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଆମେ ସମସ୍ତେ ଭାରତୀୟ– ଏଇ ଜାତୀୟତାବାଦର ସେ ଥିଲେ ପ୍ରତୀକ ।

ଆପଣାର ପ୍ରଗତିଶୀଳ-ବଂଧୁ ଏବଂ ସହଯୋଦ୍ଧା ଆବାସଙ୍କ ସହିତ ସେ କିଛିଦିନ ପାଇଁ ଚଳଚିତ୍ର ଜଗତ ସହିତ ମଧ ସଂପୃକ୍ତ ଥିଲେ । ''ଗ୍ୟାରହ ହଜାର ଲଡ଼କିଆଁ'' ଚଳଚିତ୍ରର ସେ ଥିଲେ ପ୍ରଯୋଜକ । କିଛି ଚଳଚିତ୍ରର ସ୍କ୍ରିପ୍ଟ (Script) ଲେଖିଥିଲେ ସେ । ଗୀତ ମଧ ଲେଖିଥିଲେ କିଛି ଚଳଚିତ୍ର ପାଇଁ ।

ଦୀର୍ଘ କର୍ମମୟ ଜୀବନରେ ସେ ସଂଗ୍ରାମ କରିଛନ୍ତି ଯେମିତି, ଲେଖିଛନ୍ତି ବି ସେମିତି ।

କମ୍ୟୁନିଷ୍ଟ ପାର୍ଟିର ବିଭାଜନ ତାଙ୍କୁ ବ୍ୟଥିତ କରିଥିଲା । ବୟସ ବି ହୋଇଥିଲା, ତେଣୁ ସେ ସକ୍ରିୟ ରାଜନୀତି କାର୍ଯ୍ୟରୁ କ୍ରମଶଃ ଅପସରି ଯାଇଥିଲେ । କିନ୍ତୁ ସବୁ ସାମ୍ପ୍ରଦାୟିକତାବାଦ ବିରୋଧୀ, ତଥା ଶାନ୍ତି ମୈତ୍ରୀ ସମ୍ମିଳନୀରେ ସେ ଯୋଗ ଦେଉଥିଲେ ଏବଂ ଆପଣାର କବିତା ପାଠ କରୁଥିଲେ ।

ତାଙ୍କର 'ଶରଦ' ଶୀର୍ଷକ କବିତା ସଂକଳନକୁ ପ୍ରଧାନମନ୍ତ୍ରୀ ଅଟଳବିହାରୀ ବାଜପାୟୀ ଲାହୋର ଗସ୍ତ ସମୟରେ ନେଇ ପାକିସ୍ତାନର ପ୍ରଧାନମନ୍ତ୍ରୀ ନୱାଜ ସରିଫଙ୍କୁ ଉପହାର ଦେଇଥିଲେ । ଏହା ହିଁ ସୂଚନା ବହନ କରେ ତାଙ୍କ କବିତାର କାଳଜୟୀ ସ୍ୱରୂପ ଏବଂ ମୈତ୍ରୀର ନୂତନ ବାର୍ତ୍ତା ।

ଜ୍ଞାନପୀଠ ପୁରସ୍କାର ମିଳିଲା ତାଙ୍କୁ ୧୯୯୭ ମସିହାରେ । ସେତେବେଳକୁ ସମୟ ଅତିକ୍ରାନ୍ତ ହୋଇ ସାରିଥିଲା । କବି ଅସୁସ୍ଥ ହୋଇ ସାରିଥିଲେ । ଚଳନ୍ତି ସମୟରେ ଉର୍ଦ୍ଦୁ ସାହିତ୍ୟରେ ଏଭଳି ଗୌରବ ଅନ୍ୟ କାହାକୁ ମିଳିନାହିଁ ।

ପରିଶେଷରେ ସେଇଦିନ ଆସିଗଲା, ବୟସ ୮୬ ବର୍ଷ ହୋଇଛି, ମସ୍ତିଷ୍କ ରୋଗରେ ବି ଆକ୍ରାନ୍ତ ।

''ତୁମ ହାତରେ ରକ୍ତ ଲାଗିଛି,
ତଥାପି ତୁମେ ଭଲପାଇବାର କଥା
କହୁଛ,
ଅଜବ କଥା, ମହାଶୟ,
ଅନ୍ତତଃ ଛୁରିଟାକୁ ତ ଲୁଚାଅ ।''

ଅଗଷ୍ଟ ୧, ୨୦୦୦ ମସିହା । ସାମ୍ୟବାଦୀ, ବିପ୍ଲବୀ, କବି ଅଲ୍ଲୀ ସର୍ଦ୍ଦାର ଜାଫ୍ରି ଆଉ ନାହାନ୍ତି । ସେ ଆମ ପାଇଁ ହୋଇଯାଇଛନ୍ତି ଇତିହାସ । ଭାରତ-ପାକିସ୍ତାନ ମଧ୍ୟରେ ଥିବା ମହାନ ସେତୁ ଆଉ ନାହାନ୍ତି ।



# ଅଜାତଶତ୍ରୁ ରାଜନୀତିଜ୍ଞଙ୍କର ବିଦାୟ

ଗଲା କାଲି ଫେବୃଆରୀ ୧୯, ୨୦୦୧ ମସିହା ସକାଳର ସଂବାଦ ଶତ୍ରୁ ମିତ୍ର ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଦେଲା । ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା, ପାର୍ଲ୍ୟାମେଣ୍ଟରେ କମ୍ୟୁନିଷ୍ଟ ଦଳର ନେତା, ଭାରତୀୟ କମ୍ୟୁନିଷ୍ଟ ଦଳର ପୂର୍ବତନ ସଂପାଦକ ଇନ୍ଦ୍ରଜିତ ଗୁପ୍ତ ଆଉ ନାହାନ୍ତି । ୮୨ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଗଲା କଲିକତାରେ । କାନରେ କ୍ୟାନସର ରୋଗରେ ଆକ୍ରାନ୍ତ ହୋଇଥିବାରୁ ତାଙ୍କୁ ଏ.ଆଇ.ଏମ୍.ଏସ୍.ରେ ଭର୍ତ୍ତି କରାଯାଇଥିଲା । ବହୁବର୍ଷ ତଳେ ତାଙ୍କ କାନମୁଣ୍ଡାରେ ଏକ ଫୁଲା ଦେଖାଯାଇଥିଲା । କିନ୍ତୁ ତାହା କ୍ୟାନସର ବୋଲି କେହି ଅନୁମାନ ବି କରିପାରି ନଥିଲେ । ଜାଣିଲାବେଳକୁ ସମୟ ଅତିକ୍ରାନ୍ତ ହୋଇ ସାରିଥିଲା । ମୃତ୍ୟୁ ଆସନ୍ନ ଜାଣି ତାଙ୍କର ଇଚ୍ଛାମତେ ତାଙ୍କୁ କଲିକତା ଅଣାଯାଇଥିଲା ନିଜ ଘରକୁ । ସେଇଠି ସେ ଆଖି ବୁଜିଦେଲେ ଚିରଦିନ ପାଇଁ ।

ଇନ୍ଦ୍ରଜିତ ଏକ ବିଶିଷ୍ଟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଭାଇମାନଙ୍କ ମଧ୍ୟରେ ଅନେକ ଥିଲେ ଆଇ.ସି.ଏସ୍. । ବାପା ମା'ଙ୍କର କନିଷ୍ଠ ପୁତ୍ର ଦାର୍ଜିଲିଂ, ଦିଲ୍ଲୀର ସେଣ୍ଟ ଷ୍ଟିଫେନ୍ସ ଓ ପରେ ଇଂଲଣ୍ଡରେ ଶିକ୍ଷାଲାଭ କରିଥିଲେ । ଇଂଲଣ୍ଡରେ ରଜନୀ ପାମି ଦତ୍ତଙ୍କ ସମ୍ପର୍କରେ ଆସିଥିଲେ ଏବଂ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ଫାସିବାଦ ବିରୋଧୀ ସଂଗ୍ରାମର ଢେଉ ଉଠୁଥିଲା ଇଂଲଣ୍ଡ ଓ ଇଉରୋପରେ । ଇନ୍ଦ୍ରଜିତ ସେଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ବାପା ମା' ପଠାଇଥିଲେ ପୁଅକୁ ଆଇ.ସି.ଏସ୍. କିମ୍ବା ବାରିଷ୍ଟର ହେବା ପାଇଁ । ପୁଅ ଫେରିଥିଲା ଭାରତକୁ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ ହେବାପାଇଁ । ଇନ୍ଦ୍ରଜିତ ବଂଗଳା, ହିନ୍ଦୀ, ଇଂରାଜୀରେ ଅନର୍ଗଳ ବକ୍ତୃତା ଦେଇପାରୁଥିଲେ । ସେଇଯୋଗୁଁ ସେ କମ୍ୟୁନିଷ୍ଟ ପାର୍ଟିରେ ପମ୍ପୁବାଲା ନାମରେ ଖ୍ୟାତ । ଧର୍ମଘଟ ଭାଙ୍ଗି ଯାଉଥିଲେ, ଆନ୍ଦୋଳନକୁ ତେଜୀୟାନ କରିବା ପାଇଁ ଦରକାର ପଡୁଥିଲେ, ଇନ୍ଦ୍ରଜିତ୍‌ଙ୍କୁ ଡାକରା ପଡୁଥିଲା । ଆପଣାର ଅଗ୍ନିବର୍ଷୀ ଭାଷଣରେ ସେ ଶ୍ରୋତାମାନଙ୍କୁ ପ୍ରଭାବିତ କରିପାରୁଥିଲେ । ଚଟକଳ ଶ୍ରମିକ, ଲୁଗାକଳ ଶ୍ରମିକମାନଙ୍କ ମଧ୍ୟରେ ସେ କାମ ଆରମ୍ଭ କରିଥିଲେ । ଶ୍ରମିକ ବସ୍ତିରେ ଜୀବନ କଟିବାକୁ ଲାଗିଥିଲା । ବିବାହ କରିବାକୁ ସମୟ

ପାଇ ନଥିଲେ । ମୋତେ ଯେ ବିବାହ କରିବାକୁ ପଡ଼ିବ, ଏକଥା ମୋର ମନେନଥିଲା ଅନେକ ଦିନ ପର୍ଯ୍ୟନ୍ତ– ସ୍ମୃତିଚାରଣ କରି ଇନ୍ଦ୍ରଜିତ କହିଥିଲେ ପରିଣତ ବୟସରେ । ପରିଣତ ବୟସରେ ତାଙ୍କର ଜଣେ ସହକର୍ମୀଙ୍କୁ ବିବାହ କରିଥିଲେ । ପୁଅଟିଏ ଏକମାତ୍ର ସନ୍ତାନ ।

୧୯୧୯ ମସିହାରେ ଜନ୍ମଲାଭ କରିଥିଲେ ଇନ୍ଦ୍ରଜିତ ଗୁପ୍ତ । ୨୦୦୧ ମସିହା ଫେବୃଆରୀ ୨୦ ତାରିଖରେ ତାଙ୍କର ଜୀବନାବସାନ ହେଲା । ତାଙ୍କର ପିତା ସତୀଶ ଚନ୍ଦ୍ର ଗୁପ୍ତ ତତ୍‌କାଳୀନ ରାଜ୍ୟ ପରିଷଦର ସେକ୍ରେଟେରୀ ଥିଲେ । ଏଗାର ଥର ଲୋକସଭାକୁ ନିର୍ବାଚିତ ହୋଇଥିବା ଇନ୍ଦ୍ରଜିତ ଗୁପ୍ତଙ୍କୁ ପାର୍ଲ୍ୟାମେଣ୍ଟର ପିତା ଭାବରେ ନାମିତ କରାଯାଇଛି କାରଣ ସବୁଠାରୁ ଦୀର୍ଘ ସମୟ ଧରି ସେ ଲୋକସଭାର ସଦସ୍ୟ ଥିଲେ । ୧୯୬୦ ମସିହାରେ ସେ ପ୍ରଥମେ ଲୋକସଭାକୁ ନିର୍ବାଚିତ ହୁଅନ୍ତି ଏବଂ ସେଇ ଦିନଠାରୁ ସେ କ୍ରମାଗତ ଭାବରେ ୧୧ ଥର ନିର୍ବାଚିତ ହୋଇ ଆସିଛନ୍ତି । କେବଳ ୧୯୬୭ ମସିହା ନିର୍ବାଚନରେ ସେ ଲୋକଦଳ ପ୍ରାର୍ଥୀ ଶ୍ରୀ ଅଶୋକ କୃଷ୍ଣ ଦତ୍ତଙ୍କ ଠାରୁ ପରାଜୟ ବରଣ କରିଥିଲେ କିଛି ବର୍ଷପାଇଁ । ୧୯୯୨ ମସିହାରେ ସେ ଶ୍ରେଷ୍ଠ ପାର୍ଲ୍ୟାମେଣ୍ଟାରିଆନ୍ ଭାବରେ ସମ୍ମାନଜନକ ଗୋବିନ୍ଦ ବଲ୍ଲଭ ପନ୍ଥ ପୁରସ୍କାର ପାଇଥିଲେ । ଉଭୟେ ଦେବ ଗୌଡ଼ ଏବଂ ଇନ୍ଦର କୁମାର ଗୁଜରାଲଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ସେ ଭାରତର ସ୍ୱରାଷ୍ଟ୍ର ମନ୍ତ୍ରୀ ହୋଇଥିଲେ ଏବଂ ବୋଧହୁଏ ସେ ଏକମାତ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଯାହାଙ୍କର କୌଣସି ସିକ୍ୟୁରିଟି ଗାର୍ଡ଼ ନଥିଲା ।

ପ୍ରତ୍ୟେକ ବିଷୟବସ୍ତୁ ଉପରେ ପ୍ରସ୍ତୁତ ହୋଇଯାଆନ୍ତି ଭାଷଣ ଦେବାପାଇଁ ଏବଂ ସେଇଯୋଗୁଁ ତାଙ୍କର ଭାଷଣ ଉଭୟ ସରକାରୀ ଓ ବେସରକାରୀ ସଭ୍ୟମାନେ ମନୋଯୋଗ ଦେଇ ଶୁଣନ୍ତି । ବାଂଲାଦେଶ ମୁକ୍ତି ଆନ୍ଦୋଳନ ଉପରେ ତାଙ୍କର ଭାଷଣ ଏତେ ଉଚ୍ଚକୋଟୀର ହୋଇଥିଲା ଯେ ତାହା ତତ୍‌କାଳୀନ ସଭ୍ୟମାନେ ଏ ପର୍ଯ୍ୟନ୍ତ ସ୍ମରଣ କରନ୍ତି ।

ପାର୍ଲ୍ୟାମେଣ୍ଟରେ ଇନ୍ଦ୍ରଜିତ ଗୁପ୍ତ ବହୁଦିନ ସଭ୍ୟ ରହିଥିଲେ । ଏହାର କ୍ରମାଗତ ପରିବର୍ତ୍ତନର ସେ ଥିଲେ ସାକ୍ଷୀ । ଆଗ ପାର୍ଲ୍ୟାମେଣ୍ଟରେ ବହୁତ ବିଶିଷ୍ଟ ଆଇନଜୀବୀ ସଭ୍ୟ ଥିଲେ । ଉଭୟ ସରକାରୀ ଓ ବିରୋଧୀ ଦଳର ସଭ୍ୟମାନେ ଥିଲେ ସଂଯତ । ପାର୍ଲ୍ୟାମେଣ୍ଟର ସମ୍ମାନ ରକ୍ଷାକରିବା ପାଇଁ ସେମାନେ ସର୍ବଦା ଜାଗ୍ରତ ଥିଲେ । ସରକାର ଓ ବିରୋଧୀଦଳ ପରସ୍ପରର ସମ୍ମାନ ରକ୍ଷା କରୁଥିଲେ । ସମୟ ବଦଳିଗଲା । ବର୍ତ୍ତମାନ ପାର୍ଲ୍ୟାମେଣ୍ଟ ହେଉଛି କେବଳ ସମୟ ନଷ୍ଟକରିବା ପାଇଁ । ମୋର ତ ଜୀବନରେ ବିଶେଷ କିଛି ଆଶା ଆକାଙ୍କ୍ଷା ନଥିଲା । ତେଣୁ ଆଉ ବିଶେଷ ଆଗ୍ରହ ନାହିଁ ଏଇ ସଭ୍ୟ ପଦବୀ ପାଇଁ । ଇନ୍ଦ୍ରଜିତ ଗୁପ୍ତ ଖୋଲା ମନରେ ଆପଣାର ପ୍ରତିକ୍ରିୟା ପ୍ରକାଶ କରନ୍ତି ।

ମାର୍ଚ୍ଚ ୧୮, ୧୯୧୯ ମସିହାରେ ଇନ୍ଦ୍ରଜିତଙ୍କର ଜନ୍ମ କଲିକତାରେ । ବାପା ଭାଇମାନଙ୍କ ପରି ସେ ଆଇ.ସି.ଏସ୍. ନହୋଇ ହେଲେ କମ୍ୟୁନିଷ୍ଟ । ଓଡ଼ିଆର ପ୍ରଖ୍ୟାତ ନାରୀନେତ୍ରୀ ମାଳତୀ ଦେବୀ (ଚୌଧୁରୀ)ଙ୍କର ସେ ଥିଲେ ମାଉସୀପୁଅ ଭାଇ ।

ଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା । ତେଣୁ ଶୀଘ୍ର ପାଠପଢ଼ା ଶେଷକରି ସେ ଫେରିଲେ ଭାରତବର୍ଷ ଏବଂ ଟ୍ରେଡ଼ ୟୁନିଅନ ଆନ୍ଦୋଳନରେ ଯୋଗଦେଲେ ।

୧୯୫୦, ୧୯୫୩ ଏବଂ ୧୯୫୯ ମସିହାରେ ସେ କାରାରୁଦ୍ଧ ହୁଅନ୍ତି । ୧୯୪୮ ରୁ ୧୯୫୦ ପର୍ଯ୍ୟନ୍ତ ସେ ଥିଲେ ଅଜ୍ଞାତବାସରେ । ତାଙ୍କୁ ଗିରଫ କରିବାପାଇଁ ୱାରେଣ୍ଟ ଜାରି ହୋଇଥିଲା । ୧୯୬୦ ମସିହାରେ ଏକ ଉପନିର୍ବାଚନରେ ତାଙ୍କୁ କମ୍ୟୁନିଷ୍ଟ ପାର୍ଟି ପ୍ରାର୍ଥୀ କରିଥିଲା ଏବଂ ସେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । କିନ୍ତୁ ସେ ଥିଲେ ''ଏକ ଅନିଚ୍ଛୁକ ପ୍ରାର୍ଥୀ କିନ୍ତୁ ପାର୍ଟିର ଏକ ପ୍ରାର୍ଥୀ ଦରକାର ପଡୁଥିଲା ।''

ପୁରାତନକୁ ପରିହାର କରି ନୂତନ ଦୃଷ୍ଟିଭଂଗୀ ଗ୍ରହଣ କରିବାରେ ଇନ୍ଦ୍ରଜିତ ଥିଲେ ଧୂରୀଣ । ଅନେକ ସମୟରେ ସେ ସେଇଯୋଗୁଁ ଅନେକ ଅପ୍ରୀତିକର କଥା କହୁଥିଲେ ଯାହା ତାଙ୍କର ପାର୍ଟି ନେତୃତ୍ୱ ବା ଅନ୍ୟ ବାମପନ୍ଥୀ ନେତାମାନେ ସହଜରେ ଗ୍ରହଣ କରୁ ନଥିଲେ । କିନ୍ତୁ ଶୋଷଣ ବିରୁଦ୍ଧରେ ଖୋଲାଖୋଲି ଯୁଦ୍ଧ ଘୋଷଣା କରିବା ପାଇଁ ଇନ୍ଦ୍ରଜିତ କଦାପି କୁଣ୍ଠିତ ନଥିଲେ ।

ସ୍ୱରାଷ୍ଟ୍ରମନ୍ତ୍ରୀ ଭାବରେ ତାଙ୍କର ଅଭିଜ୍ଞତା କଥା ପଚାରିଲେ ସେ କହନ୍ତି ଯେ, ବଦଳି ପ୍ରମୋଶନରେ ସମୟ ନଷ୍ଟ ହେଉଥିଲା ଯଦିଓ ଭୋଟ ସଂସ୍କାର, ରାଜନୀତିରେ କ୍ରିମିନାଲମାନଙ୍କର ପ୍ରବେଶ, ପାର୍ଲ୍ୟାମେଣ୍ଟରେ ଗୁଣ୍ଡାମାନଙ୍କର ଅନୁପ୍ରବେଶ ପ୍ରଭୃତି ବହୁ ଜରୋରୀ କାମ ଥିଲା । କିନ୍ତୁ ସେଥିପାଇଁ ସମୟ, ସୁଯୋଗ ମିଳୁ ନଥିଲା ।

ରାଜନୈତିକ ଦଳମାନେ କ୍ରିମିନାଲମାନଙ୍କୁ ପ୍ରାର୍ଥୀ କରିବେ ନାହିଁ, ସବୁ ପାର୍ଟିର ନେତାମାନେ ଆପଣାର ବାର୍ଷିକ ଆୟ ଜଣାଇବା ଉଚିତ ବୋଲି ସେ ବାରମ୍ବାର ମତଦେଇ ଆସୁଥିଲେ । ଘରୋଇ ମନ୍ତ୍ରୀ ଭାବରେ ସେ ଶ୍ୱାସରୁଦ୍ଧ ହେଲାପରି ବୋଧ କରୁଥିଲେ ଏବଂ ଏହି ପଦ ତ୍ୟାଗ କରିବା ପାଇଁ ବାରମ୍ବାର ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ, ପାର୍ଟିର ନିର୍ଦ୍ଦେଶ ମାନି ସେ ରହିଥିଲେ ଶୃଙ୍ଖଳିତ ସୈନିକ ଭାବରେ ।

ସର୍ବହରା ଏବଂ ବୁଦ୍ଧିଜୀବୀ ଉଭୟଙ୍କ ସହିତ ମିଳିମିଶି ରହିବାରେ ସେ ଥିଲେ ଧୂରନ୍ଧର । ବୟସ ବଢ଼ିଥିଲା କିନ୍ତୁ ତାଙ୍କର କ୍ଷୁରଧାର ପରି ଚିନ୍ତା ଓ ଅଭିବ୍ୟକ୍ତି ସେଇପରି ଅତୁଟ ଥିଲା ।

ସେ ଆଉ ନାହାନ୍ତି । କିନ୍ତୁ ତାଙ୍କର ତିରୋଧାନରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା ତାହା ବହୁଦିନ ପର୍ଯ୍ୟନ୍ତ ଅପୂରଣୀୟ ହୋଇରହିବ । ବହୁ ସଭ୍ୟ ପାର୍ଲ୍ୟାମେଣ୍ଟରେ ତାଙ୍କର ଅନୁପସ୍ଥିତି ବୋଧ କରିବେ । ଦଳିତ ମଣିଷ ମଧ୍ୟ ଏପରି ଏକ ନେତା ପାଇବା କଠିନ ଯାହାକୁ ଗାଦୀ ବା କ୍ଷମତା ପ୍ରଲୋଭନ ଆଦୌ ଛୁଇଁପାରି ନଥିଲା ।

ଇମିତି ଏକ ମଣିଷ ଥିଲେ ସେ ଯେପରି ଭଦ୍ର ଯେପରି ଅନମନୀୟ ତୀକ୍ଷ୍ଣ ସେଇପରି । କୌଣସି ଫେଭର୍ (Favour) ବା ସୁବିଧା ପାଇଁ କେହି ତାଙ୍କୁ କହିବାକୁ ସାହସ କରିପାରୁ ନଥିଲେ । ବନ୍ଧୁବତ୍ସଳ କିନ୍ତୁ ନୀତିରେ କଠୋର, ନୂତନତ୍ୱ ପାଇଁ ଇଚ୍ଛୁକ କିନ୍ତୁ ଶୃଙ୍ଖଳିତ ସୈନିକ— ଏହିପରି ଏକ ମଣିଷ ଥିଲେ ଇନ୍ଦ୍ରଜିତ ଗୁପ୍ତ ।



# ଭାଜିଗଲା ଟମକକାଙ୍କ କୁଟୀର

ଅନୁବାଦ ଅନେକ ସମୟରେ ସୁଖପାଠ୍ୟ ହୋଇପାରେ ନାହିଁ । କିନ୍ତୁ ଏହାର ବ୍ୟତିକ୍ରମ ରହିଛି । ୰ ମଧୁସୂଦନ ରାଓଙ୍କ 'ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ' ସେଇପରି ଏକ ଅନୁବାଦ । ଯଦିଓ ଏହା ଆକ୍ଷରିକ ଅନୁବାଦ ନୁହେଁ । 'ଟମକକାଙ୍କ କୁଟୀର' ସେଇପରି ଏକ ବହି ଯାହା ଲେଖକ ଉଦୟନାଥ ଷଡ଼ଙ୍ଗୀଙ୍କୁ ଆଣିଦେଇଥିଲା ପ୍ରସିଦ୍ଧି ।

ଉଦୟନାଥ ଷଡ଼ଙ୍ଗୀ ଆଉ ନାହାନ୍ତି । ବହୁକାଳ ଶଯ୍ୟାଶାୟୀ ହେବାପରେ ଗଲାକାଲି ଜାନୁଆରୀ ୭, ୧୯୯୯ ମସିହାରେ ତାଙ୍କର ଜାମାତା ଡାକ୍ତର ଦାଶରଥୀ ଦାଶଙ୍କ ଘରେ ତାଙ୍କର ପରଲୋକ ହୋଇଯାଇଚି । ଗଲା ବେଶ୍ କିଛିଦିନ ହେଲା ସେ ଜୀବନ୍ମୃତ ଅବସ୍ଥାରେ ଥିଲେ । ତାଙ୍କର ପରଲୋକରେ ସାମ୍ବାଦିକତା ଓ ଶିଶୁ ସାହିତ୍ୟ ଉଭୟ ଦରିଦ୍ର ହୋଇଗଲା । ଯଦିଓ ଗଲା ବେଶ୍ କିଛି ବର୍ଷ କାଳ ସେ ଆଉ ଲେଖିବା, ପଢ଼ିବା ଅବସ୍ଥାରେ ନଥିଲେ ।

୧୯୦୫ ମସିହା ଫଗୁଦଶମୀ ଦିନ ଜଗତସିଂହପୁର ସିପି ଗ୍ରାମରେ ଏକ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ ଉଦୟନାଥ । ପାଠ ପଢ଼ିଥିଲେ ପ୍ରଥମେ ଟାଉନ ଭିକ୍ଟୋରିଆ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ସ୍କୁଲରେ ଏବଂ ପରେ ସତ୍ୟବାଦୀ ବନ ବିଦ୍ୟାଳୟରେ ।

ସହପାଠୀ ଓ ସମସାମୟିକମାନଙ୍କ ଭିତରେ ତାଙ୍କର ଅନ୍ତରଂଗ ହେଉଛନ୍ତି ଡକ୍ଟର ସଦାଶିବ ମିଶ୍ର, ଭଗବତୀ ଚରଣ ପାଣିଗ୍ରାହୀ, ଦୀନବନ୍ଧୁ ସାହୁ, ମାୟାଧର ମାନସିଂହ, ରତ୍ନାକର ଷଡ଼ଙ୍ଗୀ, ଶ୍ୟାମସୁନ୍ଦର ମିଶ୍ର, ଜଗତବନ୍ଧୁ ମହାପାତ୍ର ପ୍ରଭୃତି । ଜୀବନରେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ଏଇ ଗୋଷ୍ଠୀର ସଭ୍ୟମାନଙ୍କ ଭିତରେ ବଂଧୁତା ଥିଲା ପ୍ରଗାଢ଼, ଯାହା ଜୀବନର ବିଭିନ୍ନ ଜୀବିକା ମଳିନ କରିପାରି ନଥିଲା । ଏଇ ଗୋଷ୍ଠୀର ଶେଷ ସନ୍ତକ ହେଉଛନ୍ତି ଉଦୟନାଥ ଷଡ଼ଙ୍ଗୀ, ଯଦିଓ ବୟସରେ ସେ ସମସ୍ତଙ୍କଠାରୁ ବଡ଼ ।

ସତ୍ୟବାଦୀ ବନ ବିଦ୍ୟାଳୟ ପରେ କିଛିକାଳ ଅଳକାଶ୍ରମରେ ସମୟ କଟିଯାଏ ଏବଂ ୧୯୩୯ ମସିହାରେ ସେ 'ସମାଜ' କାଗଜରେ ଯୋଗଦାନ କରନ୍ତି । ସମଗ୍ର ଜୀବନ ସେଇଠି କଟିଯାଏ । ରାଧାନାଥ ରଥଙ୍କର ଅନୁଗତ ବନ୍ଧୁମାନଙ୍କ ଭିତରେ ଫକୀର ଚରଣ ଦାସ, ଚୈତନ୍ୟ ଚରଣ ଦାସ, ଉଦୟନାଥ ଷଡ଼ଙ୍ଗୀ ପ୍ରଭୃତି ଅନ୍ତର୍ଭୁକ୍ତ । ଏଇମାନେ 'ସମାଜ' କାଗଜ, ସତ୍ୟବାଦୀ ପ୍ରେସ ଏବଂ ଲୋକ ସେବକ ମଣ୍ଡଳୀର ଖୁଣ୍ଟି ଭଳି କାର୍ଯ୍ୟ କରନ୍ତି । ରାଧାନାଥବାବୁ ସମସ୍ତଙ୍କଠାରୁ ବୟସରେ ବଡ଼ । ତେଣୁ ଏଇ ଗୋଷ୍ଠୀ ତାଙ୍କୁ କିଛି କହନ୍ତି ନାହିଁ, କୌଣସି କଥାରେ ଦ୍ୱିରୁକ୍ତି କରନ୍ତି ନାହିଁ, ସବୁ ଅଳି ଅର୍ଦ୍ଦଳୀ, ରାଗ ଅଭିମାନ ସହ୍ୟ କରନ୍ତି କିନ୍ତୁ ରାଧାନାଥ ବାବୁଙ୍କର ଏଇ ଗୋଷ୍ଠୀ ଉପରେ ସବୁ ବିଶ୍ୱାସ ଏବଂ ଭରସା । ଏଭଳି ଏକ ଟିମ୍ ବା ଦଳ ମିଳିବା କଠିନ । 'ସମାଜ'ର ବହୁ ଉତ୍ଥାନ ପତନ ଏମାନେ ଦେଖି ଆସିଛନ୍ତି । 'ସମାଜ' କାଗଜ ସେମାନଙ୍କର ରକ୍ତରେ ପଶି ଯାଇଛି । 'ସମାଜ'ର ସଂପାଦକୀୟ ଡେସ୍କ ଖାଲି ହୋଇଗଲାଣି । ଲେଖାସବୁ ଚାଲି ଗଲାଣି ପ୍ରେସକୁ । କିନ୍ତୁ ବାଙ୍ଗରା ଉଦୟନାଥ ଷଡ଼ଙ୍ଗୀ ବସିଛନ୍ତି 'ଲିଡ୍' କରାଇବା ପାଇଁ । ସମାଜର ଶେଷ ପ୍ରୁଫ ଦେଖି, ପ୍ରକାଶିତ କାଗଜର ପ୍ରଥମ ଖଣ୍ଡ ରାଧାନାଥ ବାବୁଙ୍କୁ ଦେଇ ସେ ବାହାରିବେ ଘରକୁ । ଝିଅ ପାଖକୁ । ସେଇ ଗୋଟିଏ ମାତ୍ର ସନ୍ତାନ, ତାଙ୍କର ଶେଷ ଜୀବନର ଆଶ୍ରୟ । ଦିନଦିନ ମାସମାସ ମୁଁ ଏଇ ଦୃଶ୍ୟ ଦେଖିଆସିଛି । ଉଦୟନାଥ ଷଡ଼ଙ୍ଗୀ ପ୍ରବାଦ ପୁରୁଷରେ ପରିଣତ ହୋଇଛନ୍ତି । ହାତ ତିଆରି କମ୍ପୋଜରୁ ଅଫସେଟ ପ୍ରିଣ୍ଟିଂ ପର୍ଯ୍ୟନ୍ତ ସେ ସବୁ ସ୍ତର ଦେଇ ଉତ୍ତୀର୍ଣ୍ଣ ହୋଇ ଯାଇଛନ୍ତି । ଛପା ଜଗତର ଉଦୟନାଥ ଯେପରି ଠିକ୍ ସେଇପରି ଚଳଚିତ୍ର ଜଗତର ଅଶୋକ କୁମାର ବା ଇଂରାଜୀ ଚଳଚିତ୍ର ଜଗତର ଚାର୍ଲି ଚାପଲିନ୍ । କମ୍ପୋଜିଙ୍ଗ, ପ୍ରିଣ୍ଟିଂ ସବୁଥିରେ ବହୁ ପରିବର୍ତ୍ତନ ହୋଇ ଯାଇଛି । ଭାଷାକୋଷ ଲେନ୍‌ରୁ ଗୋପବନ୍ଧୁ ଭବନ ବହୁତ ବାଟ 'ସମାଜ' ଅତିକ୍ରମି ଆସିଛି । ଉଦୟନାଥବାବୁ କିନ୍ତୁ ରହିଯାଇଛନ୍ତି ସେଇପରି । ଚଟିଟି ତଳ ପାହାଚରେ ରଖି ସେ ଉଠନ୍ତି ଦୁଇ ମହଲାକୁ, ରାଧାନାଥ ବାବୁଙ୍କୁ ଭେଟିବାକୁ । ସେଥିରେ ଟିକିଏ ବ୍ୟତିକ୍ରମ ହୋଇ ନାହିଁ । ଉଦୟନାଥ ବାବୁଙ୍କ କାମ କରିବାର ଢଙ୍ଗ, ନିଷ୍ଠାପରତାକୁ ନେଇ ଅନେକ ଗଳ୍ପ ସୃଷ୍ଟି ହୋଇଛି । ସେ ଶୁଣନ୍ତି, ଟିକିଏ ହସି ଦିଅନ୍ତି । ପୁଣି ତଳକୁ ମୁହଁ କରି ଲେଖି ଚାଲନ୍ତି ।

ଦିନ ତମାମ 'ସମାଜ'ରେ କଟେ । ଘରକୁ ଫେରି ସେ ଲେଖନ୍ତି, ସାହିତ୍ୟ ବିଶେଷତଃ ଶିଶୁ ସାହିତ୍ୟ, କରନ୍ତି ଅନୁବାଦ । ପୁସ୍ତକ ଯେପରି ପ୍ରକାଶିତ ହୋଇ ଚାଲିଛି ଠିକ୍ ସେଇପରି ସ୍ୱୀକୃତି ମିଳି ଚାଲିଛି । ସାରଳା ସାହିତ୍ୟ ପୁରସ୍କାର, ସାମ୍ବାଦିକ ଗୌରବ ପୁରସ୍କାର, ଶ୍ରେଷ୍ଠ ନାଗରିକ ପୁରସ୍କାର, ବିଷୁବ ପୁରସ୍କାର, ସ୍ୱାଗତିକା ପୁରସ୍କାର, ସଂସାର ପୁରସ୍କାର, ଇମିତି ଅନେକ ।

ଉଦୟନାଥବାବୁ ରହିଯାଇଛନ୍ତି, ନମ୍ର, ଧୀର, ଶାନ୍ତ । ଗର୍ବର ଚିହ୍ନ ନାହିଁ, ଅହମିକା ଛୁଇଁ ନାହିଁ, ସମୟ ଅତିକ୍ରାନ୍ତ ହୋଇଚାଲିଛି ।

୧୯୮୩ ମସିହା, 'ସମାଜ'ରୁ ଅବସର ନେବାର ସମୟ ଆସିଛି । 'ସମାଜ' ତାଙ୍କର ଧମନୀରେ ପ୍ରବାହିତ ହୋଇଯାଇଛି ବହୁବର୍ଷ ଧରି । ୧୯୩୯ରୁ ୧୯୮୩ ମସିହା । ସଂପାଦକମାନେ ଆସିଛନ୍ତି, ଯାଇଛନ୍ତି । ରାଧାନାଥ୍ ବାବୁ, ବିଶ୍ୱନାଥ ବାବୁ, ଲିଙ୍ଗରାଜ ବାବୁ ସ୍ୱାଧୀନତା ସଂଗ୍ରାମରେ ଜେଲ ଯାଇଛନ୍ତି । ବିବୁଧେନ୍ଦୁ ମିଶ୍ର, ଶ୍ରୀହର୍ଷ ମିଶ୍ର, ବିନୋଦ କାନୁନ୍‌ଗୋ, ନରସିଂହ ତ୍ରିପାଠୀ, ଅନନ୍ତ ପଟ୍ଟନାୟକ ପ୍ରଭୃତି ସହ ସଂପାଦକ ଆସିଛନ୍ତି, ଯାଇଛନ୍ତି । 'ସମାଜ' କାଗଜକୁ ବଂଚାଇ ରଖିବାକୁ ହେବ । ସେ ଦାୟିତ୍ୱ ଯେଉଁମାନଙ୍କ ଉପରେ ପଡ଼ିଥିଲା, ସେମାନଙ୍କ ମଧ୍ୟରେ ଉଦୟନାଥବାବୁ ଅନ୍ୟତମ । କେହି ତାଙ୍କର ଶତ୍ରୁ ନାହାନ୍ତି, ସମସ୍ତେ ମିତ୍ର ।

ବୋଧହୁଏ 'ସମାଜ' କାଗଜ ଛାଡ଼ିବା ପାଇଁ ତାଙ୍କର ଇଚ୍ଛା ନଥିଲା । କାରଣ ସମଗ୍ର ଜୀବନ ଏଥିରେ କଟାଇବା ପରେ ସେ ଯିବେ କୁଆଡ଼େ ? ଝିଅଟି ତା'ର ସଂସାର ପାତି ସାରିଛି । ସମୟ କଟିବ କିମିତି ? ଏଇଠି ଏକ ଦୁଃଖାବହ ଅଧ୍ୟାୟ ଆରମ୍ଭ ହେଲା ଲୌହ ପର୍ଦ୍ଦାର ଅନ୍ତରାଳରେ । 'ସମାଜ' କାଗଜ ସହିତ ଅନେକ ଦୋଷତ୍ରୁଟି ଭଲମନ୍ଦ କଥା ସେ ବେଶ୍ ଜାଣିଛନ୍ତି, ଯାହା ଅନ୍ୟମାନଙ୍କର ଜାଣିବାର କୌଣସି ଉପାୟ ନାହିଁ । ଏଇ କାହାଣୀ ଲେଖିବାଟା ବାଧିଲା ଅନେକଙ୍କୁ । ଆପୋଷ ସମାଧାନ ହୋଇଗଲା କିଛି ଦିନପରେ, ମଧ୍ୟସ୍ଥିମାନଙ୍କ ଜରିଆରେ ।

ଉଦୟନାଥବାବୁ ଫେରିଗଲେ ଆପଣାର 'ନୀଡ଼'କୁ । କିନ୍ତୁ ବୟସ ତ ଅତିକ୍ରାନ୍ତ ହୋଇ ସାରିଥିଲା । ସେ ଅସୁସ୍ଥ, ଅଚଳ ହୋଇଗଲେ ଧୀରେ ଧୀରେ ଏବଂ ପରିଶେଷରେ ସେଇ ସମୟ ଆସିଗଲା । ତାଙ୍କର ଯିବାର ସମୟ ଉପସ୍ଥିତ ।

ସେ ପାଲଟିଗଲେ ଇତିହାସ, କିମ୍ବଦନ୍ତୀ ସହ ।



# ମଣିଷ ଭଳି ମଣିଷଟିଏ

ଚୌଧୁରୀ ଉପେନ୍ଦ୍ରନାଥ ମିଶ୍ର ଆଉ ନାହାନ୍ତି । ଅଶୀ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି ଭୁବନେଶ୍ୱରରେ । ପିତା ମହାଦେବ ଚୌଧୁରୀ ଓ ମାଆ ସେବତୀ ଦେବୀଙ୍କ ଔରସରୁ ଜନ୍ମଲାଭ କରିଥିଲେ ଉପେନ୍ଦ୍ରନାଥ ମିଶ୍ର, କଟକ ଜିଲ୍ଲା (ଅବିଭକ୍ତ) ପଙ୍କପାଳ ଗ୍ରାମରେ । ବର୍ତ୍ତମାନ ତାହା ଜଗତସିଂହପୁର ଜିଲ୍ଲାରେ । ସମ୍ଭ୍ରାନ୍ତ ଚୌଧୁରୀ ପରିବାରରେ ଜନ୍ମ ଉପେନ୍ଦ୍ରନାଥ ସ୍କୁଲ ଶିକ୍ଷା ସମାପ୍ତି ପରେ ପାଠ ପଢ଼ିଲେ ରେଭେନ୍ସା କଲେଜରେ । ବି.ଏ. ପାସ କଲାପରେ ଆଉ ଉଚ୍ଚଶିକ୍ଷା ସମ୍ଭବ ହୋଇପାରିଲା ନାହିଁ । ତେଣୁ ସେ ରାଜ୍ୟ ସରକାରଙ୍କ ସଚିବାଳୟରେ ଯୋଗଦେଲେ ଏବଂ ସେଇ ସେକ୍ରେଟେରିଏଟରେ ହିଁ ତାଙ୍କର ସମଗ୍ର କର୍ମଜୀବନ କଟିଗଲା ।

ରାଜ୍ୟ ସରକାରଙ୍କ ଅର୍ଥର ଆୟବ୍ୟୟରେ ସେ କାଳକ୍ରମେ ଏକ ବିଶେଷଜ୍ଞ ପାଲଟିଗଲେ । ବଜେଟ ତିଆରି କରିବାର ଦୁରୂହ କାମକୁ ସେ ଆପଣେଇ ନେଲେ । ଏବଂ ସେଇ ଅର୍ଥ ବିଭାଗରେ ତାଙ୍କର ଜୀବନର ବହୁଭାଗ କଟିଗଲା । ମଝିରେ କିଛି ସମୟ ପାଇଁ ସେ କୃଷି ବିଭାଗରେ କାମ କରୁଥିଲେ । ତଥାପି ତାଙ୍କୁ ଡାକରା ଆସୁଥିଲା ଅର୍ଥ ବିଭାଗରୁ ସାହାଯ୍ୟ କରିବା ପାଇଁ । ସେଇଟା ଥିଲା ତାଙ୍କର ପେଷା ଏବଂ ସ୍ପେଶିଆଲାଇଜେଶନ୍ ।

କିନ୍ତୁ ନିଶା ଥିଲା ସମବାୟ । ତାଙ୍କର ବିଶ୍ୱାସ ଥିଲା ସମବାୟ ହିଁ ପ୍ରଗତିର ମୂଳମନ୍ତ୍ର । ତେଣୁ ସେ ସମବାୟ ସମିତି କେବଳ ଗଠନକଲେ ନାହିଁ, ତାଙ୍କରି ଉଦ୍ୟମରେ ଓଡ଼ିଶା ସମବାୟ ସମିତି ଗଠନ ହେଲା । ସମବାୟ ମନୋଭାବ କିଭଳି ଜୀବନର ବିଭିନ୍ନ ବିଭାବକୁ ସମ୍ପ୍ରସାରିତ ହେବ ତାହା ଥିଲା ତାଙ୍କର ଲକ୍ଷ୍ୟ । ଓଡ଼ିଶାର ବହୁ ସମବାୟ ସମିତି ତାଙ୍କର ଆଲେଖ୍ୟ ବହନ କରିଛି । ଚାକିରିରୁ ଅବସର ନେଲେ ସତ୍ୟ କିନ୍ତୁ ସମବାୟ ସମିତି ରହିଗଲା ତାଙ୍କର ନିଶା ହୋଇ ଶେଷ ପର୍ଯ୍ୟନ୍ତ ।

ଅମାୟିକ ମଣିଷଟିଏ । ଧୀର, ଶାନ୍ତ ଏବଂ ଶିଷ୍ଟ । କ୍ଷମତା, ପଦବୀ ମୁଣ୍ଡକୁ ତୁଳି ନାହିଁ । ସମସ୍ତଙ୍କ ପାଇଁ ସହଯୋଗର ହାତ ସମ୍ପ୍ରସାରିତ । ବହୁ ବ୍ୟକ୍ତିଙ୍କ ସହ ପରିଚିତି, କିନ୍ତୁ ପାଖରେ ହାତପାତି ନାହାନ୍ତି ବା ନିଜର ପଦବୀର ଅପବ୍ୟବହାର କରି ନାହାନ୍ତି ।

ପଢ଼ିବା ଏବଂ ଧର୍ମ ସଂପର୍କରେ ଆଲୋଚନା କରିବା ଥିଲା ତାଙ୍କର କର୍ମସୂଚୀର ଅନ୍ତର୍ଭୁକ୍ତ । ପଢ଼ିବାକୁ ଭଲ ପାଉଥିଲେ, ପଢ଼ିବା ପାଇଁ ଉତ୍ସାହିତ କରିବାକୁ ମଧ୍ୟ ଭଲ ପାଉଥିଲେ ।

ଜନ୍ମ ହୋଇଥିଲା ୧.୯,୧୯୧୯ରେ ଏବଂ ମୃତ୍ୟୁ ହେଲା ଠିକ୍ ସେଇ ମାସରେ ୩୦.୯.୧୯୯୯ ମସିହାରେ । ଚାରିପୁଅ, ତିନିଝିଅଙ୍କୁ ନେଇ ତାଙ୍କର ପରିବାର, କିନ୍ତୁ ପ୍ରକୃତରେ ତାଙ୍କର ପରିବାର ଥିଲା ଆହୁରି ବିଶାଳ । ଏହା ଥିଲା ବେଶ୍ ସମ୍ପ୍ରସାରିତ । ସେ ସମସ୍ତଙ୍କର ଆଖିରୁ ଲୁହ ଝରୁଛି ।

ଉପେନ୍ଦ୍ର ବାବୁ ଆଉ ନାହାନ୍ତି । ସେ ପାଲଟିଯାଇଛନ୍ତି ଇତିହାସ ।



# କ୍ରିକେଟ ଖେଳର ସଙ୍ଗୀତଜ୍ଞ ଯାଦୁକର

ପ୍ରଖ୍ୟାତ କ୍ରିକେଟ ଖେଳାଳୀ ଏମ୍.ଏଲ୍.ଜୟସୀମା ଆଉ ନାହାନ୍ତି । ୧୯୯୯ ମସିହା ଜୁନ୍ ୬ ତାରିଖରେ ହାଇଦ୍ରାବାଦରେ କ୍ୟାନ୍‌ସର ରୋଗରେ ତାଙ୍କର ପରଲୋକ ହୋଇଯାଇଛି ।

ବାଦଶାହୀ ଠାଣିର ଜୟସୀମା ଥିଲେ ସଙ୍ଗୀତପ୍ରେମୀ । ରାଜନୈତିକ ସଚେତନତା ଥିଲା ବେଶ୍ ଏବଂ କ୍ରିକେଟ ଛଡ଼ା ଟେନିସ ଏବଂ ବ୍ୟାଡ଼ମିଣ୍ଟନ ଖେଳିବା ଥିଲା ତାଙ୍କର ସଉକ । ସକାଳେ ଟେନିସ୍, ଉପରବେଳା କ୍ରିକେଟ ଏବଂ ରାତିରେ ବ୍ୟାଡ଼ମିଣ୍ଟନ ଖେଳିବାରେ ଥିଲା ତାଙ୍କର ପ୍ରବଳ ଆଗ୍ରହ । କିନ୍ତୁ ସତେ ଯେପରି କ୍ରିକେଟ ଖେଳିବା ପାଇଁ ସେ ଜନ୍ମ ହୋଇଥିଲେ । ବୋଲର୍ ଭାବରେ ତାଙ୍କର କ୍ରୀଡ଼ା ଜୀବନ ଆରମ୍ଭ କରନ୍ତି । ବାଉନ୍‌ସର ପକାଇବାରେ ଆଗ୍ରହ ଥିଲା ବେଶି । ପରବର୍ତ୍ତୀ କାଳରେ ସେ ସ୍ପିନ ବୋଲିଂରେ ଦକ୍ଷତା ଅର୍ଜନ କରିଥିଲେ । ଗୁଣ୍ଡାପ୍ପା ବିଶ୍ୱନାଥଙ୍କୁ ଆଉଟ୍ କରିବା ଥିଲା ତାଙ୍କର ପ୍ରବଳ ଆକାଂକ୍ଷା ।

ଜୟସୀମା ଥିଲେ ଦେଖିବା ପାଇଁ ସୁନ୍ଦର । ବାଳକୁ ଭଲ ଭାବରେ କୁଣ୍ଡାଇ ସଂଜତ କରି ରଖିବାରେ ସେ ବେଶ୍ ସଚେତନ ଥିଲେ । ବାହାରକୁ ବାହାରିଲେ ସେ ବେଶ୍ ଭଲଭାବରେ ବେଶବାସ ହୋଇ ବାହାରନ୍ତି । ତେଣୁ କୌଣସି ସ୍ଥାନକୁ ଯିବାର ଥିଲେ ଜୟସୀମାଙ୍କ ପାଇଁ ପ୍ରସ୍ତୁତି ସମୟ ଅଧଘଣ୍ଟାଏ ବଢ଼ାଇ ଦିଆଯାଏ । ଏହା ପରିବାର ପ୍ରତି ଯେପରି ପ୍ରଯୁଜ୍ୟ, କ୍ରିକେଟ ଟିମ୍ ପାଇଁ ବି ସେଇପରି ।

ସେ ଥିଲେ ନାରୀମାନଙ୍କ ପାଇଁ ପ୍ରବଳ ଆକର୍ଷଣ ବିନ୍ଦୁ । ଅନେକ ତାଙ୍କୁ ସେଥିପାଇଁ ଇର୍ଷା ବି କରନ୍ତି । ସେମାନଙ୍କ ସହିତ କଥାବାର୍ତ୍ତାରେ ମଜ୍ଜିଯିବା, ସେମାନଙ୍କୁ କାହାଣୀ କହି ଆକୃଷ୍ଟ କରିବାରେ ସେ ଥିଲେ ଓସ୍ତାଦ୍ । କିନ୍ତୁ ଶାଳୀନତାର ସୀମା ସେ ଟପି ନାହାନ୍ତି । ଆପଣାର ପିଲାଦିନର ବାନ୍ଧବୀ ଜୟନ୍ତୀକୁ ସେ ବିବାହ କରିଥିଲେ ଏବଂ ତାଙ୍କ ପ୍ରତି ଥିଲେ

ଏକାନ୍ତ ଅନୁରକ୍ତ । କ୍ରିକେଟ ଖେଳ ବା ଅନ୍ୟ ଯେ କୌଣସି କାମରେ ବାହାରକୁ ଗଲେ ଦିନେ/ଦୁଇଦିନରେ ଜୟନ୍ତୀଙ୍କ ସହିତ କଥାବାର୍ତ୍ତା ହେବା, ହାନିଲାଭ ବୁଝିବା ତାଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟର ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ବଂଧୁ ଓ ନାରୀମାନଙ୍କ ଗହଣରେ ତାଙ୍କର ସମୟ କଟିଯାଏ ଗଳ୍ପ କରିବାରେ, ଥଟ୍ଟା ପରିହାସ କରିବାରେ ଏବଂ ସେଇ ସମୟକୁ ଉପଭୋଗ କରିବାରେ ।

ଜୟସୀମା ଭଲ ଗୀତ ଗାଇପାରୁଥିଲେ । ବିଶେଷତଃ ଇଂରାଜୀ ଗୀତ ଥିଲା ତାଙ୍କର ଏକାନ୍ତ ପ୍ରିୟ । ତାଙ୍କ କଣ୍ଠ ଥିଲା ମଧୁର ଏବଂ ଷ୍ଟେଣ୍ଟୋରିଆନ (stentorian) । ମୃତ୍ୟୁ ବେଳକୁ ତାଙ୍କୁ ବୟସ ହୋଇଥିଲା ପ୍ରାୟ ସତୁରୀ । ମୃତ୍ୟୁ ଶଯ୍ୟା, କ୍ୟାନସର ରୋଗର ଯନ୍ତ୍ରଣା ସତ୍ତ୍ୱେ ସେ କ୍ରିକେଟ, ସଂଗୀତ ଏବଂ ହାସ୍ୟରସିକତାକୁ ଭୁଲି ନଥିଲେ । ସେଇଟା ଥିଲା ତାଙ୍କର ବିଶେଷତ୍ୱ ।

ମୃତ୍ୟୁ ଆସିବ । ତାର ନିଶ୍ଚିତ ପଦଧ୍ୱନି ଶୁଭୁଛି । କିନ୍ତୁ ସେଥିପାଇଁ କାହିଁକି ସେ ଆପଣାର ଜୀବନର ସରସତାକୁ ହରାଇ ବସିବେ ? କ'ଣ ଲାଭ ମିଳିବ ସେଥିରୁ ।

କ୍ରିକେଟ ଜଗତରେ ତାଙ୍କର ସବୁଠାରୁ ନିବିଡ଼ ବଂଧୁ ଥିଲେ ଆବାସ୍ ଅଲ୍ଲି ବେଗ୍ ଏବଂ ବିଶେନ ସିଂ ବେଦୀ । କିନ୍ତୁ ତାଙ୍କୁ ପଟୌଡିଙ୍କ ଲୋକ ବୋଲି ଆଖ୍ୟା ଦିଆଯାଇଥିଲା । ପଟୌଡି କ୍ୟାପଟେନ ହୋଇ ନଥିଲେ ଜୟସୀମା କ୍ୟାପଟେନ ହୋଇଥାନ୍ତେ । ପଟୌଡିଙ୍କ ଯୋଗୁଁ ସେ କ୍ୟାପଟେନ ହୋଇ ନପାରିବା ସତ୍ତ୍ୱେ ସେ ପଟୌଡିଙ୍କ ନେତୃତ୍ୱରେ ଖେଳିବା ପାଇଁ କୁଣ୍ଠିତ ହୋଇ ନଥିଲେ ।

ମୃତ୍ୟୁର କିଛିଦିନ ପୂର୍ବରୁ ମାତ୍ର ସେ ଆପଣାର ନାତିମାନଙ୍କ ସହିତ କ୍ରିକେଟ ଖେଳିଥିଲେ ଏବଂ ବିସେନ ସିଂ ବେଦୀ କହନ୍ତି ଯେ ରୋଗ ଶଯ୍ୟାରେ ବି 'ସିଙ୍ଗଲ୍ସ' ଖେଳୁଥିଲେ । ଏକ ବିଶ୍ଳେଷଣାତ୍ମକ ଚରିତ୍ରର ଜୟସୀମା ଖେଳ, ସଙ୍ଗୀତ, ରାଜନୀତି ସବୁ କଥାରୁ ବିଚାର କରୁଥିଲେ ଏବଂ ମୂଳ କଥାରେ ପହଞ୍ଚିବା ଥିଲା ତାଙ୍କର ଲକ୍ଷ୍ୟ ।

କ୍ରିକେଟ ଖେଳରେ ଯେପରି ସେ ଥିଲେ 'ଅଲରାଉଣ୍ଡର' ଜୀବନର ସବୁ କ୍ଷେତ୍ରରେ ମଧ୍ୟ ସେ ଥିଲେ ଅଲରାଉଣ୍ଡର । ବେକରେ ଏକ ସ୍କାର୍ଫ (Scarf) ପିନ୍ଧିବାକୁ ସେ ଏକ ସନ୍ତକ ଏବଂ ଷ୍ଟାଇଲରେ ପରିଣତ କରିଥିଲେ ଏବଂ କୁହାଯାଏ ତାଙ୍କର ଏଇ ଡ୍ରେସ ଏବଂ ତାଙ୍କର ଗଳ୍ପ ନାରୀମାନଙ୍କୁ ବେଶୀ ଆକର୍ଷିତ କରୁଥିଲା ।

ଭାତ, ରୋଟି, ଦହି, ଡାଲି ତାଙ୍କର ପ୍ରିୟ ଖାଦ୍ୟ । ସୁରାପାନକୁ ସେ ଉପଭୋଗ କରୁଥିଲେ କିନ୍ତୁ ନିଶା ତାଙ୍କୁ କଦାପି ଆସକ୍ତ କରିପାରି ନାହିଁ । ମଦ୍ୟପାନ କରି ସେ କଦାପି ଅସଂଯତ ବା ବିଶୃଙ୍ଖଳ ହୋଇ ନାହାନ୍ତି ।

କ୍ରିକେଟ ଖେଳ ବେଳେ ବା ପୂର୍ବରୁ ସେ ବିରୋଧୀ ଟିମ୍ ସହିତ ଗପ୍ପଗୁଳିକୁ ପ୍ରଶ୍ରୟ ଦେଉ ନଥିଲେ କିନ୍ତୁ ଖେଳ ସରିବାପରେ ସେ ବିରୋଧୀ ଦଳକୁ ଡାକି ସେମାନଙ୍କ ସାଂଗରେ ଗପ୍ପ ଜମାଉଥିଲେ ଏବଂ ଖେଳ ବିଷୟରେ ଆଲୋଚନା କରୁଥିଲେ ।

ସବୁ କଥାରେ ସଂଯମତା, କୌଣସି କଥାରେ ସୀମା ନ ଟପିବା ତାଙ୍କର ଗୁଣ ତାଙ୍କୁ ବାରି ନେଉଥିଲା ଅନ୍ୟମାନଙ୍କ ଠାରୁ । ସେଇଯୋଗୁଁ କ'ଣ ସେ ସାଫଲ୍ୟର ତୁଙ୍ଗ ଶିଖରକୁ ଯାଇପାରି ନଥିଲେ, ନା କ'ଣ? ଅନ୍ୟମାନଙ୍କ ଭିତରେ ଏଇ ପ୍ରଶ୍ନ ଉଠିଛି ବାରମ୍ବାର ।

ତାଙ୍କ ସାଂଗରେ ମୋର ସାକ୍ଷାତ ହୁଏ ଆକସ୍ମିକ ଭାବରେ ହାଇଦ୍ରାବାଦରେ, ଏକ ସମ୍ମିଳନୀରେ । ପରବର୍ତ୍ତୀ କାଳରେ ତାଙ୍କ ସାଂଗରେ ଦେଖାହୋଇଛି କିନ୍ତୁ ସମୟର ଦୀର୍ଘତା, ସ୍ଥାନର ଦୀର୍ଘତା ବିସ୍ମରଣକୁ ସାହାଯ୍ୟ କରିନାହିଁ ।



# ବ୍ୟୁରୋକ୍ରାଟମାନଙ୍କ ମଧ୍ୟରେ ବ୍ୟୁରୋକ୍ରାଟ

ଗଲା ସପ୍ତାହରେ ଏଲ୍.ପି. ସିଂହଙ୍କର ତାଙ୍କର ନୂଆଦିଲ୍ଲୀ ବାସଭବନରେ ପରିଣତ ବୟସରେ ପରଲୋକ ହୋଇଯାଇଛି । ସେ ଥିଲେ ଏକ ପ୍ରଥିତଯଶା ବ୍ୟୁରୋକ୍ରାଟ । କିନ୍ତୁ ଅବସର ନେବା ପରେ ବି ସବୁଜ ଚାରଣ ଭୂମି ଖୋଜି ନଥିବା ବ୍ୟୁରୋକ୍ରାଟମାନେ କ୍ରମଶଃ ଜନସ୍ମୃତିରୁ ହଜି ଯାଆନ୍ତି ଏବଂ ସେମାନଙ୍କର କାର୍ଯ୍ୟ ବା ଜୀବନର କେହି ଖୋଜ ନିଅନ୍ତି ନାହିଁ ।

ସେଇଯୋଗୁଁ ଏଲ.ପି. ସିଂହଙ୍କର ପରଲୋକ ସଂବାଦ ଖବରକାଗଜର ପୃଷ୍ଠାରେ ପ୍ରକାଶ ପାଇ ନାହିଁ । ପରିତାପର କଥା ଯେ ଓଡ଼ିଶାର କୌଣସି ସଂବାଦପତ୍ରରେ ତାଙ୍କର ମୃତ୍ୟୁ ସଂବାଦ ସ୍ଥାନ ପାଇ ନାହିଁ । ଦିଲ୍ଲୀର କିଛି ସମ୍ବାଦପତ୍ରରେ ଏହା ପ୍ରକାଶ ପାଇଛି । ଓଡ଼ିଶା ପାଇଁ ଏଲ୍.ପି. ସିଂହଙ୍କର ଅବଦାନ ବିପୁଳ ।

ସେ କଟକ ଜିଲ୍ଲାର ଜିଲ୍ଲାପାଳ ଥିଲେ । ୧୯୪୨-୪୩ ମସିହାର କଥା । ବଂଗଳାରେ ଦୁର୍ଭିକ୍ଷ ପଡ଼ିଛି । କଟକ ଜିଲ୍ଲାରେ ମଧ୍ୟ ଧାନଚାଉଳର ଘୋର ଅଭାବ । ଏତିକିବେଳେ ଭାରତର ବଡ଼ଲାଟଙ୍କଠାରୁ ଏକ ଚିଠି ନେଇ ଭାରତର ସବୁଠାରୁ ଧନୀ ଦଶଜଣଙ୍କ ମଧ୍ୟରୁ ଜଣେ *ଇସ୍‌ପାହାନି* ପହଞ୍ଚିଲେ ତାଙ୍କ ପାଖରେ । ବଡ଼ଲାଟ ନିର୍ଦ୍ଦେଶ ଦେଇଥିଲେ ଯେ ଇସ୍‌ପାହାନିଙ୍କୁ କଟକ ଜିଲ୍ଲାରୁ ଚାଉଳ ଖରିଦକରି ବଂଗଳାକୁ ପଠାଇବା ସକାଶେ କଲେକ୍ଟର ଅନୁମତି ଦେବାପାଇଁ । କଲେକ୍ଟର ଚିଠିଟି ପଢ଼ିଲେ ଏବଂ କହିଲେ ଯେ ମୁଁ ଆଜି ଖୁବ୍ ବ୍ୟସ୍ତ । କିନ୍ତୁ ମୁଁ ଆପଣଙ୍କୁ ଜଣାଇଦେବାପାଇଁ ଚାହେଁ ଯେ ଓଡ଼ିଶାରେ ମଧ୍ୟ ଦୁର୍ଭିକ୍ଷ ପରିସ୍ଥିତି ଦେଖା ଦେଇଛି । ତେଣୁ ସେ ଏଠାରୁ ଚାଉଳ ଖରିଦ କରି ରପ୍ତାନି କରିବା ସକାଶେ ଅନୁମତି ଦେଇପାରିବେ ନାହିଁ । ଇସ୍‌ପାହାନୀ କେବଳ ସବୁଠାରୁ ଧନୀ

ଦଶଜଣଙ୍କ ମଧ୍ୟରେ ଜଣେ ନଥିଲେ, ସେ ଥିଲେ ମୁସଲିମ୍‌ଲିଗ୍‌ର ଲୋକ । ସେ ବଂଗଳାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ସୁରାବର୍ଦ୍ଦିଙ୍କ ପାଖରୁ ମଧ ଗୋଟିଏ ଚିଠି ନେଇ ଆସିଥିଲେ । ଦୁଇଟିଯାକ ଚିଠି ପ୍ରତି ସେ କଲେକ୍ଟରଙ୍କ ଦୃଷ୍ଟି ଆକର୍ଷଣ କରିବାରୁ ଏଲ୍‌.ପି. ସିଂହ ତାଙ୍କୁ କହିଲେ ଯେ ସେ ଚିଠି ଦୁଇଟି ଦେଖିଛନ୍ତି । କିନ୍ତୁ ତାଙ୍କ ନିଷ୍ପତ୍ତିରେ କୌଣସି ପରିବର୍ତ୍ତନ କରିବାପାଇଁ ଚାହୁଁନାହାନ୍ତି । ଇସ୍‌ପାହାନୀଙ୍କୁ କଥାଟା ବାଧିଲା ବୋଧହୁଏ । ସେ କହିଲେ ଯେ ଆପଣ ତ ବ୍ୟସ୍ତ ଅଛନ୍ତି । ମୁଁ କାଲି ପର୍ଯ୍ୟନ୍ତ ଅପେକ୍ଷା କରିଥାନ୍ତି କିନ୍ତୁ କଟକରେ ଭଲ ହୋଟେଲ ନାହିଁ । ତେଣୁ ସେ ରହିବେ କେଉଁଠି ? ଏଲ୍‌.ପି. ସିଂହ ବୋତାମ ଟିପିଲେ ଏବଂ ପି.ଏ. ଉପସ୍ଥିତ ହେଲାମାତ୍ରେ କହିଲେ ଯେ ଏହାଙ୍କୁ ନେଇ କଟକ ଜେଲରେ ରଖିଦିଅ । ମୁଁ କାଲି ତାଙ୍କ ସାଂଗରେ କଥାବାର୍ତ୍ତା କରିବି ।

ଇସ୍‌ପାହାନୀ ସେଠାରୁ ପଳାଇବାକୁ ବାଟ ପାଇଲେ ନାହିଁ । କଥାଟାର ସମାପ୍ତି ଘଟିଥିଲା ସେଇଠି । ବଡ଼ଲାଟ ବା ପ୍ରବଳ ପରାକ୍ରମୀ ସୁରାବର୍ଦ୍ଧି ମଧ କିଛି କହିଲେ ନାହିଁ ଏଲ୍‌.ପି. ସିଂହଙ୍କୁ ତା'ପରେ ।

ଜୟପ୍ରକାଶ ନାରାୟଣ ଯେତେବେଳେ ଓଡ଼ିଶା ଆସୁଥିଲେ ରହୁଥିଲେ ତାଙ୍କର ବାଲ୍ୟବଂଧୁ ସହପାଠୀ ରେଭେନ୍ସା କଲେଜର ରସାୟନ ବିଭାଗର ଅଧାପକ ବଳଭଦ୍ର ପ୍ରସାଦଙ୍କ ଘରେ । ଥରେ ଜୟପ୍ରକାଶ ବଳଭଦ୍ର ପ୍ରସାଦଙ୍କୁ କହିଲେ ଯେ ସେ ଏଣିକି ଓଡ଼ିଶା ଆସିଲେ ଅନ୍ୟତ୍ର ରହିବେ । କାରଣ ତାଙ୍କର ଏହି ରହଣି ବଳଭଦ୍ର ପ୍ରସାଦଙ୍କ ପ୍ରତି ବିପଦର କାରଣ ହୋଇପାରେ । ବଳଭଦ୍ର ପ୍ରସାଦ ଏଥିରେ ରାଜିହୋଇ ନଥିଲେ । ସେ କହିଥିଲେ ''ଆମେ ଦୁହେଁ ସହପାଠୀ, ଏକା ଗ୍ରାମର ଲୋକ ଏବଂ ବାଲ୍ୟବଂଧୁ । ପୁଣି ତୋ' ସାଂଗରେ ପ୍ରଭା ଆସୁଛି । ତୁ ଅସୁସ୍ଥ । ଏଥିରେ ଅନ୍ୟତ୍ର ରହିବାର ପ୍ରଶ୍ନ ଉଠୁ ନାହିଁ ।'' ଜୟପ୍ରକାଶ ତେଣୁ ଓଡ଼ିଶା ଆସିଲେ ସେଇଠି ରହିବାକୁ ଲାଗିଲେ । ପିଲ୍‌ଗ୍ରୀମ ରୋଡ଼ରେ ସେ ନାଲିକୋଠା ଅଦ୍ୟାପି ଅଛି ।

୧୯୪୨ର ଭାରତଛାଡ଼ ଆନ୍ଦୋଳନର ସମୟ । ଜୟପ୍ରକାଶ କଟକରେ ଆସି ସେଇଠି ରହିଲେ । ଏଥରକ ବୋଧହୁଏ ତାଙ୍କ ରହିବା ସଂବାଦ ଭାରତର ବଡ଼ଲାଟଙ୍କ ପାଖରେ ପହଞ୍ଚିଲା । ଏକ ଓୟାରଲେସ୍ ବାର୍ତ୍ତାରେ ବଡ଼ଲାଟ ଏଲ୍‌.ପି. ସିଂହଙ୍କୁ ଲେଖିଲେ, ''ରେଭେନ୍ସା କଲେଜ ରସାୟନ ବିଭାଗ ଲେକ୍‌ଚରର ବଳଭଦ୍ର ପ୍ରସାଦଙ୍କୁ କୈଫିୟତ୍ ମାଗ ଯେ ସେ କାହିଁକି ଜୟପ୍ରକାଶ ନାରାୟଣଙ୍କୁ ଅତିଥି କରିଛନ୍ତି ।'' ଏଲ୍‌.ପି. ସିଂହ ତ'ର ଉତ୍ତର ସାଂଗେ ସାଂଗେ ପଠାଇଲେ ସେଇ ଓୟାରଲେସ୍‌ରେ । ''ମୋର ଏକ୍‌ସଟ୍ରା ଗେଷ୍ଟ ରୁମ୍ (extra guest room) ନଥିବାରୁ ମୁଁ ଜୟପ୍ରକାଶ ନାରାୟଣଙ୍କୁ ଅତିଥି କରିବା

ପାଇଁ ବଳଭଦ୍ର ପ୍ରସାଦଙ୍କୁ ଅନୁରୋଧ କରିଛି ।'' ଅଧ୍ୟାପକ ସଦାଶିବ ମିଶ୍ରଙ୍କ ଠାରୁ ମୁଁ ଏହା ଶୁଣିଛି । ଏହା ପରବର୍ତ୍ତୀ କାଳରେ ପ୍ରକାଶ ପାଇଛି ଯସବନ୍ତ ସିଂଙ୍କ ଲେଖାରେ ।

ସେତିକିରେ କଥାଟାର ପରିସମାପ୍ତି ଘଟିଥିଲା । ଗଟସ୍ (guts) ବା ସାହସ ଆଗରେ ମୁଣ୍ଡ ନୁଆଁଇଥିଲେ ବଡ଼ଲାଟ ।

୧୯୪୨ ଭାରତଛାଡ଼ ଆନ୍ଦୋଳନର ମହାରଥୀ ରାମନନ୍ଦନ ମିଶ୍ର ପଳାତକ । ତାଙ୍କ ଉପରେ ଗିରଫଦାରୀ ପରବାନା ଜାରି ହୋଇଛି । ସେ ଏଲ୍.ପି. ସିଂହଙ୍କ ବାସଗୃହ (ବର୍ତ୍ତମାନ କ୍ୟାନସର ଇନଷ୍ଟିଚ୍ୟୁଟର ଆଉଟ୍‌ଡୋର)ରେ ଅଛନ୍ତି ବୋଲି ଖବର ମିଳିଲା । କିନ୍ତୁ କଲେକ୍ଟରଙ୍କର ଘର ବିଶେଷତଃ ଏଲ୍.ପି. ସିଂହଙ୍କ ପରି କଲେକ୍ଟରଙ୍କ ଘର ତଲାସ କରିବ କିଏ ? ରାମନନ୍ଦନ ସେଠାରେ ବେଶ୍ କିଛିଦିନ ରହିଲେ ଏବଂ ପରିଶେଷରେ ଦିନେ ତାଙ୍କୁ ପୁଲିସ ଗିରଫ କରିନେଲା ମଂଗଳାବାଗ ପାଖରେ । କିନ୍ତୁ ଏଲ୍.ପି. ସିଂହଙ୍କୁ କେହି କୈଫିୟତ ମାଗି ନାହାନ୍ତି ।

ଖାଦ୍ୟାଭାବ, ଅନ୍ୟାନ୍ୟ ଜରୋରୀ ଜିନିଷପତ୍ରର ଅଭାବ ଦେଖାଦେଇଛି ସହରରେ । ମହଜୁଦ୍‌କାରୀମାନେ ଜିନିଷପତ୍ର ଲୁଚାଇ ଦେଇଛନ୍ତି । ହଠାତ୍ ଦେଖାଗଲା ଯେ ଦଳେ ମହଜୁଦ୍‌କାରୀଙ୍କୁ ହାତକଡ଼ାଦେଇ ଖାଲି ପାଦରେ ନିଆଯାଉଛି ଲାଲବାଗ ଥାନାରୁ କଟକ ଜେଲକୁ । ଏବଂ ସେମାନେ ଖାଲି ବିଶିଷ୍ଟ ବ୍ୟବସାୟୀ ନଥିଲେ, ଥିଲେ ମଧ୍ୟ ବ୍ରିଟିଶ ସରକାରର ସମର୍ଥକ ।

ବିହାରରେ ଆଠବର୍ଷ ଚିଫ୍ ସେକ୍ରେଟେରୀ, ସ୍ୱାଧୀନ ଭାରତବର୍ଷର ପ୍ରଥମ ଘରୋଇ ବିଭାଗ ସେକ୍ରେଟେରୀ, ଉତ୍ତର-ପୂର୍ବ ରାଜ୍ୟଗୋଷ୍ଠୀର ରାଜ୍ୟପାଳ ପ୍ରଭୃତି ପଦବୀରେ ତାଙ୍କର ସରକାରୀ କାର୍ଯ୍ୟକାଳ ୨୩ ବର୍ଷର ଦୀର୍ଘ କାର୍ଯ୍ୟକାଳ । ଲଲନ୍ ପ୍ରସାଦ ସିଂହ ହେଉଛି ତାଙ୍କର ପୂରା ନାମ କିନ୍ତୁ ସେ ଏଲ୍.ପି. ସିଂହ ନାମରେ ହିଁ ଖ୍ୟାତ । ଗ୍ରାମୀଣ ବିହାରରେ ଜନ୍ମ ଲାଲନ୍ ଆଲାହାବାଦ ଏବଂ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ବିଦ୍ୟାଧ୍ୟୟନ କରି ଭାରତୀୟ ସିଭିଲ ସର୍ଭିସରେ ଯୋଗ ଦିଅନ୍ତି । ସେ ମାତ୍ର ୩୫ ବର୍ଷ ବୟସରେ ବିହାରର ଚଫ୍ ସେକ୍ରେଟେରୀ ହୋଇଥିଲେ । ବୋକାରୋ ଠାରୁ ସିନ୍ଦ୍ରି ପ୍ରଭୃତିରେ ତାଙ୍କର ଆଲେଖ୍ୟ ରହିଛି । ଆଜି ଶୁଣିଲେ ହସମାଡ଼ିବ ଯେ 'ଆପ୍‌ଲେବି' ରିପୋର୍ଟ ସେଦିନ ବିହାରକୁ ସବୁଠାରୁ ଦକ୍ଷ ଶାସନ ବୋଲି ଉଲ୍ଲେଖ କରିଥିଲେ । ତାଙ୍କର ଉଦ୍ୟୋଗରେ ବର୍ଡ଼ର ସିକ୍ୟୁରିଟି ଫୋର୍ସ, ଆପ୍ଲାଏଡ୍ ମ୍ୟାନ ପାୱାର (man power) ରିସର୍ଚ୍ଚ ଇନଷ୍ଟିଚ୍ୟୁଟ, ଇଣ୍ଡିଆନ ଆଡ଼ମିନିଷ୍ଟ୍ରେସନ ଇନଷ୍ଟିଚ୍ୟୁଟ ପ୍ରତିଷ୍ଠିତ ହୋଇଛି ।

ଜାତିଗତ, ଧର୍ମଗତ କୁସଂସ୍କାର ତାଙ୍କୁ ସ୍ପର୍ଶ କରି ନଥିଲା । ସେ ରାଜପୁତ କିନ୍ତୁ

ବିବାହ କରିଥିଲେ ତାଙ୍କ କଲେଜ ଜୀବନର ପ୍ରେମିକା ଗୁଜରାଟର ନଗର ବ୍ରାହ୍ମଣ ମନୋରମା ମେହେଟାଙ୍କୁ । ଦୁଇପୁଅ ରିଣ୍ଟି ଓ ବିଜୟ ଭାରତୀୟ ସିଭିଲ ସର୍ଭିସରେ । ଝିଅ ନନ୍ଦିନୀ ବିବାହ କରିଛି ଭୁଟାନରେ ଆମର ରାଷ୍ଟ୍ରଦୂତ ଦିଲ୍ଲୀପ ମେହେଟାଙ୍କୁ । ସବା ସାନ ହେଉଛି ଜଣେ ପିଆନୋ ବାଦକ ।

ଏତେ ବର୍ଷ ଏଭଳି ବଡ଼ ବଡ଼ ପାହ୍ୟାର ଚାକିରିରେ ମଧ୍ୟ ଦିଲ୍ଲୀରେ ଛୋଟିଆ ଘରଟିଏ ମାତ୍ର ସ୍ଥାବର ସଂପତ୍ତି । ଓଡ଼ିଶାର ଲୋକ ବୋଲି ଜାଣିଲେ ଖୁସୀ ହୁଅନ୍ତି । ସଂଧ୍ୟାରେ ଆସର ଜମେ । କିନ୍ତୁ ଆପଣାର ପେନସନ୍ ତାଙ୍କୁ କୁଳାଏ ନାହିଁ । ସ୍କଚ ହୁଇସ୍କି ପରିବର୍ତ୍ତରେ ସୋଲାନ ହୁଇସ୍କି ହିଁ ତାଙ୍କର ପାନୀୟ ।

ଇନ୍ଦିରା ଗାନ୍ଧୀଙ୍କ ହତ୍ୟାପରେ ଦିଲ୍ଲୀରେ ହୋଇଥିବା ସାଂପ୍ରଦାୟିକ ହତ୍ୟାକାଣ୍ଡର ଅନୁସଂଧାନ ପାଇଁ ଜଷ୍ଟିସ ସିକ୍ରି କମିଶନର ସେ ସଭ୍ୟ ଥିଲେ ଏବଂ କୌଣସି ପ୍ରକାର ଚାପ ବା ପ୍ରଭାବକୁ ଖାତିର ନକରି ସେ ଏଇ ଶିଖ ହତ୍ୟାକାଣ୍ଡ ପାଇଁ ଭାରତୀୟ ଜାତୀୟ କଂଗ୍ରେସକୁ ପୂରାପୂରି ଦାୟୀ କରିଥିଲେ ।

ଏଭଳି ଜଣେ ଅନନ୍ୟ ସାଧାରଣ ବ୍ୟୁରୋକ୍ରାଟ ଆମ ଭିତରେ ଆଉ ନାହାନ୍ତି । କେତେଜଣ ଏଇଭଳି ବ୍ୟୁରୋକ୍ରାଟ ଅଛନ୍ତି ଆମ ଦେଶରେ ?

ତାହାହିଁ ତାଙ୍କୁ ଅନନ୍ୟ କରିଦେଇଛି ।



# ଦରଦୀ ହୃଦୟର କମଳାକାନ୍ତ

କ'ଣ ହେଲା ତମର କମଳାକାନ୍ତ ? ଅନେକ କ୍ଷତକୁ ସହିଥିଲ । ଆଜି କ'ଣ ହେଲା, କେଉଁ ତନ୍ତ୍ରୀରେ ଆଘାତ ଲାଗିଲା ତମର, କହିଲ ମୋତେ ? ଆପଣା ଦେହରେ କିରାସିନି ଢାଳି ନିଆଁ ଲଗାଇ ଦେବାର, ଆତ୍ମଘାତୀ ମନୋଭାବ ତ ତମର କବିତାରେ ବିଷାଦତା ତ ମୁଁ ଦେଖିନାହିଁ, ପାଇନାହିଁ ? ଜୀବନର ସେ ଦର୍ଶନ ତମର କବିତାରେ ଦେଖାଯାଇ ନାହିଁ । ''ଜହ୍ନିଫୁଲ ପରି ଦିଶୁଚ ଦୂରରୁ, ଅସରାଏ ବର୍ଷାପରେ ଯେମିତି ଆକାଶରେ ଜହ୍ନ'' କୁଆଁର ପୁନେଇ ପାଖାପାଖି ଜହ୍ନ ଯାହାର ଜୀବନକୁ ଆଲୋକିତ କରିଛି, ସେ କ'ଣ ମରିପାରେ ଏଇ ଅସରାଏ ନିଆଁରେ ?

ତୁମକୁ ମୁଁ ଦେଖିଚି । ଆଳାପ, ପରିଚୟ ବି ହୋଇଛି । କିନ୍ତୁ ଖୁବ୍ ବେଶି ଆତ୍ମୀୟତାର ପରିସର ନଥିଲା । କିନ୍ତୁ ପରିଚୟ ତମର କାବ୍ୟ, କବିତା ସହିତ ବେଶି । ଧଳା ଧୋତି, ପଂଜାବୀ, ଟାଆଁସା ଟାଆଁସା ବାଳ, ମିଟିମିଟି ଆଖି । ତମକୁ ଦେଖିଲେ କବି କବି ଭାବୁକ ଭାବୁକ ପରି ମନେହୁଏ । ଯୁବ ଲେଖକ ସମ୍ମିଳନୀ ମଂଚରେ ତୁମକୁ ଥରେ ଦୁଇଥର ଦେଖିଚି ମୁଁ । କାବ୍ୟିକ, କାବ୍ୟଗତ ପ୍ରାଣ । ସେଇପରି କଥା ।

ଅଧ୍ୟାପନା ଥିଲା ଜୀବିକା । କିନ୍ତୁ ନିଶା ଥିଲା କାବ୍ୟ । ପାଠପଢ଼ାଇବା ପାଇଁ ପ୍ରସ୍ତୁତି, ପାଠପଢ଼ା, ବୟସରେ ସାନ ଅଧ୍ୟାପକମାନଙ୍କୁ ଉପଦେଶ, କନିଷ୍ଠ କବିମାନଙ୍କୁ ତାଲିମ ଭିତରେ ସମୟ ହଜିଯାଏ, ହଜିଯାଏ ସଂଧ୍ୟାତାରା ପରି, ଫୁରୁସତ ମିଳେନା । ତମର ସେଇ କବିତା 'ବଂଚେ ହେଲେ ଫୁରୁସତ ନାଇଁ, ଯେ ଘାସବଣର ଫୁଲରେ ଉଡୁଥିବା / ଡେଣାଭଂଗା ପ୍ରଜାପତିଟିକୁ ପିନ୍ଧାଇଦେବ, ଛାଇଛାଇଆ କାଳିଜହ୍ନର ଅମ୍ଳାନ ବସ୍ତ୍ର' । ମନେପଡ଼ିଲା ଇଂରାଜୀ କବିତା :

"What is the life if full of care,
There is no time to stand & stare"

ଜୀବନକୁ ତମେ ଭଲପାଉଥିଲ, ଭଲପାଉଥିଲ ଯୌବନକୁ, ଭଲପାଉଥିଲ ପ୍ରକୃତିର ଭଳିଭଳିକା ରୂପକୁ... ଆକାଶ, ଚନ୍ଦ୍ର, ପାଣି, ନଈ ପୋଖରୀ ଗଛଘାସ ସବୁ ଭଲଲାଗୁଥିଲା ତୁମକୁ । ସତେ ଯେପରି ପିଇଯିବ କି ଆଉ ? ତମକୁ ଦେଖିଲେ ସେଇପରି ମନେହେଉଥିଲା । ତମେ ଭଲପାଉଥିଲ ସର୍ବୋପରି ମଣିଷକୁ ଯିଏ ଏଇ ସବୁର କେନ୍ଦ୍ରରେ । ନାରୀ ମଥାର ସିନ୍ଦୂରଟୋପା ପରି ।

ତମେ କାହିଁକି ଆପଣାକୁ ଏପରି ଅବକ୍ଷୟ କରି ଚାଲିଲ, କମଳାକାନ୍ତ ? କ'ଣ ଆଘାତ ହେଲା ତମର ହୃଦୟରେ ? ବହୁ ପ୍ରତିଭାଦୀପ୍ତ ମଣିଷ ମାୟାକୋଭସ୍କି, ପୁଷ୍କିନ,ଗୋଗଲ ସେ ଧାଡ଼ିର ସମାପ୍ତି ନାହିଁ । ସୁରା ଅନେକ ପ୍ରତିଭାର ସାଥୀ ଏବଂ ତା' ସହିତ ଅନେକଙ୍କ ପାଇଁ ତାହା ମୃତ୍ୟୁର କାରଣ ହୋଇଛି । ତମର କମଳାକାନ୍ତ କ'ଣ ହେଲା ? ଅଲିଅଳି ଝିଅର ଅକାଳ ମୃତ୍ୟୁ ତୁମକୁ ଆଘାତ ଦେଇଥିଲା ପ୍ରଚୁର । କିନ୍ତୁ ତମେ ଯେ ଏପରି ଭାବରେ ଆପଣାକୁ ଅଗ୍ନିରେ ଦଗ୍ଧକରି ଶେଷ କରିଦେବ ଏକଥା କିଏ ଜାଣିଥିଲା ?

ଚିତ୍ରକଳ୍ପ, ରୂପକଳ୍ପର ତମେ ଥିଲ ଅଦ୍ଭୁତ ବିନ୍ଧାଣୀ । ତମର ଜୀବନ ଆଉ ମୃତ୍ୟୁର ଚିତ୍ରକଳ୍ପ, ରୂପକଳ୍ପ ମୁଁ ଖୋଜୁଛି । କିନ୍ତୁ ପାଉ ନାହିଁ । ତମର ସେଇ ଦାଢ଼ି, ସେଇ ଚେହେରା, ଟାଆଁସା ବାଳ ସବୁ ମନେପଡ଼ି ମନ ରୁନ୍ଧି ହୋଇଯାଉଛି, କନ୍‌ସେନ୍‌ଟ୍ରେସନ କ୍ୟାମ୍ପରେ ବାଷ୍ପରୁଦ୍ଧ ହେଲାପରି ।

ତମେ ଆଉ ନାହଁ,

କିନ୍ତୁ ତମେ ତ ରହିବ ଆମ ସଭିଙ୍କ ମନରେ, କନିଅର ଫୁଲ ଫୁଟିବ, ଆକାଶରେ ଚନ୍ଦ୍ର ଛାଇଦେବ ଶବ ଉପରର ଚଦର ପରି ଧଳା ଆସ୍ତରଣ, ତମେ ମନେ ପଡ଼ିବ । ବଙ୍କା ବଙ୍କା ନଈ ଦେଖାଯିବ ଜୀବନର ଗତିପଥ ପରି, ମୟୂରର କାକଳୀ ଶୁଭିବ ଜୀବନର ତଟରେ, ତମେ ମନେପଡ଼ିବ ।



# ବନ୍ଧୁର ବିୟୋଗରେ

୨

ବଂଧୁ କିଶୋର ଚନ୍ଦ୍ର ପଟ୍ଟନାୟକ ଆଉ ନାହାନ୍ତି । କଲିକତାରେ ତାଙ୍କ ଝିଅ ପାଖରେ ତାଙ୍କର ପରଲୋକ ହୋଇଯାଇଛି । ୧ ୯୩୧ ମସିହା ଜାନୁଆରୀ ୨୩ ତାରିଖରେ ତାଙ୍କର ଜନ୍ମ ହୋଇଥିଲା, ମୃତ୍ୟୁ ହୋଇଗଲା ନଭେମ୍ବର ୨, ୨୦୦୦ ମସିହାରେ । ମୋ ଠାରୁ ମାତ୍ର ୧୭ ଦିନ ବଡ଼ । ସ୍କୁଲରେ ଆମେ ଏକା ସାଂଗରେ ପଢୁଥିଲୁ । ବୋମା ହାତରେ ଫୁଟିଯିବା ଯୋଗୁଁ ମୋର ଗୋଟିଏ ବର୍ଷ ନଷ୍ଟ ହୋଇଗଲା । ସେଇଯୋଗୁଁ କଲେଜରେ ସେ ମୋ ଠାରୁ ଗୋଟିଏ ବର୍ଷ ଉପରକ୍ଲାସରେ ପଢୁଥିଲେ । ପିଲାଦିନର ସେଇ ସଖ୍ୟ ଅତୁଟ ଥିଲା ।

କିଶୋର ବାବୁ ପରବର୍ତ୍ତୀ କାଳରେ ଆଇ.ପି.ଏସ୍. ହେଲେ । ବଡ଼ ଅଫିସର ହେଲେ । ଜଣେ କର୍ମନିଷ୍ଠ ଅଫିସର ଭାବରେ ତାଙ୍କର ଖ୍ୟାତି ଥିଲା । କିନ୍ତୁ ପିଲାଦିନେ ସେ ବାମପନ୍ଥୀ ମନୋଭାବର ଛାତ୍ର ଥିଲେ । ନିଖିଳ ଉତ୍କଳ ଛାତ୍ର ସଂଘର ଜଣେ ସକ୍ରିୟ ସଭ୍ୟ ଥିଲେ ଏବଂ ଛାତ୍ର ସଂଘର ଭିତରେ ଥିବା ବାମପନ୍ଥୀ ଛାତ୍ରମାନଙ୍କର ରାଜନୈତିକ କ୍ଲାସମାନଙ୍କରେ ନିୟମିତ ଯୋଗ ଦେଉଥିଲେ । ଛତ୍ରବଜାର-ମାଲଗୋଦାମ ରାସ୍ତାରେ ଶ୍ରୀ ମନମୋହନ ମିଶ୍ରଙ୍କ ଘରେ ଏବଂ ପ୍ରଫେସରପଡ଼ାରେ ଥିବା ୰ ସଚ୍ଚିଦାନନ୍ଦ ରଥଙ୍କ ଘରେ ଏଇସବୁ କ୍ଲାସ ହେଉଥିଲା । ସଚ୍ଚିବାବୁ ରେଭେନ୍ସା କଲେଜରେ ଅର୍ଥନୀତିର ଲେକ୍‌ଚରର ଥିଲେ । ପରେ ଓ.ଏ.ଏସ୍. ଏବଂ ତା' ପରେ ଆଇ.ଏ.ଏସ୍. ହେଲେ । କିନ୍ତୁ ଅଧ୍ୟାପକ ଥିଲାବେଳେ ତାଙ୍କ ଘରେ ଆମର ରୀତିମତ କ୍ଲାସ ହେଉଥିଲା । କିଶୋର ବାବୁଙ୍କୁ ସେଠାରେ ନିୟମିତ ଦେଖିବାକୁ ମିଳୁଥିଲା । ଏକ ସାମ୍ୟର ଭାରତବର୍ଷ ଗଢ଼ିବାର ଦୁର୍ବାର ସ୍ୱପ୍ନ ତାଙ୍କୁ ବି ଘାରିଥିଲା ।

ମୋର ମନେପଡୁଚି । ସେ ଥାଆନ୍ତି ପୁରୀରେ ଏସ୍.ପି. । ସ୍ୱାଧୀନତା ଦିବସର ଏକ ପ୍ୟାରେଡ଼ରେ ମୁଖ୍ୟ ଅତିଥି ଥିବା ଜଣେ ବିଶିଷ୍ଟ ମନ୍ତ୍ରୀ ଭାଷଣ ଦେଉଥିଲେ । ସାଧାରଣତଃ ବନ୍ଧୁକ ଧରି ଆଟେନ୍‌ସନ୍ ପୋଜରେ ଥିବା ସିପାହୀମାନଙ୍କୁ ଏ ପ୍ରକାର

ଉଦ୍‌ବୋଧନ ପ୍ରାୟ ପାଞ୍ଚମିନିଟରେ ସୀମିତ ରହିବାର କଥା । ସେଦିନ ଥିଲା ବେଶ୍ ଟାଣୁଆ ଖରା । ମନ୍ତ୍ରୀ କିନ୍ତୁ କହିଚାଲିଛନ୍ତି ଏବଂ ଗୋଟିକ ପରେ ଗୋଟିଏ ଏନ.ସି.ସି. କ୍ୟାଡେଟ ଟଳି ପଡୁଥାନ୍ତି ମୂର୍ଚ୍ଛିତ ହୋଇ । କିନ୍ତୁ ମନ୍ତ୍ରୀଙ୍କୁ ମନାକରିବ କିଏ ?

ଉଦ୍‌କ୍ଷିପ୍ତ କିଶୋର ବାବୁ ଯାଇ ସିଧାସଳଖ ମନ୍ତ୍ରୀଙ୍କୁ କହିଲେ "ଆପଣ ଏ ଭାଷଣ ବନ୍ଦ କରିବେ କି ? ମୋ ପିଲାମାନଙ୍କ ଅବସ୍ଥା ଦେଖିପାରୁ ନାହାନ୍ତି ନା କ'ଣ ?" ମନ୍ତ୍ରୀ ମଧ ଉଦ୍‌କ୍ଷିପ୍ତ କିନ୍ତୁ ସ୍ତବ୍ଧହୋଇ ଭାଷଣ ବନ୍ଦ କରିଦେଲେ । ସଭା ଭଂଗ ପରେ ମନ୍ତ୍ରୀ ତାଙ୍କୁ କୈଫିୟତ ମାଗିଲା ଭଳି କଣ୍ଠରେ ପଚାରିଲେ ଯେ "ମୁଁ ଭାଷଣ ଦେଲାବେଳେ ଆପଣ ମୋତେ ଭାଷଣ ବନ୍ଦ କରିବାକୁ କହିବାର ଅଧିକାର ଆପଣ କେଉଁଠୁ ପାଇଲେ ?" ଧୀର କିନ୍ତୁ କଠୋର କଣ୍ଠରେ କିଶୋର ବାବୁ ଉତ୍ତର ଦେଲେ, "ଶୃଙ୍ଖଳା ରକ୍ଷାକରିବା ମୋର କର୍ତ୍ତବ୍ୟ । ଏପରି ସଭାରେ ଭାଷଣ କେତେ ସଂକ୍ଷିପ୍ତ ହେବା କଥା ତା' ଆପଣ ପ୍ରୋଟୋକଲ ବହିରୁ ପଢ଼ିଥିବେ । ସେଇକଥା ମୋର ମନେ ପକାଇଦେବା ଉଚିତ ବୋଲି ମନେକଲି ।" ଦୁହିଁଙ୍କର ମୁହଁ ଲାଲ ପଡ଼ିଯାଇଥିଲା । ସମସ୍ତେ ମିଶି କଥାଟାକୁ ସେଇଠି ସମାପ୍ତ କରିଦେଲେ ।

ଆମେ ସବୁ ଜେଲରେ ଥାଉ । କଟକ ଜେଲରେ । ଆମର ସୁପରିଟେଣ୍ଡେଣ୍ଟ ଥାଆନ୍ତି ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ, କିଶୋର ବାବୁଙ୍କ ବାପା । କିଶୋର ବାବୁଙ୍କ ସାହାଯ୍ୟ ଆମ ପାଇଁ ଥିଲା ବେଶ୍ ପ୍ରଭୂତ । ଆଜି ସେ ନାହାନ୍ତି । ତାଙ୍କର ଜୀବନର ଏଇ ଅଧ୍ୟାୟ ଲିପିବଦ୍ଧ ରହିବା ଉଚିତ । କାରଣ ଏହା ବର୍ତ୍ତମାନ ବିସ୍ମୃତିର ଗର୍ଭରେ । ଏହାକୁ କିନ୍ତୁ ମନେ ନ ପକାଇଲେ କିଶୋର ବାବୁଙ୍କ ପ୍ରତି ଅନ୍ୟାୟ ହେବ ଏ ଜାତି ପାଇଁ । ସେଦିନର ତରୁଣମାନଙ୍କ ଭିତରେ, ଜାତିପ୍ରେମ ବହ୍ନି କିପରି ଉଜଳି ଉଠୁଥିଲା, ତାହା ଭୁଲିଯିବା ଉଚିତ ହେବ ନାହିଁ ।

ମୋର ମନେପଡୁଚି ।

ଗୋପାଳ ବାବୁଙ୍କ ସହିତ ଆମର ସଂପର୍କ ଖୁବ୍ ଭଲଥିଲା । ଥରେ ଗୋଟିଏ ବହିକୁ ଗୋପାଳ ବାବୁ ଆମ ପାଇଁ ପାଶ୍ କଲେ ନାହିଁ । କାରଣ ପଚାରିବାରୁ ସେ କହିଲେ ଯେ ପଢ଼ି ମୋର ରକ୍ତ ଗରମ ହୋଇଗଲା ଆଉ ସେ ବହି ମୁଁ ଆପଣମାନଙ୍କୁ କେମିତି ଦେବି ? ବହିଟି କିଶୋରବାବୁ ପଠେଇ ଦେଇଥିଲେ ଆମକୁ । ମନମୋହନ ବାବୁ ଦିନେ କହୁ କହୁ ଗୋପାଳ ବାବୁଙ୍କୁ କହିଲେ ଯେ ବହିଟି ଆମେ ପଢ଼ି ଦେଇଚୁ ।

ଗୋପାଳବାବୁ ହସି ହସି କହିଲେ ଯେ ହଁ ମୁଁ ଜାଣେ । ସେ ବହିଟି ମୁଁ ପଢ଼ିବାକୁ ନେଇଥିଲି ଘରକୁ । ହଠାତ୍ ବହିଟି କୁଆଡ଼େ ହଜିଗଲା । ମୁଁ ଖୋଜି ଖୋଜି ନିରସ୍ତ । କିଛିଦିନ ପରେ ଦେଖିଲି ଯେ ବହିଟି ପୁଣି କେଉଁଠୁ ଆସି ମୋ ଟେବୁଲ ଉପରେ ରଖା ହୋଇଛି । ସେଇଥିରୁ ମୁଁ ଅନୁମାନ କରିଥିଲି, ମୋର ସନ୍ଦେହ ହୋଇଥିଲା ।

କିଶୋରବାବୁ ଉଚ୍ଚ ପଦସ୍ଥ ପୋଲିସ ଅଫିସର । ବହୁ ସାହାଯ୍ୟ, ବହୁ ପ୍ରକାରର ସାହାଯ୍ୟ ପାଇଁ ମୁଁ ଯାଇଛି ତାଙ୍କ ପାଖକୁ । ସେ ନାହିଁ ପ୍ରାୟ କରନ୍ତି ନାହିଁ, ଚୁପ୍‌ଚାପ କରିଦିଅନ୍ତି । କେବଳ ତାଗିଦ କରି କହନ୍ତି ତୁମକୁ ତ ମନାକରି ହେବ ନାହିଁ, କିନ୍ତୁ କଥାଟା ତମ ମୋ ଭିତରେ ।

ସେ ଆଉ ନାହାନ୍ତି । ତେଣୁ ବର୍ତ୍ତମାନ ଏହାକୁ ରେକର୍ଡ଼ କରିଯିବା ଉଚିତ ଉତ୍ତର ପୀଢ଼ିପାଇଁ । ନଚେତ୍ ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ, ତାଙ୍କର ଉପଯୁକ୍ତ ମୂଲ୍ୟାୟନ ହୋଇପାରିବ ନାହିଁ ।

ଏଇ କିଛିଦିନ ତଳେ ସେ ଆସିଥିଲେ ବାପାଙ୍କର ସ୍ମାରକୀ ଟ୍ରଷ୍ଟ ବୈଠକରେ ଯୋଗଦେବା ପାଇଁ । ଦେହ ଖରାପ ହୋଇଯାଇଥିଲା । ଭଲକରି ଚାଲିପାରୁ ନଥିଲେ । କିନ୍ତୁ ଏତେ ଶୀଘ୍ର ଚାଲିଯିବେ ବୋଲି କିଏ ଜାଣିଥିଲା ?

ପୁଲିସ ଅଫିସର ଭାବରେ ସେ କେତେ ସ୍ମୃତ ହୋଇ ରହିବେ, କହିପାରିବି ନାହିଁ । କିନ୍ତୁ ଜଣେ ଭଲ ମଣିଷ, ଜଣେ ପ୍ରଗତିଶୀଳ ମଣିଷ, ଜଣେ ସାମ୍ୟରେ ବିଶ୍ୱାସୀ ମଣିଷ ଭାବରେ ସେ ଆମ ପାଖରେ ସ୍ମୃତହୋଇ ରହିବେ ।



# ଶେଷ ଶିଳାଲେଖ

କଟକ ସହରର ପ୍ରଫେସରପଡ଼ାରୁ ଜଣେ ଭଦ୍ରଲୋକ ବାହାରନ୍ତି ନିତ୍ୟ ନୈମିତ୍ତିକ କାମରେ । ଧୋତି, ପଂଜାବୀ ଓ ଛତା । ଏଇ ହେଉଛି ତାଙ୍କର ଡ୍ରେସ । ଲୋକେ ମୁଣ୍ଡ ନୁଆନ୍ତି । ସେ ବିନମ୍ର ଭାବରେ ପ୍ରତ୍ୟାଭିବାଦନ କରି ଚାଲନ୍ତି ଆଗକୁ– ବଜାରକୁ, ପୋଷ୍ଟ ଅଫିସକୁ, ବ୍ୟାଙ୍କକୁ । ଅନେକ ବର୍ଷ ହେଲା ସେ କଲେଜକୁ ଆଉ ଯାଉନାହାନ୍ତି । କିନ୍ତୁ ସଭାସମିତି ଯିବା ସେ ଛାଡ଼ି ନଥିଲେ ପୂରା ଅସୁସ୍ଥ ନହେବା ପର୍ଯ୍ୟନ୍ତ ।

ଏଇ ହେଉଛନ୍ତି ଗବେଷକ ଅଧ୍ୟାପକ କୁଂଜବିହାରୀ ତ୍ରିପାଠୀ । ଆପଣାର ଗବେଷଣା ଶିଳାଲେଖ ପରି ତାଙ୍କର ଚେହେରା ବି ହୋଇଗଲାଣି ଶିଳାଲେଖ ଭଳି । ନୂତନତ୍ୱର ଗନ୍ଧ ନାହିଁ ।

୧୫ ଜୁନ୍, ୨୦୦୧ ମସିହା । କୁଂଜବାବୁ ଆଖିବୁଜି ଦେଇଛନ୍ତି ୯୧ ବର୍ଷ ବୟସରେ । ଅଧ୍ୟାପନା, ଗବେଷଣାର ଏକ ବିରାଟ ଶିଳାଲେଖ ମହାକାଳର କରାଳ କବଳରେ ବିଲୁପ୍ତ !

ଘର ଥିଲା ବାଙ୍କୀ ପଥୁରିଆପଡ଼ାରେ । ପାଠ ପଢ଼ିଥିଲେ ରେଭେନ୍ସା କଲେଜରେ ବି.ଏ. ପର୍ଯ୍ୟନ୍ତ । ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଗଲେ ପାଟନା ସହରକୁ ଏମ୍.ଏ. ପଢ଼ିବା ପାଇଁ । ସେଠାରେ ମଧ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୁଅନ୍ତି । ଉଚ୍ଚଶିକ୍ଷା ଲାଭର ତୃଷ୍ଣା ସେତିକିରେ ମେଣ୍ଟି ନଥିଲା । ଏଲ୍.ଏଲ୍.ଏମ୍. ପରୀକ୍ଷାରେ ମଧ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି । ସେତେବେଳେ ଆଇନରେ ଏଲ୍.ଏଲ୍.ଏମ୍. ପାଶ କରିବା କଠିନ ଥିଲା । ପ୍ରଥମ ଶ୍ରେଣୀ ତ ସହଜେ ନିଶ୍ଚିତ ଭାବରେ ନିଶ୍ଚିତ ନଥିଲା ।

ଫେରନ୍ତି ରେଭେନ୍ସା କଲେଜକୁ ଅଧ୍ୟାପକ ହୋଇ । ଦୀର୍ଘଦିନ ଧରି ଶିକ୍ଷା ଓ ଗବେଷଣାରେ ଧୂରୀଣ ଅଧ୍ୟାପକ କୁଂଜବିହାରୀଙ୍କ ଶହଶହ ଛାତ୍ର ଜୀବନର ବିଭିନ୍ନ ବିଭାବରେ ପ୍ରତିଷ୍ଠିତ । ପରେ ବ୍ରହ୍ମପୁର ମହାବିଦ୍ୟାଳୟ ଓ ଶେଷରେ ସମ୍ବଲପୁର ମହାବିଦ୍ୟାଳୟର ଅଧକ୍ଷ ପଦବୀରେ ତାଙ୍କର ଚାକିରି ଜୀବନର ସମାପ୍ତି ।

ଜୀବନକାଳବ୍ୟାପୀ ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ଉପରେ ଗବେଷଣାର ଦ କୁଂଜବିହାରୀ କେବଳ ଆମର ସାହିତ୍ୟ ସଂସ୍କୃତିକୁ ସମୃଦ୍ଧି କରି ଯାଇ ନାହାନ୍ତି, ଓଡ଼ିଆ ଭାଷାର ଉତ୍ପତ୍ତି ଏବଂ ବିକାଶ ଉପରେ ବହୁ ପ୍ରାମାଣିକ ତଥ୍ୟ ପ୍ରଦାନ କରି ଯାଇଛନ୍ତି । ଆନ୍ଧ୍ର ପ୍ରଦେଶର ଉରଜାମ ଶିଳାଲେଖକୁ ପ୍ରଥମ ଓଡ଼ିଆ ଶିଳାଲେଖ ବୋଲି ସେ ପ୍ରମାଣ କରିଯାଇଛନ୍ତି । ବହୁ ପ୍ରାଚୀନ ଶିଳାଲେଖର ପାଠୋଦ୍ଧାର ଏବଂ ଶୁଦ୍ଧପାଠ ତାଙ୍କୁ ଓଡ଼ିଆ ସାହିତ୍ୟରେ ଅମରକରି ରଖିବ । ତାଙ୍କର ଇଂରାଜୀ ଜ୍ଞାନ ମଧ୍ୟ ଥିଲା ପ୍ରଭୂତ । ଓଡ଼ିଆ ଭାଷା ଓ ସ୍କ୍ରିପ୍‌ଟର ମୂଲ୍ୟାୟନ ଶୀର୍ଷକ ତାଙ୍କର ଗବେଷଣାତ୍ମକ ନିବନ୍ଧ ତାଙ୍କର ଭାଷା ସଂପର୍କରେ ପାଣ୍ଡିତ୍ୟର ଅପୂର୍ବ ଶିଳାଲେଖ ।

ସେ ଲେଖିଯାଇଛନ୍ତି ଅଗଣିତ ନିବନ୍ଧ ଇଂରାଜୀ, ଓଡ଼ିଆ ଓ ସଂସ୍କୃତରେ । ଏବଂ ସେ ସବୁ ଆଣିଦେଇଛି ତାଙ୍କ ପାଇଁ ବିପୁଳ ଖ୍ୟାତି ଦେଶ ବିଦେଶରେ । ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଚୀନତା ଏବଂ ସମୃଦ୍ଧତାକୁ ସେ ଜାତୀୟ, ଆନ୍ତର୍ଜାତୀୟ ସ୍ତରରେ ପ୍ରମାଣିତ କରିଯାଇଛନ୍ତି ।

ସରଳ, ଉଦାସୀନ କୁଂଜବିହାରୀ କାଳକ୍ରମେ ପ୍ରାଚୀନ ହୋଇ ଯାଇଥିଲେ । ସତେ ଯେପରି ସେ ଏକ ଜୀବନ୍ତ ଶିଳାଲେଖ ।

ତାଙ୍କର ପରଲୋକରେ ଓଡ଼ିଶାର ନିରଳସ, ନିଷ୍ଠାପର ଗବେଷଣା ଓ ଅଧ୍ୟୟନ ଦରିଦ୍ର ହୋଇଯାଇଛି ।

ବୟସ ହୋଇଥିଲା । ସେ ଦୁର୍ବଳ ଏବଂ ଅସୁସ୍ଥ ହୋଇ ଉଠିଥିଲେ । ସହକର୍ମୀ, ସମସାମୟିକଙ୍କ ଭିତରୁ ଅନେକ ଚାଲି ଯାଇଛନ୍ତି ଆଗରୁ । ସେ ଏକାକୀ ହୋଇଯାଇଥିଲେ ।

ତାଙ୍କର ପରଲୋକରେ ଏ ଜାତି, ଓଡ଼ିଆ ସାହିତ୍ୟ, ଗବେଷଣା ମଥା ଅବନତ କରି ତାଙ୍କୁ ଜଣାଉଛି ଶ୍ରଦ୍ଧାଞ୍ଜଳି ।



# ଜୀବନର ଚେସ୍ ଖେଳରେ କାଳର କିସ୍ତିମାତ୍

କେଶବବାବୁ କିଶୋର ଜୀବନରୁ ଅନ୍ୟାନ୍ୟ ବହୁ ଖେଳ ସହିତ ଚେସ୍ ଖେଳି ଆସିଛନ୍ତି... କେତେଥର ସେ ଉକ୍ତ ଖେଳରେ 'କିସ୍ତିମାତ୍' କରିନାହାନ୍ତି କିନ୍ତୁ ଆଜି (୧୬.୫.୨୦୦୦)ରେ ମହାକାଳ ତାଙ୍କର ଜୀବନର ଚେସ୍ ଖେଳରେ କିସ୍ତିମାତ୍ କରିଦେଇଛି । କେଶବବାବୁ ଆଉ ନାହାନ୍ତି । ହୃଦଯନ୍ତ୍ର କ୍ରିୟା ବନ୍ଦ ହୋଇ ସେ ଚାଲିଯାଇଛନ୍ତି ସେଇଠିକୁ, ଯେଉଁଠୁ ଆଉ କେହି ଫେରି ନାହାନ୍ତି ।

କେଶବବାବୁଙ୍କର ଘର ହେଉଛି ଜେନାପଦା । ମୋ ମାମୁଁ ଘର ହେଉଛି ପତଣ୍ଡା । ଜେନାପଦାରେ ବସ୍‌ରୁ ଓହ୍ଲାଇ ଯିବାକୁ ହୁଏ ପତଣ୍ଡା ଗାଁକୁ । କେଶବବାବୁ ଆମ ମାମୁଁ ଘରର ଆତ୍ମୀୟ । ସେଇଯୋଗୁଁ ତାଙ୍କ ସହିତ ପରିଚିତି ପିଲାଦିନରୁ । ସେଇଦିନଠାରୁ ପାଠ ସହିତ ଖେଳ ଉଭୟ ପ୍ରତି ତାଙ୍କର ଆଗ୍ରହ । ସେଇ ଗଛ ଏବେ ବି ଥିବ, ଯାହା ମୂଳ ଚଉତରାରେ ସେ ଖରାଛୁଟିରେ ବସିଥିବେ, କେତେବେଳେ ବୃଦ୍ଧ, କେତେବେଳେ ସମବୟସ୍କ ଆଉ କେତେବେଳେ ପିଲାଙ୍କ ସହିତ । Play the game in the spirit of the game. ଏହା ହିଁ ଥିଲା ତାଙ୍କର ଖେଳରେ ଯେପରି ମଟୋ, ଜୀବନରେ ବି ସେଇପରି । ଜୀବନର ଖେଳକୁ ସେ ସେଇପରି ଗ୍ରହଣ କରିନେଇଛନ୍ତି ।

ଦାରିଦ୍ର୍ୟର କଷାଘାତ ଭିତରେ ବଢ଼ିଥିଲେ କିନ୍ତୁ ଯେପରି ମେଧାବୀ ଛାତ୍ର, ସେଇପରି ଖେଳାଳ । ଏ ଦୁଇଟାର ଶୁଭ ସଂଯୋଗ ଖୁବ୍ କମ ଲୋକଙ୍କ କ୍ଷେତ୍ରରେ ଦେଖାଯାଏ– ଅବଦୁଲ୍ ମଜିଦ୍ (ବଚନ), ଉପେନ୍ଦ୍ର ଗୁରୁ, ବଂଶୀଧର ଜେଠୀ, ନନ୍ଦକୃଷ୍ଣ ଦାସ, ବନବାସୀ ପଟ୍ଟନାୟକ, ମଦନ ମହାନ୍ତି ଏବଂ ସର୍ବୋପରି ଭୈରବ ଚନ୍ଦ୍ର ମହାନ୍ତି ପ୍ରଭୃତିଙ୍କ ନାମ ମନକୁ ଆସେ ।

୧୯୧୪ ମସିହାରେ ଜନ୍ମଗ୍ରହଣ କରିଥିବା କେଶବବାବୁ ୧୯୩୪ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟର ମାଟ୍ରିକ ପରୀକ୍ଷାରେ ସମଗ୍ର ବିହାର-ଓଡ଼ିଶାରେ ତୃତୀୟ ସ୍ଥାନ ଅଧିକାର କରି ପାଶ କରନ୍ତି । ତା'ପରେ ଆସନ୍ତି ରେଭେନ୍ସା କଲେଜକୁ । ରେଭେନ୍ସା

କଲେଜ ସେତେବେଳେ ବହୁ ପ୍ରତିଭାର ତାଲିମକେନ୍ଦ୍ର । ପାଠ, ରାଜନୀତି, କ୍ରୀଡ଼ା, ଅଭିନୟ, ସଙ୍ଗୀତ— ଜୀବନର ସବୁ ଦିଗରେ ।

କ୍ରୀଡ଼ା ପାଲଟିଲା କେଶବବାବୁଙ୍କ ପାଇଁ ନିଶା । ଜୀବିକା ଅର୍ଜନ ହେଲା ପେଶା । ସେ ଆଉ ପଛକୁ ଫେରି ଅନାଇ ନାହାନ୍ତି । ସାଫଲ୍ୟ ଆସିଛି, ପ୍ରତିଷ୍ଠା ଆସିଛି କିନ୍ତୁ ତାଙ୍କର ଖେଳବାଡ଼ ମନୋବୃତ୍ତି ରହିଛି ସେଇପରି ଅତୁଟ । ହକି, ଫୁଟବଲ, କ୍ୟାରମ, ଚେସ୍ ଏବଂ ବ୍ରିଜ ସବୁ ଖେଳରେ ତାଙ୍କର ନିଶା । ବୟସ ଅତିକ୍ରାନ୍ତ ହେବା ସହିତ ହକି, ଫୁଟବଲ ସେ ଆଉ ଖେଳୁ ନଥିଲେ । କିନ୍ତୁ କ୍ୟାରମ୍, ଚେସ୍, ବ୍ରିଜ, ବିଶେଷତଃ ଚେସ୍ ର ନିଶା ଘାରିଥିଲା ମୃତ୍ୟୁ ପର୍ଯ୍ୟନ୍ତ ।

ମନେପଡୁଛି । ସେତେବେଳେ ସକାଳୁଆ ଅଫିସ । ଶିକ୍ଷା ନିର୍ଦ୍ଦେଶାଳୟ (କଟକ)ରେ କାମ କରୁଥିଲା । ସକାଳୁଆ ଅଫିସ ପରେ ତାତିଲା ଖରାରେ ଘରକୁ ନଯାଇ ଅନେକ ଅଫିସରେ ଶୋଇ ଯାଉଥିଲେ । କାରଣ ଅନେକଙ୍କ ଘରେ ପଂଖାର (ଟଣା ହେଉ ବା ବିଜୁଳି ହେଉ) ସୁବିଧା ନଥିଲା । ବାପା କେଶବବାବୁ ଓ ସାଂଗରେ ସାନ ପୁଅ । ପୁଅକୁ ଚେସ୍ ଖେଳ ଶିଖାଇ, ବାପପୁଅ ଦୁଇଜଣ ଶୋଇଗଲେ ଅଫିସରେ । ବାପା ଶିଖାଇଛନ୍ତି ପୁଅକୁ ଚେସ୍ ଖେଳର କନ୍ଦର— ଆଲର୍ଟ ରହିବ ସବୁବେଳେ । ପୁଅକୁ ନିଦ ହେଉନାହିଁ । ବାପପୁଅ ଭିତରେ 'ଚୁକ୍ତି' ହେଲା । ଦୁହେଁ ଆଖିବୁଜି ଶୋଇବେ, କେହି ଆଖି ଖୋଲିବେ ନାହିଁ । କିଛି ସମୟ ପରେ ବାପା ଦେଖିଲା ବେଳକୁ ପୁଅ ହଠାତ୍ ଆଖିବୁଜି ଦେଉଛି । ପଚାରିଲେ, କିରେ କଥା ପରା ହୋଇଥିଲା ଆଖି ଖୋଲିବୁ ନାହିଁ । ତୁ ତ ଆଖି ବୁଜିନାହୁଁ । ପୁଅ ପଚାରିଲା, ବାପା, କଥା ହୋଇଥିଲା ଦୁହେଁ ଆଖି ବୁଜି ଶୋଇବା ବୋଲି । ତମେ କିମିତି ଜାଣିଲ ମୁଁ ଆଖିବୁଜି ନାହିଁ ବୋଲି । ବାପାଙ୍କ ଅକଲ ଗୁଡୁମ୍ । ପୁଅ କହିଲା— ବାପା, ତମେ ଶିଖାଇଥିଲ ଆଲର୍ଟ ରହିବା ପାଇଁ । ମୁଁ ଆଲର୍ଟ ଥିଲି ।

ପୁଅ ଆଜି କେଉଁଠି ବଡ଼ ଅଫିସର ହେଲାଣି । କେଶବବାବୁ ବି ନାହାନ୍ତି । କିନ୍ତୁ ଏଇ ଗଳ୍ପ ସେ ଅନେକଙ୍କୁ କହିଛନ୍ତି, ଆପଣାର ପରାଜୟର କାହାଣୀ, ଖେଳବାଡ଼ର ସ୍ପିରିଟରେ । ଚେସ୍ ଖେଳ ଥିଲା ତାଙ୍କର ପ୍ରାଣ । ଏହାର ଓଡ଼ିଶାରେ ବିକାଶ ପାଇଁ ସେ ଜୀବନବ୍ୟାପୀ ଉଦ୍ୟମ କରିଯାଇଛନ୍ତି । ଓଡ଼ିଶା ଚେସ୍ ଆସୋସିଏସନର ସେ ହେଉଛନ୍ତି ପ୍ରତିଷ୍ଠାତା । ଏଇ ଖେଳ କିପରି ଲୋକପ୍ରିୟ ହେବ, ଆମ ପିଲାଏ କିମିତି ଭଲ ଖେଳିବେ ଏଇଥିଲା ତାଙ୍କର ମହାନ ଲକ୍ଷ୍ୟ । 'ଚେସ୍' ନାମକ ବହିର ସେ ପ୍ରଣେତା । ମୋତେ ବହୁତଥର ସେ କହିଛନ୍ତି, ରୁଷ୍ ଦେଶରୁ ଚେସ୍ ଉପରେ ବହି ଆଣିବା ପାଇଁ । କିଛି ବହି ଯୋଗାଡ଼ କରିଦେଇଛି କିନ୍ତୁ ସମସ୍ତ ଚେଷ୍ଟା ସତ୍ତ୍ୱେ କୌଣସି ଗ୍ରାଣ୍ଡ ମାଷ୍ଟରଙ୍କୁ ସେ ଦେଶରୁ ନିମନ୍ତ୍ରଣ କରି ଆଣିପାରି ନାହିଁ । କେଶବବାବୁଙ୍କର ପରଲୋକ ସଂବାଦ ପାଇ ସେଇ ଅବଶୋଷ ମୋତେ ଧକ୍କା ମାରୁଛି ।

ସେକ୍ରେଟେରିଏଟ ରିକ୍ରିଏସନ କ୍ଲବର ସେ ଅନ୍ୟତମ ପ୍ରତିଷ୍ଠାତା । ଏବଂ ସେଥିରେ ମୁଖ୍ୟ କାର୍ଯ୍ୟକ୍ରମ ହେଉଛି ବ୍ରିଜ, କ୍ୟାରମ, ଚେସ୍ ଖେଳ । ଓଡ଼ିଶାର ରାଜଧାନୀ ସମ୍ବଲପୁରକୁ ଉଠିଯାଇଥିଲା ଯୁଦ୍ଧ ସମୟରେ । ସେଇ ସମୟରେ ତାଙ୍କ ସାଂଗରେ ବହୁତଥର କ୍ୟାରମ ଓ ଚେସ୍ ଖେଳିଛି । ଦେଖିଚି ପିଲାମାନଙ୍କ ଠାରୁ ହାରିଗଲେ ସେ ବେଶି ଆନନ୍ଦ ପାଆନ୍ତି । ଇମିତି ଲୋକ ମିଳିବା କଠିନ । ପିଠି ଥାପୁଡ଼େଇ ସେ ତାଙ୍କ ଠାରୁ କମବୟସର 'ବିଜେତା'ଙ୍କୁ ଗେଲ କରନ୍ତି, ଆଦର କରନ୍ତି, ଉତ୍ସାହ ଦିଅନ୍ତି ।

ଓଡ଼ିଶାର କବି-ମଂଜୁଳ କୃଷ୍ଣ ମୋହନ ପଟ୍ଟନାୟକଙ୍କ କନ୍ୟା ଶୋଭା ମଂଜରୀଙ୍କୁ ସେ ବିବାହ କରିଥିଲେ । ଓଡ଼ିଶା ପ୍ରସିଦ୍ଧ ବାମପନ୍ଥୀ ନେତା ପ୍ରାଣନାଥ ପଟ୍ଟନାୟକଙ୍କର ସେ ଷଢ଼ୁ । ଠିକ୍ ସେଇପରି ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଗୌର କିଶୋର ଦାସ ତାଙ୍କର ଭଣଜା । ପୁଅ ଆଇ.ଏ.ଏସ୍., ଡାକ୍ତର ରାଜକିଶୋର ଦାସଙ୍କ ଜାମାତା । ଉତ୍ତର ପୀଢ଼ିର ସମସ୍ତେ ବେଶ୍ ପ୍ରତିଷ୍ଠିତ ଜୀବନର ବିଭିନ୍ନ ବିଭାବରେ । କେଶବବାବୁଙ୍କ ସହିତ ପରିଚିତି ଘନିଷ୍ଠ ହୋଇଛି । ପାରିବାରିକ ସଂପର୍କ ନିବିଡ଼ ହୋଇଛି । ମୋର ବିବାହରେ ସେ ଯୋଗଦେଇ ଆମକୁ ଆଶୀର୍ବାଦ କରିଛନ୍ତି ଏବଂ ତାହା ହୋଇଛି ଆମର ପାଥେୟ ।

ସରକାରୀ କାର୍ଯ୍ୟରେ ତାଙ୍କର ସାଧୁତା, ଆଦର୍ଶ ଅନେକଙ୍କ ମନରେ ରହିଛି । ନିଜର ପଦବୀର ଅପବ୍ୟବହାର ସେ କଦାପି କରିନାହାନ୍ତି । ରାଜସ୍ୱ ବିଭାଗରେ ତାଙ୍କର କାର୍ଯ୍ୟ ପ୍ରଶଂସିତ ହୋଇଛି ସରକାରୀ ଓ ବେସରକାରୀ ସ୍ତରରେ ।

ଆଉ ବାଜିଏ ଖେଳାଯାଉ.... ଏଇ ଚାଲଟା ତ ଠିକ୍ ହେଲା ନାହିଁ । ଖେଳ ସହିତ ଶିକ୍ଷା ଦେବାପାଇଁ ଖୁବ୍ କମ ଲୋକ ଅଛନ୍ତି ବର୍ତ୍ତମାନ ।

ଜୀବନର ଚେସ୍ ଖେଳ ସରିଯାଇଛି । କିନ୍ତୁ ଆଜି ବି ଖେଳରେ ବସିଲେ ମନେପଡ଼ିବେ ସେ, ଆମେ ସବୁ ଥିବା ପର୍ଯ୍ୟନ୍ତ ।



# ବିଚିତ୍ର ଫଟୋଗ୍ରାଫରର ବିଦାୟ

ବିଚିତ୍ର ଫଟୋଗ୍ରାଫର କୋର୍ଡ଼ାଙ୍କ ପରଲୋକ ହୋଇଗଲା ଫ୍ରାନ୍ସରେ । ସେ ଏକ ଫଟୋ ଉତ୍ତୋଳନ କରିଥିଲେ । ସେ ଗୁଏଭେରା (Che Guevara)ଙ୍କର ଏଇ ଫଟୋକୁ ଆମେରିକାର ଆର୍ଟ ଇନିଷ୍ଟିଚ୍ୟୁଟ ''ବିଶ୍ୱର ପ୍ରସିଦ୍ଧ ଫଟୋଗ୍ରାଫ ତଥା ବିଂଶ ଶତାବ୍ଦୀର ପ୍ରତୀକ'' ରୂପରେ ନାମିତ କରିଛି ଯଦିଓ ଏଇ ଫଟୋଗ୍ରାଫ ଯେଉଁ ବ୍ୟକ୍ତିର ସେ ଆମେରିକା ସରକାରଙ୍କ ଦ୍ୱାରା ଘୃଣିତ ।

କୋର୍ଡ଼ାଙ୍କ ଘର ହେଉଛି କ୍ୟୁବାରେ ଏବଂ ଗୁଏଭେରା ହେଉଛନ୍ତି କ୍ୟୁବାର ସାମ୍ୟବାଦୀ ଆନ୍ଦୋଳନର ଅନ୍ୟତମ ମହାରଥୀ । ୪୧ ବର୍ଷ ତଳେ ଏଇ ଫଟୋ ଉଠାଇଥିଲେ କୋର୍ଡ଼ା । ଅବିନ୍ୟସ୍ତ କେଶ ଏବଂ ଏକ କଳା ଗଳାବନ୍ଧ (Beret) ପରିହିତ ଗୁଏଭେରାଙ୍କ ଫଟୋ କଳା ଦୃଷ୍ଟିରୁ ଅପୂର୍ବ ଆମେରିକାନ ଆର୍ଟ ଇଇଷ୍ଟିଚ୍ୟୁଟର ବିଚାରରେ ।

କୋର୍ଡ଼ା ଏଇ ଫଟୋ ପାଇଁ ପଚାଶ ହଜାର ଡଲାରର କ୍ଷତିପୂରଣ ପାଆନ୍ତି । କାରଣ ଏଇ ଫଟୋକୁ ବିଜ୍ଞାପନରେ ଚିତ୍ର ଭାବରେ ଇଂଲଣ୍ଡର ପ୍ରସିଦ୍ଧ ମଦ୍ୟ କଂପାନୀ ସ୍ମିରନଫ (Smirnoff) ଭଡ୍‌କା ବ୍ୟବହାର କରେ ଏବଂ କୋର୍ଟ ବାହାରେ ଏକ ରାଜିନାମାରେ କଂପାନୀକୁ ଏଇ କ୍ଷତିପୂରଣ ଦେବାକୁ ପଡ଼େ । ଶିଳ୍ପୀ କୋର୍ଡ଼ା ଏଇ ଲବ୍ଧ ଅର୍ଥକୁ ଦାନ କରିଦିଅନ୍ତି କ୍ୟୁବାର ଶିଶୁମାନଙ୍କର ଚିକିତ୍ସା ପାଇଁ ।

''ଗୁଏଭେରା ବଞ୍ଚିଥିଲେ ସେ ମଧ୍ୟ ଏହା ହିଁ କରିଥାଆନ୍ତେ'', ଏହା ହିଁ ଥିଲା କାଷ୍ଟ୍ରୋଙ୍କର ପ୍ରିୟ ବ୍ୟକ୍ତିଗତ ଫଟୋଗ୍ରାଫର କୋର୍ଡ଼ାଙ୍କ ଉକ୍ତି । ତାଙ୍କ ଫଟୋକୁ ପ୍ରାଚୀର ପତ୍ର ବା ବିପ୍ଳବର ଧ୍ୱଜା ଭାବରେ ବ୍ୟବହାର କରିବା ସ୍ୱତନ୍ତ୍ର କଥା କିନ୍ତୁ ମଦ୍‌ବେପାର ପାଇଁ ବ୍ୟବହାର କରିବା ନିଶ୍ଚିତ ଭାବରେ ଅଶାଳୀନ ଏବଂ ଅସଭ୍ୟ । ଅର୍ଥଦାନ କଲାବେଳେ କୋର୍ଡ଼ା ଏହା ହିଁ କହିଥିଲେ ଆପଣାର ମନ୍ତବ୍ୟ ଭାବରେ ।

୭୨ ବର୍ଷ ବୟସରେ ହଠାତ୍ ତାଙ୍କର ପରଲୋକ ହୋଇଯାଏ ପ୍ୟାରିସ ସହରରେ । ତାଙ୍କର ମରଦେହକୁ ଗ୍ରହଣ କରିବା ପାଇଁ ଲୋକଙ୍କର ଭିଡ଼ ଜମିଥିଲା ହାଭାନାର ରାଜରାସ୍ତାରେ । ସେମାନଙ୍କ ଭିତରେ ଥିଲେ କ୍ୟୁବା ବିପ୍ଳବର ଅଚ୍ୟୁତ ବିନ୍ଧାଣୀ

କାଷ୍ଟ୍ରୋ । ଏହିଥିଲା ଶିଳ୍ପୀଙ୍କର ଜନପ୍ରିୟତା ଏବଂ ତାଙ୍କର ଯାଦୁକରୀ ଫଟୋଚିତ୍ର ଉତ୍ତୋଳନର ପ୍ରଭାବ ।

ଏହି ଫଟୋର ଇତିହାସ ମଧ୍ୟ ବିଚିତ୍ର । ୧୯୬୦ ମସିହାର କଥା । କୋର୍ଡ଼ା କାମ କରୁଥାନ୍ତି ବିପ୍ଳବ ନାମକ ଏକ ଖବରକାଗଜରେ । ହାଭାନା ବିମାନବନ୍ଦରରେ ଏକ ବିସ୍ଫୋରଣ ହୁଏ । ଏକ ଫରାସୀ ବ୍ୟବସାୟିକ ଉଡ଼ାଜାହାଜ ବହନ କରି ଆଣୁଥାଏ ବେଲଜିଅମରୁ ଅସ୍ତ୍ର କ୍ୟୁବାର ବିପ୍ଳବୀମାନଙ୍କ ପାଇଁ । ସି.ଆଇ.ଏ.ର ଷଡ଼ଯନ୍ତ୍ରରେ ଏହି ଉଡ଼ାଜାହାଜରେ ବିସ୍ଫୋରଣ ହୁଏ ହାଭାନା ବିମାନବନ୍ଦରରେ ଅବତରଣ କଲାପରେ । କାଷ୍ଟ୍ରୋ ନିଜେ ଯାଇ ପହଞ୍ଚନ୍ତି ବିମାନବନ୍ଦରରେ । ସେଇଠି ସେ ବକ୍ତୃତା ଦିଅନ୍ତି । ତାଙ୍କ ଦୀର୍ଘ ଭାଷଣ ଶୁଣିବା ପାଇଁ ବିମାନବନ୍ଦରରେ ଉପସ୍ଥିତ ଥାଆନ୍ତି ପ୍ରସିଦ୍ଧ ଫରାସୀ ଲେଖକ ଜାଁ ପଲ୍ ସାତ୍ରେ (Jean Paul Sartre) ଏବଂ ସାଇମନ୍ ଡି ବୁରେଆର (Simone de Beurair) ହଠାତ୍ ଦୁର୍ଘଟଣା ଘଟିଥିବା ସ୍ଥାନର ମାତ୍ର ଦଶଗଜ ଦୂରରେ ଦେଖାଯାଏ ଗୁଏଭେରାଙ୍କୁ । ଏବଂ ଫଟୋଟି ଉତ୍ତୋଳନ କରନ୍ତି କୋର୍ଡ଼ା ।

କିନ୍ତୁ ଏଇ ଫଟୋ ସେଦିନ ଛପା ହୋଇପାରି ନଥିଲା ଉକ୍ତ କାଗଜରେ । ସେ କାଗଜ ବରଂ କାଷ୍ଟ୍ରୋ, ସାତ୍ରେ ଓ ସାଇମନ୍‌ଙ୍କ ଫଟୋ ଛାପିବାକୁ ପସନ୍ଦ କରିଥିଲେ । ତା'ର କିଛି ମାସ ପରେ ବଲଭିଆରେ ମୃତ୍ୟୁ ହୋଇଯାଏ ଗୁଏଭେରାଙ୍କର ।

ଫଟୋ ପଡ଼ିରହେ କୋର୍ଡ଼ାଙ୍କ ଘରେ ସାତବର୍ଷ ପର୍ଯ୍ୟନ୍ତ । ଜଣେ ଇତାଲୀୟ ସାମ୍ୟାଦିକ ଏଇ ଫଟୋକୁ ଉପହାର ଭାବରେ ପାଆନ୍ତି କୋର୍ଡ଼ାଙ୍କ ଠାରୁ । ସେ ଏହାକୁ ପ୍ରକାଶ କରନ୍ତି ଇତାଲୀରେ । ଏଇ ଫଟୋରେ ବିପ୍ଳବୀ ଭବିତବ୍ୟ ଦ୍ରଷ୍ଟାଙ୍କୁ ଦେଖାଯାଏ, ଦୂର ଭବିଷ୍ୟତକୁ ଅନେଇ ରହିଛନ୍ତି ଏକ ଉଦାସ କିନ୍ତୁ ନିଶ୍ଚିତ ଆଖିରେ । ଏଇ ଫଟୋକୁ ସ୍ୱୀକୃତି ମିଳେ ସାରା ପୃଥିବୀରେ । କ୍ୟୁବାର ବିପ୍ଳବ ତଥା ବିଶ୍ୱବିପ୍ଳବରେ ସନ୍ତକ ଭାବରେ ଏହା ଅଭିହିତ ହୁଏ ।

କୋର୍ଡ଼ାଙ୍କର ଫଟୋଗ୍ରାଫି ଶିକ୍ଷା ମଧ୍ୟ ବିଚିତ୍ର । ଆପଣାର ବାନ୍ଧବୀର ଫଟୋ ଉଠାଇ ଉଠାଇ ସେ ଫଟୋଗ୍ରାଫର ପାଲଟିଯାଆନ୍ତି । କିନ୍ତୁ ସେ ବାନ୍ଧବୀ କିଏ ? କୋର୍ଡ଼ା ତାହା କହିଯାଇ ନାହାନ୍ତି ।

କୋର୍ଡ଼ାଙ୍କ ସହିତ ଅକସ୍ମାତ୍ ସାକ୍ଷାତ ହୋଇଥିଲା ଇଉରୋପରେ । ସେ ଫଟୋଟିଏ ଦେଇଥିଲେ ମୋତେ । କିନ୍ତୁ ବିଗତ ମହାବାତ୍ୟାରେ ତାହା ଭାସିଗଲା ସ୍ରୁଅରେ ।

କାଳର ସ୍ରୁଅରେ କୋର୍ଡ଼ା ମଧ୍ୟ ପାଲଟିଯାଇଛନ୍ତି ଇତିହାସ ।



# କାବ୍ୟତାରାର ଶେଷ ଝଲକ

ଡାକ୍ତର କୃଷ୍ଣମୋହନ ଦାସ ଆଉ ନାହାନ୍ତି । ବହୁଦିନ ଧରି ଆମେରିକାରେ ରହିଲାପରେ ସେ ଓଡ଼ିଶାକୁ, ଆପଣାର ଜନ୍ମ ମାଟିକୁ ଫେରି ଆସିଥିଲେ ସତେ ଯେପରି ଏଇ ମାଟିରେ ମିଶିଯିବା ପାଇଁ ।

ତାଙ୍କର ସେଇ ସ୍ୱପ୍ନ ସଫଳ ହୋଇଛି ।

୧୯୨୫ ମସିହାରେ ଜଗତସିଂହପୁର ଜିଲ୍ଲାର ଚାଷୀଖଣ୍ଡ ଗ୍ରାମରେ ଜନ୍ମିତ କୃଷ୍ଣମୋହନ ପିଲାଦିନରୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଅନେକଥର କାରାବରଣ କରିଥିଲେ । ସଂଗ୍ରାମରୁ ଫେରି ପୁଣିଥରେ ପାଠପଢ଼ିବା ଭାରି କଠିନ କାମ ।

କିନ୍ତୁ କୃଷ୍ଣମୋହନ ଥିଲେ ତା'ର ଏକ ବ୍ୟତିକ୍ରମ । ସେ ଅଧ୍ୟାୟର ପରିସମାପ୍ତି ପରେ ସେ ଫେରିଲେ ପୁଣି ପାଠପଢ଼ିବା ପାଇଁ । ୧୯୪୬ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ପଶୁ ବିଜ୍ଞାନରେ ସ୍ନାତକ ଡିଗ୍ରୀ ପାଇଲାପରେ ସେ ଗଲେ ଆମେରିକାର କର୍ଣ୍ଣେଲ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଡିଗ୍ରୀ ଏବଂ ଡକ୍ଟରେଟ କରିବା ପାଇଁ ।

ଏବଂ ରହିଗଲେ ସେଇଠି ଦୀର୍ଘ ୪୦ ବର୍ଷ କାଳ । ଆମେରିକା ହୋଇଗଲା ତାଙ୍କର କର୍ମସ୍ଥଳୀ କିନ୍ତୁ ଆମେରିକାରେ ଥିବା ଓଡ଼ିଆମାନଙ୍କ ପାଇଁ ତାଙ୍କର ଥିଲା ବିପୁଳ ଦରଦ ।

ସେମାନଙ୍କ ସହିତ ସଂପର୍କ ସ୍ଥାପନକରି ଯେଉଁ ମୁଷ୍ଟିମେୟ ଓଡ଼ିଆ ଆମେରିକାରେ ଓଡ଼ିଆ ସୋସାଇଟି ଅଫ୍ ଆମେରିକା ଗଠନକଲେ ସେମାନଙ୍କ ମଧ୍ୟରେ ଡାକ୍ତର କୃଷ୍ଣମୋହନ ଦାସ ଅନ୍ୟତମ । ଏହି ସୋସାଇଟି ବର୍ତ୍ତମାନ ଏକ ମହାଦ୍ରୁମରେ ପରିଣତ ହୋଇଛି । ଏହାର ସଭ୍ୟମାନେ ଅଶ୍ରୁଳ ନୟନରେ ସ୍ମରଣ କରୁଛନ୍ତି କୃଷ୍ଣମୋହନଙ୍କ ଅବଦାନ ।

ସବୁପ୍ରକାର ମତାନ୍ତର, ମନାନ୍ତର, ଦୃଷ୍ଟିକୋଣରେ ପାର୍ଥକ୍ୟ ଓ ଜୀବିକାରେ ପାର୍ଥକ୍ୟ ସତ୍ତ୍ୱେ ସବୁ ଓଡ଼ିଆଙ୍କୁ ଏକାଠି କରିବା ପାଇଁ ସେ ଉଦ୍ୟମ କରିଥିଲେ ଏବଂ ସମସ୍ତଙ୍କର ପ୍ରିୟଭାଜନ ମଧ୍ୟ ଥିଲେ । ମନ, କଣ୍ଠ ଏବଂ କଥା ସବୁ ଥିଲା ତାଙ୍କର ଶାଣିତ କିନ୍ତୁ ଏକାନ୍ତ ଆତ୍ମୀୟ ।

ଆପଣ ଏତେ ବର୍ଷ ଆମେରିକାରେ ରହି ଏବେ ଓଡ଼ିଶା ଆସିଛନ୍ତି, କିମିତି ଲାଗୁଛି ? କେବଳ ରାସ୍ତାପାର ହେବାପାଇଁ ମୋତେ ଡର ଲାଗୁଛି । ଆଉ କୌଣସି ଅସୁବିଧା ତ ହେଉନାହିଁ, ଥିଲା ତାଙ୍କର ଉତ୍ତର । ପୁଣି ଟିକିଏ ଭାବି କହିଲେ, ଆମର ଏଠି ସମୟାନୁବର୍ତ୍ତିତା ନାହିଁ । ସେଇଟା ହେଉଛି ଆଉ ଏକ ସମସ୍ୟା । କାହାକୁ ଅପେକ୍ଷା କରି ରହିବାର ଅଭ୍ୟାସ ମୋର ନାହିଁ । ଏହାଛଡ଼ା ଆଉ କୌଣସି ସମସ୍ୟା ଅଛି ବୋଲି ମନେ ହେଉନାହିଁ ।

ନିଜର ଗ୍ରାମ ବାଇଶିମୌଜା ପାଇଁ ସେ ଅନେକ ଜନହିତକର କାର୍ଯ୍ୟ କରି ଯାଇଛନ୍ତି । ତାଙ୍କର ପରଲୋକରେ ଏକ ବିରାଟ ସଂଗ୍ରାମୀ ଜୀବନର ଅବସାନ ଘଟିଲା । 'ମୁଁ ଜନ୍ମ ହୋଇଥିଲି ଓଡ଼ିଶାରେ । ମରିବି ସେଇଠି । ଏଇଥିଲା ତାଙ୍କର ସ୍ୱପ୍ନ ।'

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସକ୍ଷମ ରହିବି, କାହାରି ଉପରେ ନିର୍ଭରଶୀଳ ହେବିନାହିଁ, ଏହା ଥିଲା ତାଙ୍କର କାମନା ।

ଉଭୟ କାମନା ଓ ସ୍ୱପ୍ନ ତାଙ୍କର ସାର୍ଥକ ହୋଇଛି । ବଂଧୁମାନେ ତାଙ୍କୁ ନାମ ଦେଇଥିଲେ 'କାବ୍ୟତାରା' ବୋଲି । ସେ କାବ୍ୟତାରା ଆଉ ଆକାଶରେ ନାହିଁ । କିନ୍ତୁ ବହୁବର୍ଷ ଧରି ତାହା ଉଜଳି ରହିବ ତାଙ୍କର ଅଗଣିତ ବଂଧୁମାନଙ୍କ ମାନସପଟରେ । ତାଙ୍କର ଜୀବନ ଅନେକଙ୍କୁ ପ୍ରେରଣାଦେବ ଏବଂ ସେଇ ହେଉଛି ତାଙ୍କର ଜୀବନର ସାର୍ଥକତା ।



# ତଳଠାରୁ ଉପର ପର୍ଯ୍ୟନ୍ତ ସମସ୍ତଙ୍କର ବଂଧୁ

ଗଣନାଥ ଦାସ ଆଉ ନାହାନ୍ତି । ୧୯୧୩ ମସିହାରେ ଜନ୍ମଲାଭ କରିଥିବା ଗଣନାଥ ବାବୁ ୧୬.୧୦.୨୦୦୦ ଦିନ ମଧ୍ୟରାତ୍ରୀର କିଛି ସମୟ ପରେ ପରଲୋକ ଗମନ କରିଛନ୍ତି । ସେ ଥିଲେ ପ୍ରଶାସକ, କବି, ପ୍ରାବନ୍ଧିକ ଓ ଅନୁବାଦକ । କିନ୍ତୁ ସେତିକିରେ ତ ତାଙ୍କର ପରିଚୟ ଶେଷହୋଇ ପାରିବ ନାହିଁ । ସେ ଥିଲେ ସର୍ବୋପରି ଜଣେ ଦରଦୀ ମଣିଷ ଯେ ସରକାରୀ ପିଅନ ଠାରୁ ଆରମ୍ଭକରି ଚିଫ୍ ସେକ୍ରେଟେରୀ ପର୍ଯ୍ୟନ୍ତ ସମସ୍ତଙ୍କର ବଂଧୁ ଥିଲେ । କେହି ତାଙ୍କ ପାଖରୁ ଫେରି ନାହାନ୍ତି ରିକ୍ତ ହସ୍ତରେ । ସାହାଯ୍ୟ ଦରକାର ? ଯିଏ ଯାଇଥାଉ, ଯାହା ପାଖରେ କାମ ଥାଉ, ଗଣନାଥ ବାବୁଙ୍କ ହସ୍ତ ତାଙ୍କପାଇଁ ସମ୍ପ୍ରସାରିତ ସବୁବେଳେ । ଏଭଳି ମଣିଷ ଖୁବ୍ କମ୍ ମିଳିବେ । ସେଇଯୋଗୁଁ ସେ ସମସ୍ତଙ୍କର ବଂଧୁ ଥିଲେ । ସବୁଠାରୁ ତଳେ ଥିବା କର୍ମଚାରୀଙ୍କ ଠାରୁ ଆରମ୍ଭ କରି ସର୍ବୋଚ୍ଚ କର୍ତ୍ତାଙ୍କ ପର୍ଯ୍ୟନ୍ତ ।

ତାଙ୍କର ଜ୍ୱାଇଁ ସମର ବଲ୍ଲଭ ମହାପାତ୍ର ମୋର ପାରିବାରିକ ବଂଧୁ, ଆତ୍ମୀୟ । ସେ କଟକରେ ଥିବା ସମୟରେ ଦିନେ ସଂଧ୍ୟାରେ ଆମ ଘରକୁ ଆସିଥିଲେ । ସେ ଭୋଳାରାମ ଲୋକ । ଶୀତଦିନ । ଟିପି ଟିପି ବର୍ଷା ହେଉଥିଲା । ସେ ଆସିଥିଲେ କଣ ଗୋଟାଏ ଖବର ଦେଇ ଚାଲିଯିବା ପାଇଁ । ମୋ ସ୍ତ୍ରୀ ତାଙ୍କୁ ଚାହା ଏବଂ ଜଳଖିଆ ଯାଚିଲେ । ଶୀତ ପଡ଼ିଛି, ବର୍ଷା ବି ହେଉଛି । ଗାଡ଼ିରେ କାହାକୁ ଛାଡ଼ିଆସିଛନ୍ତି ସେ କଥା ସେ ଭୁଲିଗଲେ । ଗପ ଚାଲିଲା । ଚାହା କପ୍ ସହିତ ।

କିଛି ସମୟ ପରେ ଜଣେ ଭଦ୍ରଲୋକ ଗାଡ଼ିରୁ ଓହ୍ଲାଇ ଆମ ଘରକୁ ପଶିଲେ । ଅଂଧାର ହେଲାଣି । କିଛି ଦେଖା ଯାଇନାହିଁ ।

''ସମର, ତମେ କ'ଣ ଭାବିଚ ଯେ ତମେ ଏକୁଟିଆ ଗିରିଜାକୁ ଚିହ୍ନିଛ । ମୁଁ ବି ଜାଣିଛି ତାଙ୍କୁ ପିଲାଦିନରୁ । ସେ ପରା ମୋର କ୍ୟାରମ ମେଟ୍ । ତମେ ଏକୁଟିଆ ଚାହା ଜଳଖିଆ ଖାଇବ । ଆଉ ଆମେ ?''

ଦେଖିଲା ବେଳକୁ ହସ ହସ ମୁହଁରେ ଗଣନାଥ ବାବୁ ପଶି ଆସୁଛନ୍ତି । ମୁହଁ ଶୁଖିଗଲା ମୋର । କିନ୍ତୁ ସମର ବଲ୍ଲଭଙ୍କ ପ୍ରକୃତି ମୁଁ ଜାଣେ । ତେଣୁ କ୍ଷମା ମାଗିବାକୁ ଯାଇ ଦେଖିଲି ଯେ ଗଣନାଥ ବାବୁ ହସୁଛନ୍ତି ଏବଂ ଚାହା କପ୍‌ଟିକୁ ଧରି କହୁଛନ୍ତି, ତମେ ଏକୁଟିଆ ଚା' ଖାଇବ, ଆଉ ଆମେ ଖାଇବୁ ନାହିଁ ?

ଏଇ ହେଉଛନ୍ତି ଗଣନାଥ ଦାସ, ଆଇ.ଏ.ଏସ୍. । ପିଅନର ବନ୍ଧୁ, ଚିଫ୍ ସେକ୍ରେଟେରୀଙ୍କର ମଧ ବଂଧୁ । ଗଣନାଥ ବାବୁଙ୍କ ପଡ଼ୋଶୀ ହେବାର ଭାଗ୍ୟ ଥିଲା ମୋର କିଛିଦିନ ପାଇଁ । ସେତେବେଳେ ମୁଁ ପିଲା । କ୍ୟାରମ ଖେଳୁଥାଏ ଆଉ ଗଣନାଥ ବାବୁ କେବଳ ମୋ ସାଂଗରେ କ୍ୟାରମ ଖେଳନ୍ତି ନାଇଁ, କ୍ୟାରମ ଖେଳିବାର କୌଶଳ ମଧ ବତାଇ ଦିଅନ୍ତି । ଏହା କେବଳ ମୋର ଅଭିଜ୍ଞତା ନୁହେଁ, ବହୁ ବ୍ୟକ୍ତି ଏହିଭଳି କଥାକୁ ଆଜି ସ୍ମରଣ କରୁଥିବେ ଲୁହଭରା ଆଖିରେ ।

ଗଣନାଥବାବୁ ସେକ୍ରେଟେରିଏଟରେ କାମ ଆରମ୍ଭ କରିଥିଲେ ରେଭେନ୍ସା କଲେଜିଏଟ୍ ଏବଂ ରେଭେନ୍ସା କଲେଜରୁ ଇଂରାଜୀ ଅନର୍ସ ସହିତ ବି.ଏ. ପାଶ କରିବା ପରେ । ୧୯୭୧ ମସିହାରେ ସେ ଚାକିରିରୁ ଅବସର ଗ୍ରହଣ କଲେ କିନ୍ତୁ ଜୀବନର ଏକ ନୂତନ ଅଧ୍ୟାୟ ଉନ୍ମୋଚିତ ହେଲା ସେଇ ପରଠାରୁ ଏବଂ ତାହାହିଁ ତାଙ୍କୁ ସ୍ମରଣୀୟ କରି ରଖିବ ଜନମାନସରେ । ସେ ଥିଲେ ପୁରୁଣା ରାଜକର୍ମଚାରୀ । ଶୃଙ୍ଖଳା, ନିୟମାନୁବର୍ତ୍ତିତା ତାଙ୍କର ରକ୍ତରେ ମିଶି ଯାଇଥିଲା । ଦୁର୍ନୀତି ତାଙ୍କର ପାଖ ମାଡ଼ି ନଥିଲା । କର୍ମରେ ଅବହେଳା ତାଙ୍କୁ ଛୁଇଁ ନଥିଲା । ସେ କାମ କରୁଥିଲେ ମଣିଷ ପାଇଁ, ସରକାର ପାଇଁ ନୁହେଁ । ସେଇ ଯୋଗୁଁ ଆଦିବାସୀ, ଗ୍ରାମ ମଙ୍ଗଳ ବିଭାଗ ତାଙ୍କୁ ବେଶି ଆରେଇ ଯାଇଥିଲା । ପ୍ରସିଦ୍ଧ, ଲୋଭନୀୟ ବିଭାଗ ତାଙ୍କୁ ଆକର୍ଷିତ କରି ନଥିଲା । ମୁଁ ଏବଂ ମୋ ସ୍ତ୍ରୀ ଆଦିବାସୀମାନଙ୍କ ପାଇଁ କାମ କରୁଛୁ, ସେମାନଙ୍କ ଉପରେ ଗବେଷଣା କରୁଛୁ ଜାଣି ସେ ଆନନ୍ଦରେ ଆମ ଦୁହିଁଙ୍କୁ ଆଶୀର୍ବାଦ କରିଥିଲେ, ଆଖିରୁ ଲୁହ ଗଡ଼ିଥିଲା ତାଙ୍କର ।

ଗୁରୁ ନାନକ, ସନ୍ଥ କବୀର, ତୁଳସୀ ଦାସ ପ୍ରଭୃତି ସନ୍ଥକବି ତାଙ୍କୁ ଆକର୍ଷିତ କରିଥିଲେ ଏବଂ ସେମାନଙ୍କ ଉପରେ ଅଧ୍ୟୟନ ଛଡ଼ା.ସେମାନଙ୍କ ଲେଖା ସରଳ ଓଡ଼ିଆ ଭାଷାରେ ଅନୁବାଦ କରି ପ୍ରକାଶ କରିବା ତାଙ୍କର ନିଶାରେ ପରିଣତ ହୋଇଥିଲା । କେବଳ ଓଡ଼ିଆ ଭାଷାରେ ନୁହେଁ ଇଂରାଜୀ ଭାଷାରେ ସେଗୁଡ଼ିକୁ ଅନୁବାଦ କରିବା କଷ୍ଟକର କାମ ହେବା ସତ୍ତ୍ୱେ, ସେ ତାହା ସଫଳତାର ସହିତ କରିଥିଲେ । ବୋଧହୁଏ ପାଠ ପଢ଼ିଲାବେଳେ ଇଂରାଜୀ ଅନର୍ସ ପାଠ ସରକାରୀ କାର୍ଯ୍ୟରେ ସଦ୍‌ବ୍ୟବହାର ହୋଇପାରି ନଥିଲା, ତାହାର ସଦ୍‌ବ୍ୟବହାର ହେଲା ଅବସର ନେଲାପରେ ।

ତାମିଲ ଭାଷାର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ ଥିରୁକୁରାଳର ଆଂଶିକ ଅନୁବାଦ ମଧ୍ୟ ସେ କରିଯାଇଛନ୍ତି । ବୋଧହୁଏ ଏପରି କାର୍ଯ୍ୟ କରିବାରେ ସେ ପ୍ରଥମ ଓଡ଼ିଆ ଲେଖକ । ଭାରତବର୍ଷର ବହୁ ପ୍ରତିଷ୍ଠିତ ପ୍ରକାଶକ ତାଙ୍କର କୃତିକୁ ପ୍ରକାଶ କରିଛନ୍ତି ଏବଂ ଏଇଥିରୁ ମଧ୍ୟ ସେଗୁଡ଼ିକର ମାନ୍ୟତା ଏବଂ ସ୍ୱୀକୃତି ଜଣାପଡ଼େ ।

କବୀର ଶତକ, ନାନକ ଶତକ ଥିରୁକୁରାଳ ଓଡ଼ିଆ ସାହିତ୍ୟର ସମୃଦ୍ଧି ଓ ବିକାଶ ପଥରେ ମାଇଲଖୁଣ୍ଟ ହୋଇ ରହିବ ଚିରକାଳ । ଠିକ୍ ସେଇପରି Couplets from Kabir, Hundred one saying of Tulsidas ନାମକ ଦୁଇଟି ଇଂରାଜୀ ବହି ତାଙ୍କୁ ପରିଚିତି ଆଣି ଦେଇଥିଲା ସମଗ୍ର ଭାରତବର୍ଷରେ ।

ନିଜର ଜୀବନୀ ଲେଖି ଯାଇଛନ୍ତି ସେ । 'ସେ କାଳ, ଏ କାଳ' ନାମକ ଏଇ ଜୀବନୀ ଓଡ଼ିଶାର ସାମାଜିକ, ରାଜନୈତିକ, ସାଂସ୍କୃତିକ ଜୀବନ ସହିତ ଉତ୍ତର ପୀଢ଼ିର ପରିଚୟ କରାଇ ସେ ଆମକୁ ଧନ୍ୟକରି ଯାଇଛନ୍ତି ।

ବିନମ୍ର, ହାସ୍ୟମୁଖରା ଗଣନାଥ ଦାସ ଥିଲେ ଖୁବ୍ ସ୍ନେହୀ । ସେ ରୋଗାକ୍ରାନ୍ତ ହେବାକୁ ଆରମ୍ଭ କରିଥାନ୍ତି । କ'ଣ ଗୋଟାଏ କାମ ପାଇଁ ସେ ମୋତେ କହିଥିଲେ । ସେ କାମଟି ମୁଁ କରିଦେଇଥିଲି । ଭାବିଲି ଯେ ଗଣନାଥବାବୁଙ୍କୁ କହିଦେଇଯିବି ଯେ ସେ କାମଟି ହୋଇଯାଇଛି । ମୁଁ ଯାଇ ତାଙ୍କ ଘରେ ପହଞ୍ଚିଲି । ସେ ଶୋଇ ରହିଥିଲେ । ମୁଁ ଖାଲି ତାଙ୍କୁ କହିଦେଇ ଚାଲିଆସିବି ବୋଲି ଭାବିଥିଲି । ''ତମେ କାମ କରିଦେଇଛ, ଏବଂ ମୋତେ କହିବାକୁ ଆସିଛ ଯେ କାମଟି ହୋଇଯାଇଛି ବୋଲି । ଏମିତି ଲୋକ ତ ମିଳିବେ ନାହିଁ । ତମେ ଦୀର୍ଘଜୀବୀ ହୁଅ'' ତାଙ୍କ ଆଖିରୁ ଲୁହ ଝରିଚାଲିଛି ।

ଗଣନାଥବାବୁ ଆଉ ନାହାନ୍ତି । କେହି ରହିବେ ନାହିଁ, ଏହା ସତ୍ୟ । କିନ୍ତୁ ଇମିତି କେତେ ମଣିଷ ଅଛନ୍ତି, ଯେଉଁମାନେ ଚାଲିଗଲା ପରେ ଲୋକେ ମନେରଖନ୍ତି ଯେ ଏଭଳି ଲୋକଟିଏ ଆଉ ମିଳିବେ ନାହିଁ ।

ସେଇଭଳି ଜଣେ ଥିଲେ ଗଣନାଥ ଦାସ । ଅଚଳ ହୋଇ ପଡ଼ିଛି ତେଣୁ ଯାଇ ତାଙ୍କର ମରଦେହକୁ ଦର୍ଶନ କରିବାର ସୁଯୋଗ ମିଳିଲା ନାହିଁ । ସେଇ ରହିଗଲା ଅବଶୋଷ ।



# ଜଣେ ବନ୍ଧୁଙ୍କ ବିୟୋଗରେ

ବନ୍ଧୁ ଗଣେଶ ପ୍ରସାଦ ପରିଡ଼ା ଆଉ ନାହାନ୍ତି । କର୍କଟ ରୋଗରେ ତାଙ୍କର ପରଲୋକ ହୋଇଗଲା ଆଚାର୍ଯ୍ୟ ହରିହର ଆଞ୍ଚଳିକ କର୍କଟ ରୋଗ ପ୍ରତିଷ୍ଠାନରେ । ମୃତ୍ୟୁ ସଂବାଦ ଖବରକାଗଜର ପୃଷ୍ଠାରେ ପାଇଲାବେଳକୁ ତାଙ୍କର ମରଦେହ ପୋଡ଼ି ପାଉଁଶ ହୋଇଯାଇଛି ।

ତାଙ୍କର କଣ୍ଠସ୍ୱର ଆଉ ଶୁଭିବ ନାହିଁ ରଥଯାତ୍ରାର ଧାରା ବିବରଣୀରେ । ଜଗନ୍ନାଥ ଧର୍ମ, ଦର୍ଶନ ତାଙ୍କର ଅସ୍ଥିମଜ୍ଜାରେ ଅନ୍ତର୍ଭୁକ୍ତ ହୋଇଯାଇଥିଲା । ଜଗନ୍ନାଥଙ୍କ ସଂପର୍କରେ ତାଙ୍କର ରଚିତ ଗଳ୍ପ, ନିବନ୍ଧ ତାଙ୍କୁ ଚିରଦିନ ଅଗଣିତ ଜଗନ୍ନାଥ ଭକ୍ତଙ୍କ ଜନମାନସରେ ଜୀବନ୍ତ କରି ରଖିବ । ଗଣେଶ ବାବୁଙ୍କ ଜ୍ୟୋତିଷ ଶାସ୍ତ୍ର ପ୍ରତି ଆଗ୍ରହ ଏବଂ ବିଶ୍ୱାସ ଥିଲା ପ୍ରଭୂତ । ନିଜର ରୋଗ ଏବଂ ମୃତ୍ୟୁ ସଂପର୍କରେ ତାହା ଫଳପ୍ରଦ ହୋଇଥିଲା କି ନାହିଁ କିଏ କହିବ ଏଇନା ?

ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଶୂଦ୍ର ମୁନି ଶାରଳା ଦାସଙ୍କ ବଂଶରେ ଜଗତସିଂହପୁର ତେନ୍ତୁଳିପଦା ଗ୍ରାମରେ ୧୯୨୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ପଢ଼ିବା ସହିତ ଲେଖା ଆରମ୍ଭ ହୋଇଥିଲା ପିଲାଦିନରୁ । କଲମ ପାକଳ ହୋଇଥିଲା ଏବଂ କଲମରୁ ନିଃସୃତ ହୋଇଥିଲା ବହୁ ପୁସ୍ତକ ।

ବୌଦ୍ଧଦର୍ଶନ ଏବଂ ବୌଦ୍ଧ ଆଚାର୍ଯ୍ୟଙ୍କ ସଂପର୍କରେ ତାଙ୍କର ନିବନ୍ଧ ଦେଶ ବିଦେଶରେ ବହୁ ଗବେଷକଙ୍କ ପ୍ରଶଂସା ଲାଭ କରିଛି । ସେ ଇଂରାଜୀରେ ଲେଖି ପାରିଥିଲେ ସେ ସବୁ ନିବନ୍ଧ ତାଙ୍କ ପାଇଁ ଆନ୍ତର୍ଜାତିକ ଖ୍ୟାତି ଆଣି ଦେଇଥାନ୍ତା, ଏଥିରେ ସନ୍ଦେହ ନାହିଁ । ବହୁବାର ତାଙ୍କୁ ମୁଁ ଏ ବିଷୟରେ କହିଛି କିନ୍ତୁ ତାହା ରୂପ ପାଇ ନାହିଁ । ସେଇ ଅବଶୋଷ ରହିଗଲା ତାଙ୍କର କି ନାହିଁ ମୁଁ କହିପାରିବି ନାହିଁ, କିନ୍ତୁ ମୋର ନିଶ୍ଚୟ ରହିଗଲା ।

ଓଡ଼ିଶାର ଦେବାଦେବୀ, ଭୂତପ୍ରେତମାନଙ୍କ ଉପରେ ତାଙ୍କର ଲେଖା ବୃଦ୍ଧମାନଙ୍କୁ ଯେପରି ଆକର୍ଷିତ କରିଛି, ପିଲାମାନଙ୍କ ପାଇଁ ମଧ୍ୟ ସେଇପରି ମନଲୋଭା ହୋଇଛି । ସାରଳା ସାହିତ୍ୟ ତାଙ୍କର ରକ୍ତରେ ଆସିଥିଲା ଏବଂ ସାରଳା ସାହିତ୍ୟର ବିଭିନ୍ନ ବିଭାବ ତାଙ୍କର କଲମରେ ରୂପ ପାଇଥିଲା ବିଭିନ୍ନ ସମୟରେ ।

ତାଙ୍କର ୩୫ରୁ ଊର୍ଦ୍ଧ୍ୱ ବହି ପ୍ରକାଶିତ ହୋଇଛି ଏବଂ ଅପ୍ରକାଶିତ ହୋଇ ରହିଯାଇଛି ଆହୁରି ୧୦ରୁ ଊର୍ଦ୍ଧ୍ୱ ବହି । ସେଗୁଡ଼ିକୁ ପ୍ରକାଶ କରିବାର ଦାୟିତ୍ୱ ଉତ୍ତର ପୀଢ଼ି ହାତରେ ସେ ଦେଇ ଚାଲିଯାଇଛନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀର ଏଥିପାଇଁ ଏକ ସ୍ୱତନ୍ତ୍ର ଦାୟିତ୍ୱ ରହିଚି । ତନ୍ତ୍ର ସଂକ୍ରାନ୍ତୀୟ ଗଳ୍ପ ଥିଲା ତାଙ୍କର ଅଭିନବ ରଚନା । ଏଇଭଳି ଗଳ୍ପ ଓଡ଼ିଆସାହିତ୍ୟରେ ଆଗରୁ ପ୍ରାୟ ନଥିଲା ।

ଗଣେଶବାବୁଙ୍କୁ ପୁରସ୍କାର ମିଳିଛି, ସ୍ୱୀକୃତି ମିଳିଛି ଅନେକ ଅନୁଷ୍ଠାନରୁ ।

କିନ୍ତୁ ସବୁଠାରୁ ବଡ଼ ସ୍ୱୀକୃତି ହେଉଛି ତାଙ୍କର ଅଗଣିତ ପାଠକ, ଯେଉଁମାନେ ରାତି ଉଜାଗର ରହି ବହି ସରିଲା ପର୍ଯ୍ୟନ୍ତ ପଢ଼ିଛନ୍ତି ତାଙ୍କର ରଚିତ ପୁସ୍ତକ । ତାଙ୍କର ବିୟୋଗରେ ଓଡ଼ିଆ ସାହିତ୍ୟ ଦରିଦ୍ର ହୋଇଛି ଏବଂ ମୁଁ, ମୋର ପରିବାର ଏକ ପାରିବାରିକ ବନ୍ଧୁଙ୍କୁ ହରାଇଛୁ ।

ଦିନେ ନା ଦିନେ ସମସ୍ତଙ୍କୁ ଯିବାକୁ ହେବ । କିନ୍ତୁ ଯେଉଁମାନେ ଯିବାପରେ ତାଙ୍କର ପଦଚିହ୍ନ ଉଜ୍ଜଳି ରହେ ସମୟର ବାଲୁକାରେ, ସେଇମାନଙ୍କ ଜୀବନ ତ ସାର୍ଥକ ! ସେମାନଙ୍କ ମଧ୍ୟରେ ଗଣେଶ ପ୍ରସାଦ ପରିଜା ଅନ୍ୟତମ ।



# ଅଭୁଲା ସ୍ମୃତି

୧୯୮୬ ମସିହା । ଏକ ବୈଦେଶିକ ଗବେଷକ ଦଳକୁ ଆମେ ସାକ୍ଷାତ କରୁଥାଉ ସ୍ୱସ୍ତି ହୋଟେଲରେ । 'ସମାଜ' ସଂପାଦକ ରାଧାନାଥ ରଥ ଏବଂ ମୁଁ । ହଠାତ୍ ମୋତେ ଜ୍ୱର ଆସିଲା ସ୍ୱସ୍ତି ହୋଟେଲର ଅଭ୍ୟର୍ଥନା ପ୍ରକୋଷ୍ଠରେ । ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଶ୍ରୀ ଗଂଗାଧର ପାଇକରାୟ ସେଇଠି ପହଞ୍ଚିଲେ ରାଧାନାଥ ବାବୁଙ୍କୁ ନେଇ ଗଡ଼ମାଣିତ୍ରୀ ଯିବା ପାଇଁ । ରାଧାନାଥ ବାବୁ ମୋର ଜ୍ୱର ଆସିଥିବା ଦେଖି ଫେରିଯିବାକୁ କହିଲେ କଟକ । ରାଧାନାଥ ବାବୁ, ଗଂଗାଧର ପାଇକରାୟ, ଅଶୋକ ଦାସ ଗଲେ ଗଡ଼ମାଣିତ୍ରୀ । ସେଇଠି ହେଲା ବୋମାମାଡ଼ । ଲକ୍ଷ୍ୟ ଥିଲା ଗଂଗାଧର ପାଇକରାୟ । ସେମାନେ କ୍ଷତବିକ୍ଷତ ହେଲେ, ଡ୍ରାଇଭରର ଆଖି ସେଇଦିନ ଠାରୁ ଖରାପ ହୋଇଗଲା । କିନ୍ତୁ ସେମାନେ ବଂଚିଗଲେ ।

ସେପ୍ଟେମ୍ବର ମାସ ୩୦ ତାରିଖ ରାତି ପ୍ରାୟ ଆଠଟା । ହଠାତ୍ ଗୁରୁଚରଣ ପଟ୍ଟନାୟକ ଫୋନ କଲେ । ଶୁଣିଚୁ, ଗଂଗାଧର ପାଇକରାୟ ଚାଲିଗଲେ । ଗଲା ବେଶ୍ କିଛିଦିନ ହେବ ସେ ଅସୁସ୍ଥ ଥିଲେ, ଚିହ୍ନିବା ଶକ୍ତି ମଧ୍ୟ ହ୍ରାସ ପାଇ ଚାଲିଥିଲା । କିନ୍ତୁ ହଠାତ୍ ସେ ଚାଲିଯିବେ ଏଭଳି କଥା ଭାବିଲା ବେଳକୁ ଇତିହାସ ମଥା ପିଟିଲା ସ୍ମୃତିର ଛାତିରେ ।

ଅମାୟିକ, ସ୍ନେହାଳୁ ଗଂଗାଧର ପାଇକରାୟ ମାର୍କ୍ସବାଦୀ କିନ୍ତୁ ଡଗ୍‌ମାଟିକ୍ ନୁହନ୍ତି । ନିଜର ମତ ଅଛି କିନ୍ତୁ ତାହା ସେ ଲଦି ଦେବାକୁ ଚାହିଁ ନାହାନ୍ତି ଅନ୍ୟ ଉପରେ । ବରଂ ସେ ଅନ୍ୟର କଥା ଶୁଣିବାକୁ ପ୍ରସ୍ତୁତ । ସେ ଅନେକ ସମୟରେ ଧମାଧରା ଫ୍ରେମରେ ପଡ଼ିବା ମଣିଷ ନଥିଲେ । ଏବଂ ସେଇଯୋଗୁଁ ତାଙ୍କ ପ୍ରତି ଅନ୍ୟ ଦଳର, ଅନ୍ୟ ଚିନ୍ତାର ବ୍ୟକ୍ତିମାନଙ୍କର ଦରଦ ଥିଲା ।

କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ସ୍ୱାଧୀନତା ସଂଗ୍ରାମରେ । ସ୍ୱାଧୀନତାର ରୂପ କ'ଣ ହେବ, ହେବା ଉଚିତ ତାହା ତାଙ୍କୁ ଘାରିଥିଲା ଯୁବ ବୟସରୁ । ସେ ସାମ୍ୟବାଦୀ ପାଲଟି ଯାଇଥିଲେ । ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ ତାଙ୍କର ଥିଲେ ଦୀକ୍ଷାଗୁରୁ ।

ସ୍ୱାଧୀନତା ସଂଗ୍ରାମ ଭିତରେ ତାଙ୍କୁ ବହୁ କଷ୍ଟ ସହ୍ୟ କରିବାକୁ ପଡ଼ିଛି । ଭାରତର ରାଜନୈତିକ ସ୍ୱାଧୀନତା ପରେ ମଧ ତାଙ୍କର ସଂଗ୍ରାମ ସରିଲା ନାହିଁ । କାରଣ ରାଜନୈତିକ ସ୍ୱାଧୀନତା କୁଳାନ ନୁହେଁ, ଅର୍ଥନୈତିକ ସାମ୍ୟ ବିନା ରାଜନୈତିକ ସ୍ୱାଧୀନତାର ସ୍ୱାଦ୍ ମିଳିବ ନାହିଁ । ତାଙ୍କର ସେ ସଂଗ୍ରାମ ଚାଲିଲା ମୃତ୍ୟୁ ପର୍ଯ୍ୟନ୍ତ । ସେଇ କଳ୍ପିତ ଭାଗ୍ୟ ଆସି ନାହିଁ, ସାମ୍ୟବାଦର ରାସ୍ତା ପଙ୍କ ଭିତରେ ପଶିଯାଇଛି । ସେ ବ୍ୟଥିତ ହୋଇଛନ୍ତି । ପରିଶେଷରେ ସେ ବିଦାୟ ନେଇଛନ୍ତି, ହୁଏତ ରୁଗ୍ଣ ହୃଦୟରେ ।

ଚାରିଥର ସେ ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ସେ ଥିଲେ ଚାଷୀର ନେତା, କ୍ଷେତ ମୂଲିଆର ନେତା ଏବଂ ଶ୍ରମିକକୁଳର ନେତା । ସେମାନଙ୍କର କଲ୍ୟାଣ ପାଇଁ ସେ ଥିଲେ ନିବେଦିତ । ବିଧାନସଭା ଭିତରେ ଭାଗଚାଷୀମାନଙ୍କର ପ୍ରାପ୍ୟ ପାଇଁ, କ୍ଷେତ ମଜୁରିଆର ମୂଲବୃଦ୍ଧି ପାଇଁ ତାଙ୍କର ଅବଦାନ ବିପୁଳ । ସେଥିପାଇଁ ସେ ସ୍ମରଣୀୟ ହୋଇ ରହିବେ ଚିରକାଳ ।

କିନ୍ତୁ ତାଙ୍କର କାର୍ଯ୍ୟ ସେତିକିରେ ସୀମିତ ନଥିଲା । ବୁଦ୍ଧିଜୀବୀମାନଙ୍କ ପାଇଁ, ଛାତ୍ର ଅଧ୍ୟାପକମାନଙ୍କ ପାଇଁ ତାଙ୍କର ଅବଦାନ କିଛି କମ ନୁହେଁ । ମୋର ମନେପଡୁଛି– ଶୈଳବାଳା ମହିଳା କଲେଜ ପାଇଁ, କଟକ ମେଡ଼ିକାଲ କଲେଜ ପାଇଁ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଇଁ ତାଙ୍କର ଭୂମିକା ତାଙ୍କୁ ସ୍ମରଣୀୟ କରି ରଖିବ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ଶୈଳବାଳା ମହିଳା କଲେଜ ସଂପର୍କରେ ଯାହା କହିଛନ୍ତି ବିଧାନସଭାରେ, ତାହା ସତ୍ୟ ନୁହେଁ । ଏଥିପାଇଁ ପ୍ରିଭିଲେଜ ପ୍ରସ୍ତାବ ଆଣି ସେ ଚମକ ସୃଷ୍ଟି କରିଥିଲେ ଏବଂ କହିବା ବାହୁଲ୍ୟ ରାତାରାତି ସେ ଦାବି କରିଥିବା କାର୍ଯ୍ୟ ସଂପୂର୍ଣ୍ଣ ହୋଇଥିଲା ।

ତାଙ୍କ ପାଖକୁ ଯିଏ ଯାଏ ସେ ନିଶ୍ଚୟ ତା' କଥା ଶୁଣନ୍ତି ଏବଂ ବିଧାନସଭା ଚାଲିଥିଲେ ସେଇଦିନ ସେ ବିଷୟରେ ନିଶ୍ଚୟ ପ୍ରଶ୍ନ ଉଠାନ୍ତି । ଯିଏ ଆସିଛି ସେ କେଉଁ ଦଳର, କେଉଁ ଗୋଷ୍ଠୀର ସେ ବିଷୟରେ ପ୍ରଶ୍ନ ଉଠାନ୍ତି ନାହିଁ ।

ବିଧାନସଭା ସଭ୍ୟର ଦୁର୍ଦ୍ଦଶା, ଦୈନନ୍ଦିନ ଖର୍ଚ୍ଚର ଏକ ମାସିକିଆ ତାଲିକା ଖବରକାଗଜରେ ପ୍ରକାଶ କରି ସେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ଏବଂ ବିଧାନସଭା ସଭ୍ୟମାନଙ୍କର ଦରମା ବଢ଼ିବାର ଦାବିକୁ କେବଳ ବିଧାନସଭା ଭିତରେ ନୁହେଁ, ଜନସାଧାରଣଙ୍କ ଭିତରେ ଗୃହୀତ ହୋଇ ଯାଇଥିଲା ।

୰ ପ୍ରାଣନାଥ ପଟ୍ଟନାୟକଙ୍କର ସେ ଥିଲେ ସହକର୍ମୀ, ସହଯୋଦ୍ଧା । ପ୍ରାଣନାଥ ମହାବିଦ୍ୟାଳୟ ପାଇଁ ତାଙ୍କର ଅବଦାନ ଥିଲା ପ୍ରଭୂତ । ଗଂଗାଧର ବାବୁଙ୍କ ସହକର୍ମୀମାନଙ୍କ ଭିତରେ କେବଳ ବୋଧହୁଏ ଗୋକୁଳ ମୋହନ ରାୟ ଚୂଡ଼ାମଣି ଏବଂ ଗୁରୁଚରଣ ପଟ୍ଟନାୟକ ଜୀବିତ । ମୋହନ ଦାସ, ସାଧୁଚରଣ ମହାନ୍ତି, ଉପେନ୍ଦ୍ର ଦାସ, ରାମକୃଷ୍ଣ ପତି, ଗଂଗାଧର ମିଶ୍ର ପ୍ରଭୃତି ଗଲେଣି ।

ଆମେ ଫେରୁଚୁ ସେଦିନ ରାତିରେ ସାଂଗହୋଇ । ନିର୍ବାଚନ ସମୟ । କିନ୍ତୁ ପଇସା ନଥିଲା ପାଖରେ ଖାଇବା ପାଇଁ । ରାମକୃଷ୍ଣ ପତି, ଗୋବିନ୍ଦ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ଗଂଗାଧର ପାଇକରାୟ, ନନ୍ଦକିଶୋର ପଟ୍ଟନାୟକ ଆଉ ମୁଁ । ୪ ଭିକାରୀ ଚୌଧୁରୀଙ୍କ ସୌଜନ୍ୟରୁ ଖାଇବା ବନ୍ଦୋବସ୍ତ ହୋଇଥିଲା ଜଣଙ୍କ ଘରେ । ଭୁବନେଶ୍ୱର ରାସ୍ତା ନିକାଞ୍ଚନ ହୋଇଗଲାଣି । ଗଂଗାଧର ପାଇକରାୟ କହିଲେ ଯେ ଆମେ ଏପରି କ୍ୟାଣ୍ଟିନ କରି ପାରନ୍ତେ ନାଇଁ ଯେଉଁଠି ଖାଲି ପାର୍ଟି କାଡ଼ରମାନେ ନୁହନ୍ତି, ଅନ୍ୟମାନେ ମଧ୍ୟ ଖାଇ ପାରନ୍ତେ ଶସ୍ତାରେ ?

ମହାସାମ୍ୟର ସ୍ୱପ୍ନ ସହିତ ଗଂଗାଧର ବାବୁଙ୍କ ଅନେକ ଟିକିନିକି ସ୍ୱପ୍ନଥିଲା । କୌଣସି ଏକ ଶିଳ୍ପ ସଂସ୍ଥାର ଟ୍ରେଡୟୁନିଅନରେ ସେ ଓ ମୁଁ ଉଭୟ କର୍ମକର୍ତ୍ତା ଥିଲୁ । ଥରେ କିଛି ବ୍ୟକ୍ତି ଚୋରି କଲେ ସେ ସଂସ୍ଥାରୁ । ୟୁନିଅନର କର୍ମକର୍ତ୍ତାମାନେ ଆସି ଦାବିକଲେ ଯେ ଆମେ ଉକ୍ତ ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ସମର୍ଥନ କରୁ । ମନେପଡୁଚି, ଗଂଗାଧରବାବୁ ଚିତ୍କାର କରି କହିଲେ ଯେ ଆମେ ଟ୍ରେଡ୍ ୟୁନିଅନିଷ୍ଟ, ଚୋର ସଂଗଠନର ନେତା ନୋହୁଁ । ଆମେ ଦୁହେଁ ସେଥିରୁ ଇସ୍ତଫା ଦେଇଥିଲୁ ।

ଅନେକ ସ୍ମୃତି ହାବୁକା ମାରେ ମନରେ । ବହୁବର୍ଷ ଧରି ତାଙ୍କ ସାଂଗରେ କାମ କରିଛି । ସଭା କରିଛୁ, ଶୋଭାଯାତ୍ରା କରିଛୁ । ବିକ୍ଷୋଭ ପ୍ରଦର୍ଶନ କରିଛୁ, ନିର୍ବାଚନ ପ୍ରଚାରରେ ଭାଗ ନେଇଛୁ ଏକାଠି ମିଶି । ତମେ ତ ଖାଇନ, ଆଗ ଖାଇସାର, ପରେ କଥାହେବା । ରାତିରେ ଶୋଇବା ପାଇଁ ବନ୍ଦୋବସ୍ତ ହୋଇଛି, ମଶାରୀଟିଏ ବି ଅଛି...... ଛୋଟ, ଛୋଟ କଥା । ମନକୁ ରୁନ୍ଧିଦିଏ ।

ସେ ନାହାନ୍ତି । ୮୫ ବର୍ଷ ବୟସରେ ସେ ଆମଠାରୁ ବିଦାୟ ନେଇଛନ୍ତି । ୧୯୧୫ ମସିହା ଜୁଲାଇ ୧୨ ତାରିଖରେ ପୁରୀ ଜିଲ୍ଲାର ସାନପଦର ଗାଁରେ ଯେଉଁ ଶିଶୁ ଜନ୍ମ ହୋଇଥିଲା, ସେଇ ଶିଶୁ କାନ୍ଦୁଥିଲା, ଅନ୍ୟମାନେ ହସୁଥିଲେ, ସେଇ ମଣିଷ ଅଗଷ୍ଟ ୩୧, ୧୯୯୯ ରେ ବିଦାୟ ନେଲା, ବହୁ ବ୍ୟକ୍ତିଙ୍କର ଆଜି ଲୁହ ଝରୁଛି । ସେଇ ତ ତାଙ୍କର ଜୀବନର ସାର୍ଥକତା ।

ଇତିହାସ ତାଙ୍କୁ କିଭଳି ମନେରଖିବ କହିପାରିବି ନାହିଁ । ଜାତି, ଦଳ, ମତ ନିର୍ବିଶେଷରେ ସେ ସ୍ମୃତ ହୋଇ ରହିବେ ଅଗଣିତ ମଣିଷ ମଧ୍ୟରେ ଚିରକାଳ, ତାଙ୍କର ମଣିଷପଣିଆ ପାଇଁ ।



# ଲୁହ ଢଳ ଢଳ ସ୍ମୃତିରେ ସଜଳ

ଡାକ୍ତର ଗିରିଜାଶଙ୍କର ଦାସ ମହାପାତ୍ର ଜନ୍ମ ହୋଇଥିଲେ ଫେବୃଆରୀ ୧, ୧୯୧୮ ମସିହାରେ । ସେ ଆମ ଭିତରେ ଥିଲେ ତାଙ୍କୁ ୮୩ ବର୍ଷ ବୟସ ହୋଇଥାନ୍ତା । ଆମେ ଯେଉଁ ଯୁଗରେ ବାସ କରୁଛୁ, ଯେଉଁ ଡାକ୍ତରୀ ବିଦ୍ୟାରେ ସେ ଥିଲେ ଯାଦୁକର, ସେଇ ଗଣନା ଅନୁଯାୟୀ ତାଙ୍କୁ ବିଶେଷ କିଛି ବର୍ଷ ବୟସ ହୋଇ ନଥାନ୍ତା । କିନ୍ତୁ ସେ ଆମ ଭିତରେ ଆଉ ନାହାନ୍ତି । ଚିକିତ୍ସା ଶାସ୍ତ୍ରର ଯାଦୁକରର ଯାଦୁ କାମ କରିନାହିଁ ବା ସଫଳ ହୋଇ ନାହିଁ ।

କେତେ ଲୋକଙ୍କୁ ସେ ଆପଣାର ତୁଳୀ (ହଁ; ତୁଳୀ ନୁହେଁ କ'ଣ) ରେ ରୋଗରୁ ନେଇ ଆସିନାହାନ୍ତି ନୀରୋଗକୁ ! ତାଙ୍କ ହାତର ଛୁରୀ ପରା ଶିଳ୍ପୀର ତୁଳୀ ଭଳି କାମ କରୁଥିଲା । ନାହିଁ ଅଯଥା ରକ୍ତପାତ, ନାହିଁ ବିଶେଷ ଯନ୍ତ୍ରଣା ! କିନ୍ତୁ କ'ଣ ହେଲା ତାଙ୍କର ନିଜ କ୍ଷେତ୍ରରେ ? ତାଙ୍କୁ ତ ଆମେ ପାଇପାରିଲୁ ନାହିଁ, ଆଉ କେତେଟା ବର୍ଷ !

କିନ୍ତୁ ସେ କ'ଣ ଖାଲି ଥିଲେ ସର୍ଜନ ? ସେ ଥିଲେ ମଧ୍ୟ ଇଞ୍ଜିନିୟରିଙ୍ଗ ବିଦ୍ୟାର ଯାଦୁକର ! ଆଜି ଶ୍ରୀ ରାମଚନ୍ଦ୍ର ଭଂଜ ମେଡ଼ିକାଲ କଲେଜର ସର୍ଜରୀ ବିଭାଗ ତାଙ୍କରି ଆଲେଖ୍ୟ ବହନ କରେ । ସେ ବିଭାଗର ଘର ନିର୍ମାଣ ହେଲାବେଳେ ଡାକ୍ତର ଦାସ ମହାପାତ୍ର ସର୍ଜରୀ ବିଭାଗର ମୁଖ୍ୟ । ନିର୍ମାଣାଧୀନ କୋଠାର ପରିଦର୍ଶନ କଲାବେଳେ ସେ ଦେଖିଲେ ଯେ ର୍ୟାମ୍ପ ନାହିଁ ନକ୍ସାରେ । ସେ ଇଂଜିନିଅରଙ୍କୁ କାମ ବନ୍ଦ କରିବାକୁ କହିଲେ । କାମ ବନ୍ଦ ହେଲା । ତତ୍‌କାଳୀନ ଚିଫ୍ ଇଂଜିନିଅର ଆସିଲେ ।

ମହାଚିନ୍ତାର କଥା । ଯେତିକି ଟଂକାର ଅଟକଳ ହୋଇଛି, ସେତିକିରେ କାମ ସରିବ କିମିତି ? ପୁଣି ନକ୍ସା ବଦଳାଇବାକୁ ସମୟ ଲାଗିବ, ଲୋକ ଲାଗିବେ । ଡାକ୍ତର ଦାସ ମହାପାତ୍ର ହସିଲେ ଏବଂ ସେଇଠି ଠିଆହୋଇ ନୂତନ ନକ୍ସା କରିଦେଲେ ଏବଂ ଅଟକଳ ହୋଇଥିବା ଅର୍ଥର ବୃଦ୍ଧି ନହୋଇ ।

ଚିଫ୍ ଇଂଜିନିଅରଙ୍କ ଆଖି ଖୋସି ହୋଇଗଲା ଉପରକୁ । ସେ ତାଙ୍କର ସହକର୍ମୀମାନଙ୍କୁ କହିଲେ ଏଇ ଲୋକଟା ଇଂଜିନିଅର ହେଲାନାହିଁ କାହିଁକି ?

ଗିରିଜାବାବୁ ବେଶ୍ ରସରସିଆ ମଣିଷ । ପିଲାମାନଙ୍କ ସହିତ ବସି ମଉଜ କରିବାରେ ଏପରିକି ସେମାନଙ୍କ ଠାରୁ ଥଟ୍ଟା ଟାପରା ଶୁଣିବାକୁ ବେଶ୍ ଭଲ ପାଉଥିଲେ । ପାଠ ପଢ଼ାଇଲା ବେଳେ ଯେପରି ଗମ୍ଭୀର, କ୍ଲାସ ବାହାରେ ସେ ସେଇପରି ଦିଲଦାର । ତାଙ୍କର ଅନେକ ପ୍ରିୟ ଛାତ୍ର ତାଙ୍କ ନାମରେ ଗୀତ ରଚିଛନ୍ତି, କଲେଜ ଡ୍ରାମାରେ ତାହା ଅଭିନୀତ ହୋଇଛି । ଡାକ୍ତର ଦାସ ମହାପାତ୍ର ହସିଛନ୍ତି ଛୁଆଙ୍କ ଭଳି ।

ତାଙ୍କ ସହିତ, ତାଙ୍କ ପରିବାର ସହିତ ସଂପର୍କ ନିବିଡ଼ । ଜୀବନର ବହୁ କ୍ଷେତ୍ରରେ ତାଙ୍କ ସହିତ କାମ କରିବାର ସୁଯୋଗ ପାଇଛି, ତାଙ୍କ ଠାରୁ ସାହାଯ୍ୟ ଲୋଡ଼ିଛି । କେବେ ମନାକରି ନାହାନ୍ତି । ପୁଣି ସେତେବେଳେ ମୁଁ ଜଣେ ବିଦ୍ରୋହୀ, ଉଚ୍ଛୃଙ୍ଖଳ । ତଥାପି ତାଙ୍କର ସ୍ନେହ କଦାପି ଊଣାହୋଇ ନାହିଁ, ବରଂ ବଢ଼ିଛି । ଆଇନ ଅମାନ୍ୟକାରୀଙ୍କୁ ସେ ସ୍ନେହ ଦେଇଛନ୍ତି, ସାହାଯ୍ୟ କରିଛନ୍ତି ।

ମଣିଷକୁ ଦିନେ ନା ଦିନେ ଯିବାକୁ ହେବ । ସେ ଆଇନକୁ ଅମାନ୍ୟ କରିବ କିଏ ? ସେ ନିୟମରେ ଡାକ୍ତର ଗିରିଜା ଶଙ୍କର ଦାସ ମହାପାତ୍ର ଚାଲିଗଲେ । କିନ୍ତୁ ତାଙ୍କର 'ଫୁଟପ୍ରିଣ୍ଟ' ବା ପଦଚିହ୍ନ ରହିଗଲା ତାଙ୍କୁ ଅମର କରି ରଖିବାପାଇଁ ।

ଯେଉଁ ଶିଶୁଟି ଆସିଥିଲା ୧୯୧୮ ମସିହା, ଫେବୃଆରୀ ୧ ତାରିଖରେ, ସେ ଆମକୁ ଗର୍ବିତ କରିଯାଇଛି, ଆମକୁ ବିକାଶର ପଥରେ ଯିବାପାଇଁ ସାହାଯ୍ୟ କରିଛି ।

ସେଇ ତ ତାଙ୍କର ଜୀବନର ସାର୍ଥକତା ।



# ବିପ୍ଳବର ବହ୍ନିଶିଖା ନିର୍ବାପିତ

ଗୀତା ଦି' ଆଉ ନାହାନ୍ତି । ପ୍ରସ୍ତୁତ ହେଉଥିଲେ ସେ ଯିବାପାଇଁ କାନ୍‌ପୁରକୁ । ମଧ୍ୟରାତ୍ରି ପର୍ଯ୍ୟନ୍ତ ସେ ପ୍ରସ୍ତୁତ କରିଛନ୍ତି ଆପଣାର ଭାଷଣକୁ । କାନ୍‌ପୁରରେ ଭାଷଣ ଦେବାକୁ ହେବ । ହଠାତ୍ ଛାତିରେ ଯନ୍ତ୍ରଣା । ସକାଳ ସାତଟା ଦଶ ମିନିଟରେ ସବୁଶେଷ । ବର୍ତ୍ତମାନ ଏ ଜୀବନର ଶେଷ ପ୍ରସ୍ତୁତି ପର୍ବ । ମରଦେହ କଲିକତା ଯିବ ଏବଂ ସେଇଠି ଆପଣାର ସହଯୋଦ୍ଧା, ସହକର୍ମୀ ଏବଂ ନିର୍ବାଚନ ମଣ୍ଡଳୀର ଅଗଣିତ ଜନତାଙ୍କ ଗହଣରେ ତାଙ୍କର ଚିତା ଜଳିବ ।

ମାର୍ଚ୍ଚ ୪, ୨୦୦୦ ମସିହା । ଗୀତା ଦି' ସକାଳକୁ ଆଉ ନାହାନ୍ତି । ତାଙ୍କର ପଡ଼ୋଶୀ ହୋଇ ରହିଥିବା ବଂଧୁ ଆଇନଜୀବୀ ରୁକ୍‌ସାନା ଚୌଧୁରୀ ଆଖିରୁ ଲୁହ ଝରାଇ କହୁଛନ୍ତି ''ଏଭଳି ସୁନ୍ଦର ମଣିଷଟି ଆଉ ମିଳିବ ନାହିଁ ।''

ବୟସ ହୋଇଥିଲା ୭୬ ବର୍ଷ । ପ୍ରସିଦ୍ଧ ବଂଗ ମନ୍ୱନ୍ତର (ଦୁର୍ଭିକ୍ଷ) ଫାସିବାଦ, ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରୁ ସେ ଜନ୍ମ ହୋଇଥିଲେ । ସାମ୍ୟବାଦୀ ଆନ୍ଦୋଳନର ପ୍ରବାଦ ପୁରୁଷ ବାଗ୍ମୀ ବିଶ୍ୱନାଥ ମୁଖର୍ଜୀଙ୍କୁ ବିବାହ କରିଥିଲେ ଖୁବ୍ ତରୁଣ ବୟସରେ । ବିବାହ ବିପ୍ଳବର ଭଟ୍ଟା ନଥିଲା, ଥିଲା ଜୁଆର । କିଛି ବର୍ଷ ତଳେ ସ୍ୱାମୀଙ୍କର ପରଲୋକ ହୋଇ ଯାଇଛି । ପିଲାପିଲି କିଛି ନାହିଁ । ସ୍ୱପ୍ନ କିନ୍ତୁ ପ୍ରଚୁର । ଏକ ସମାଜବାଦୀ, ଉନ୍ନତ ଭାରତବର୍ଷ, ଶାନ୍ତିରେ ଭରା ଏକ ପୃଥିବୀ ଏବଂ ସର୍ବୋପରି ଭାରତୀୟ ନାରୀର ବିକାଶର ସ୍ୱପ୍ନ ତାଙ୍କୁ ଘାରିଥିଲା ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ସେ କ୍ଳାନ୍ତ ହୋଇ ନାହାନ୍ତି, ବିଶ୍ରାମ ଲୋଡ଼ି ନାହାନ୍ତି । ଜୀବନକୁ ଉପଭୋଗ କରିଛନ୍ତି ସଂଗ୍ରାମ ଭିତରେ ।

କ୍ଷୀଣକାୟା, କୃଶ ଗୀତା ମୁଖର୍ଜୀଙ୍କ ହୃଦଯନ୍ତ୍ରରେ ଅପରେଶନ ହୋଇଥିଲା ପ୍ରାୟ ଦଶବର୍ଷ ତଳେ । ସେ ଅପରେଶନ ଥିଲା ଭୟାନକ ବିପଦସଂକୁଳ, ଗୀତାଙ୍କର ସାଧାରଣ ସ୍ୱାସ୍ଥ୍ୟ ଦୃଷ୍ଟିରୁ । ସେ ପାର୍ଲ୍ୟାମେଣ୍ଟରେ ଏକ ବକ୍ତୃତା ଛଳରେ କହିଦେଲେ ଯେ ଏହା

ବୋଧହୁଏ ତାଙ୍କର ଶେଷ ବକ୍ତୃତା । ଗୋଟିଏ ହାତକୁ ଧରିଛନ୍ତି ରାଜୀବ ଗାନ୍ଧୀ ଏବଂ ଆର ହାତଟିକୁ ଧରିଛନ୍ତି ଏଲ.କେ.ଆଡ଼ଭାନୀ । ଗୀତା ଉଭୟଙ୍କର ତୀବ୍ର କ୍ରିଟିକ । ''ନା,ନା ଆପଣଙ୍କୁ ଫେରିବାକୁ ପଡ଼ିବ । ଆପଣ ଆମର ଦରକାର ।'' ଗୀତା ଫେରିଥିଲେ ଏବଂ ଗୀତା ତାଙ୍କର ଖୁବ୍ ସୁନ୍ଦର ଉଦ୍ଦାମତା ଫେରି ପାଇଥିଲେ ।

ସ୍ୱାଧୀନତା ଆନ୍ଦୋଳନର ଶେଷ ପର୍ଯ୍ୟାୟର ସନ୍ତକ ଥିଲେ ଗୀତା ମୁଖର୍ଜୀ । ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ବଂଗଳାର ବହୁ ଯୁବକ ଯୁବତୀମାନଙ୍କୁ ବାମପନ୍ଥୀ ଚିନ୍ତାଧାରା ପ୍ରତି ଆକୃଷ୍ଟ କରିଥିଲା । ବିବେକାନନ୍ଦଙ୍କ ଚିନ୍ତାଧାରା, ରବୀନ୍ଦ୍ରନାଥ ଠାକୁରଙ୍କର 'ରୁଷିଆର ଚିଠି' ବଂଗ ଯୁବ ସଂପ୍ରଦାୟକୁ ଉଦ୍‌ବେଳିତ କରିଥିଲା । ସୋଭିଏଟ୍ ରୁଷରେ ସମାଜବାଦର ବିଜୟଯାତ୍ରା, ଫାସିବାଦ ବିରୁଦ୍ଧରେ ଲାଲସେନାର କଠୋର ସଂଗ୍ରାମ ସେମାନଙ୍କୁ ଯେପରି ଅନୁପ୍ରାଣିତ କରିଥିଲା, ଠିକ୍ ସେଇପରି ସମ୍ଭାବ୍ୟ କିନ୍ତୁ ନିଶ୍ଚିତ ଭାରତୀୟ ସ୍ୱାଧୀନତାର ମୂର୍ତ୍ତ ରୂପ ସଂପର୍କରେ ବିତର୍କ ଏବଂ ସମାଜବାଦୀ ଭାରତବର୍ଷ ଗଠନର ସ୍ୱପ୍ନ ସେମାନଙ୍କୁ ଉଦ୍‌ବେଳିତ କରିଥିଲା ।

ସ୍ୱାଧୀନତା ପୂର୍ବବର୍ତ୍ତୀ ସେଇ ଦୁଇ ଦଶନ୍ଧି କାଳ ଅଂଧାରର ସମୟ । ସ୍ୱାଧୀନତା ଆସିବା ନିଶ୍ଚୟ କିନ୍ତୁ ଅନ୍ତିମ ଆଘାତ ହାଣିବାକୁ ହେବ ସାମ୍ରାଜ୍ୟବାଦର ବୁକୁ ଉପରେ । ଗୀତା ମୁଖର୍ଜୀଙ୍କ ପରି ବହୁ ଯୁବକ ଯୁବତୀ ସେଇ କଠୋର ସଂଗ୍ରାମ ଭିତରୁ ଜନ୍ମ ହେଲେ ଏବଂ ଶାଣିତ ହେଲେ ସେଇ ସଂଗ୍ରାମ ଭିତରେ । ମଣିକୁନ୍ତଳା ସେନ୍, ଜୁଇଫୁଲ ରାୟ, ମନୋରମା ମାସିମା, ରେଣୁ ଚକ୍ରବର୍ତ୍ତୀ, କନକ ମୁଖର୍ଜୀ, ପଙ୍କଜ ରାୟ, କଲ୍ୟାଣୀ କୁମାର ମଙ୍ଗଲମ୍, ଜ୍ୟୋତି କାକିମା, ନିବେଦିତା ନାଗ, ରାଣୀ ଦାସଗୁପ୍ତ, ବାଣୀ ଦାସଗୁପ୍ତ ପ୍ରଭୃତିଙ୍କ ନାମ ମନେପଡ଼େ । ଏଇ ମହନୀୟା ନାରୀମାନେ ଆପଣାର ନିଃସ୍ୱାର୍ଥପର ଏବଂ ଏକନିଷ୍ଠ କାର୍ଯ୍ୟ ଫଳରେ ବଂଗଳାରେ ନବ ଜାଗରଣର ଅଭ୍ୟୁଦୟ ହୋଇଥିଲା । ୧୯୪୩ର ମନ୍ୱନ୍ତରରେ ରିଲିଫ କାର୍ଯ୍ୟ, ୧୯୪୬ର ଡାକ ଧର୍ମଘଟ, ସେଇ ସମୟର ପ୍ରବଳ ଛାତ୍ର ଆନ୍ଦୋଳନ, ଇତିହାସ ପ୍ରସିଦ୍ଧ ତେଭାଗା ଆନ୍ଦୋଳନ ଏଇମାନଙ୍କ ଦ୍ୱାରା ରସାଣିତ ହୋଇଥିଲା । ଏମାନଙ୍କର ପୂର୍ବସୁରୀ ଥିଲେ କଞ୍ଚନା ଯୋଶୀ, ପ୍ରୀତି ଓ୍ୟାୟେଦାଦାର ପ୍ରମୁଖ । ସେମାନଙ୍କର ଆଦର୍ଶ ଏବଂ ତ୍ୟାଗ ଏଇମାନଙ୍କୁ ଅନୁପ୍ରାଣିତ କରିଥିଲା ।

ଗୀତା ମୁଖର୍ଜୀ ବଂଗଳାର ଛାତ୍ର ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି । ସେଇ କଂଚା ବୟସ ଏବଂ ତରୁଣୀ ସମୟରେ ହିଁ ସେ ସହଯୋଦ୍ଧା ଅଗ୍ରଜ ବିଶ୍ୱନାଥ ମୁଖର୍ଜୀଙ୍କୁ ବିବାହ କରନ୍ତି । ପରବର୍ତ୍ତୀ ସମୟ ବିତିଯାଏ ସ୍ୱାଧୀନତା ପାଇଁ ସଂଗ୍ରାମରେ

ଏବଂ ସ୍ୱାଧୀନତା ପରେ ସମାଜବାଦୀ ଭାରତବର୍ଷ ଗଠନ ପାଇଁ ସଂଗ୍ରାମରେ । ୧୯୪୮ ଫେବୃଆରୀ ମାସରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କନଫରେନ୍ସ ହୁଏ କଲିକତାରେ ଏବଂ ୧୯୫୧ ମସିହାରେ କମ୍ୟୁନିଷ୍ଟ ପାର୍ଟି ଉପରୁ ବେଆଇନ ଆଦେଶ ଉଠିବା ପର୍ଯ୍ୟନ୍ତ କଠୋର ସଂଗ୍ରାମ ଭିତରେ ତାଙ୍କର ଜୀବନ ବିତିଯାଏ ।

୧୯୫୨ ମସିହାରେ ସେ ଫେରନ୍ତି କମ୍ୟୁନିଷ୍ଟ ପାର୍ଟିର ପାର୍ଲ୍ୟାମେଣ୍ଟ ଭିତରେ ସଂଗ୍ରାମ ଏବଂ ବାହାରେ ଜନସଂଗ୍ରାମର କାର୍ଯ୍ୟକୁ । ୧୯୮୦ ମସିହାରୁ ସେ ମୃତ୍ୟୁ ପର୍ଯ୍ୟନ୍ତ ପାନସ୍କୁରା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଛନ୍ତି ଲୋକସଭାକୁ ସାତଥର ଲଗାତର ଭାବରେ ଏବଂ ପାର୍ଲ୍ୟାମେଣ୍ଟ ଭିତରେ ମଧ୍ୟ ଖ୍ୟାତି ଲଭିଛନ୍ତି ଶ୍ରମଜୀବୀ ଜନତାର ସଚ୍ଚୋଟ ସଂଗ୍ରାମୀ ଭାବରେ । ସେ ନିଜେ ସାଧାରଣ ନିର୍ବାଚନରେ ଜୟଲାଭ କରିଛନ୍ତି, ତାଙ୍କ ପାଇଁ ସଂରକ୍ଷଣ ଲୋଡ଼ା ହୋଇନାହିଁ । କିନ୍ତୁ ସବୁ ନାରୀ ତ ଗୀତା ମୁଖର୍ଜୀ ନୁହନ୍ତି, ତେଣୁ ନାରୀର ବିକାଶ ପାଇଁ, ନାରୀ ହାତକୁ କ୍ଷମତା ଦେବା ପାଇଁ ସେ ସଂଗ୍ରାମ କରିଯାଇଛନ୍ତି ମୃତ୍ୟୁ ପର୍ଯ୍ୟନ୍ତ ।

ବୟସ୍ ବଢ଼ିଛି କିନ୍ତୁ ହାର ମାନିଛି ତାଙ୍କ ପାଖରେ । ପରିଣତ ବୟସ, ଦୁର୍ବଳ ସ୍ୱାସ୍ଥ୍ୟ ସତ୍ତ୍ୱେ ତାଙ୍କର ପରିଶ୍ରମ ହେଉଛି କଠୋର ଏବଂ କ୍ଳାନ୍ତିହୀନ । ମାର୍ଚ୍ଚ ଚାରି ତାରିଖରେ ଆଲିଗଡ଼ରେ ଦର୍ଶନ ଏବଂ ଇଂରାଜୀ ସାହିତ୍ୟର ପ୍ରବୀଣ ଗବେଷକ ସାବିରାଜାଇଦୀଙ୍କର ସ୍ମୃତିସଭାରେ ସେ ଭାଷଣ ଦେବାରେ ଥିଲା । ଏବଂ ସେ ବାଛିଥିଲେ ବିଷୟବସ୍ତୁ– ସଂସ୍କୃତି ଏବଂ ଶିକ୍ଷା କ୍ଷେତ୍ରରେ ସାମ୍ପ୍ରଦାୟିକ ଏବଂ ଫାସିବାଦୀ ଚିନ୍ତାଧାରାର ବିପଦ'' । ଏହି ବିପଦ ପ୍ରତି ଭାରତବର୍ଷର ଖୁବ୍ କମ ପ୍ରଗତିଶୀଳ ଚିନ୍ତକ ଧ୍ୟାନ ଦିଅନ୍ତି । ଫାସିବାଦୀ ଚିନ୍ତାଧାରା ଶିକ୍ଷା ଏବଂ ସଂସ୍କୃତିକୁ ଗ୍ରାସକରେ ଅଭିନବ ଉପାୟରେ । ତାହା ହେଉଛି ସବୁଠାରୁ ବଡ଼ ବିପଦର କାରଣ । ରାତିରେ ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଉଜାଗର ରହି ସେ ଭାଷଣର ଚିଠା କରିଛନ୍ତି କିନ୍ତୁ ତାକୁ ପଢ଼ିବା ପାଇଁ ମହାକାଳ ସୁଯୋଗ ଦେଲା ନାହିଁ ।

ଗୀତା ମୁଖର୍ଜୀଙ୍କୁ ଭୟ ଛୁଇଁ ନଥିଲା । ପୁଲିସ, ଗୁଣ୍ଡା, ଲାଠି, ଗୁଳି କାହାକୁ ସେ ମାନି ନାହାନ୍ତି କି ଭୟକରି ନାହାନ୍ତି । ସ୍ୱାଧୀନତା ପୂର୍ବରୁ ସେ ଯେପରି ଅନମନୀୟା ଥିଲେ ସ୍ୱାଧୀନତା ପରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ବିରୁଦ୍ଧରେ ମଧ୍ୟ ସେଇପରି ଅନମନୀୟା, ସାହସୀ । ରବୀନ୍ଦ୍ରନାଥ, କାଜି ନଜରୁଲ ଇସଲାମ, ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ କାବ୍ୟକବିତା ଝଂକୃତ ହେଉଥିଲା ତାଙ୍କର କଣ୍ଠରୁ, ପାର୍ଲ୍ୟାମେଣ୍ଟ ହଲରେ ମଧ୍ୟ ସେଇ କଣ୍ଠ ନିନାଦିତ ହେଉଥିଲା । ତାହାର ପ୍ରତିଧ୍ୱନି ଶୁଭିବ ବହୁକାଳ ଧରି ।

ସଂଗ୍ରାମୀ, ବିପ୍ଳବିନୀ ଏଇ ନାରୀ ଥିଲେ କାବ୍ୟିକ, କରୁଣାମୟୀ ଏବଂ ହାସ୍ୟମୟୀ ।

ନାରୀମାନଙ୍କ ପାଇଁ ଅଧିକାର ଥିଲା ତାଙ୍କର ଅନ୍ତିମ ଦିନ ଗୁଡ଼ିକର ଏକାନ୍ତ ପ୍ରିୟ ପ୍ରଚେଷ୍ଟା । କୌଣସି ସଂକୀର୍ଣ୍ଣତା ସେଥିରେ ନଥିଲା । ଆଜି ତାଙ୍କର ପରଲୋକ ହୋଇ ଯାଇଛି । ନାରୀ ମୁକ୍ତିର ମହାଯୋଦ୍ଧା ଆଜି ନିଦ୍ରିତ । ସେଇ ବିଲ୍‌କୁ ପାଶ କରାଇବା ହେବ ତାଙ୍କ ପାଇଁ ସବୁଠାରୁ ବଡ଼ ଶ୍ରଦ୍ଧାଞ୍ଜଳି ।

ଓଡ଼ିଶା ସହିତ ଗୀତା ଦି ଖୁବ୍ ପରିଚିତ ଥିଲେ । ମହାବାତ୍ୟା ଉପରେ ପାର୍ଲ୍ୟାମେଣ୍ଟରେ ଭାଷଣ ଦେଲାବେଳେ ତାଙ୍କ ଆଖିରୁ ଲୁହ ଝରୁଥିଲା ଏବଂ ସବୁ ଦଳର ସଭ୍ୟମାନଙ୍କ ଦୃଷ୍ଟି ଓଡ଼ିଶାର ବିପତ୍ତି ପ୍ରତି ଆକର୍ଷିତ ହୋଇଥିଲା । ଗୀତା ଦି ଙ୍କର ବ୍ୟକ୍ତିଗତ ବନ୍ଧୁମାନଙ୍କ ମଧ୍ୟରେ ନିରୂପମା ରଥ, ନନ୍ଦିନୀ ଦେବୀ ଅନ୍ତର୍ଭୁକ୍ତ । ଓଡ଼ିଶାର ବହୁ ବ୍ୟକ୍ତି, ବହୁ ସାଥୀଙ୍କ ସହିତ ତାଙ୍କର ପରିଚୟ ନିବିଡ଼ । ତାଙ୍କର ପରଲୋକରେ ଓଡ଼ିଶା ଏକ ପ୍ରଗାଢ଼ ବଂଧୁଙ୍କୁ ହରାଇଛି । ସାମ୍ୟବାଦୀ ଆନ୍ଦୋଳନ ପ୍ରଗତିଶୀଳ ଆନ୍ଦୋଳନ ଦରିଦ୍ର ହୋଇ ଯାଉଛି ତାଙ୍କର ତିରୋଧାନରେ ।



# ସଂସ୍କୃତିର ଉଦ୍‌ଗାତାଙ୍କର ବିଦାୟ

ବଂଧୁ ପ୍ରଦ୍ୟୁମ୍ନ ବଳଙ୍କର ସ୍ମୃତିସଭା ହେଉଛି, ସଦ୍ୟ ସେ ଛାଡ଼ିଯାଇଛନ୍ତି ଆମକୁ । ସମସ୍ତେ ବିଷାଦଭରା । ହଠାତ୍ ମନୋରମା ଦେବୀ ପହଞ୍ଚି ଖବର ଦେଲେ ଯେ ଅଧ୍ୟାପକ ଗୋବିନ୍ଦ ଉଦ୍‌ଗାତା ଆଉ ନାହାନ୍ତି । ମାତ୍ର କିଛି ସମୟ ତଳେ କଟକ ବଡ଼ ଡାକ୍ତରଖାନାରେ ତାଙ୍କର ପରଲୋକ ହୋଇଯାଇଛି । ମନଟା ଆହୁରି ବିଷାଦରେ ଭରିଗଲା । ପହଁରିଗଲା ଦୂର ଅତୀତକୁ । ତାଙ୍କ ସାଂଗରେ ଭେଟ, ଆଳାପ,ଆଲୋଚନାସବୁ ପହଁରି ଉଠିଲା ମନଭିତରେ । ସମସ୍ତେ ଉଠି ଠିଆହେଲୁ ଏଇ ବରପୁତ୍ର ସାହିତ୍ୟିକଙ୍କ ପାଇଁ ସମ୍ମାନ ପ୍ରଦର୍ଶନ ପାଇଁ । ହଠାତ୍ ଓଡ଼ିଆ ସାହିତ୍ୟ ଦରିଦ୍ର ହୋଇଗଲା । ସେ ଜଣେ ଭର୍ସାଟାଇଲ ଜିନିଅସ୍ (Versatile genius) ଥିଲେ ସାହିତ୍ୟ, ଅନୁବାଦ, ସାମ୍ବାଦିକତା ସବୁ ଦିଗକୁ ତାଙ୍କର ପ୍ରତିଭା ସମ୍ପ୍ରସାରିତ ହୋଇଥିଲା ଏବଂ ପ୍ରତ୍ୟେକ ବିଭାବ ତାଙ୍କର ଆଲେଖ୍ୟ ବହନ କରିଥିଲା ।

ଗୋବିନ୍ଦବାବୁ ୧୯୨୦ ମସିହା ମାର୍ଚ୍ଚ ୨୦ ତାରିଖରେ ବଲାଙ୍ଗୀର ସହର ଟିକ୍ରାପଡ଼ାରେ ଜନ୍ମଗ୍ରହଣ କରିଥିଲେ । ପୃଥ୍ୱୀରାଜ ହାଇସ୍କୁଲରୁ ମାଟ୍ରିକ ପାଶ କଲାପରେ, ସେ ଘରୋଇ ଭାବରେ ବି.ଏ. ଏବଂ ଏମ୍.ଏ. ଉତ୍କଳ ବିଶ୍ୱବିଦ୍ୟାଳୟରୁ ପାଶ କରିଥିଲେ । ଶିକ୍ଷକତା ସହିତ ତାଙ୍କର ନିଜ ଜୀବନର ଉଚ୍ଚଶିକ୍ଷା ସମାନ୍ତରାଳ ଭାବରେ ଚାଲିଥିଲା । ପରେ ସେ ବି.ଇଡି. ମଧ୍ୟ ପାଶ କରିଥିଲେ । ନାଗପୁର ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ଏମ୍.ଏ. ସାହିତ୍ୟାଚାର୍ଯ୍ୟ ପାଶ କରି କଲେଜରେ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ରେଭେନ୍ସା କଲେଜ ଓ ଗଂଗାଧର ମେହେର କଲେଜରେ ଅଧ୍ୟାପକ ଭାବରେ କାର୍ଯ୍ୟକଲା ପରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟରେ ଅଧ୍ୟାପକ ହୋଇଥିଲେ ଏବଂ ୧୯୭୯ ମସିହାରେ ଅବସର ଗ୍ରହଣ କରିଥିଲେ ।

ଗୋବିନ୍ଦ ବାବୁ ଅନେକ ପୁସ୍ତକର ରଚୟିତା ଏବଂ ଅନେକ ପୁସ୍ତକର ଅନୁବାଦକ ମଧ୍ୟ । ତାଙ୍କର ଶେଷ ଅନୁବାଦ ହେଉଛି ରମାକାନ୍ତ ରଥଙ୍କ ଶ୍ରୀରାଧାର ସଂସ୍କୃତ ରୂପାନ୍ତର । କିନ୍ତୁ ଏହାର ପ୍ରକାଶନ ଦେଖିବା ପାଇଁ ସେ ଆଉ ନାହାନ୍ତି ।

ତାଙ୍କ ଦ୍ୱାରା ରଚିତ ସାହିତ୍ୟ ସମୀକ୍ଷଣ (୧୯୬୩) ଅଳଙ୍କାର ପ୍ରସଙ୍ଗ (୧୯୭୮) ସାହିତ୍ୟ ପ୍ରସଙ୍ଗ (୧୯୮୧) ତପସ୍ୱିନୀରେ ସୀତା (୧୯୮୩) କାବ୍ୟଶିଳ୍ପୀ ଗଂଗାଧର (୧୯୯୨) ପ୍ରଭୃତି ପୁସ୍ତକ ପାଠକ ଓ ସମାଲୋଚକମାନଙ୍କ ଦ୍ୱାରା ଆଦୃତ ହୋଇଛି । ସମାଲୋଚନା ସାହିତ୍ୟକୁ ଋଦ୍ଧିମନ୍ତ କରି ଏକ ମୌଳିକ ଧାରାର ସୂଚନା ବହନ କରିଛି ।

ଅଳଙ୍କାର ପ୍ରସଙ୍ଗ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀର ପୁରସ୍କାର (୧୯୯୩) ଏବଂ କାବ୍ୟଶିଳ୍ପୀ ଗଂଗାଧର ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର (୧୯୯୫) ପାଇଛନ୍ତି । ଏହାଛଡ଼ା ତାଙ୍କର 'କାବ୍ୟ ଶିଳ୍ପୀ......' ପୁସ୍ତକ ଓଡ଼ିଆ ସାହିତ୍ୟକୁ ଏକ ଉଲ୍ଲେଖଯୋଗ୍ୟ ଅବଦାନ ।

ଅବସର ନେଲାପରେ ସେ କିଛିଦିନ ଦୈନିକ 'ହୀରାଖଣ୍ଡ' ପତ୍ରିକାର ସଂପାଦକ ମଧ୍ୟ ଥିଲେ ।

ଓଡ଼ିଶା ସାହିତ୍ୟ ଜୀବନରେ ସେ ଥିଲେ ଏକ ପ୍ରାଣବନ୍ତ ଉଚ୍ଛ୍ୱାସ । ସମସ୍ତଙ୍କୁ ଉତ୍ସାହ ଦେବା ତାଙ୍କ ଜୀବନର ଧର୍ମ । କାହାକୁ ସେ ନିରୁତ୍ସାହିତ କରିନାହାନ୍ତି । ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ରାଧାନାଥ ରଥଙ୍କ ସହିତ ତାଙ୍କର ଘନିଷ୍ଠତା ଥିଲା । କିନ୍ତୁ କାହାଠାରୁ ସେ କିଛି ଲୋଡ଼ି ନାହାନ୍ତି । ସାହିତ୍ୟିକ, ସାମ୍ବାଦିକ ଭାବରେ ସେ ଥିଲେ ବେଶ୍ ସ୍ୱାଭିମାନୀ ଏବଂ ନିର୍ଭୀକ । ସାମ୍ବାଦିକତାର ମସୀକୁ ଅସି ଭାବରେ ନିର୍ଭୀକ ଭାବରେ ଠିଆହେବା ପାଇଁ ସେ ଶିକ୍ଷା ଦେଇଯାଇଛନ୍ତି । ନମ୍ର, ବିନୟୀ, ଉଦାର କିନ୍ତୁ ସାଲିସହୀନ । କୌଣସି ମତେ ସେ ମୁଣ୍ଡ ନୁଆଁଇବାକୁ ପ୍ରସ୍ତୁତ ନୁହନ୍ତି ।

ତାଙ୍କ ସାଂଗରେ ବହୁ ସ୍ଥାନରେ, ବହୁ ସଭାସମିତିରେ, ଆଲୋଚନାଚକ୍ରରେ ଭେଟ ହୋଇଛି, ଆଳାପ ହୋଇଛି । ସେ ସଂକୀର୍ଣ୍ଣମନା ନଥିଲେ କିମ୍ବା ହୀନମନ୍ୟତା ତାଙ୍କୁ ସ୍ପର୍ଶକରି ନଥିଲା । ଉତ୍କଳୀୟ ସାହିତ୍ୟ, ସଂସ୍କୃତିର ସେ ଥିଲେ ନିର୍ଭୀକ ବାବଦୂକ ।

ଅସୁସ୍ଥ ହୋଇ ଆସୁଥିଲେ । କିନ୍ତୁ ଲେଖିବା, ପଢ଼ିବା ରହିଥିଲା ସେଇପରି ଅତୁଟ । ଜୀବନ ସରିଯିବ କିନ୍ତୁ ଜିଜ୍ଞାସା ସରିବ ନାହିଁ । ଏଇପରି ଏକ ମନୋଭାବରେ ସେ ଉଜ୍ଜଳି ରହିଥିଲେ ମୃତ୍ୟୁ ପର୍ଯ୍ୟନ୍ତ । ଜଗନ୍ନାଥଙ୍କର ସେ ଥିଲେ ଏକାନ୍ତ ଭକ୍ତ । ସେଇଠି ସେ ପଞ୍ଚଭୂତରେ ମିଶିଯିବା ପାଇଁ ଆଗ୍ରହୀଥିଲେ । ସାତଟି ଝିଅ ଏବଂ ଗୋଟିଏ ପୁଅ । ସମସ୍ତେ ନିଜ ନିଜ ବିଭାବରେ ପ୍ରତିଷ୍ଠିତ ।

ସମସ୍ତେ ଘେରି ଠିଆହୋଇଥିଲେ ତାଙ୍କ ଚାରିପଟେ । ଜୀବନଦୀପ ଲିଭିଲିଭି ଆସୁଥିଲା । ସଂସ୍କୃତିର ଏକ ଉଜ୍ଜ୍ୱଳ ବର୍ତ୍ତିକା ସ୍ତିମିତ ହୋଇ ଆସୁଚି । ଆଉ ଟିକକକୁ ଲିଭିଯିବ । ୧୯୯୯ ମସିହା ଡିସେମ୍ବର ୩୦ ତାରିଖ । ଅପରାହ୍ନ ୩ଟା ବାଜି ୪୫ ମିନିଟ । ମହାକାଳର ଝଂଜା ସେ ଦୀପକୁ ଲିଭାଇ ଦେଲା ଚିରଦିନ ପାଇଁ । ସେ ପାଲଟିଗଲେ ଆମ ପାଇଁ ଇତିହାସ ।



# ମରିନାହିଁ ସେ ତ ମରଣଜୟୀ

ଜୁନ୍ ୪, ୨୦୦୧ ମସିହା ।

ସକାଳ ।

ଟେଲିଫୋନ୍‌ଟା ବାଜୁଛି ତୁହାକୁ ତୁହା । ଝିଅ ଫୋନ ଧରିଲା । ଆସି ମୋତେ ଉଠେଇଲା ନିଦରୁ । କାଳେ କ'ଣ ହୋଇଯିବ ଭାବି ଚା' ଦେଲା ପିଇବାକୁ । ତା' ପରେ ଧୀରେ ଧୀରେ କହିଲା, ବାପା ଶୁଣିଲଣି, ଗୋବିନ୍ଦ ମହାନ୍ତି ଆଜି ପାହାନ୍ତିଆରୁ ଚାଲିଗଲେ । ତା'ପରେ ଅନେଇ ଦେଖିଲା କିଛି ପ୍ରତିକ୍ରିୟା ହେଉଛି ନା ନାହିଁ । କିଛି ନ ହେବା ଦେଖି କହିଲା ତମେ କ'ଣ ଯାଇ ପାରିବ ? କିମିତି ଯିବ ? ଆଖିରେ ଲୁହ ଢକେଇ ଆସୁଥିବା ଦେଖି, ଆଖି ଦୁଇଟାକୁ ରୁମାଲରେ ପୋଛି ପଚାରିଲା, ବାପା, ଆମ ସମସ୍ତଙ୍କୁ ଟିକିଏ ତାଙ୍କର ଜୀବନ କାହାଣୀ କହନ୍ତ ନାହିଁ !

ସେ ଠିକ୍ ବୁଝିଥିଲା । ଜଣକୁ କାହାକୁ କହିଦେଇ ପାରିଲେ ମନ ଭିତରର ଉଦ୍‌ବେଳନ କମିଯିବ ।

ଗୋବିନ୍ଦ ମହାନ୍ତି ।

ବାଜି ରାଉତ ଆଉ ତା'ର ସାଥୀମାନଙ୍କର ମର ଦେହକୁ ନେଇ ଚାଲିଛି ଶୋଭାଯାତ୍ରା । ଦେଶରେ ହିଂସ୍ର ଶାସନ, ରାସ୍ତା ନିଶୂନ, ରାତି ଆଇଁସିଆ । ତାରି ଭିତରେ ଚାଲିଛି ମଣିଷର ବିଶାଳ ଶୋଭାଯାତ୍ରା । ମେଡ଼ିକାଲରୁ ଖାନନଗର । ଉଛୁଳୁଛି ଜୟଧ୍ୱନି । ଲୋକେ ଗାଉଛନ୍ତି :

''ମାର ତୁ ଯେତେ ଗୁଳି,
ମରିବୁ ପଛେ ଡରିବୁ ନାହିଁ,
ଯାଆନା ଏହା ଭୁଲି ।''

ଯେଉଁମାନେ ସେଦିନ ଏଇ ଗୌରବର ଭାଗୀଦାର ଥିଲେ ସେମାନଙ୍କ ମଧ୍ୟରେ ଥିଲେ ଗୋବିନ୍ଦ ମହାନ୍ତି ।

ରେଭେନ୍ସା କଲେଜରେ ପାଠ ପଢ଼ିଥିଲେ କିଛିବର୍ଷ ପାଇଁ । ଜଣେ ମେଧାବୀ ଛାତ୍ର, ଜଣେ ତୀକ୍ଷ୍ଣ ବକ୍ତା ଭାବରେ ତାଙ୍କର ଖ୍ୟାତି ଥିଲା । ଜୀବନର ବିଭିନ୍ନ ବିଭାବରେ ପ୍ରତିଷ୍ଠିତ ବହୁ ବ୍ୟକ୍ତି ତାହା ସ୍ମରଣ କରନ୍ତି । ଜୀବନର ରାଜପଥରେ କିଏ କେଉଁ ବାଟରେ ଯାଉଛନ୍ତି ତାହାର ଠିକଣା ନାହିଁ କିନ୍ତୁ ସେମାନଙ୍କ ମଧ୍ୟରେ ପାରସ୍ପରିକ ବଂଧୁତା ରହିଛି ସେଇପରି ଉଷ୍ମ ! ତାହା ଗୋବିନ୍ଦ ବାବୁଙ୍କର ଅନ୍ୟତମ ବିଶେଷତ୍ୱ ।

୧୯୧୫ ମସିହାରେ ଜଗତସିଂହପୁର ଜିଲ୍ଲାର ସାତପୁରା ଗ୍ରାମରେ ତାଙ୍କର ଜନ୍ମ । ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ବିନୋଦ କାନୁନଗୋଙ୍କର ସେ ହେଉଛନ୍ତି ଭଣଜା । ମାଇଁ ବସନ୍ତି ସବାରୀରେ । ନୂଆ ବୋହୂଟିଏ ଯାଉଛି । ଆଗରେ ବସିଛି ଭଣଜା । ଦିହିଁଙ୍କ ମଝିରେ ମାଠିଆଟିଏ– ଗୁଡ଼ କି ମିଠା କେଜାଣି ? ପିଲାମାନେ ଦୌଡୁଛନ୍ତି । ରାସ୍ତାରେ ଝିଅବୋହୂମାନେ ଠିଆହୋଇ ଦେଖୁଛନ୍ତି । ବାଟରେ ଯାଉଥିବା ଲୋକେ ଅଟକି ଯାଉଛନ୍ତି ସବାରୀକୁ ଦେଖି । ପିଲାଟି ମାଠିଆ ଭିତରୁ କ'ଣ ସବୁ ଆଣି ବାଣ୍ଟିଦେଉଛି ଲୋକଙ୍କୁ । ମିଠା କ'ଣ ହୋଇଥିବ ଅବା !

ସେଗୁଡ଼ାକ ଯେ ଗୁପ୍ତ ପ୍ରଚାରପତ୍ର, ବ୍ରିଟିଶ ସରକାର ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ପାଇଁ ଏକଥା କିଏ ଜାଣିଥିଲା ? ପୁଲିସ୍ ଟେର ପାଇ ଖୋଜିଲା ବେଳକୁ କାମ ସରିଯାଇଛି । ନୂଆବୋହୂ ଘରକୁ ଫେରିଗଲାଣି ।

ହଁ ମେରା ଭାଇରେ ହୁଁ..... ଡାକ ଆଉ ଶୁଭୁ ନାହିଁ ।

ଗୋବିନ୍ଦ ମହାନ୍ତି ଇସ୍ପାତ ହୋଇଛନ୍ତି ।

ମେଡ଼ିକାଲ ଛାତ୍ର ଧର୍ମଘଟ, ପରୀକ୍ଷା ବୟକଟ ଆନ୍ଦୋଳନ ଦେଖିଲା ଗୋବିନ୍ଦ ମହାନ୍ତିଙ୍କୁ । ସେ ୧୯୪୦ ମସିହାରେ କାରାବରଣ କଲେ । ସାମ୍ୟବାଦୀ, ସମାଜବାଦୀ ଚିନ୍ତାଧାରାର ନାୟକମାନଙ୍କ ସହିତ ସଂପର୍କ ସେଇ ଦିନରୁ । ଗୋବିନ୍ଦ ମହାନ୍ତି କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଯୋଗଦେଲେ । ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ବୈଷ୍ଣବ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ ପ୍ରଭୃତିଙ୍କ ସହିତ ସୌହାର୍ଦ୍ଦ୍ୟ ସେଇଦିନରୁ । ଜନସଂଗ୍ରାମ ଭିତରେ ସେଇ ସହଯୋଦ୍ଧୃତ୍ୱ ଶାଣିତ ହୋଇଛି ।

ଗୋବିନ୍ଦ ମହାନ୍ତି ସମାଜବାଦୀ ହୋଇଛନ୍ତି । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ଦେଖିଲା ଗୋବିନ୍ଦ ବାବୁଙ୍କୁ ବ୍ରହ୍ମପୁର ଜେଲ୍‌ରେ । ସେଇ ଜେଲ୍‌ରେ ହିଁ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ, ସାମ୍ୟବାଦୀ ପାଲଟିଲେ । ପଛକୁ ସେ ଆଉ ଫେରି ଅନେଇ ନାହାନ୍ତି ।

ଜେଲରୁ ସବୁ ଫେରି ସେ ଚାଷୀ ଶ୍ରମିକ କ୍ଷେତ ମଜଦୁରମାନଙ୍କର ସଂଗଠନ ଏବଂ ଆନ୍ଦୋଳନ ଗଢ଼ି ତୋଳିଲେ । ପୁରୀ, ଗଂଜାମ ଜିଲ୍ଲା ମୁଖ୍ୟତଃ ତାଙ୍କର କର୍ମସ୍ଥଳୀ ପାଲଟିଲା । ବ୍ରଜରାଜନଗର କାଗଜକଳର ଶ୍ରମିକ, ବାରଙ୍ଗ କାଚ କାରଖାନାର ମୂଲିଆ

ତାଙ୍କୁ ଦେଖିଲା କୁଲି ବସ୍ତି ଭଂଗା ଟିଣ ଘରେ । କଟକ ପ୍ରେସ ଶ୍ରମିକର ଚାଳ ଘରେ ତାଙ୍କୁ ଦେଖିବାକୁ ମିଳିଲା । ସେ ତ୍ୟାଗର ପଟାନ୍ତର ବିରଳ ।

ସ୍ୱାଧୀନତା ମିଳିଛି । କିନ୍ତୁ ଏଇ କ'ଣ ଭାରତବର୍ଷର ମେହନତୀ ମଣିଷ, ବୁଦ୍ଧିଜୀବୀ, ସାହିତ୍ୟିକ, ଶିଳ୍ପୀର ସ୍ୱାଧୀନତା ? ସେ ସ୍ୱାଧୀନତା ମିଳି ନାହିଁ । ଆଉରି ଏକ ସ୍ୱାଧୀନତା ଆନ୍ଦୋଳନ ଆବଶ୍ୟକ । ସେଥିପାଇଁ ଦରକାର କଠିନ ସଂଗ୍ରାମ । ଯେଉଁ କଥା ଗୋବିନ୍ଦ ମହାନ୍ତି ଏବଂ ତାଙ୍କର ସହକର୍ମୀମାନେ କହିଲେ ୧୯୪୮ ମସିହାରେ, ସେଇ କଥା ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି କହିଲେ ୧୯୬୮ ମସିହାରେ ।

ଗୋବିନ୍ଦ ମହାନ୍ତି ପାର୍ଟି କ୍ଲାସ ନେବାକୁ ଆରମ୍ଭ କଲେ । କ୍ୟାଡ଼ରମାନଙ୍କୁ ତାତ୍ତ୍ୱିକ ତାଲିମ ଦେବାକୁ ପଡ଼ିବ । ନଚେତ ସେମାନେ ତିଷ୍ଠିପାରିବେ ନାହିଁ ଆକ୍ରମଣ ସମ୍ମୁଖରେ । ଗୋବିନ୍ଦ ମହାନ୍ତି ବହି ଲେଖିଲେ । ବୀର ବୈଷ୍ଣବ ଠାରୁ ଲେନିନ, ଢ଼େଙ୍କାନାଳ ପ୍ରଜା ଆନ୍ଦୋଳନର ଇତିହାସ ଠାରୁ ସ୍ୱାଧୀନତା ଆନ୍ଦୋଳନର ଇତିହାସ । ସେ ଅନୁବାଦ କଲେ ସହଯୋଦ୍ଧା ୰ କୃଷ୍ଣ ପ୍ରସାଦ ପଟ୍ଟନାୟକଙ୍କ ସହିତ ମିଶି ମହାପଣ୍ଡିତ ରାହୁଲ ସଂକୃତାୟନଙ୍କ ବହି 'ଭଲଗାରୁ ଗଂଗା' । ଇତିହାସ, ମାନବୀୟ ସଭ୍ୟତା ଉପରେ ନୂତନ ବୟାନ ।

ଗୋବିନ୍ଦ ମହାନ୍ତିଙ୍କ କଲମ ପୋଷା ମାନିଲା । ସେ ଅସୁସ୍ଥ ହୋଇ ପଡ଼ିଲେ । ଗଲେ ସୋଭିଏଟ୍ ଦେଶରେ ଚାକିରି କରିବା ପାଇଁ ସହ-ସଂପାଦକ ଭାବରେ । ମୁଁ ଦେଖିଛି ରାଷ୍ଟ୍ରଦୂତ, କନସଲ୍ ଜେନେରାଲମାନେ ତାଙ୍କୁ ଆସି ନମସ୍କାର କରିବାର । ସେତିକି ସମ୍ମାନ ସେମାନେ ଦେଉଥିଲେ ତାଙ୍କୁ ।

ସେ କିନ୍ତୁ ଫେରିଲେ । ଧୂଳି, ମାଟିର ମଣିଷ ତାଙ୍କୁ ଡାକିଲା । ସେ ପୁଣି ଫେରିଲେ ସେଇ କର୍ମମୟ, ନିରଳସ କର୍ମମୟ ଜୀବନକୁ । ଉପାଧି ଖୋଜି ନାହାନ୍ତି, ଟିକଟ ଖୋଜି ନାହାନ୍ତି, ପଦବୀ ଖୋଜି ନାହାନ୍ତି । ମୋତେ ଦାହ କରିବ ଇଲେକ୍‌ଟ୍ରିକ ଚୁଲ୍ଲୀରେ । ମୋ ପାର୍ଟି ପାଇଁ ସବୁ ପୁଅମାନେ ମାସକୁ କିଛି କିଛି ଦାନ ଦେବ । ମୋ ବହି ସବୁର ସ୍ୱତ୍ୱାଧିକାରୀ ହେଉଛି କମ୍ୟୁନିଷ୍ଟ ପାର୍ଟି । ଘରକୁ କେହି ସମାଜବାଦୀ, ସାମ୍ୟମାବୀ କର୍ମୀ ଆସିଲେ ତାଙ୍କୁ ଉଦାର ଆତିଥ୍ୟ ଦେଖାଇବ । ଏଇ ହେଉଛି ତାଙ୍କର ଶେଷ ଇଚ୍ଛା ।

ପାର୍ଟି ବିଭକ୍ତ ହୋଇଛି । ଅନେକ ଛାଡ଼ି ଚାଲି ଯାଇଛନ୍ତି । କିନ୍ତୁ ଆପଣ ରହିଛନ୍ତି ଅବିଚଳ, ଦୂର ସେଇ ପର୍ବତର ଶୃଙ୍ଗ ଭଳି ।

ଆପଣ ଗୋବିନ୍ଦ ବାବୁ ମହାନ୍ । କେହି ସାମ୍ୟବାଦୀ ଏପରି ଲେଖି ଯାଇଥିବାର ମୁଁ ଜାଣେ ନାହିଁ । ଆପଣ ମୋର ଆଦ୍ୟଗୁରୁ, ରାଜନୈତିକ ଗୁରୁ । ଆପଣଙ୍କୁ ସଲାମ୍, ଲାଲ ସଲାମ୍ ।



# ଲୁହରେ ପଖଳା ସ୍ମୃତି

ଗୌର ଆଉ ନାହିଁ । ତାକୁ ଆଉ ଦେଖିବାକୁ ମିଳିବ ନାହିଁ । ତାକରଡ଼ାର ଚାଷୀ, ଋଷିକୂଲ୍ୟା ନଈର ପାଣି, ହେମ ନାମେ ବାଳୀ ରଇତ ଦୁଲାଳୀର ବଂଶଧରମାନେ ତାକୁ ଆଉ ଦେଖିପାରିବେ ନାହିଁ ।

ମାତ୍ର ୬୫ ବର୍ଷ ବୟସରେ ସେ ଆଖିବୁଜି ଦେଲା ବ୍ରହ୍ମପୁର ଡାକ୍ତରଖାନାରେ । କ'ଣ ହୋଇଥିଲା ତା'ର ? ବଂଧୁ ଚନ୍ଦ୍ରମଣି ନାୟକ ଆଖିରୁ ଲୁହ ପୋଛୁଚନ୍ତି, ବଂଧୁ ବିପିନ ବିହାରୀ ରଥଙ୍କର କଣ୍ଠ ବାଷ୍ପରୁଦ୍ଧ ! କେହି କିଛି କହିପାରୁ ନାହାନ୍ତି ।

ଗୌର ଜନ୍ମ ହୋଇଥିଲା ବୀର ମାଟି ତାକରଡ଼ାରେ । ପିତା ଗୋବିନ୍ଦ ପ୍ରଧାନ ଗଂଜାମ ଜିଲ୍ଲାର ପ୍ରବାଦ ପୁରୁଷ, ପିତୃବ୍ୟ ରାଧାକୃଷ୍ଣ ପ୍ରଧାନ ମଧ୍ୟ ସ୍ୱନାମଧନ୍ୟ ରଇତନେତା । ସଂଗ୍ରାମ ଆସିଥିଲା ରକ୍ତରେ, ସାମ୍ୟର ସମାଜ ଥିଲା ସ୍ୱପ୍ନ ହୋଇ ଆଖିରେ ।

ପାଠ ପଢ଼ିଥିଲା ଏବଂ ସେଇ ଅବସ୍ଥାରୁ ହିଁ ସେ ନିଖିଳ ଭାରତ ଛାତ୍ର ସଂଘର ଜଣେ ସେନାପତି ପାଲଟିଥିଲା । ପଢ଼ିବାକୁ ଯାଇଥିଲା ଯାଦବପୁର ଇଂଜିନିଅରିଂ କଲେଜରେ । ସେଠାରୁ ସ୍ନାତକ ହୋଇଥିଲା । ଇଂଜିନିଅର ଗୌରଚନ୍ଦ୍ର ପ୍ରଧାନ କିନ୍ତୁ ଫେରିଥିଲା ଗାଁ ମାଟିକୁ ଚାଷୀ ହେବା ପାଇଁ ଏବଂ ରଇତ କୁଳର ନେତା ହେବା ପାଇଁ । ଚାକିରି କରିବା ପାଇଁ ନୁହେଁ । ସେ ପାଲଟିଥିଲା ଚାଷୀ ଏବଂ ଚାଷୀର ନେତା । ଆସିକା ସମବାୟ ଚିନି କାରଖାନାର ଗଠନ, ବିକାଶ ଉଭୟରେ ଗୋବିନ୍ଦ ପ୍ରଧାନଙ୍କର ପରିବାରର ଅବଦାନ ପ୍ରଭୂତ । ସେମାନେ ଖାଲି ଚାଷୀ ବା ତାହାର ନେତା ନଥିଲେ । ଦେଶର ବିକାଶ, ଶିଳ୍ପର ବିକାଶ ମଧ୍ୟ ସେମାନଙ୍କର ଲକ୍ଷ୍ୟ ଥିଲା । ଗୌରଚନ୍ଦ୍ର ଥିଲେ ସେଇ ଅବଦାନର ଉପଯୁକ୍ତ ଦାୟାଦ, ପ୍ରତିଭୂ ।

ଗୋବିନ୍ଦ ପ୍ରଧାନ, ରାଧାକୃଷ୍ଣ ପ୍ରଧାନ, ସଦାନନ୍ଦ ମହାନ୍ତି, ଲକ୍ଷ୍ମଣ ମହାପାତ୍ର, ବନମାଳୀ ମହାରଣା, ଦିବାକର ପଟ୍ଟନାୟକ, ବିଜୟ ଚନ୍ଦ୍ର ଦାସ ଗଂଜାମ ଜିଲ୍ଲାର ବହୁ ପୁରୁଣା ନେତା ବାହୁଡ଼ିଗଲେ ଖୁବ୍ ଅଳ୍ପ ସମୟର ବ୍ୟବଧାନରେ । ଗଂଜାମ ଜିଲ୍ଲା ହଠାତ୍

କିମିତି ନେତୃଶୂନ୍ୟ ହୋଇଗଲା । ଏହା ଫଳରେ ସାମ୍ୟବାଦୀ ଆନ୍ଦୋଳନର କ୍ଷତି ହେଲା ପ୍ରଭୂତ । ସମାଜବାଦୀ ଚିନ୍ତାଧାରାର ଉଷ୍ଣତା କମିଯିବାର ପ୍ରଭାବ ପଡ଼ିଲା, ଗୌରଚନ୍ଦ୍ରଙ୍କ ଉପରେ । ସେ ସମାଜବାଦୀ ଆନ୍ଦୋଳନରୁ ନିଷ୍କ୍ରାନ୍ତ ହୋଇଗଲେ । କିନ୍ତୁ ଚାଷୀ ବା ରଇତକୁଳର ସଂଗ୍ରାମ ଛାଡ଼ିଲେ ନାହିଁ ।

ସେ ଜନତା ଦଳ, ପରେ ବିଜୁ ଜନତା ଦଳରେ ଯୋଗଦେଲେ । ବାପା ଗୋବିନ୍ଦ ପ୍ରଧାନ ପ୍ରବାଦ ପୁରୁଷ । ନେତା, କର୍ମୀ, ସରକାରୀ କର୍ମଚାରୀ ସମସ୍ତେ ତାଙ୍କ ପରିବାରର ବଂଧୁ । ଏହା ସହିତ ରାଜନୈତିକ ମତବାଦ ବା ନିଷ୍ପତ୍ତିର କୌଣସି ସଂପର୍କ ନାହିଁ । ବଂଧୁ ଚନ୍ଦ୍ରମଣି ନାୟକ ଭଂଜନଗରରେ ଏସ୍.ଡି.ଓ । ତାଙ୍କ ପାଖରେ କିଛି ମୋକଦ୍ଦମା ବିଚାର ପାଇଁ ରହିଛି ଗୌରଚନ୍ଦ୍ରଙ୍କର । ବଂଧୁ ପ୍ରବୀର ପାଲିତ, ବଂଧୁ ରମାକାନ୍ତ ମହାପାତ୍ର ଗୌରଚନ୍ଦ୍ରଙ୍କର ଓକିଲ । ସମସ୍ତେ ଏକାଠି ଖାଇଲେ ଚନ୍ଦ୍ରମଣିଙ୍କ ଅତିଥି ଭାବରେ । କିନ୍ତୁ ନିଷ୍ପତ୍ତି ଗଲା ଗୌରଚନ୍ଦ୍ରଙ୍କ ବିରୁଦ୍ଧରେ । ଏହା ସତ୍ତ୍ୱେ ସଂପର୍କ ମଳିନ ହୋଇ ନାହିଁ । ଚନ୍ଦ୍ରମଣି ଏବଂ ମୁଁ ଏକା ସଂଗରେ ଯାଇଛୁ ପକରଡ଼ା ବହୁବାର ତାଙ୍କ ପରିବାରର ଅତିଥି ହୋଇ ।

ସେଦିନ ହଠାତ୍ ଦେଖାହେଲା ଗୌରଚନ୍ଦ୍ରଙ୍କ ସହିତ ରୁଷିକୂଲ୍ୟା ଉପରେ ବଂଧ ନିର୍ମାଣ ହୋଇ ଗୋପାଳପୁର ପ୍ରସ୍ତାବିତ ଇସ୍ପାତ କାରଖାନାକୁ ପାଣି ଯୋଗାଯିବ କି ନାଇଁ ସେଇ ଆନ୍ଦୋଳନର ପୀଠ ଉପରେ । ପାହାଡ଼ଘେରା ଅଞ୍ଚଳ, ପାହାଡ଼କୁ କାଟି ବୋହିଯାଉଛି ରୁଷିକୂଲ୍ୟା । ଆଉ ରୁଷି ନାହାନ୍ତି କି ଏହା ଏକ କୂଲ୍ୟା ନୁହେଁ । ଆଖୁଚାଷୀମାନଙ୍କର ଏହା ହେଉଛି ଜୀବନନାଡିକା ! ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ଗୌରଚନ୍ଦ୍ର । ସାକ୍ଷ୍ୟ ନିଆଯାଉଛି ଜନସାଧାରଣଙ୍କ ଠାରୁ ।

ସେଇଠି ଗପ, ଆଲୋଚନା ରୋମନ୍ଥନ ସବୁ ହେଲା । ଗୋବିନ୍ଦ ପ୍ରଧାନଙ୍କର ସ୍ୱପ୍ନ ବି ଆଲୋଚନା ହେଲା । ସେଇ ଶେଷ ସାକ୍ଷାତ । ଆଉ ଭେଟ ହୋଇନାହିଁ କି ଆଉ ଭେଟ ହେବ ନାହିଁ ।

ଗୌର ଆଉ ନାହିଁ । କିନ୍ତୁ ସ୍ମୃତି ରହିବ ଜାଗରୂକ ଚିରକାଳ । ଗଂଜାମ ଜିଲ୍ଲାର ରଇତକୁଳ ତାକୁ ଯେପରି ହେଜିବେ ଠିକ୍ ସେଇପରି ହେଜିବେ ତାର ଅଗଣିତ ବଂଧୁ । ରାତି ପାହିବାକୁ ଅନେକ ଡେରି । ଆଗରେ ରହିଛି ତିକ୍ତ ଅଂଧକାର । ତାକୁ ଭେଦ କରି ଆଗକୁ ଗଲାବେଳେ ତମେ ମନେପଡ଼ିବ ଗୌରଚନ୍ଦ୍ର ଆଗାମୀ ପୀଢ଼ିର ଯୁବକ ଯୁବତୀମାନଙ୍କ ମନରେ ।

ସେଇ ତୁମର ସାର୍ଥକତା ।



# ନୂଆବୋଉ

ଶ୍ରୀମତୀ ଜ୍ଞାନଦା ପଟ୍ଟନାୟକ ଆଉ ନାହାନ୍ତି । ସେ ମୋର ନୂଆବୋଉ । କିନ୍ତୁ ନୂଆବୋଉ ହେବା ପୂର୍ବରୁ ତାଙ୍କ ସହିତ ମୋର ପରିଚିତି । ସେ ମୋର ସମସାମୟିକ । କଟକ ସହରରେ, ଚଣ୍ଡୀ ମନ୍ଦିର ପାଖରେ ତାଙ୍କର ପୈତୃକ ବାସଭବନ । ତାଙ୍କର ବାପାଥିଲେ ଡାକ୍ତର । ତାଙ୍କର ଭାଇ ୰ ସରୋଜ ଚୌଧୁରୀ ବନ୍ୟ ବିଭାଗର ପ୍ରବାଦ ପୁରୁଷ । ବ୍ୟାଘ୍ର (ବିଶେଷତଃ ଖଇରୀ ବାଘ) ଉପରେ ଗବେଷଣା ପାଇଁ ତାଙ୍କର ଖ୍ୟାତି ଥିଲା ପ୍ରଭୂତ । ବାପା ମା'ର ଗେହ୍ଲା ଝିଅ ଜ୍ଞାନଦା ବେଶ ସଉକିନିରେ ବଢ଼ିଥିଲେ । ପାଟନା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଏବଂ ପରବର୍ତ୍ତୀ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଆଇନରେ ସ୍ନାତକ ଡିଗ୍ରୀ ପାଇଥିଲେ ।

ଆଇନ ପଢ଼ିଲା ସମୟରେ ତାଙ୍କର ଦେଖାହୁଏ ଅଖିଳ ମୋହନ ପଟ୍ଟନାୟକଙ୍କ ସହିତ । ଜଣେ ଗାଳ୍ପିକ ଏବଂ ବକ୍ତା ଭାବରେ ଅଖିଳମୋହନ ଥିଲେ ପ୍ରସିଦ୍ଧ । ନାରୀମାନଙ୍କୁ ଆକୃଷ୍ଟ କରିବାରେ ସେ ଥିଲେ ଧୂରନ୍ଧର ।

ଠିକ୍ ସେଇପରି ଜ୍ଞାନଦା ଚୌଧୁରୀ ମଧ୍ୟ ଥିଲେ ଯୁବକମାନଙ୍କର ସ୍ୱପ୍ନ । ତାଙ୍କର ବେଶଭୂଷା, କଥା କହିବାର ଭଙ୍ଗୀ ତାଙ୍କର ବ୍ୟବହାର ସମସ୍ତଙ୍କୁ ଆକୃଷ୍ଟ କରୁଥିଲା ଯଦିଓ ସେ ସୁନ୍ଦରୀ ନଥିଲେ । ମଣିଷର ପରିଚୟ, ମଣିଷର ଆକର୍ଷଣ କଣ ଥାଏ ଖାଲି ରୂପରେ ?

ସେଇଟା ବୋଧହୁଏ ୧୯୫୧ ମସିହା ଜୁଲାଇ ମାସ ବେଳର କଥା । ଜ୍ଞାନଦା ଚୌଧୁରୀ ଏବଂ ଅଖିଳ ମୋହନ ପ୍ରେମ ପାଶରେ ନିବନ୍ଧ ହେଲେ ଏବଂ ପରବର୍ତ୍ତୀ କାଳରେ ବିବାହ କଲେ । ଜ୍ଞାନଦା ଦେବୀ ଖ୍ରୀଷ୍ଟିଆନ, ଅଖିଳ ମୋହନ ହିନ୍ଦୁ । କିନ୍ତୁ ଉଭୟେ ସମାଜ ସଂସ୍କାରକ । ବିବାହ ପାଇଁ ଖୁବ୍ ବେଶି ପ୍ରତିରୋଧ ଉଠି ନଥିଲା, ଥିଲେ ବି ତାକୁ ଖାତିର ନ କରିବାର ସାହସ ଉଭୟଙ୍କର ପାଖରେ ଥିଲା ପ୍ରଚୁର ।

ବିବାହ ପରେ କିନ୍ତୁ ଜ୍ଞାନଦା ପଟ୍ଟନାୟକଙ୍କର ବେଶଭୂଷା, ଚାଲିଚଳଣରେ ବିରାଟ ପରିବର୍ତ୍ତନ ଘଟିଥିଲା । ତାଙ୍କୁ ତ ମୁଁ ଥଟ୍ଟାରେ ଡାକୁଥିଲି ଫୁଲୁରି ନୂଆବୋଉ । କିନ୍ତୁ କୁଆଡ଼େ ଗଲା ତାଙ୍କର ସେ ବେଶଭୂଷା, ସେ ଅତର, ସେ ଶାଢ଼ୀ ?

ସେ ପାଲଟିଗଲେ ଆମର ଠିକ୍ କଳ୍ପିତ ନୂଆବୋଉ ହୋଇ । ଅଖିଳ ଭାଇ ବୟସରେ ବହୁତ ବଡ଼, ପୁଣି ଆମର ନେତା । ତାଙ୍କ ସାଂଗରେ ଭେଟ ମିଳିବା କଠିନ । ଆମର ସବୁ କାମ, ଅଳି ଅର୍ଦ୍ଦଳି, ଥଟ୍ଟା ତାମସା ନୂଆବୋଉଙ୍କ ସାଂଗରେ । ସାମାଜିକ ଚେତନା ତାଙ୍କର ଥିଲା ବେଶ୍ ଉଷ୍ଣ କିନ୍ତୁ ସୁପ୍ତ ।

ତାହା ଜାଗ୍ରତ ହେଲା ପୁଣି ଥରେ ଯେତେବେଳେ ଅଖିଳ ମୋହନ ତାଙ୍କୁ ଛାଡ଼ି ଚାଲିଗଲେ । ସେ ଯେପରି ପାଇଲେ ଏକ ଅନନ୍ତର ପ୍ରେରଣା, ଉତ୍ସାହ । ସେ ବର୍ତ୍ତମାନ ଉଭାହେଲେ ଜଣେ ସମାଜସେବୀ ଭାବରେ ।

ତାଙ୍କର ପରଲୋକ ସମସ୍ତଙ୍କୁ ସ୍ତବ୍ଧ କରିଦେଇଛି । ଲୁହ ଝରିବାକୁ ମଧ୍ୟ ସମୟ ମିଳିନାହିଁ । ସେଇ ମନମତାଣିଆ ହସ, ସେଇ ଗେହ୍ଲା ଡାକ । ଅସୁସ୍ଥତାର କୌଣସି ଗଂଧ ନାହିଁ । ୧୦ ଜାନୁଆରୀ, ୨୦୦୧ । ନୂତନ ଶତାବ୍ଦୀ ଆରମ୍ଭ ହୋଇଛି । କେତେ ପ୍ରକାର ପରିକଳ୍ପନା ସେ କରିଥିଲେ ନୂତନ ଶତାବ୍ଦୀ ପାଇଁ । ସକାଳ ଆଠଟା । ସେ ଟେଲିଫୋନ କରୁଛନ୍ତି ଏବଂ ହଠାତ୍ ଖସି ପଡ଼ିଛନ୍ତି ମୃତ ଅବସ୍ଥାରେ । ହୃଦଯନ୍ତ୍ର କ୍ରିୟା ହଠାତ୍ ବନ୍ଦ ହୋଇଛି । ଅଖିଳ ମୋହନ ରଥଦାଣ୍ଡ ସାହିର ତାଙ୍କ ଘର ନାମ ଦେଇଥିଲେ 'ବାଲିଘର' । ସେଇ ବାଲିଘର ପରି ଭୁଷୁଡ଼ି ପଡ଼ିଛନ୍ତି ନୂଆବୋଉ । ଜୀବନକୁ ଟପି ଚାଲିଯାଇଛନ୍ତି ମରଣର ଅମୃତ ସୋପାନକୁ !

କି ରାଜକୀୟ ମୃତ୍ୟୁ ? ଈର୍ଷା ହେଉଛି ତୁମ ଉପରେ ନୂଆବୋଉ । ଦୁଃଖ ନାହିଁ, ଯନ୍ତ୍ରଣା ନାହିଁ, କାହାରିକୁ ଦଣ୍ଡ ଦେଇନାହାନ୍ତି, ହଇରାଣ କରି ନାହାନ୍ତି । କାମ କରି ଚାଲିଛନ୍ତି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଇମିତି ମୃତ୍ୟୁ କେତେ ଜଣଙ୍କର ଆସେ ?

ଅନେକ କାମ ଅଧାରେ ରହିଯାଇଛି । କିନ୍ତୁ ମୃତ୍ୟୁ ତ ତାର ହିସାବ ରଖେ ନାହିଁ । ମହାକାଳର ନିୟମ ସ୍ୱତନ୍ତ୍ର । ତାଙ୍କ ଦ୍ୱାରା ନିର୍ମିତ ବୈଷୟିକ ଶିକ୍ଷ ତାଲିମ ସଂସ୍ଥା 'ସିଦ୍ଧାନ୍ତ' ତାଙ୍କୁ ଝୁରୁଛି । ରାଜ୍ୟ ଲେଖିକା ସଂସଦର ସେ ଥିଲେ ଜଣେ ଅଗ୍ରଣୀ । ଲେଖିକାମାନଙ୍କର ଲେଖନୀ ଧୀର ହୋଇଯାଇଛି, ଏକ ସକ୍ରିୟ ସହକର୍ମୀର ପରଲୋକରେ । ମହିଳା ଦକ୍ଷତା ସମିତିର ସଭାପତି ଭାବରେ ତାଙ୍କର କର୍ମଦକ୍ଷତା ଓ ନେତୃତ୍ୱ ସ୍ମରଣ କରୁଛନ୍ତି ସମାଜର ବିଭିନ୍ନ ବିଭାବର ମଣିଷ । ସେମାନଙ୍କ ଭିତରେ ନେତା ଅଛନ୍ତି, କର୍ମୀ ଅଛନ୍ତି, ଅଛନ୍ତି

ସାଧାରଣ ମଣିଷ । ସମସ୍ତେ ହେଉଛନ୍ତି ତାଙ୍କର କର୍ମ ଦକ୍ଷତା ଓ ନେତୃତ୍ୱ । ଭାରତୀୟ ରେଡ଼କ୍ରସ ସୋସାଇଟି ସହିତ ସେ ନିବିଡ଼ ଭାବରେ ସଂପୃକ୍ତ ଥିଲେ ଏବଂ ସମସ୍ତଙ୍କୁ ରେଡ଼କ୍ରସର ସଭ୍ୟ ହେବାପାଇଁ ତଥା ରେଡ଼କ୍ରସର କାର୍ଯ୍ୟରେ ସହଯୋଗ ପାଇଁ ତାଙ୍କର ନିବେଦନ ଥିଲା ସାର୍ବଜନୀନ ।

ଆମ ଦେଶରେ ସାମାଜିକ ସଂଗଠକ, ଅଙ୍ଗୀକାରବଦ୍ଧ ମଣିଷର ସଂଖ୍ୟା କମିଯାଉଛି । ମହିଳାମାନଙ୍କ କ୍ଷେତ୍ରରେ ତ ତାହା ନଗଣ୍ୟ । ଏଇ ସମୟରେ ଛନ୍ଦା ଦେବୀଙ୍କର ପରଲୋକ ଅପୂରଣୀୟ ।

'ବାଲିଘର' ଭାଙ୍ଗିଯାଇଛି କିନ୍ତୁ ତାଙ୍କର ସ୍ମୃତି ଉଜ୍ଜଳି ରହିବ ବହୁକାଳ ଧରି । ନୂଆବୋଉ, ତମେ ଗଲ କୁଆଡ଼େ ? ଆମ କାହାକୁ କିଛି ନକହି ଚାଲିଗଲ କିମିତି କହିଲ ଦେଖି ?



# ପୋଷ୍ଟକାର୍ଡ଼ ଆଖିରେ ଲୁହ

୧୯୫୨ ମସିହା ଅଗଷ୍ଟ ମାସ । ମସ୍କୋରେ ବସନ୍ତର ହିଲ୍ଲୋଳ । ଷଷ୍ଠ ବିଶ୍ୱଯୁବ ଓ ଛାତ୍ର ଉତ୍ସବ ପାଇଁ ସମାଗତ ତିରିଶ ହଜାର ପ୍ରତିନିଧି, ପୃଥିବୀର ସବୁ ଦେଶରୁ । ଦଶ ହଜାର ସମ୍ବାଦ ପ୍ରତିନିଧି ଓ ଫଟୋଗ୍ରାଫର, ଆଠ ହଜାର ସ୍ୱତନ୍ତ୍ର ଭାବରେ ନିମନ୍ତ୍ରିତ ପ୍ରତିନିଧି । ଓସ୍ତାନୋକିନୋ ଛକରୁ ଶୋଭାଯାତ୍ରା ବାହାରିବ । ରାତିରୁ ମସ୍କୋ ସହରକୁ ଆସିବା ପାଇଁ ଅବରୁଦ୍ଧ କରି ଦିଆଯାଇଛି । ପ୍ରାୟ କୋଟିଏ ଲୋକ ପହଞ୍ଚି ସାରିବା ପରେ କର୍ତ୍ତୃପକ୍ଷ ଏଇ ନିଷ୍ପତ୍ତି ନେବାକୁ ବାଧ ହୋଇଛନ୍ତି । ଉପାୟ ନାହିଁ । ଇଉରୋପର ବିଭିନ୍ନ ଦେଶରୁ ହଜାର ହଜାର ମୋଟର ଗାଡ଼ି ଛୁଟୁଛି, ଯୁବ ଉତ୍ସବରେ ଯୋଗଦେବା ପାଇଁ । ପ୍ରାୟ କୋଡ଼ିଏ କିଲୋମିଟର ରାସ୍ତା ସଂପୂର୍ଣ୍ଣ ଲୋକାରଣ୍ୟ । ପ୍ରଖ୍ୟାତ ଲେନିନ ଷ୍ଟାଡ଼ିୟମ ଭର୍ତ୍ତି ହୋଇଗଲାଣି । ବାହାରେ ଅସଂଖ୍ୟ ଲୋକଙ୍କର ଭିଡ଼ । ଭାରତୀୟ ପ୍ରତିନିଧି ଦଳରେ ଅଛନ୍ତି ବଲରାଜ ସାହାନୀ, ରାଜକପୁର, ଆଚାର୍ଯ୍ୟ କ୍ରିପଲାନୀ, ପୃଥ୍ୱୀରାଜ କପୁର । କିଏ ପ୍ରତିନିଧି ତ କିଏ ନିମନ୍ତ୍ରିତ ଅତିଥି । ଭାରତୀୟ ପ୍ରତିନିଧି ଦଳକୁ ଶୋଭାଯାତ୍ରାର ନେତୃତ୍ୱ ନେବାକୁ ସ୍ଥିର କରିଛନ୍ତି । ଯଦିଓ ସବୁ ଦେଶ ଆଲଫାବେଟିକାଲ ଅର୍ଡ଼ରରେ ଯିବେ, ଭାରତ କିନ୍ତୁ ନେତୃତ୍ୱ ନେବ ଶୋଭାଯାତ୍ରାର । ଏହା ପୃଥିବୀର ସବୁଠାରୁ ବଡ଼ ଶୋଭାଯାତ୍ରା, ମୈତ୍ରୀ ପାଇଁ, ଶାନ୍ତି ପାଇଁ । ମିର୍, ମିର୍, ଧ୍ରୁସବା । ଶାନ୍ତି , ଶାନ୍ତି, ମୈତ୍ରୀ ।

ପ୍ରତ୍ୟେକ ମହାଦେଶରୁ ଜଣେ ଲେଖାଏଁ ପ୍ରତିନିଧି ଉଦ୍‌ଘାଟନୀ ଉତ୍ସବରେ ଉଦ୍‌ବୋଧନ ଦେବେ । ରୁଷ୍‌ର ରାଷ୍ଟ୍ରପତି ଉନ୍ମୋଚନ କରୁଛନ୍ତି ଷଷ୍ଠ ବିଶ୍ୱ ଯୁବ ଓ ଛାତ୍ର ଉତ୍ସବକୁ ।

''ମସ୍କୋରେ ସତରେ ବସନ୍ତ ଆସିଛି । ଯୌବନ ହେଉଛି ଜୀବନର ବସନ୍ତ । ସେଇ ବସନ୍ତର ପ୍ରତିଭୂମାନେ ଆସିଛନ୍ତି ସାରା ପୃଥିବୀରୁ । ତେଣୁ ଆଜି ପବନରେ ନବ ବସନ୍ତର ହିଲ୍ଲୋଳ, ତା'ର କାଉଁରୀ ଯାଦୁକରୀ ସ୍ପର୍ଶ ।'' ପ୍ରଥମେ ଏସିଆ ମହାଦେଶର

ଏଇ ବସନ୍ତର ପ୍ରତିନିଧି ଉଦ୍‌ବୋଧନ ଦେବେ ଏବଂ ସେ ହେଉଛନ୍ତି ଭାରତୀୟ ପାର୍ଲ୍ୟାମେଣ୍ଟରେ ଏଇ ବସନ୍ତର ପ୍ରତିନିଧି ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ।

ସମଗ୍ର ଷ୍ଟାଡ଼ିଅମ କରତାଳିରେ ଉଚ୍ଛୁଳି ପଡୁଚି । ବଲ୍ଲିହାରୀ ଧ୍ୱନିରେ ରୁଷର ଯୁବକ ଯୁବତୀ ପାଗଳ ।

ଚିନ୍ତାମଣି ପାଣିଗ୍ରାହୀ ଛିଟିକି ଆସିଲେ ବିଶ୍ୱ ଦରବାରକୁ ।

ସେଇ ଚିନ୍ତାମଣି ପାଣିଗ୍ରାହୀ ଆଉ ନାହାନ୍ତି ।

୨୯.୦୪.୨୦୦୦ ମସିହା ରାତି ନଅଟାରେ କଳିଙ୍ଗ ହସପିଟାଲରେ ତାଙ୍କର ପରଲୋକ ହୋଇଯାଇଛି । ରକ୍ତଚାପ ବଢ଼ିଥିଲା କିଛିଦିନ ହେବ । କିନ୍ତୁ ସେ ସକ୍ରିୟ ଥିଲେ ଶେଷ ପର୍ଯ୍ୟନ୍ତ । କିଛିଦିନ ପୂର୍ବରୁ ସେ ବଂଧୁ ବିପିନ ବିହାରୀ ରଥଙ୍କର ଏକ ପୁସ୍ତକ ଉନ୍ମୋଚନ ଉତ୍ସବରେ ଯୋଗ ଦେଇଥିଲେ । ହଠାତ୍ ଯନ୍ତ୍ରଣା ଏବଂ ମୃତ୍ୟୁ । ଅଚଳ ହୋଇ ନାହାନ୍ତି, କାହାରିକୁ କଷ୍ଟ ଦେଇ ନାହାନ୍ତି କି ନିଜେ କଷ୍ଟ ପାଇ ନାହାନ୍ତି । ମୁହଁର ସେଇ ମତାଣିଆ ହସ ଲିଭିଯାଇନି । ସେ ଆଖିବୁଜି ଦେଇଛନ୍ତି ଚିରକାଳ ପାଇଁ ।

୧୯୨୨ ମସିହା ମାର୍ଚ୍ଚ ୨୨ ତାରିଖରେ ସେ ପୁରୀ ଜିଲ୍ଲାର ବାଲିପାଟଣା ଥାନାର ବିଶ୍ୱନାଥପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଆତ୍ମୀୟ କାଳିନ୍ଦୀଚରଣ ଓ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଝାପ୍‌ସା ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ଚତୁର୍ଥ ଦଶକରେ ହୋଇଥିବା ଐତିହାସିକ ମେଡ଼ିକାଲ ସ୍କୁଲ ଧର୍ମଘଟ୍‌ରେ ସେ ଅଂଶ ଗ୍ରହଣ କରିଥିଲେ ।

ସେ ସ୍ୱାଧୀନତା ସଂଗ୍ରାମ ସହିତ ନିବିଡ଼ ଭାବରେ ଜଡ଼ିତ ଥିଲେ କିନ୍ତୁ କାରାବରଣ କରି ନଥିଲେ । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ତାଙ୍କର ଭୂମିକା ଯୋଗୁଁ ସେ ଆଉ ରେଭେନ୍ସା କଲେଜରେ ପଢ଼ିବା ସମ୍ଭବ ହୋଇପାରିଲା ନାହିଁ । ସେ କଲିକତାରେ ପଢ଼ିବା ଶେଷକଲେ ।

କଲିକତାରୁ ଆସି ଦୈନିକ 'ପ୍ରଜାତନ୍ତ୍ର'ରେ ଯୋଗଦେଲେ ଏବଂ ଭୈରବ ଚନ୍ଦ୍ର ମହାନ୍ତି ସଂପାଦକଙ୍କ ଅଧୀନରେ ପ୍ରଜାତନ୍ତ୍ରର ଯୁଗ୍ମ ସଂପାଦକ ଏବଂ ଝଂକାରର ସଂପାଦକ ହେଲେ । ତାଙ୍କରି ସଂପାଦନା କାଳରେ ବିଷୁବ ମିଳନର ଆରମ୍ଭ ହୁଏ ଏବଂ ତାଙ୍କର ସାହିତ୍ୟାନୁରାଗ ଏବଂ ସଂଗଠନ ଶକ୍ତିର ପରିଚୟ ଦିଅନ୍ତି ସେ ।

ଓଡ଼ିଆ ଭାଷା ଏବଂ ବିଚ୍ଛିନାଞ୍ଚଳ ପାଇଁ ତାଙ୍କର ଥିଲା ଅନୁରାଗ ଏବଂ 'ଉତ୍କଳ ବାହିନୀ' ନାମକ ଅନୁଷ୍ଠାନ ପ୍ରତିଷ୍ଠା କରି ସେ ବହୁବାର ଯାଇଛନ୍ତି ବିଚ୍ଛିନ୍ନାଞ୍ଚଳକୁ । ସୀମା ଆନ୍ଦୋଳନ ସମୟରେ ତାଙ୍କର କଲମରୁ ସେଇ ଯୋଗୁଁ ଝରିଥିଲା ଅଗ୍ନି ।

'ପ୍ରଜାତନ୍ତ୍ର'ର ସଂପାଦକ ପଦବୀରୁ ବିଦାୟ ନେଇ ସେ ଯାଆନ୍ତି ଚୀନ । ସେ

ବୋଧହୁଏ ଚୀନ ଗସ୍ତ କରିବାରେ ପ୍ରଥମ ଓଡ଼ିଆ । ରାମକୃଷ୍ଣ ପତି ଚୀନରେ ପହଞ୍ଚିଲେ ପରେ । ଚିନ୍ତାମଣି ବାବୁ ପାଣିଜାହାଜରେ ଯାଇଥିଲେ ଚୀନ ବୋଲି ମୋର ମନେପଡୁଛି । ଚୀନ ଉପରେ ଲିଖିତ ତାଙ୍କର ପୁସ୍ତକ ଆଦୃତ ହୋଇଥିଲା ଯୁବ ଏବଂ ପ୍ରଗତିଶୀଳ ସମାଜ ଦ୍ୱାରା । ୰ ବିଜୁ ପଟ୍ଟନାୟକ ଏଥିପାଇଁ ତାଙ୍କୁ ସାହାଯ୍ୟ କରିଥିଲେ ।

ତାଙ୍କ ଭିତରେ ସମାଜବାଦୀ ଚିନ୍ତାର ମଂଜି ଅଙ୍କୁରିତ ହେଲା ଚୀନ ଗସ୍ତରୁ । ସେଠାରୁ ଫେରି ସେ 'ମାତୃଭୂମି'ର ସଂପାଦକ ହୋଇଥିଲେ । ଉତ୍କଳ ଗଣତାନ୍ତ୍ରିକ ଯୁବ ସଂଘର ସଭାପତି ଠାରୁ ବିଶ୍ୱଯୁବ ଫେଡେରେସନରେ ଉପସଭାପତି ହେବାର ସୁଯୋଗ ମିଳିଲା ତାଙ୍କୁ । ବିନୟୀ, ମଧୁର ସ୍ୱଭାବର ଚିନ୍ତାମଣି ସମସ୍ତଙ୍କର ପ୍ରିୟ ଥିଲେ କାରଣ କାହାକୁ ଆଘାତ କରିବା ଭଳି କଥା ସେ ପ୍ରାୟ କୁହନ୍ତି ନାହିଁ, ତାଙ୍କର ଚୀନ ପ୍ରତି ଦରଦ ଥିଲା ପ୍ରଭୂତ ଏବଂ ସେଇ ଯୋଗୁଁ ବୋଧହୁଏ ତାଙ୍କୁ ବନ୍ଦୀ କରାଗଲା ଭାରତ-ଚୀନ ସଂଘର୍ଷ ସମୟରେ । ଚିନ୍ତାମଣି ପଢ଼ନ୍ତି ଖୁବ୍, ଲେଖନ୍ତି ବି ଖୁବ୍ । ଜେଲ୍‌ଖାନା ଭିତରେ ମଶାରୀ ଟାଙ୍ଗି, ଲଣ୍ଠନକୁ ମଶାରି ଭିତରେ ରଖି ତାଙ୍କୁ ପଢ଼ିବାର ଦେଖାଯାଏ ।

ଚିନ୍ତାମଣିବାବୁଙ୍କୁ ଲୋକେ କହନ୍ତି ପୋଷ୍ଟକାର୍ଡ଼ ଏମ୍.ପି. । ପ୍ରତ୍ୟେକ ଦିନ ସେ ଚିଠି ଲେଖନ୍ତି ପ୍ରଚୁର । ସବୁ କିନ୍ତୁ ପୋଷ୍ଟକାର୍ଡ଼ରେ । ଗୋଟିଏ ପାରାଗ୍ରାଫରେ ବକ୍ତବ୍ୟ ଶେଷ । ପ୍ରତିଦିନ ପ୍ରଚୁର ଚିଠି ଲେଖିବା ତାଙ୍କର ଅଭ୍ୟାସ । ଅସୁମାରି ଲୋକ ସେ ଚିଠି ପାଆନ୍ତି, ବିଶେଷତଃ ତାଙ୍କ ନିର୍ବାଚନ ମଣ୍ଡଳୀର । ଏଇ ପୋଷ୍ଟକାର୍ଡ଼ ହିଁ ତାଙ୍କର 'ଅମୋଘ ଅସ୍ତ୍ର' ବୋଲି କୁହାଯାଏ କାରଣ ଆପଣାର ନିର୍ବାଚନ ମଣ୍ଡଳୀର ବହୁ ଲୋକଙ୍କ ସହିତ ତାଙ୍କର ସଂପର୍କ ଜୀବନ୍ତ କରି ରଖେ ଏଇ ପୋଷ୍ଟକାର୍ଡ଼ ।

ପାର୍ଲ୍ୟାମେଣ୍ଟରେ ସେ ଜଣେ ସକ୍ରିୟ ସଭ୍ୟ ଥିଲେ । ନିୟମିତତା ପାଇଁ ସେ ଥରେ ପୁରସ୍କୃତ ମଧ ହୋଇଥିଲେ ପାର୍ଲ୍ୟାମେଣ୍ଟରେ ବୋଲି ମନେପଡୁଛି । ପ୍ରଶ୍ନୋତ୍ତର ସମୟକୁ ସଂପୂର୍ଣ୍ଣ ରୂପେ ବ୍ୟବହାର କରିବାର ସଭ୍ୟ କ୍ୱଚିତ ମିଳନ୍ତି ।

କମ୍ୟୁନିଷ୍ଟ ପାର୍ଟି ଭିତରେ ତୀବ୍ର ମତଭେଦ ସମୟରେ କମ୍ୟୁନିଷ୍ଟ ପାର୍ଟିର ତତ୍‌କାଳୀନ ଶାସକଗୋଷ୍ଠୀ ସହିତ ସେ ରହିଲେ ନାହିଁ । ମୋର ଏବେବି ମନେପଡୁଚି । ଚୌଦ୍ୱାରରେ ଏକ ଶ୍ରମିକସଭାରେ ମୁଣ୍ଡରେ ପ୍ରବଳ ଆଘାତ ପାଇ ଆମେ ରହୁଥିବା 'ମାଇଲେଜ୍ ଟାୟାର୍ସ'ରେ ତାଙ୍କର କିଛିଦିନ ଅବସ୍ଥାନ ଏବଂ କମ୍ୟୁନିଷ୍ଟ ପାର୍ଟିର ଆସନ୍ନ ବିଭାଜନର ସୂଚନା ବହନ କରି ଆଣିଥିଲା ସେଇ ଘଟଣା । କିନ୍ତୁ ଚିନ୍ତାମଣି ବେଶି ଦିନ ରହିଲେ ନାହିଁ ଆଉ ସମାଜବାଦୀ ଶିବିରରେ । ସେ କଂଗ୍ରେସରେ ଯୋଗଦେଲେ । ମୋର ମନେପଡୁଚି । ଚିନ୍ତାମଣିବାବୁ ସଦ୍ୟ ଯୋଗଦେଇଥାନ୍ତି କଂଗ୍ରେସରେ । ତାଙ୍କ ସାଂଗରେ

ବସି ଗପ କରୁଚି ସେକ୍ରେଟେରିଏଟର ପ୍ରେସ ଲବିରେ । ହଠାତ୍ ସେଠାରେ ପହଞ୍ଚିଲେ ପ୍ରସିଦ୍ଧ କଂଗ୍ରେସ ନେତା ୰ ବିଭୂତି ମିଶ୍ର । ଚିନ୍ତାମଣି ବାବୁଙ୍କୁ କଂଗ୍ରେସରେ ଯୋଗ ଦେଇଥିବା ପାଇଁ ବଧାଇ ଜଣାଇ ସେ ପଚାରିଲେ ''କିନ୍ତୁ ଚିନ୍ତାମଣି ଜୀ ଆପଣ ତ କଂଗ୍ରେସରେ ଯୋଗଦେଲେ କିନ୍ତୁ କଂଗ୍ରେସର କେଉଁ ଗ୍ରୁପରେ ଯୋଗଦେଲେ ?'' ହସ ସୃଷ୍ଟି ହୋଇଥିଲା ।

ଚିନ୍ତାମଣି ବାବୁ ପାଞ୍ଚଥର ପାର୍ଲ୍ୟାମେଣ୍ଟ ସଭ୍ୟ ହୋଇଛନ୍ତି । ମନ୍ତ୍ରୀ ହୋଇଛନ୍ତି, ମଣିପୁରରେ ରାଜ୍ୟପାଳ ହୋଇଛନ୍ତି । କିନ୍ତୁ ତାଙ୍କ ସାଫଲ୍ୟର ମାପକାଠି ସେସବୁ ନୁହେଁ ।

ଆଜି ଆଉ ପୋଷ୍ଟକାର୍ଡ଼ ପାଇବ ନାହିଁ ପଟିଆ ବାଉରୀ ସାହିର ମଧୁ ମଳିକ, ପାଇବ ନାହିଁ ବରୁଣେଇ ପାହାଡ଼ ତଳର ପାନ ଦୋକାନୀ ପୁରିଆ, ପାଇବ ନାହିଁ ନୟାଗଡ଼ର ପଥର କଟାଳୀ ମନୁଆ, ପାଇବ ନାହିଁ ଖଣ୍ଡପଡ଼ାର ପରିବା ବିକୁଥିବା ତଅପୋଇ । ସେ ପୋଷ୍ଟକାର୍ଡ଼ ଆଉ ଆସିବ ନାହିଁ । ସେମାନେ କାମ କରୁକରୁ ଅଟକିଯିବେ ସେଇ ପୋଷ୍ଟକାର୍ଡ଼ ପାଇଁ ।

ଚିନ୍ତାମଣି ଆଉ ନାହାନ୍ତି ।

ପୋଷ୍ଟକାର୍ଡ଼ ଆଖିରୁ ଲୁହ ଝରୁଚି ।



# ଭରଦ୍ୱାଜଙ୍କର ମହାଯାତ୍ରା

ଡିସେମ୍ବର ୧୬ ତାରିଖ, ୧୯୯୯ ବୋଲି କ୍ୟାଲେଣ୍ଡର କହୁଛି ।

ଭୁବନେଶ୍ୱର ନାଗେଶ୍ୱର ଟାଙ୍ଗୀରେ ଆପଣାର ବାସଭବନରେ ରହି ଗବେଷଣାରେ, ପୁସ୍ତକ ରଚନାରେ ରତ ଭରଦ୍ୱାଜ । ହଠାତ୍ ଛାତିରେ ଯନ୍ତ୍ରଣା ଏବଂ ଅପରାହ୍ନରେ ରାଜଧାନୀ ଡାକ୍ତରଖାନାରେ ସବୁ ଶେଷ ।

ତା'ପରେ ସ୍ୱର୍ଗ ଦ୍ୱାରରେ ଚିତା, ଆଉ ତା'ପରେ ସବୁ ଶେଷ । ଭରଦ୍ୱାଜ ପରବର୍ତ୍ତୀ ଯୁଗର୍ ଆରମ୍ଭ ।

ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତିଙ୍କର ହଠାତ୍ ପରଲୋକ ହୋଇଯାଇଛି । ସେ ଭରଦ୍ୱାଜ ନାମରେ ପରିଚିତ ଥିଲେ । ସେତେବେଳେ ଦୁଇଜଣ ଜାନକୀ ବଲ୍ଲଭ ମହାନ୍ତି ଓଡ଼ିଆ ବିଭାଗରେ । ଜଣେ ଗୋରା, ଜଣେ କଳା । ଦୁଇଜଣଯାକ ଲେଖାଲେଖି ମଧ୍ୟ କରନ୍ତି । ଜଣକୁ ଅନ୍ୟଜଣକ ଠାରୁ ସ୍ୱତନ୍ତ୍ର କରିନେଇ ଆପଣାର ପରିଚିତି ପ୍ରତିଷ୍ଠା କରିବା ପାଇଁ ଜାନକୀ ବଲ୍ଲଭ ମହାନ୍ତି ଆପଣାକୁ ଭରଦ୍ୱାଜ ନାମରେ ନାମିତ କଲେ ଏବଂ ସେଇ ନାଆଁଟି ଖାପଖାଇଗଲା ମଧ୍ୟ । ପରବର୍ତ୍ତୀ କାଳରେ ସେ ସେଇ ଭରଦ୍ୱାଜ ନାମରେ ହିଁ ନାମିତ ହେଲେ ।

ରେଭେନ୍ସା କଲେଜ । ସ୍ୱାଧୀନତାର ପଦଧ୍ୱନି ଶୁଭିଲାଣି । ସେତିକିବେଳେ ବିଚ୍ଛିନ୍ନାଞ୍ଚଳର ଡାକରା ମଧ୍ୟ ପ୍ରବଳ । ଜୟପାଳ ସିଂ ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ରାଜ୍ୟ ଦାବି କଲେଣି । ମୟୂରଭଂଜ, ଷଡ଼େଇକଳା, ଖରସୁଆଁରେ ପ୍ରବଳ ଉଦ୍‌ବେଳନ । ଜାନକୀ ବଲ୍ଲଭ ମହାନ୍ତି ସେତେବେଳେ ପଞ୍ଚମ ବାର୍ଷିକ ଶ୍ରେଣୀର ଛାତ୍ର । ସେ ନେଇଚାଲିଲେ ଏକ ଯୁବ ଦଳକୁ, ଛାତ୍ର ଦଳକୁ ବିଚ୍ଛିନ୍ନାଞ୍ଚଳକୁ ।

ମୋର ମନେପଡୁଛି, । ସେଇ ଦଳରେ ମୁଁ ବି କିଛିଦିନ ପାଇଁ ଯାଇଥିଲି ସେ ଅଂଚଳକୁ । ଦଳେ ଯାଆନ୍ତି, ଦଳେ ଫେରନ୍ତି । ଜାନକୀ ବାବୁ କିନ୍ତୁ ବେଶ୍ କିଛିଦିନ ରହିଗଲେ

ସେଇ ଅଂଚଳରେ । ଭାରତୀୟ ଜାତୀୟ କଂଗ୍ରେସର ଯୁବଗୋଷ୍ଠୀର ସେ ସଭ୍ୟ ଥିଲେ କିନ୍ତୁ ରାଜନୈତିକ ଜୀବନ ତାଙ୍କୁ ବେଶିକିଛି ଆକୃଷ୍ଟ କରିପାରି ନଥିଲା ।

ଅଧ୍ୟାପନା, ସାହିତ୍ୟ ଚର୍ଚ୍ଚା ହିଁ ତାଙ୍କୁ ବେଶି ଆକୃଷ୍ଟ କରିଥିଲା ଏବଂ ପରବର୍ତ୍ତୀ କାଳରେ ସେ ଅଧ୍ୟାପନା ଓ ସାହିତ୍ୟ ଚର୍ଚ୍ଚାରେ ହିଁ ଆପଣାର ମନୋନିବେଶ କଲେ ।

୧୯୨୫ ମସିହା ଜୁନ୍ ମାସ ୨୪ ତାରିଖରେ ସେ ନିମାପଡ଼ାର ଉତ୍ତରାସାହିରେ ଜନ୍ମଗ୍ରହଣ କରିଥିଲେ । ସାରସ୍ୱତ ସାଧନାରେ ଆପଣାର ସମଗ୍ର ଜୀବନକୁ ଅତିବାହିତ କରିଥିବା ଭରଦ୍ୱାଜ ଜାନକୀ ବଲ୍ଲଭ ଅସୁମାରି ନିବନ୍ଧ, କବିତା ଓ ପୁସ୍ତକର ପ୍ରଣୟିତା । ସେ ତାଙ୍କର ସାରସ୍ୱତ ସାଧନା ପାଇଁ ବିଷୁବ ମିଳନ, କେନ୍ଦ୍ର ଓ ରାଜ୍ୟ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଉତ୍କଳ ସାହିତ୍ୟ ସମାଜ ତାଙ୍କୁ ସଭାପତି ନିର୍ବାଚିତ କରିଛି । ସାରଳା ପୁରସ୍କାର କମିଟିରେ ସେ ସ୍ଥାୟୀ ସଦସ୍ୟ ଭାବରେ କାର୍ଯ୍ୟକରି ଆସିଛନ୍ତି । ତାଙ୍କଦ୍ୱାରା ଲିଖିତ ବହିର ସଂଖ୍ୟା ଚାରିଶହ ପର୍ଯ୍ୟନ୍ତ ପହଞ୍ଚିପାରେ ବୋଲି କେତେକଙ୍କର ମତ । ଏତେ ସଂଖ୍ୟକ ପୁସ୍ତକ ପ୍ରଣୟନରେ ସେ ଓଡ଼ିଶାରେ ଏକ ରେକର୍ଡ଼ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତାଙ୍କ ଅଧିନରେ ବହୁ ଛାତ୍ରଛାତ୍ରୀ ଗବେଷଣା କରି କୃତିତ୍ୱ ଅର୍ଜନ କରିଛନ୍ତି, ପିଏଚ୍.ଡି. ଉପାଧି ପାଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ସମେତ ବହୁ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ ଏବଂ ସକ୍ରିୟ ମଧ ଥିଲେ । ସେ ୧୯୮୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଦସ୍ୟ, ୧୯୮୩ରୁ ସାରଳା ପୁରସ୍କାର ଉପଦେଷ୍ଟା ମଣ୍ଡଳୀର ସଦସ୍ୟ, ମୃତ୍ୟୁ ପର୍ଯ୍ୟନ୍ତ ଅଙ୍କୁର ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନର ସଭାପତି ଭାବରେ କାର୍ଯ୍ୟକରି ଯାଇଛନ୍ତି । ତାଙ୍କର ମୃତ୍ୟୁରେ ଓଡ଼ିଶାର ସାହିତ୍ୟ ଆକାଶରୁ ଏକ ଉଜ୍ଜ୍ୱଳ ତାରକା ହଜିଗଲା ।

ନିରଳସ, ଧୀର ଜାନକୀ ବଲ୍ଲଭ ଉଚ୍ଚ କଣ୍ଠରେ କଥାବାର୍ତ୍ତା କରନ୍ତି ନାହିଁ । ମୋ କବିତାଟିଏ ଆବୃତ୍ତି କଲ ଦେଖି, ତାଙ୍କର ଅନୁରୋଧ ବିନୀତ । କବିତାଟିଏ ଆବୃତ୍ତି ଶୁଣିଲେ ସେ ମୁଗ୍ଧ ହୋଇ ଅନେଇବେ । ଏଇତ ତାଙ୍କର ସାର୍ଥକତା । ଖାଲି ଉପଢୌକନ, ପୁରସ୍କାର କ'ଣ କବିର ସାର୍ଥକତା ? ଏଇ ବାକ୍ୟ ଶୁଭିବ ମହାକାଳ ବକ୍ଷରେ ବହୁଦିନ ।



# ଜୀତେନ୍ଦ୍ର ପ୍ରସାଦ– ଏକ ମୂଲ୍ୟାୟନ

ରାଜେଶ ପାଇଲଟଙ୍କ କରୁଣ ଅବସ୍ଥାରେ ପରଲୋକ ହୋଇଯାଇଥିଲା । ବର୍ତ୍ତମାନ ପଡ଼ିଲା ଜୀତେନ୍ଦ୍ର ପ୍ରସାଦଙ୍କ ପାଳି । କଂଗ୍ରେସ ଦଳରେ ଏକ ଶୂନ୍ୟତା ସୃଷ୍ଟିହେଲା । ମନେହେଲା ଯେପରି ମହାକାଳ ସୋନିଆ ଗାନ୍ଧୀଙ୍କ ପାଇଁ ବାଟ ପରିଷ୍କାର କରୁଚି । ରାଜେଶ ପାଇଲଟ ଏବଂ ଜୀତେନ୍ଦ୍ର ପ୍ରସାଦ ଦୁହେଁ ସୋନିଆ ଗାନ୍ଧୀଙ୍କ ବିରୋଧୀ ଭାବରେ ଜଣାଶୁଣା ଥିଲେ ।

କିନ୍ତୁ ରାଜେଶ ଏବଂ ଜୀତେନ୍ଦ୍ର ଦୁହେଁ ଭିନ୍ନ ପ୍ରକାରର ମଣିଷ ଥିଲେ । ରାଜେଶ ଥିଲେ ସଂଗ୍ରାମୀ । ସାଧାରଣ କର୍ମୀ ସ୍ତରରୁ, ସାଧାରଣ ଜୀବନରୁ ଉଠି ସେ ସେଇ ଉଚସ୍ତରକୁ ଯାଇଥିଲେ ଆପଣାର ନିଜସ୍ୱ ଶକ୍ତି ବଳରେ । ଜୀତେନ୍ଦ୍ର ପ୍ରସାଦ କିନ୍ତୁ ଥିଲେ ଜଣେ ଆରିଷ୍ଟୋକ୍ରାଟ । ପ୍ରଚ୍ଛଦପଟରେ ରହି ଯୋଜନା କରିବା ଓ ଚକ୍ରାନ୍ତ କରିବାରେ ଓସ୍ତାଦ୍ । ଏହା ସତ୍ତ୍ୱେ ଦୁହେଁ ପରିଶେଷରେ ଏକାଠି ହୋଇଥିଲେ କଂଗ୍ରେସ ଦଳରେ ଆଭ୍ୟନ୍ତରୀଣ ଗଣତନ୍ତ୍ର ପ୍ରତିଷ୍ଠା ପାଇଁ । ମନୋନୟନ ପର୍ବର ସମାପ୍ତି ପାଇଁ ଦୁହେଁ ମିଳିତ ଭାବରେ ଉଦ୍ୟମ କରିଥିଲେ ।

ମହାକାଳର ଯୋଜନା କିନ୍ତୁ ସ୍ୱତନ୍ତ୍ର । ରାଜେଶ ଗଲେ ମୋଟର ଦୁର୍ଘଟଣାରେ ଏବଂ ବର୍ତ୍ତମାନ ଜୀତେନ୍ଦ୍ର ଗଲେ ମସ୍ତିଷ୍କରେ ରକ୍ତପ୍ରବାହ ଯୋଗୁଁ ।

ଜୀତି ଭାଇ ନାମରେ ପରିଚିତ ଜୀତେନ୍ଦ୍ର ପ୍ରସାଦ ଯେତେବେଳେ ସୋନିଆ ଗାନ୍ଧୀଙ୍କ ବିରୁଦ୍ଧରେ ଫୁଲକା ଉପରେ ଠିଆହେଲେ, ତାହା ତାଙ୍କର ଶତ୍ରୁ ମିତ୍ର ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲା । କୌଣସି ପ୍ରକାର ପ୍ରଲୋଭନ, ଉପଦେଶ, ଆଉ କାର୍ଯ୍ୟକରି ନଥିଲା । ପ୍ରସାଦ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ନେହେରୁ-ଗାନ୍ଧୀ ପରିବାରର ଏକ ନମ୍ବର ବ୍ୟକ୍ତି ବିରୁଦ୍ଧରେ ଠିଆ ହେବାର ସାହସ କରି ପାରିଲେ ।

ତାଙ୍କର ଆଦ୍ୟଗୁରୁ ଥିଲେ ହେମବତୀ ନନ୍ଦନ ବହୁଗୁଣା । ତାଙ୍କଠାରୁ ସେ ଶିଖିଥିଲେ ଚତୁର ବୁଦ୍ଧି ଓ କୌଶଳର କାଇଦା ।

ପରବର୍ତ୍ତୀ କାଳରେ ରାଜୀବ ଗାନ୍ଧୀ ଏବଂ ପି.ଭି. ନରସିଂହ ରାଓଙ୍କ ପାଖରେ ରାଜନୈତିକ ସେକ୍ରେଟେରୀ କାର୍ଯ୍ୟ ଭିତରେ ସେଇ ବୁଦ୍ଧି ପାକଳ ହୋଇଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ 'ପାଲେସ୍ ଷଡ଼ଯନ୍ତ୍ର'ରେ ଓସ୍ତାଦ୍ ଜୀତେନ୍ଦ୍ର ନିଜେ ସେଇ ଯନ୍ତାରେ ବଳିପଡ଼ିଲେ । ଇତିହାସରେ ଏହା ହେଉଛି କ୍ରୁର ପରିହାସ । ପ୍ରସାଦଙ୍କର କିଛି ସହକର୍ମୀ ବିଶେଷତଃ ଯେଉଁମାନଙ୍କୁ ସେ ଉପରକୁ ଟେକିଥିଲେ, ତାଙ୍କୁ ଧାରଣାଦେଲେ ଯେ ସେ ନିର୍ବାଚନରେ ସୋନିଆଙ୍କ ବିରୁଦ୍ଧରେ ଠିଆହେଲେ ସୋନିଆ ତାଙ୍କୁ ଆପୋଷ ମିଳାମିଶା ପାଇଁ ଡାକିବେ । କିନ୍ତୁ ତାହା ହେଲା ନାହିଁ । ସେଇ ବଂଧୁମାନଙ୍କର ପରବର୍ତ୍ତୀ ଭୂମିକା କ'ଣ ହେଲା ତା ନକହିଲେ ଭଲ । ଅନୁଗତ ପାଲଟିଥିଲା ବିଦ୍ରୋହୀ କିନ୍ତୁ ପାଇଥିଲେ ମାତ୍ର ଶତକଡ଼ା ନଅ ଭାଗ ଭୋଟ କାରଣ ତାଙ୍କୁ ପରାସ୍ତ କରିବା ପାଇଁ ସବୁପ୍ରକାର ଉଦ୍ୟମ ସୋନିଆ ଗାନ୍ଧୀ କରିଥିଲେ ।

କିନ୍ତୁ ତାଙ୍କର ସେଇ ଭୂମିକା ତାଙ୍କୁ କଂଗ୍ରେସ ଇତିହାସରେ ଅମର କରି ରଖିବ । ସେ ସୁଭାଷଚନ୍ଦ୍ର ବୋଷଙ୍କ ପରି ଜଣେ ଉତ୍ତୁଙ୍ଗ ନେତା ନ ହୋଇପାରନ୍ତି । ଗାନ୍ଧିଜୀଙ୍କ ପ୍ରାର୍ଥୀଙ୍କୁ ସୁଭାଷ ବୋଷ ପରାସ୍ତ କଲାପରି ପ୍ରସାଦଙ୍କର ସେ ସୌଭାଗ୍ୟ ହେଲା ନାହିଁ । କିନ୍ତୁ କଂଗ୍ରେସର ବିବେକ ଦଂଶନ କରିବାରେ ଐତିହାସିକ ଭୂମିକା ସେ ଗ୍ରହଣ କଲେ ।

ନିର୍ବାଚନ ପ୍ରଚାର ସମୟରେ ସେ ବିଭିନ୍ନ ସ୍ଥାନରେ କଂଗ୍ରେସ ଅଫିସକୁ ଗଲାବେଳକୁ ଦେଖିଲେ ସେ ଅଫିସମାନଙ୍କରେ ତାଲା ଝୁଲୁଛି । ଏହା ସତ୍ତ୍ୱେ, ସୋନିଆ ଗାନ୍ଧୀଙ୍କ ପ୍ରତି ସେ କଦାପି ବ୍ୟକ୍ତିଗତ ଆକ୍ଷେପ କରି ନାହାନ୍ତି, ସମସ୍ତ ପ୍ରକାର ପ୍ରରୋଚନା ସତ୍ତ୍ୱେ । ସେ ଥିଲେ ଆରିଷ୍ଟୋକ୍ରାଟ ଏବଂ ତାହାର ପ୍ରମାଣ ସେ ଦେଇଗଲେ ଜୀବନର ସବୁଠାରୁ ତିକ୍ତ ଯୁଦ୍ଧରେ ।



# ବର୍ଣ୍ଣାଢ଼୍ୟ ରାଜନୀତିଜ୍ଞଙ୍କର ପରଲୋକରେ

ସଂଯୁକ୍ତ ଜନତା ଦଳର ବରିଷ୍ଠ ନେତା ତଥା କର୍ଣ୍ଣାଟକର ପୂର୍ବତନ ମୁଖ୍ୟମନ୍ତ୍ରୀ ଜେ.ଏଚ୍.ପଟେଲଙ୍କର ଗଲା କାଲି ଡିସେମ୍ବର ୧୨ ତାରିଖ, ୨୦୦୦ ମସିହାରେ ପରଲୋକ ହୋଇଯାଇଛି । ପଟେଲ ଥିଲେ ଜଣେ ସମାଜବାଦୀ, କିନ୍ତୁ ଜନ୍ମଲାଭ କରିଥିଲେ ଏକ ଧନାଢ଼୍ୟ ଜମିଦାର ପରିବାରରେ । ତାଙ୍କର ଭୂସଂପତ୍ତି ଥିଲା ବେଶ୍ । ମୃତ୍ୟୁ ବେଳକୁ ତାଙ୍କୁ ୭୧ ବର୍ଷ ବୟସ ହୋଇଥିଲା ।

୧ ୯୩୦ ମସିହା ଅକ୍ଟୋବର ୩୧ ତାରିଖରେ ଜେ.ଏଚ୍. ପଟେଲ କାରିଗାନୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ । ଜରୋରୀ ପରିସ୍ଥିତି ଜାରୀ ହେଲାବେଳେ ମଧ ସେ ପୁଣି କାରାବରଣ କରିଥିଲେ ।

ରାମମନୋହର ଲୋହିଆ ଥିଲେ ତାଙ୍କର ଗୁରୁ ଏବଂ ଆଦର୍ଶ । ତାଙ୍କରି ଭଳି ସେ ଥିଲେ ବିବାଦମୂଳକ ଏବଂ ବର୍ଣ୍ଣାଢ଼୍ୟ । ବିବାଦମୂଳକ ହେବାକୁ ସେ ସୁଖ ମଣୁଥିଲେ ।

ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ସକାଳ ୬ଟାରେ କାମ ଆରମ୍ଭ କରନ୍ତି ଏବଂ ସଂଧ୍ୟା ୬ଟାରେ କାମ ଶେଷ କରନ୍ତି । ତାପରେ ମୁଁ ମୁଖ୍ୟମନ୍ତ୍ରୀ ନୁହେଁ । ମୋର ସ୍କଚ୍ ଏବଂ ନାରୀ ସହିତ ସମୟ କଟିଯାଏ । ଏଇଥିଲା ତାଙ୍କର ସ୍ପଷ୍ଟ, ବକ୍ତବ୍ୟ ଟି.ଭି.ରେ । ଆପଣଙ୍କ ସ୍ତ୍ରୀ ଏହା ଜାଣନ୍ତି ? ହଁ, ନିଶ୍ଚିତ ଭାବରେ ଜାଣେ ଏବଂ ସେ ମୋତେ କ୍ଷମାଦେଇ ସାରିଛନ୍ତି ବହୁ ଦିନରୁ । ଆପଣଙ୍କର ରାଜ୍ୟର ଲୋକେ ଏହା ଜାଣନ୍ତି । ଯାଆନ୍ତୁ ପଚାରନ୍ତୁ ତାଙ୍କୁ । ଟି.ଭି ଫେରିଥିଲା କର୍ଣ୍ଣାଟକକୁ ଲୋକଙ୍କର ମତ ପାଇଁ । ସମସ୍ତେ କହିଥିଲେ ଯେ ସେମାନେ ଏହା ଜାଣନ୍ତି । ଏହା କିଛି ଲୁଚାଛପା କଥା ନୁହେଁ । କିନ୍ତୁ ସେଥିରେ ଅନ୍ୟମାନଙ୍କର କ'ଣ ଗଲା ? ସେ ତ ସେଥିପାଇଁ ରାଜକୋଷରୁ ପଇସା ଖର୍ଚ୍ଚକରୁ ନାହାନ୍ତି, କି ମଦ ଖାଇ ରାସ୍ତାରେ ଗଡୁନାହାନ୍ତି । କାହାରି ଉପରେ ଅତ୍ୟାଚାର କରୁନାହାନ୍ତି କି କାହାକୁ ଅଯଥା ଦୟା ବା ଅନୁକଂପା ଦେଖାଇ ନାହାନ୍ତି ।

କିନ୍ତୁ ପଚାରୁନାହାନ୍ତି କାହିଁକି ଯେ ତାଙ୍କର ଅକଳନ୍ତି ଭୂସମ୍ପତ୍ତିସବୁ କୁଆଡ଼େ ଗଲା, କେତେ ଅଛି ? ସେ ଜମିସବୁ ଯେଉଁ ଚାଷୀମାନେ ଚାଷ କରୁଥିଲେ ସେମାନଙ୍କ ଭିତରେ ବାଣ୍ଟି ଦେଇଛନ୍ତି ସେ ନିଜେ । ବର୍ତ୍ତମାନ ଖୁବ୍ କମ୍ ଜମି ତାଙ୍କର ଅଛି ।

ଟି.ଭି.ର ମନ୍ତବ୍ୟକାରୀ ବା କମେଣ୍ଟେଟର ଆଶ୍ଚର୍ଯ୍ୟ ପ୍ରକାଶ କରିଥିଲେ ଯେ ଏଭଳି ଜଣେ ରାଜନୀତିଜ୍ଞ ଅଛନ୍ତି ଯେ ଆପଣାର ବ୍ୟକ୍ତିଗତ ଜୀବନକୁ ଏଭଳି ଏକ ଖୋଲା ପୁସ୍ତକରେ ପରିଣତ କରି ପାରିଛନ୍ତି । ବହୁ ରାଜନୀତିଜ୍ଞଙ୍କର ଏଇଭଳି ଦୁର୍ବଳତା ରହିଛି କିନ୍ତୁ ଖୁବ୍ କମ୍ ବ୍ୟକ୍ତି ନିଜ ଜୀବନ ସଂପର୍କରେ ଏପରି କହିପାରନ୍ତି ।

ପଟେଲଙ୍କ ଗୁରୁ ଥିଲେ ରାମ ମନୋହର ଲୋହିଆ । ଲୋହିଆ ବିବାହକୁ ଏକ ଶାଙ୍କୁଳି ବୋଲି ଆଖ୍ୟା ଦେଇଥିଲେ । ତାଙ୍କ ମତରେ ବିବାହ ଥିଲା ଏକ ଲାଇସେନ୍ସକରା ଗଣିକାବୃତ୍ତି । ପଟେଲ ବିବାହ କରିଥିଲେ । ସ୍ତ୍ରୀ, ତିନିପୁତ୍ରଙ୍କୁ ନିବିଡ଼ ଭାବରେ ଭଲ ପାଉଥିଲେ । ସମସ୍ତଙ୍କ ସହିତ ସ୍ନେହପୂର୍ଣ୍ଣ ସଂପର୍କ ରଖିବା ଥିଲା ତାଙ୍କର ନୀତି । ଏପରିକି ବିରୋଧୀମାନଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ମଧୁର । ବିବାହର ବନ୍ଧନକୁ ମାନି ନଥିବା ପଟେଲ କିନ୍ତୁ ଜନପ୍ରିୟ ଥିଲେ ଖୁବ୍ । ତାଙ୍କ ପ୍ରତି ସମ୍ମାନ ଜଣାଇବାକୁ ତାଙ୍କର ମରଦେହ ନିକଟରେ ଲମ୍ବିଥିଲା ବିରାଟ ଧାଡ଼ି ।

ପଟେଲ ପ୍ରଥମଥର ପାଇଁ ଲୋକସଭାକୁ ନିର୍ବାଚିତ ହୋଇଥିଲେ ଏବଂ କନ୍ନଡ଼ ଭାଷାରେ ଭାଷଣ ଦେଇ ଇତିହାସ ସୃଷ୍ଟି କରିଥିଲେ । ପଟେଲ ଆଉ ନାହାନ୍ତି । ଶାସନ କରିବାରେ ସେ କେତେ ଦକ୍ଷଥିଲେ ତାହା ଇତିହାସ କହିବ । କିନ୍ତୁ ନିଜ ଜୀବନ ସଂପର୍କରେ ଏଭଳି ସ୍ପଷ୍ଟ ମନ୍ତବ୍ୟ ଦେବାର ମଣିଷ ଖୁବ୍ କ୍ୱଚିତ୍ ମିଳିବେ, ରାଜନୀତିଜ୍ଞ ତ ମିଳିବେ ନାହିଁ ।



# ସେଇ ଅବୁଝା ବଂଧୁଙ୍କ ପାଇଁ

ଜୁନ୍ ୨୪ ତାରିଖ, ୧୯୯୯ । ଅପରାହ୍ନ । ଖରା ଓ ମେଘର ଲୁଚକାଳି ଖେଳ ଚାଲିଛି । ଟେଲିଫୋନ ବାଜୁଛି । ଔଷଧ ଖାଇ ବିଶ୍ରାମ ନେଉଛି । ଗଭୀର ଅସୁସ୍ଥତା ହେତୁ ଏଇ ସମୟରେ ମୋତେ କେହି ଡିଷ୍ଟର୍ବ କରନ୍ତି ନାହିଁ । କିନ୍ତୁ ମୁଁ ହିଁ ଫୋନ ଧରିଲି ଦୈବାତ୍ ଏବଂ ସେପଟରୁ ସେଇ ଅବିଶ୍ୱାସ୍ୟ ସଂବାଦ ଆସିଲା ଯେ ବଂଧୁ ଡାକ୍ତର ଚିନ୍ତାମଣି ନରେନ୍ଦ୍ର କୁମାର ଆଉ ନାହାନ୍ତି । ବିଶ୍ୱାସ କରିହେଲା ନାହିଁ । କାରଣ ଦୁଇଦିନ ତଳେ ମୋ ପୁଅ ବିବାହ ନିମନ୍ତ୍ରଣ ପଠାଇଥିଲି ସହକର୍ମୀ ସନ୍ତୋଷ କୁମାର ରାୟଚୌଧୁରୀଙ୍କ ହାତରେ, ନିଜେ ଯାଇ ନପାରି । ସେ କହିଥିଲେ ସନ୍ତୋଷକୁ ନିଶ୍ଚୟ ଯିବି ଏବଂ ଉଦ୍‌ବେଗ ପ୍ରକାଶ କରିଥିଲେ ମୋର ଅସୁସ୍ଥତା ସଂବାଦ ଶୁଣି । କିନ୍ତୁ ହଠାତ୍ ମହାକାଳର କରାଳ ସ୍ପର୍ଶ ତାଙ୍କ ଦେହରେ । ବୟସ ହେବା ଆରମ୍ଭ କରିଥିଲା । ପ୍ରାୟ ଏକା ବୟସର ଆମେ ଦୁହେଁ । ସେ ମୋ ଠାରୁ ତିନିବର୍ଷ ସାନ । ବୟସ ହେବା ହେତୁ ରୋଗ ବଇରାଗ ଧରିବା ସ୍ୱାଭାବିକ । କିନ୍ତୁ ତାହା ଏତେ ଗୁରୁତର ତ ନଥିଲା । ଶୁଣିଲି ଯେ ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ମୁସ୍ତାଫିଜ ଅହମ୍ମଦଙ୍କ ସହ ଗଲାକାଲି ବିଚାର ବିମର୍ଷ କରିଥିଲେ ସ୍ୱାସ୍ଥ୍ୟ ପରୀକ୍ଷା ସଂପର୍କରେ । ତା' ହେଲେ ଅଚାନକ ଇମିତି ହେଲା କାହିଁକି ?

ଚିନ୍ତାମଣି ଡାକ୍ତର ଥିଲେ, ଲେଖକ ଥିଲେ, ସମାଜସେବୀ ଏବଂ ଭାବୁକ ଥିଲେ । ସବୁଥିରୁ ଟିକିଏ ଟିକିଏ ମିଶି ତାଙ୍କୁ ଗଢ଼ିଥିଲା ପ୍ରକୃତି ଓ ପରିବେଶ । ୧୯୩୪ ମସିହାରେ ଜନ୍ମଗ୍ରହଣ କରି ଚିନ୍ତାମଣି ମଣିଜଙ୍ଗା ହାଇସ୍କୁଲରୁ ମାଟ୍ରିକ ପାଶକରି ଆସିଥିଲେ ରେଭେନ୍ସା କଲେଜକୁ । ସେତିକିବେଳୁ ତାଙ୍କ ସାଂଗରେ ପରିଚିତି । ତାଙ୍କର ରାଜନୈତିକ ସଚେତନତା, କାବ୍ୟିକ ସଚେତନତା ସେତିକିବେଳୁ ଦେଖାଦେଇଥିଲା ଏବଂ ବାରିହୋଇ ପଡୁଥିବା ବ୍ୟକ୍ତିମାନଙ୍କ ଭିତରେ ସେ ଜଣେ ଥିଲେ ।

ପାଠ ପଢ଼ିଲେ କଟକ ମେଡ଼ିକାଲ କଲେଜରେ । ୧୯୫୭ ମସିହାରେ ସେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୁଅନ୍ତି । ଠିକ୍ ସେତିକିବେଳେ ରେଭେନ୍ସା କଲେଜର ଦୁଇଜଣ ଛାତ୍ର

ମଧ୍ୟ ସେଇ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୁଅନ୍ତି । ସେତେବେଳେ ମେଡ଼ିକାଲ କଲେଜର ଯକ୍ଷ୍ମାବିଭାଗ ଅବସ୍ଥା ଭୟାନକ । ଏ ଡାକ୍ତର ଶିବାଜୀ ଯକ୍ଷ୍ମା ବିଭାଗ ଦାୟିତ୍ୱରେ । ସେ କ'ଣ କରିବେ ? ଯକ୍ଷ୍ମା ୱାର୍ଡ଼ରେ ଭୀଷଣ ଭିଡ଼ । ଯେଉଁ ଅବସ୍ଥାରେ ଏ ତିନିଜଣ ରହିଥାନ୍ତି ତାହା ଶୋଚନୀୟ । ବସନ୍ତ ମଂଜରୀ ଯକ୍ଷ୍ମା ନିବାସ ତିଆରି ହୋଇନଥାଏ । ମଦନାପଲ୍ଲୀ ବା ତାମ୍ବରମ୍‌କୁ ଯିବାକୁ ହେବ । କିନ୍ତୁ ସେଠାରେ ସିଟ୍ ମିଳିବା ଭାରି କଷ୍ଟ ।

ଦୈବାତ୍ ସେତିକିବେଳେ ମେଡ଼ିକାଲ କଲେଜର ବାର୍ଷିକ ଉତ୍ସବ । ସ୍ୱୟଂ ସ୍ୱାସ୍ଥ୍ୟମନ୍ତ୍ରୀ ବସନ୍ତମଂଜରୀ ଦେବୀ ମୁଖ୍ୟ ଅତିଥି । ସେ ରଣପୁର ରାଜ୍ୟର ରାଜମାତା । ସବୁ ରାଜକୀୟ । ଅଧ୍ୟାପକ ଡକ୍ଟର ଗୋପାଳ ଚନ୍ଦ୍ର ପଟ୍ଟନାୟକ ସଭାପତି । ରେଭେନ୍ସା କଲେଜ ୟୁନିଅନର ସଭାପତି ଭାବରେ ମୁଁ ନିମନ୍ତ୍ରିତ । ଅନ୍ୟମାନଙ୍କ ଭିତରେ ଯଦୁମଣି ମଂଗରାଜ ଉପସ୍ଥିତ । ବସନ୍ତମଂଜରୀଙ୍କ ଭାଷଣ ପରେ ଅତିଥିମାନଙ୍କ ଭିତରୁ କିଏ କହିବାକୁ ଚାହାନ୍ତି ବୋଲି ପଚରାଗଲା । ଯଦୁମଣି ମଂଗରାଜ ଓ ମୁଁ ନାମ ପଠାଇଲୁ । ମହା ମୁଷ୍କିଲ ଅବସ୍ଥା ! ଜଣକୁ ଡାକିଲେ ଆଉ ଜଣକୁ ଡାକିବାକୁ ବାଧ୍ୟ । ସେଦିନ ମୋର ଭାଷଣର ବସ୍ତୁଥିଲେ ଚେନାମଣି ଓ ସେ ଦୁଇଜଣ ଛାତ୍ର । ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ ମୁଁ କହିବାକୁ ଯିବା ପୂର୍ବରୁ ମୋତେ କହିଥିଲେ ଯେ ''ବେଶି ଗାଳିଦେବ ନାହିଁ'' । ପ୍ରଚଣ୍ଡ ଆକ୍ରମଣ ହେଲା ସ୍ୱାସ୍ଥ୍ୟ ବିଭାଗ ଉପରେ । ବସନ୍ତ ମଂଜରୀଙ୍କ ଗୋରା ଗାଲ ରାଗରେ ନାଲି ପଡ଼ିଗଲା । ପ୍ରଚଣ୍ଡ ତାଳିମାଡ଼ ଏବଂ ପାଟିଗୋଳରେ ସଭାସ୍ଥଳ କଂପିଲା ।

ଆଜି କୌଣସି ମନ୍ତ୍ରୀଙ୍କୁ ତାଙ୍କ ବିଭାଗ ସଂପର୍କରେ ସେତିକି କଥା କହିଥିଲେ ସେ ମୋ ସାଂଗରେ କଥାବାର୍ତ୍ତା କରନ୍ତେ ନାହିଁ ଏବଂ ତାଙ୍କ ଚାମଚାମାନେ ମୋତେ ଧମକ ବି ଦେବା ବିଚିତ୍ର ନୁହେଁ । ତିନିଦିନ ପରେ ଦିନେ ହଠାତ୍ ବସନ୍ତମଂଜରୀ ଦେବୀ ମୋ ହଷ୍ଟେଲରେ ହାଜର । କଥା କ'ଣ ? ''ଖୁବ୍ ଗାଳି ତ ଦେଲ । ସେ ପିଲା ତିନିଜଣଙ୍କର (ତାମ୍ବରମ୍ ବା ମଦନାପଲ୍ଲୀ ମନେପଡୁ ନାହିଁ)ରେ ସିଟ୍ ବନ୍ଦୋବସ୍ତ ହୋଇଯାଇଛି । ଯିବାର ବି ଆୟୋଜନ ହୋଇ ଯାଇଛି । ତୁମକୁ ଖବର ଦେବାକୁ ଆସିଥିଲି ।''

ଚେନାମଣି ଓ ସେ ଦୁଇଜଣ ଯାଇଥିଲେ । ଭଲହୋଇ ବି ଆସିଥିଲେ । ଚେନାମଣିଙ୍କ ସେବା କରୁଥିବା ନର୍ସଟିକୁ ତା'ର ଅକୃତ୍ରିମ ସେବାରେ ମୁଗ୍ଧହୋଇ ସେ ବିବାହ କରିଥିଲେ, ବାପା ମାଆଙ୍କର ତୀବ୍ର ବିରୋଧ ସତ୍ତ୍ୱେ । ଯାହା ବୁଝିଥିବେ, ଯାହା ନିଷ୍ପତ୍ତି କରିଥିବେ, ସେଥିରୁ ଫେରିବା ଲୋକ ଚେନାମଣି ନଥିଲେ ।

କିଛି ରାଜନୀତି, କିଛି ସାହିତ୍ୟ ସେବା, କିଛି ସମାଜସେବା ସବୁ ମିଶିଥିଲା ତାଙ୍କର ଜୀବନରେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ପ୍ରତି ତାଙ୍କର ଶ୍ରଦ୍ଧା, ଭକ୍ତି, ନିବିଡ଼ତା ବହୁତ । ମୃତ୍ୟୁ ପର୍ଯ୍ୟନ୍ତ ସେ ପ୍ରଜାତନ୍ତ୍ର ପରିବାରର ସଦସ୍ୟ ଥିଲେ । ମହତାବ ବାବୁଙ୍କ ଉତ୍‌ଥାନ ପତନ, ପୁନରଭ୍ୟୁତ୍ଥାନ ଭିତରେ ଅନେକ ତାଙ୍କୁ ଛାଡ଼ି ଚାଲିଯାଇଛନ୍ତି । କିନ୍ତୁ ଚେନାମଣି

ଅବିଚଳ । ସାହିତ୍ୟ ପ୍ରତି ତାଙ୍କର ଅନୁରକ୍ତି ବେଶ । ଗଳ୍ପ ଲେଖନ୍ତି, ପ୍ରବନ୍ଧ ଲେଖନ୍ତି । ଭୟ ନାହିଁ । ଯାହା ଠିକ୍‌ବୋଲି ଭାବନ୍ତି ଲେଖନ୍ତି; କହନ୍ତି । ରାଜନୀତି ପ୍ରତି ଅନୁରାଗ ବେଶ୍ । କିନ୍ତୁ ରାଜନୀତିର ପାହାଚ ଉଠିବା ପାଇଁ ଯେଉଁସବୁ ଆଦବ୍‌କାଇଦା ଦରକାର ତାହା ତାଙ୍କର ନାହିଁ । ପ୍ରାକ୍‌ଟିସ କରନ୍ତି ଡାକ୍ତର ଭାବରେ, ଖାଲି ଚଳିଯିବା ପାଇଁ । ରୋଗୀଠାରୁ ପଇସା ଝଡ଼ାଇବା କାମ ତାଙ୍କ ଦ୍ୱାରା ହୋଇପାରି ନଥିଲା । ବହୁ ପ୍ରକାରର ପ୍ରତିଭାର ଅଧିକାରୀ ଥିଲେ କିନ୍ତୁ କୌଣସିଟିରେ ବହୁତ ଉଚ୍ଚ ସ୍ଥାନକୁ ସେ ଯାଇପାରି ନାହାନ୍ତି । କେବଳ ଗୋଟିଏ କଥାରେ ସେ ନିବିଷ୍ଟ ହୋଇପାରିଲେ ନାହିଁ ।

ବଂଧୁ ଭାବରେ ସେ ବେଶ୍ ସଂବେଦନଶୀଳ । କିନ୍ତୁ କାଳକ୍ରମେ ନୂଆପୀଢ଼ିର ଚଳଣି ସହିତ ସେ ଖାପ ଖୁଆଇପାରି ନାହାନ୍ତି । ଆମ ଭଳି ବହୁ ବ୍ୟକ୍ତିଙ୍କର ସେଇ ଦୂରବସ୍ଥା ହୋଇଛି । ପରିଶେଷରେ ସେ କ୍ଳାନ୍ତ, ଅବସନ୍ନ ହୋଇ ପଡ଼ିଛନ୍ତି ଧୀରେ ଧୀରେ । ମହାକାଳ ତାଙ୍କୁ ଟାଣି ନେଇଛି, ଅଗଣିତ ବଂଧୁମାନଙ୍କ ଗହଣରୁ । ସେ ଶୋଇଛନ୍ତି, ଶାନ୍ତ ଧୀର ଭାବରେ, ଯନ୍ତ୍ରଣା ବା ମୃତ୍ୟୁର କୌଣସି ଚିହ୍ନ ନାହିଁ ମୁହଁରେ । ମନେ ହେଉଛି ଯେପରି ସେ ଧୀରେ ଧୀରେ ଆପଣାକୁ ନିଷ୍କ୍ରାନ୍ତ କରିନେଇଛନ୍ତି ଏଇ ସଂସାରରୁ ।

ଦୁଇଟୋପା ଲୁହ ଝରିପଡ଼ିଲା ତାଙ୍କର ମୁଣ୍ଡ ଉପରେ ।



# କ୍ରିକେଟର ପ୍ରବାଦ ପୁରୁଷ

ଫେବୃୟାରୀ ୨୫, ୨୦୦୦ ମସିହା । ଅଷ୍ଟ୍ରେଲିଆର ଆଡ଼ିଲେଡ୍ ସହରରେ କ୍ରିକେଟର ପ୍ରବାଦ ପୁରୁଷ ଡନ୍ ବ୍ରାଡ଼ମାନଙ୍କ ପରଲୋକ ହୋଇଗଲା, ୯୨ ବର୍ଷ ବୟସରେ ନିଉମୋନିଆ ରୋଗରେ ।

କ୍ରିକେଟର ଏହି କିମ୍ବଦନ୍ତୀ ପୁରୁଷ ଅଗଷ୍ଟ ୨୭, ୧୯୦୮ ମସିହାରେ ନିଉ ସାଉଥ୍ ୱେଲସ୍‌ର ଗ୍ରାମାଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ସେ ଆଡ଼ିଲେଡ୍ ସହରରେ ବସତି ସ୍ଥାପନ କରିଥିଲେ । ସେଇଠି ତାଙ୍କର ବାଲ୍ୟବଂଧୁ ଥିଲେ ଜେସି, ଯାହାଙ୍କୁ ସେ ପରବର୍ତ୍ତୀ କାଳରେ ବିବାହ କରିଥିଲେ । ୬୫ ବର୍ଷ ବିବାହିତ ଜୀବନ କଟାଇବାପରେ ୮୮ ବର୍ଷ ବୟସରେ ୧୯୯୭ ମସିହା ସେପ୍ଟେମ୍ବର ମାସରେ କ୍ୟାନସର ରୋଗରେ ପରଲୋକ ଗମନ କରିଛନ୍ତି । ବ୍ରାଡ଼ମାନ ଅପୁତ୍ରିକ । ତାଙ୍କର ପାଳିତ ପୁତ୍ରଙ୍କୁ ୧୯୬୯ ମସିହାରେ ସମ୍ମାନ ଜଣାଇ ଆଡ଼ିଲେଡ୍ ସହରରେ ଏକ କ୍ରିକେଟ ସ୍ମାରକୀ ଗଢ଼ା ହୋଇଛି ।

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଏବଂ ପରେ କ୍ରିକେଟ ଜଗତରେ ସେ ଯେଉଁ ପ୍ରାଧାନ୍ୟ ପ୍ରତିଷ୍ଠା କରିଯାଇଛନ୍ତି ତାହା ବିରଳ ଏବଂ ତାକୁ କେହି ଟପି ପାରିନାହାନ୍ତି । କ୍ରିକେଟରେ ଥିଲାବେଳେ ସେ ଯେପରି ପ୍ରଚାର ବା ସମ୍ମାନ ବିମୁଖ ଥିଲେ ଠିକ୍ ସେଇପରି ଅବସର ନେଲାପରେ ମଧ୍ୟ ସମ୍ମାନ, ଆୱାର୍ଡ଼, ପୁରସ୍କାରକୁ ଏଡ଼ାଇଦେଇ ଯାଇଛନ୍ତି ।

କ୍ରିକେଟର ସେ ଥିଲେ ଜୀବନ୍ତ ଅବତାର । ପ୍ରତିପକ୍ଷ ବୋଲିଂର ସାମନା କରିପାରିବା ଭଳି ତାଙ୍କର ଦକ୍ଷତାକୁ ଅନ୍ୟ କେହି କ୍ରିକେଟ ଖେଳାଳୀ ଏପର୍ଯ୍ୟନ୍ତ ସ୍ପର୍ଶ କରିପାରି ନାହାନ୍ତି ।

ଦୀର୍ଘ ଏକୋଇଶି ବର୍ଷ ଧରି କ୍ରିକେଟ ଜଗତରେ ଆପଣାର ପ୍ରାଧାନ୍ୟ ପ୍ରତିଷ୍ଠା ଅକ୍ଷୁର୍ଣ୍ଣ ରଖିଥିବା ବ୍ରାଡ଼ମାନ୍ ଟେଷ୍ଟ କ୍ରିକେଟରେ ହାରାହାରି ଶତକଡ଼ା ୯୯.୮୪ ରନ୍ କରିଥିଲେ । ଏହାକୁ ଶହେ କରିବା ପାଇଁ ତାଙ୍କର ସ୍ୱପ୍ନ ଅଧୁରା ରହିଗଲା । ୧୯୪୮ ମସିହାରେ ଇଂଲଣ୍ଡରେ ଖେଳିବାବେଳେ ସେ 'ଡକ୍'ରେ ଆଉଟ ହୋଇଯାଇ ସମସ୍ତଙ୍କୁ ବିସ୍ମିତ କରିଥିଲେ ଏବଂ କ୍ରିକେଟରୁ ଅବସର ଘୋଷଣା କରିଥିଲେ ।

ଇଂଲଣ୍ଡ ଦଳ କ୍ୟାପ୍‌ଟେନ ଡଗ୍ଲାର ଜାର୍ଡ଼ିନ ଆସେସ୍ ଜିତିବା ପାଇଁ ଯେଉଁପ୍ରକାର ବୋଲିଂ କଲେ ତାହା ଖେଳ ବିରୋଧୀ ବୋଲି ସମସ୍ତେ କହିଲେ କିନ୍ତୁ ଏହି ବଲ୍‌କୁ ବ୍ରାଡ଼ମାନ ସାମନା କରି ନପାରି ଆଉଟ୍ ହୋଇ କ୍ରିକେଟରୁ ଅବସର ନେଇଥିଲେ । ଏହି ଖେଳ କିଛିକାଳ ପାଇଁ ଅଷ୍ଟ୍ରେଲିଆ-ଇଂଲଣ୍ଡ ମଧ୍ୟରେ ସମ୍ପର୍କକୁ ତିକ୍ତ କରିଦେଇଥିଲା ।

ବ୍ରାଡ୍‌ମାନଙ୍କୁ ୧୯୪୯ରେ ନାଇଟ୍ ଆୱାର୍ଡ଼ରେ ଭୂଷିତ କରାଯାଇଥିଲା । ଆପଣ କିପରି ଏଭଳି ଦୁର୍ଭେଦ୍ୟ ରହିପାରିଛନ୍ତି ବୋଲି ଏକ ପ୍ରଶ୍ନର ଉତ୍ତରରେ ବ୍ରାଡ଼ମାନ କହନ୍ତି ଯେ ମୋ ଠାରୁ ଆହୁରି ଖୁବ୍ ଭଲ ଖେଳାଳୀ ଅଛନ୍ତି । କିନ୍ତୁ ସେମାନେ ଖୁବ୍ ଶୀଘ୍ର ଆଉଟ୍ ହୋଇଯାଉଛନ୍ତି ।

ଜୀବନରେ ସର୍ବ ମୋଟ ୩୩୮ ଇନିଙ୍ଗସ ଖେଳିଥିବା ବ୍ରାଡ଼ମାନ କହନ୍ତି ଖେଳରେ କେତେ ରନ୍ ହେଲା, କେତେ ଇନିଙ୍ଗସ ଖେଳିଲ ତାହା ବଡ଼ କଥା ନୁହେଁ, କିମିତି ଖେଳିଲ ସେଇଟା ହେଉଛି ସବୁଠାରୁ ବଡ଼କଥା ।

କ୍ରିକେଟକୁ 'ଭଦ୍ରଲୋକମାନଙ୍କ ଖେଳ' ବୋଲି କୁହାଯାଏ । ବ୍ରାଡ଼ମାନ ସାରା ଜୀବନ ଭଦ୍ରଲୋକଙ୍କ ଭଳି ଖେଳି ଏ ଖେଳର ସମ୍ମାନକୁ ବଢ଼ାଇଛନ୍ତି । ଯେଉଁ ମୁହୂର୍ତ୍ତରେ ସେ ଜାଣିଛନ୍ତି ଯେ ଏ ଖେଳ ଆଉ ସେ ଖେଳିପାରିବେ ନାହିଁ ଭଦ୍ରଲୋକ ଭଳି ସେଇ ମୁହୂର୍ତ୍ତରେ ସେଥିରୁ ବିଦାୟ ନେଇଛନ୍ତି ।

ସେଇଯୋଗୁଁ ତାଙ୍କର ପରଲୋକରେ ଆଜି କ୍ରିକେଟ ଜଗତ ମୁହ୍ୟମାନ ଏବଂ ସମସ୍ତେ ତାଙ୍କ ଉଦ୍ଦେଶ୍ୟରେ ସମ୍ମାନ ଜଣାଇ ମଥା ଅବନତ କରି ଦଣ୍ଡାୟମାନ ।



# ନୈନଂ ଛିନ୍ଦନ୍ତି ଶସ୍ତ୍ରାଣୀ

ଶ୍ରୀମତୀ ତ୍ରିବେଣୀ ମୋହନ ଆଉ ନାହାନ୍ତି । ଓଡ଼ିଶାର ନାରୀ ଜାଗରଣ, ସଂସ୍କୃତି ଜଗତ ଦରିଦ୍ର ହୋଇଯାଇଛି । ତ୍ରିବେଣୀ ଦେବୀ ତାଙ୍କର ବ୍ରହ୍ମପୁର ବାସଭବନରେ ରହୁଥିଲେ ଏବଂ ସେଇଠାରେ ଜୁଲାଇ ୨୦, ୨୦୦୦ ମସିହାରେ ସେ ଆଖିବୁଜି ଦେଇଛନ୍ତି ଚିରକାଳ ପାଇଁ । ବାଇବେଲ କହେ ମୃତ୍ୟୁ ହେଉଛି ସୁନ୍ଦର, ତାହା ଘର ବାହୁଡ଼ା ଭଳି । ତ୍ରିବେଣୀ ଦେବୀ ଥିଲେ ନୈଷ୍ଠିକ ଖ୍ରୀଷ୍ଟିଆନ । ସ୍ୱାମୀ ଚାର୍ଲସ ମହୀମୋହନଙ୍କର ପରଲୋକ ହୋଇଗଲା ପରେ ସେ ଆପଣାକୁ ଏକାକୀ, ନିଃସଙ୍ଗ ମନେ କରୁଥିଲେ, ଶୀଘ୍ର ଇପ୍‌ସିତ ସ୍ଥାୟୀ ନିବାସକୁ ଫେରିଯିବାକୁ ଚାହୁଁଥିଲେ । ସଂସାରର କାମ ସବୁ ସରିଯାଇଥିଲା । ଯାହା ରହିଯାଇଛି ତାକୁ ସେ ଛାଡ଼ିଦେଇଛନ୍ତି ଉତ୍ତର ପୀଢ଼ି ପାଇଁ ।

୨୭ ଜୁନ୍, ୧୯୨୧ ମସିହା । ଆଜିର ଆନ୍ଧ୍ର ପ୍ରଦେଶର କୁର୍ଣ୍ଣୁଲ ସହରରେ ଚାକିରି କରୁଥାନ୍ତି ଉଚ୍ଚପଦସ୍ଥ ଅଫିସର ଭାବରେ ଶ୍ରୀ ଦୀନବଂଧୁ ମହାନ୍ତି । ସେତେବେଳେ ମାନ୍ଦ୍ରାଜ ପ୍ରେସିଡେନ୍ସି ଗଂଜାମ ଠାରୁ କେରଳ ଯାଏ ପରିବ୍ୟାପ୍ତ ଏବଂ ଶ୍ରୀ ଦୀନବଂଧୁ ମହାନ୍ତି ଜଣେ ଉଚ୍ଚପଦସ୍ଥ ସରକାରୀ ପ୍ରଶାସକ । ତାଙ୍କର କନ୍ୟାଟିଏ ଜନ୍ମହୁଏ ସେଇଦିନ ଏବଂ ବାପା ମା' ନାମ ରଖନ୍ତି ତ୍ରିବେଣୀ, ଗେହ୍ଲାରେ, ଆଦରରେ । ବୁଦ୍ଧି, ଜ୍ଞାନ, ପ୍ରଜ୍ଞାର ଧାର ବେଣୀ ହୋଇ ଝୁଲିବ ଏଇ କନ୍ୟାର ଦିହରେ, ଏଇ ବୋଧହୁଏ ଥିଲା ତାଙ୍କର କଳ୍ପନା ।

ତାହା ସାର୍ଥକ ହେଲା । ତ୍ରିବେଣୀ ଜନ୍ମହେଲେ କୁର୍ଣ୍ଣୁଲରେ କିନ୍ତୁ ପାଠପଢ଼ିଲେ ରେଭେନ୍ସା ଗାର୍ଲ୍ସ ସ୍କୁଲରେ । ସମସାମୟିକମାନେ ସ୍ମୃତିଚାରଣ କରନ୍ତି । ସ୍କୁଲର ରେକର୍ଡ଼ କହେ । ସେ ଥିଲେ "ଉତ୍କୃଷ୍ଟ ଛାତ୍ରୀ, ସବୁଠାରୁ ସର୍ବଗୁଣ ସମ୍ପନ୍ନା ଛାତ୍ରୀ" (Best student and the best allrounder) । ଜୀବନରେ ବହୁ ବିଭାବକୁ ସେ ସ୍ପର୍ଶ କରିଯାଇଛନ୍ତି ଏବଂ ସବୁ ବିଭାବରେ ରଖିଯାଇଛନ୍ତି ଆପଣାର ଆଲେଖ୍ୟ ।

ମାତ୍ର ୧୫ ବର୍ଷ ବୟସରେ ସେ ବିବାହ କରନ୍ତି ଚାର୍ଲସ ମହୀମୋହନଙ୍କୁ । ସେ ଓ ମୁଁ ଏକା ସ୍କୁଲର ଛାତ୍ର । ସ୍କୁଲ ସାଇତି ରଖିଥିଲା ତାଙ୍କର ଲେଖାଗୁଡ଼ିକୁ ଏବଂ ଆମେସବୁ କନିଷ୍ଠମାନେ ପଢୁଥିଲୁ । ପ୍ରତିଭାସମ୍ପନ୍ନ ଚାର୍ଲସ ସ୍କୁଲ ଛାତ୍ର ଭାବରେ ଲେଖୁଥିଲେ କୁଇନ୍ସ ଇଂଲିଶ । ଉତ୍ତର ପୀଢ଼ି ପାଇଁ ତାହା ଥିଲା ଆଦର୍ଶ ଓ ପ୍ରେରଣା ।

ଚାର୍ଲସ ପାଠ ପଢ଼ା ସାରିଲା ପରେ ମଧ୍ୟପ୍ରଦେଶ ରାୟପୁରର ସମ୍ମାନଜନକ ରାଜକୁମାର କଲେଜରେ ଅଧ୍ୟାପକ ହୁଅନ୍ତି । କିନ୍ତୁ ସେ କଲେଜରେ ନାରୀମାନଙ୍କର ଶିକ୍ଷା ପାଇଁ ସୁଯୋଗ ନଥାଏ । କିନ୍ତୁ ତ୍ରିବେଣୀ ନଛୋଡ଼ବନ୍ଧା । ସେ ନାଗପୁର ବିଶ୍ୱବିଦ୍ୟାଳୟରେ ବି.ଏ. ପାସ କରନ୍ତି । ପରେ ଚାର୍ଲସ୍ ସରକାରୀ ଚାକିରିରେ ଯୋଗଦେଇ କଟକରେ ଅବସ୍ଥାପିତ ହୁଅନ୍ତି । ତ୍ରିବେଣୀ ଏଇ ସୁଯୋଗରେ ରାଧାନାଥ ଟ୍ରେନିଂ କଲେଜରୁ ଡି.ଇଡି. ପାଶ କରନ୍ତି ଡିଷ୍ଟିଙ୍କସନ ସହ ।

ଶିକ୍ଷାକରିବା ଏବଂ ଶିକ୍ଷାଦେବା ଉଭୟ ପ୍ରତି ଥିଲା ତ୍ରିବେଣୀଙ୍କର ପରମ ଆକର୍ଷଣ । ସେ ଶିକ୍ଷକ ଜୀବନକୁ ହିଁ ଆଦରି ନେଲେ । ଷ୍ଟୁଆର୍ଟ ସ୍କୁଲ, ରେଭେନ୍ସା ଗାର୍ଲସ ସ୍କୁଲ, ପାରଳାଖେମୁଣ୍ଡି, ସୁନ୍ଦରଗଡ଼, ଭୁବନେଶ୍ୱର, ବ୍ରହ୍ମପୁର, ଛତ୍ରପୁର, ଚିକିଟି ଏବଂ ପରିଶେଷରେ ଆସ୍କା ହାଇସ୍କୁଲରେ ଶିକ୍ଷୟିତ୍ରୀ ହୋଇ ତାଙ୍କର ଶିକ୍ଷକ ଜୀବନ ବିତିଯାଏ ।

କିନ୍ତୁ ଏ ତ ଗଲା ଜୀବନର ଗୋଟାଏ ଦିଗ ମାତ୍ର । ପିଲାଦିନରୁ ସାହିତ୍ୟ, ସଂସ୍କୃତି ପ୍ରତି ଥିଲା ତାଙ୍କର ଗଭୀର ଅନୁରାଗ । ଜୀବନର ବିଂଶ ଦଶକରେ ହିଁ ସେ ସଂପାଦନା ଓ ପ୍ରକାଶ କରନ୍ତି ସାହିତ୍ୟ ପତ୍ରିକା 'ପ୍ରଭାତ' ଏବଂ ତାଙ୍କ ସହିତ ମୋର ସଂପର୍କ ସ୍ଥାପିତ ହୁଏ ସେଇ ଦିନରୁ ।

ଲେଖିବା ତାଙ୍କର ନିଶା । ସେ ଲେଖନ୍ତି ଗଳ୍ପ, ଏକାଙ୍କିକା, ପ୍ରବନ୍ଧ । ଓଡ଼ିଶାର ସ୍ୱନାମଧନ୍ୟ ପତ୍ରିକା 'ସହକାର', 'ଝଂକାର' ପ୍ରଭୃତିରେ ତାଙ୍କର ଲେଖା ପ୍ରକାଶ ପାଇଛି । ତାହା ତାଙ୍କୁ ଆଣିଦେଇଛି ସ୍ୱୀକୃତି ଓ ପ୍ରତିଷ୍ଠା ।

ଟେବୁଲ ଉପରେ ଏବଂ ଥାକରେ ଦେଖୁଛି ତାଙ୍କର ବହିସବୁ । ଘନ ତିମିରେ, ଦୈବୀ ବଳରେ ବଳୀୟାନ, ନିସ୍ତରଙ୍ଗ ଜଳରେ କଲ୍ଲୋଳ, ନିବିଡ଼ ବନ୍ଧନ, ମନ କୁହେଳି, ସାତ କଥାରେ ସୁରେ ପ୍ରଭୃତି । ସେ ଥିଲେ ଖ୍ରୀଷ୍ଟିଆନ । ତେଣୁ ସ୍ୱାଭାବିକ ଭାବରେ ଅନେକ ବହିରେ ସେଇ ଭାବନାର ପ୍ରବାହ ସ୍ପଷ୍ଟ ପ୍ରତୀୟମାନ ।

ସମୟ ଅତିକ୍ରାନ୍ତ ହୋଇ ଚାଲିଛି । ପୁରସ୍କାର ମିଳିଛି । ଯଶ ବି ମିଳିଛି । ଉତ୍ତମ ଶିକ୍ଷକ ଭାବରେ ସରକାରୀ ସ୍ୱୀକୃତି ଯେପରି ମିଳିଛି, ବେସରକାରୀ ସ୍ୱୀକୃତି ବି ସେଇପରି

ମିଳିଛି । ତ୍ରିବେଣୀ କିନ୍ତୁ ରହିଯାଇଛନ୍ତି ନମ୍ର, ଧୀର, ନୈଷ୍ଠିକ ଏବଂ ସଂସ୍କୃତିପ୍ରାଣ ହୋଇ । ସମୟ ଗଡ଼ିଚାଲିଛି ।

କେତେ ଲୋକ୍ ହଜି ଗଲେଣି । ପରିଶେଷରେ ସ୍ୱାମୀ ବି ଚାଲିଲେ ତାଙ୍କ ବାଟରେ । ସମସ୍ତଙ୍କୁ ଯିବାକୁ ହେବ । ତାହା ହିଁ ଏକମାତ୍ର ସତ୍ୟ । ତ୍ରିବେଣୀ ବର୍ତ୍ତମାନ ଏକାକୀ । ସେ ଅପେକ୍ଷା କରିଛନ୍ତି ସେଇ ଅନ୍ତିମ ଡାକକୁ ।

ପରିଶେଷରେ ସେଇଦିନ ଆସିଗଲା । ଜୁନ୍ ୨୦, ୨୦୦୦ ମସିହା । ପଛରେ ରହିଯିବ ସବୁ । ପ୍ରତିଧ୍ୱନି ଶୁଭିବ ତାଙ୍କ 'କୁହୂ'ର । ରହିଯିବ ଅଙ୍କିତ ଚିତ୍ର, ରହିଯିବ ତାଙ୍କର ସୁନ୍ଦର ହାତବୁଣା କାର୍ଯ୍ୟ । ଯୌବନରେ ସେ ସାଇକେଲ ଚଳାଉଥିଲେ କ୍ଷିପ୍ର ଗତିରେ, ଆଜି ଜୀବନ ତା'ଠାରୁ ବେଶି କ୍ଷିପ୍ର ଗତିରେ ଧାବିତ ହେବ । କେଉଁଠାକୁ ? କିଏ କହିବ ? ସେ ଅନନ୍ତ ପ୍ରଶ୍ନର ଉତ୍ତର ତ ମିଳିନାହିଁ ଏ ଯାଏ ।

ତ୍ରିବେଣୀ ଦେବୀ ପାଲଟି ଯାଇଛନ୍ତି ଇତିହାସ । ତାହା କଥା କହିବ ଆଜି ଉତ୍ତର ପୀଢ଼ିକୁ । ସେଇ ତ ତାଙ୍କ ଜୀବନର ସାଫଲ୍ୟ ।



# ପ୍ରବାଦ ପୁରୁଷ ଅରଣ୍ୟର

ଓଡ଼ିଶାର ଅରଣ୍ୟ ବିଭାଗର ପ୍ରବାଦ ପୁରୁଷ ଦୟାନିଧି ଚୌଧୁରୀ ଆଉ ନାହାନ୍ତି । ୨୨ ତାରିଖ ସେପ୍ଟେମ୍ବର, ୨୦୦୦ ମସିହାରେ ଭୁବନେଶ୍ୱରରେ ତାଙ୍କ ସହୀଦନଗର ବାସଭବନରେ ସେ ଇହଲୀଳା ସାଂଗ କରିଛନ୍ତି ।

ମୃତ୍ୟୁ ସମୟକୁ ତାଙ୍କୁ ୮୫ ବର୍ଷ ବୟସ ହୋଇଥିଲା ଏବଂ କ୍ରମେ ସେ ଏକ ବିସ୍ମୃତ ଚରିତ୍ର ହୋଇଯାଇଥିଲେ । ଅବସର ନେବାର ସତେଇଶ ବର୍ଷ ଅତିକ୍ରାନ୍ତ ହୋଇଛି । ସମସାମୟିକ ପ୍ରାୟ ଆଉ କେହି ନାହାନ୍ତି । ଗଲା କିଛିମାସ ତଳେ ତାଙ୍କର ପତ୍ନୀ ତାଙ୍କୁ ଛାଡ଼ି ଚାଲିଯାଇଥିଲେ । ତା'ପରେ ସେ ଆଉ କଟକରେ ରହିବାକୁ ଇଚ୍ଛା ପ୍ରକାଶ କଲେନାହିଁ । ଆପଣାର ସହୀଦନଗର ଘରେ ଝିଅ ପାଖରେ ଆଖି ବୁଜିଦେଲେ ।

ସେ କିନ୍ତୁ ଜୀବିତ ଅଛନ୍ତି ଏବଂ ରହିବେ ସେଇମାନଙ୍କ ପାଖରେ, ଯେଉଁମାନେ ତାଙ୍କର ସଂସ୍ପର୍ଶରେ ଆସିଛନ୍ତି ବା ତାଙ୍କ ସାଂଗରେ ସହକର୍ମୀ ଭାବରେ କାମ କରିଛନ୍ତି । ସେଇ ଅଗଣିତ ମଣିଷ ଆଖିରୁ ଲୁହ ଝରୁଛି, କାରଣ ତାଙ୍କର ମୃତ୍ୟୁ ସଂବାଦ କେବଳ 'ସମାଜ' କାଗଜ ଜରିଆରେ ବା ଜନମୁଖରୁ ସେମାନେ ଶୁଣିବାକୁ ପାଇଲେ । ସେତେବେଳକୁ ତାଙ୍କର ମରଦେହ ପାଉଁଶ ହୋଇସାରିଛି ।

ସଦାହାସ୍ୟ ମୁଖର ଦୟାନିଧି ଚୌଧୁରୀ ଓଡ଼ିଶା ବନ୍ୟ ବିଭାଗର ପ୍ରଥମ ମୁଖ୍ୟ ବନ ସଂରକ୍ଷକ ଏବଂ ସେଇ ପଦବୀ ତାଙ୍କୁ ମଣ୍ଡିତ କରିଥିଲା ଦୀର୍ଘ ୧୩ ବର୍ଷକାଳ । ଏପରି ଭାଗ୍ୟ ବନ୍ୟ ବିଭାଗରେ ଆଉ କାହାକୁ ଏ ପର୍ଯ୍ୟନ୍ତ ମିଳିନାହିଁ ଏବଂ ମିଳିବ ବି ନାହିଁ ବହୁକାଳ ଧରି ।

ଅବସର ନେବାପରେ ସେ କିଛିକାଳ ମଙ୍ଗଳମ୍ ଟିମ୍ବର୍ସ ନାମକ ଏକ କଂପାନୀର ଉପଦେଷ୍ଟା ଭାବେ କାମ କରୁଥିଲେ ଏବଂ ସେଇ ସମୟରେ ଏକ ଗୁରୁତର ଦୁର୍ଘଟଣାରେ ଆହତ ହୋଇଥିଲେ । ତା' ପରଠାରୁ ସେ କ୍ରମଶଃ ଅଚଳ ଏବଂ କ୍ଷୟ ହୋଇଯାଉଥିଲେ ।

କିନ୍ତୁ ତାଙ୍କ ଭିତରେ ଭରି ରହିଥିଲା ପ୍ରାଣର ଗଭୀର ଉଚ୍ଛ୍ୱାସ । ବର୍ଷକ ତଳେ ସେ ଅସୁସ୍ଥ ହୋଇ ଡାକ୍ତରଖାନାରେ ଭର୍ତ୍ତି ହୋଇଥିଲେ । ପରିଚିତ ବ୍ୟକ୍ତିମାନେ ଖବର ପାଇଲେ ଅନେକ ଡେରିରେ । ମୁଁ ଯାଇ ଡାକ୍ତରଖାନାରେ ପହଞ୍ଚିଲି । ସେଇଦିନ ସେ ଡାକ୍ତରଖାନାରୁ

ଛୁଟି ପାଇବାର କଥା । ମୋତେ ଦେଖି ସେ ମୋ ଡାକ ନାମରେ ସମ୍ବୋଧନ କଲେ ଏବଂ ମୁଁ ତାଙ୍କୁ ଆଉଁସି ବି କ'ଣ, ସେ ମୋତେ ଗେହ୍ଲାରେ ଆଉଁସିବାକୁ ଲାଗିଲେ । ଆଖି ଲୁହରେ ଭରିଗଲା । ଏବଂ ସେଇ ସ୍ମୃତି ପଖାଳିଲାବେଳେ ଆଜି ବି ଆଖି ଲୁହରେ ଭରିଯାଉଛି ।

ଦୟାନିଧି ଚୌଧୁରୀଙ୍କ ସମସାମୟିକ ବ୍ୟକ୍ତି ଖୁବ୍ କମ ଜୀବିତ ଅଛନ୍ତି । ସେ ଜଣେ ପ୍ରସିଦ୍ଧ ଫୁଟବେଲ ଖେଳାଳୀ ଥିଲେ ତାଙ୍କର କଲେଜ ଜୀବନରେ । ରେଭେନ୍ସା କଲେଜ ପଢ଼ିଆ ତାଙ୍କର ଖେଳ ପାଇଁ ଗର୍ବିତ ହେଉଥିଲା । କେବଳ ସେତିକି ନୁହେଁ ସେ ଜଣେ ଦେଶପ୍ରେମୀ ଥିଲେ ମଧ୍ୟ । ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥାଏ । ରେଭେନ୍ସା କଲେଜର ଜଣେ ଛାତ୍ର ଯୁଦ୍ଧକୁ ସମର୍ଥନ କରି ଭାଷଣ ଦେଲାପରେ ତାକୁ ପିଟିପିଟି ନେଇଗଲେ ରେଭେନ୍ସା କଲେଜ ହଲରୁ ପଶ୍ଚିମ ଛାତ୍ରାବାସ ପର୍ଯ୍ୟନ୍ତ । ଶ୍ରୀ ମନମୋହନ ମିଶ୍ର ଓ ଶ୍ରୀ ନୀଳମଣି ରାଉତରାୟ ସେଇ ସ୍ମୃତି ବହନ କରନ୍ତି । ସେ ଦୁଇଜଣ ଥିଲେ ରେଭେନ୍ସା କଲେଜ ୟୁନିଅନର ଯଥାକ୍ରମେ ସଭାପତି ଏବଂ ଉପସଭାପତି ।

୧୯୪୦ ମସିହାରେ ଦୟାନିଧି ଚୌଧୁରୀ ଓଡ଼ିଶାର ବନ୍ୟ ବିଭାଗରେ ଯୋଗ ଦେଇଥିଲେ । ୧୯୬୦ ମସିହାରୁ ୧୯୭୪ ମସିହା ପର୍ଯ୍ୟନ୍ତ ମୁଖ୍ୟ ବନ୍ୟ ସଂରକ୍ଷକ ହୋଇ ସେ ଅବସର ଗ୍ରହଣ କରିଥିଲେ ।

କିନ୍ତୁ କର୍ମରୁ ଅବସର ନେଲେ ନାହିଁ । କଟକ ଚଣ୍ଡୀ ମନ୍ଦିର ପରିଚାଳନା ମ୍ୟାନେଜିଂ ଟ୍ରଷ୍ଟି ଭାବରେ ସେ ବହୁ ବର୍ଷ କାର୍ଯ୍ୟକରି ଯାଇଛନ୍ତି ସାଫଲ୍ୟର ସହିତ ।

ତାଙ୍କର ସବୁଠାରୁ ବଡ଼ ଅବଦାନ ହେଉଛି କେନ୍ଦୁପତ୍ରର ଜାତୀୟକରଣ । ଓଡ଼ିଶାର ରାଜନୀତିକୁ ତା ପୂର୍ବରୁ କେନ୍ଦୁପତ୍ର ରାଜନୀତି ବୋଲି କୁହାଯାଉଥିଲା । କାରଣ ଶକ୍ତିଶାଳୀ କେନ୍ଦୁପତ୍ର ବ୍ୟବସାୟୀମାନେ ଓଡ଼ିଶାର ରାଜନୀତିକୁ ପ୍ରଭାବିତ ଓ ନିୟନ୍ତ୍ରଣ କରୁଥିଲେ । ସାମ୍ପ୍ରଦାୟିକ ବିଦ୍ୱେଷ ମଧ୍ୟ କେନ୍ଦୁପତ୍ର ଓ ବିଡ଼ି କମ୍ପାନୀମାନେ ସୃଷ୍ଟି କରୁଥିଲେ । କେନ୍ଦୁପତ୍ରକୁ ଜାତୀୟକରଣ କରି ଏହି ବିପଦକୁ କମାଇବା ସକାଶେ ଉଦ୍ୟମ ଆରମ୍ଭ ହେଲା । ସବୁ ପ୍ରଲୋଭନ, ଧମକ ସତ୍ତ୍ୱେ ଶ୍ରୀ ଦୟାନିଧି ଚୌଧୁରୀ ଏହାର ମୁଣ୍ଡି ମାରିଲେ । କେନ୍ଦୁପତ୍ର ଜାତୀୟକରଣ ହେଲା ।

ପରିଣତ ବୟସ ହୋଇଥିଲା । ଯିବେ ତ ସମସ୍ତେ । କେହି ରହିବେ ନାହିଁ । ଦୟାନିଧି ଚୌଧୁରୀ ଖେଳବାଡ଼ ଥିଲେ ଏବଂ ଜୀବନରେ ମଧ୍ୟ ସେ ଖେଳବାଡ଼ ଭଳି ଭୂମିକା ଗ୍ରହଣ କରି ଯାଇଛନ୍ତି । କାହାରି ପ୍ରତି ଅସୂୟା ନାହିଁ, ବିରକ୍ତି ନାହିଁ । ତାଙ୍କର କେହି ଶତ୍ରୁ ନାହାନ୍ତି । ଏଉଭଳି ଏକ ଜୀବନର ଅବସାନ ଘଟିଛି ଏବଂ ତାଙ୍କର ବିଦାୟ ଅଗଣିତ ମଣିଷଙ୍କ ଆଖିରେ ଭରି ଦେଇଛି ଲୁହ ।

ଏଇ ମାଟି, ଏଇ ମାଟିର ଅରଣ୍ୟକୁ । ସେ ଭଲ ପାଉଥିଲେ ନିବିଡ଼ ଭାବରେ । ତାଙ୍କର ବିଦାୟରେ ଝରୁଥିବ ଲୁହ ବୃକ୍ଷଲତାରୁ ଭିଜା କାକର ଭାବରେ ।



# ଅରଣ୍ୟରୁ ମୁଖ୍ୟମନ୍ତ୍ରୀତ୍ୱ

ପିଲାଦିନେ ପଢ଼ିଥିଲି ଲଗ୍ କାବିନରୁ ହ୍ୱାଇଟ ହାଉସ । ଆବ୍ରାହମ ଲିଙ୍କନଙ୍କ ଜୀବନ କାହାଣୀ । କିନ୍ତୁ ସେଇଟା ପାଶ୍ଚାତ୍ୟ ଦେଶମାନଙ୍କରେ ସଂଭବ ବୋଲି ମୋର ଧାରଣା ଥିଲା । ଏସୀୟ, ଆଫ୍ରିକା ମହାଦେଶ ଯେଉଁଠି ଲୋକେ ନିରକ୍ଷର ସେଇ ଦେଶମାନଙ୍କରେ ତଳୁ ଉଠି ଉପରକୁ ଯିବା ଭାରି କଠିନ । କିନ୍ତୁ ଚୀନ ଦେଶର ପ୍ରବାଦ ପୁରୁଷ ସେନାପତି ମାର୍ଶାଲ ଚୁଟେଙ୍କ ଜୀବନୀ ମୋର ସେଇ ଧାରଣାକୁ ପରିବର୍ତ୍ତନ କରିଥିଲା । ପରବର୍ତ୍ତୀ କାଳରେ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ହୋଇଥିଲେ ଜଣେ ଶ୍ରମିକ । ଥରେ ତାଙ୍କୁ ଆପଣାର ଉଡ଼ାଜାହାଜରେ ନେବାପାଇଁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ମନାକରିଦେଇଥିଲେ । ଏହାର ତୀବ୍ର ପ୍ରତିକ୍ରିୟାରେ ସ୍ୱାଭିମାନୀ ଆନ୍ଧ୍ରପ୍ରଦେଶର ତେଲୁଗୁଦେଶମ୍ ଦଳ ଜନ୍ମ ଲାଭ କଲା ଏବଂ ସେ ଦିନଠାରୁ ଆଉ ଭାରତୀୟ ଜାତୀୟ କଂଗ୍ରେସ ଆନ୍ଧ୍ରରେ ସରକାର ଗଢ଼ିବା ପାଇଁ ସକ୍ଷମ ହୋଇନାହିଁ ।

ମାର୍ଶାଲ ଚୁଟେଙ୍କ ସାଂଗରେ କେବେ ଜୀବନରେ ଦେଖାହେବ ଏହା ମୁଁ ଆଶାକରି ନଥିଲି । ତେବେ ରୁଷ ଓ ଚୀନ ଗସ୍ତରେ ଯିବା ସମୟରେ ରାଜ୍ୟସଭାରେ କମ୍ୟୁନିଷ୍ଟ ଦଳର ନେତା ଭୂପେଶ ଗୁପ୍ତଙ୍କ ୧୨, ଫିରୋଜଶାହା ରୋଡ଼ ବାସଭବନରେ ହଠାତ୍ ଦେଖାହୁଏ ଜଣେ ବ୍ୟକ୍ତିଙ୍କୁ । ତ୍ରିପୁରାର ପାର୍ଲ୍ୟାମେଣ୍ଟ ସଭ୍ୟ ଦଶରଥ ଦେବଙ୍କ ସହିତ ଭୂପେଶବାବୁ ପରିଚୟ କରାଇଦେଲେ ଆମ୍ଭମାନଙ୍କୁ । ସେଇଠି କିଛିଦିନ କଟିଥିଲା ଯିବା ଓ ଆସିବା ସମୟରେ । ଦଶରଥ ଦେବଙ୍କୁ ଜାଣିବାର ଅବକାଶ ଘଟିଥିଲା ।

ତ୍ରିପୁରା ଏକ ବିଚିତ୍ର ଦେଶ । ଏହାର ଅଧିବାସୀମାନଙ୍କ ଭିତରେ ଆଦିବାସୀ ଏବଂ ବଂଗାଳୀମାନେ ଅନ୍ତର୍ଭୁକ୍ତ । ତେବେ ଅନେକ ହୁଏତ ଜାଣି ନାହାନ୍ତି ଯେ ତ୍ରିପୁରାର ରାଜଧାନୀ ଅଗରତାଲାର ଏକ ଅଂଚଳକୁ 'ଓଡ଼ିଆଚାରା' ବୋଲି କୁହାଯାଏ । କାରଣ ଏହି ଅଂଚଳରେ ଓଡ଼ିଆମାନେ ବହୁ ସଂଖ୍ୟାରେ ରହୁଥିଲେ । କିନ୍ତୁ ଓଡ଼ିଆମାନେ ତ୍ରିପୁରାର ସାମାଜିକ, ରାଜନୈତିକ ବା ଅର୍ଥନୈତିକ କ୍ଷେତ୍ରରେ ନିୟାମକ ନୁହନ୍ତି ।

ଆଦିବାସୀମାନଙ୍କ ରାଜ୍ୟ ସେଇଟା । ପର୍ବତ ଓ ଅରଣ୍ୟ ଶୋଭିତ ତ୍ରିପୁରା ହେଉଛି ସେମାନଙ୍କର ବାସଭୂମି । ନାନା ଐତିହାସିକ କାରଣରୁ ବଂଗାଳୀମାନେ ଉକ୍ତ ରାଜ୍ୟରେ ବସତି କରିଛନ୍ତି । ଭାରତ ବିଭକ୍ତ ହେଲା ପରେ ସ୍ୱାଭାବିକ କାରଣରୁ ବଂଗାଳୀମାନଙ୍କର ସଂଖ୍ୟା ବଢ଼ିଯାଇଛି । ଏହାକୁ ଅନେକ ଆଦିବାସୀ ଗ୍ରହଣ କରିପାରି ନାହାନ୍ତି । ସେମାନଙ୍କ ଭିତରେ ସଂଘର୍ଷ ଉପୁଜିଛି । ଏହା ଅର୍ଥନୈତିକ ଏବଂ ସାଂସ୍କୃତିକ କାରଣରୁ ଜନ୍ମ ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ରାଜନୀତିକୁ ପ୍ରଭାବିତ କରିଛି ।

କିନ୍ତୁ ସବୁ ଆଦିବାସୀମାନଙ୍କ ପାଇଁ ଏହା ଯେପରି ପ୍ରଯୁଜ୍ୟ ନୁହେଁ, ସବୁ ବଂଗାଳୀମାନଙ୍କ ପାଇଁ ମଧ୍ୟ ଏହା ପ୍ରଯୁଜ୍ୟ ନୁହେଁ । ଏହା ଏକ କଠୋର ପରୀକ୍ଷା । ଜାତିଆଣ ଏବଂ ଗୋଷ୍ଠୀଗତ ସଂଘର୍ଷ ଭିତରେ ଆପଣାର ଭାରସାମ୍ୟ ରକ୍ଷାକରି ଯେଉଁ ଆଦିବାସୀମାନେ ବଂଗାଳୀମାନଙ୍କ ସହିତ ମିଶି ତ୍ରିପୁରାର ବିକାଶ ପାଇଁ ଉଦ୍ୟମ କରୁଥିଲେ ସେମାନେ ଯେପରି କଠୋର ସଂଗ୍ରାମ ଭିତର ଦେଇ ଗତି କରୁଥିଲେ, ଠିକ୍ ସେଇପରି ଯେଉଁ ବଂଗାଳୀମାନେ ଆଦିବାସୀମାନଙ୍କ ଉପରେ ଶାସନକୁ ନ ଲଦି, ସେମାନଙ୍କ ସହିତ ମୈତ୍ରୀ ସ୍ଥାପନ ହିଁ ଉନ୍ନତ ତ୍ରିପୁରା ଗଠନ ପାଇଁ ଏକାମାତ୍ର ବାଟ ବୋଲି ଭାବୁଥିଲେ ସେମାନଙ୍କୁ ମଧ୍ୟ କମ ପରୀକ୍ଷା ଭିତର ଦେଇ ଗତି କରିବାକୁ ପଡୁ ନଥିଲା ।

ସେମାନଙ୍କ ମଧ୍ୟରେ ଦଶରଥ ଦେବ ଏବଂ ନ୍ରିପେନ ଚକ୍ରବର୍ତ୍ତୀ ଅଗ୍ରଗଣ୍ୟ । ଦଶରଥ ଦେବ ଆସିଥିଲେ ଆଦିବାସୀ ସଂପ୍ରଦାୟ ଭିତରୁ । ସ୍ୱାଧୀନତା ପାଇଁ ସଂଗ୍ରାମ, ଦ୍ୱିତୀୟ ମହାଯୁଦ୍ଧ ସମୟରେ ଜାପାନୀ ଫାସିବାଦୀମାନଙ୍କ ବିରୁଦ୍ଧରେ ପ୍ରତିରକ୍ଷା, ଆଦିବାସୀ ଏବଂ ବଂଗଳାଭାଷୀ ମାନଙ୍କ ଭିତରେ ମୈତ୍ରୀ ପାଇଁ ସଂଗ୍ରାମ ତାଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା । ସାଧାରଣ ଆଦିବାସୀ ପରିବାରରୁ ଆସିଥିବା ଦଶରଥ ଦେବ ଯେ ଦିନେ ତ୍ରିପୁରାର ମୁଖ୍ୟମନ୍ତ୍ରୀ ହେବେ ଏକଥା କଳ୍ପନା କରିବା ସହଜ ନୁହେଁ । ପୁଣି ସେତିକି ନୁହେଁ, ଆପଣାର ମେଣ୍ଟର (mentor), ନେତା, ସହଯୋଦ୍ଧା ତ୍ରିପୁରା ଜନ ଆନ୍ଦୋଳନର ମହାରଥୀ ନ୍ରିପେନ୍ ଚକ୍ରବର୍ତ୍ତୀ ଯେତେବେଳେ କମ୍ୟୁନିଷ୍ଟ ପାର୍ଟିର ନେତୃବୃନ୍ଦଙ୍କ ସହିତ ମତଭେଦ ଯୋଗୁଁ କମ୍ୟୁନିଷ୍ଟ ପାର୍ଟି ଛାଡ଼ିଲେ, ସେତେବେଳେ ଯେଉଁ ସଂକଟ ଦେଖାଗଲା, ତାର ସମାଧାନ ପାଇଁ ମୁଖ୍ୟମନ୍ତ୍ରୀ ପଦବୀ ଗ୍ରହଣ କରି ତାକୁ ସାଫଲ୍ୟର ସହିତ ପରିଚାଳିତ କଲେ ଦଶରଥ ଦେବ । ଅଥଚ ସେତେବେଳକୁ ସେ ନିଜେ ଅସୁସ୍ଥ ହୋଇ ପଡ଼ିଥିଲେ ଏବଂ ବହୁମୂତ୍ର ରୋଗର ବହୁ ଉପସର୍ଗ ତାଙ୍କ ଦେହରେ ଦେଖାଦେଇ ସାରିଥିଲା ।

ତ୍ରିପୁରାର ରାଜନୀତି ବେଶ୍ ପୋଲାରାଇଜ୍‌ଡ । ଏକ ପକ୍ଷରେ ଯେପରି ଆଦିବାସୀ ଏବଂ ବଂଗଳାଭାଷୀମାନଙ୍କ ଭିତରେ ଦେଶ ବିଭକ୍ତ, ଠିକ୍ ସେଇପରି କଂଗ୍ରେସ ଏବଂ କମ୍ୟୁନିଷ୍ଟ ପାର୍ଟି ହିଁ ତ୍ରିପୁରାର ନିୟାମକ, ଅନ୍ୟ କୌଣସି ଦଳର ସ୍ଥିତି ନାହିଁ । ମଝିରେ

'ଆମରା ବାଙ୍ଗାଲୀ' ନାମରେ ଏକ ଦଳ ଉଦ୍ୟମ କରିଥିଲା କିନ୍ତୁ ରାଜନୈତିକ ଦୃଷ୍ଟିରୁ ତୀକ୍ଷ୍ଣ ଭାବରେ ବିଭକ୍ତ ତ୍ରିପୁରାରେ ସେମାନେ ଉଧାଇ ପାରିଲେ ନାହିଁ । ଏହି ତୀକ୍ଷ୍ଣ ବିଭକ୍ତିକରଣ ଫଳରେ କେଉଁ ଦଳର ବିଜୟ ହେବ ତା' କହିବା କଠିନ । ଏହା ସତ୍ତ୍ୱେ, ସବୁ ସଂଘର୍ଷ, ସୀମାନ୍ତ ଆର ପଟରୁ ବିପଦ, ଆକ୍ରମଣ ସତ୍ତ୍ୱେ ଦଶରଥ ଦେବ କେବଳ ମୁଖ୍ୟମନ୍ତ୍ରୀ ହୋଇ ରହିନାହାନ୍ତି, ନିର୍ବାଚନରେ ଜୟଲାଭ ମଧ୍ୟ କରିଛନ୍ତି ।

ଗଲା ନିର୍ବାଚନରେ ଅପଣାର ଅସୁସ୍ଥତା ଯୋଗୁଁ ସେ ଆଉ ନିର୍ବାଚନରେ ଲଢ଼ିଲେ ନାହିଁ କିନ୍ତୁ ବାମପନ୍ଥୀ-ସାମ୍ମୁଖ୍ୟର ବିଜୟ ପାଇଁ କଠୋର ପରିଶ୍ରମ କଲେ । ଏହା ଫଳରେ ତାଙ୍କର ଯେଉଁ ସ୍ୱାସ୍ଥ୍ୟହାନି ହେଲା ସେଥିରୁ ସେ ଉଧୁରି ପାରିଲେ ନାହିଁ ।

ତାଙ୍କର ଜୀବନ ଦୀପ ଲିଭିଗଲା କିନ୍ତୁ ତାହା ବହୁତବର୍ଷ ଧରି ଉତ୍ତର ପୀଢ଼ିକୁ ଆଲୋକିତ କରି ରଖିବ । ସମାଜର ସବୁଠାରୁ ତଳ ସ୍ତରରୁ ଆସି ଜଣେ ମଣିଷ କିପରି ଆପଣାର ସାଧନା, ତ୍ୟାଗ ଓ ପରିଶ୍ରମ ଫଳରେ ଭବିଷ୍ୟତ ବଂଶଧର ପାଇଁ ଉଦାହରଣ ହୋଇ ରହିପାରେ, ତାହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛନ୍ତି ଦଶରଥ ଦେବ ।



# ଶ୍ରମଜୀବୀ ମଣିଷର ଦରଦୀ ବନ୍ଧୁ

ଦାମୋଦର ପଣ୍ଡା ଆଉ ନାହାନ୍ତି । ୧୮ ଅଗଷ୍ଟ, ୧୯୯୯ରେ ସେ ଚାଲିଯାଇଛନ୍ତି ହଠାତ୍, ନିଃଶବ୍ଦରେ, କାହାକୁ କିଛି ନ କହି । ଦିନ ଯେପରି ନିଃଶବ୍ଦରେ ରାତି ହୋଇଯାଏ, ଠିକ୍ ସେଇପରି । ସମାଜର ତଳଶ୍ରେଣୀରୁ ସେ ଆସିଥିଲେ, ମେହନତ ବଳରେ ସେ ଉଠିଥିଲେ ଉପରକୁ । ମେହନତ ତାଙ୍କର ବୁଦ୍ଧିକୁ ଶାଣିତ କରିଥିଲା । ଯାଇଥିଲେ ତୀର୍ଥ ଭ୍ରମଣରେ । ତୀର୍ଥ ପର୍ଯ୍ୟଟନ ସାରି ପହଞ୍ଚିଥିଲେ ଖଡ଼ଗପୁର ଚୈତନ୍ୟଚନ୍ଦ୍ରଙ୍କ ଆଶ୍ରମରେ । ସେଇଠି ତାଙ୍କର ହଠାତ୍ ହୃଦଯନ୍ତ୍ରକ୍ରିୟା ବନ୍ଦ ହୋଇଯାଇ ମହାପ୍ରୟାଣ ଘଟିଲା । କଷ୍ଟ ଭୋଗି ନାହାନ୍ତି, କାହାକୁ କଷ୍ଟଦେଇ ନାହାନ୍ତି । ଜୀବନର ସବୁ କାମ, ସବୁ ଦାୟିତ୍ୱ ସରିଯାଇଛି, ସେ ଆଉ ରହନ୍ତେ କାହିଁକି ?

ତାଙ୍କ ସାଂଗରେ ପରିଚିତି ହୁଏ ସେ ଆଇନ ପଢ଼ିଲା ବେଳେ । ବୋଧହୁଏ ୧୯୫୨ କି ୧୯୫୩ ମସିହାର କଥା । ବର୍ଷ ମନେପଡୁନି । ମୋର ବନ୍ଧୁ ଶ୍ରୀ ବିପିନ ବିହାରୀ ରଥ, ଆଡ଼ଭୋକେଟଙ୍କର ସେ ସହପାଠୀ, ବଂଧୁ । ଜୀବନର ସିଡ଼ିରେ ଉଠିଛନ୍ତି ଦାମୋଦର ପାହାଚ ପରେ ପାହାଚ ଅତିକ୍ରାନ୍ତ କରି ।

୧୯୨୫ ମସିହା ଅଗଷ୍ଟ ମାସରେ ଦାମୋଦର ଗଂଜାମ ଜିଲ୍ଲାର ପୋଡ଼ାପଦର ଗାଁରେ ଜନ୍ମଗ୍ରହଣ କରିଥିଲେ ଏବଂ ଛତ୍ରପୁର ଅନସ୍ଲୋ ଇନଷ୍ଟିଚ୍ୟୁଟ (ହାଇସ୍କୁଲ)ରେ ପାଠପଢ଼ି ଗଂଜାମ ଜିଲ୍ଲା କଲେକ୍ଟରଙ୍କ ଅଫିସରେ କିରାନୀ ଭାବରେ କାର୍ଯ୍ୟ ଆରମ୍ଭ କଲେ । ସମାଜର ତଳ ଶ୍ରେଣୀର ମଣିଷ ପାଇଁ ତାଙ୍କର ଦରଦ ଜନ୍ମିଥିଲା ପିଲାଦିନରୁ । ସାଫଲ୍ୟ ସିଡ଼ିରେ ଉଠିବା ବେଶ କଷ୍ଟକର । ସେ ଷ୍ଟେନୋଗ୍ରାଫି ଏବଂ ଟାଇପଙ୍ଗ୍ ଶିଖିଲେ । ପରେ ଓଡ଼ିଶା ସେକ୍ରେଟେରିଏଟରେ ତାଙ୍କର ନିଯୁକ୍ତି ହୁଏ । ବିଭିନ୍ନ ଅଫିସର ଓ ମନ୍ତ୍ରୀଙ୍କ ସହକାରୀ ଭାବରେ ତାଙ୍କର ଦକ୍ଷତା ତାଙ୍କୁ ଉପରକୁ ଉଠିବାକୁ ସାହାଯ୍ୟକରେ । ଏଇ ଭିତରେ ସେ ଘରୋଇ ଭାବରେ ବି.ଏ. ପାସ କରନ୍ତି । ଶ୍ରମ ଓ ଆଦିବାସୀ କଲ୍ୟାଣ ବିଭାଗରେ କାର୍ଯ୍ୟ

ତାଙ୍କୁ ଓଡ଼ିଶାର ଅଗଣିତ ଶ୍ରମିକମାନଙ୍କ ସମସ୍ୟା ସହିତ ପରିଚିତି ଆଣିଦିଏ ଏବଂ ସେଇମାନଙ୍କର କଲ୍ୟାଣ ପାଇଁ ସେ ଆପଣାକୁ ନିୟୋଜିତ କରନ୍ତି । ପାଠ ପଢ଼ିବାର ତୃଷ୍ଣା ପ୍ରବଳ । ସେ ୧୯୫୪ ମସିହାରେ ଆଇନ ପାଶ କରନ୍ତି ଏବଂ ପରବର୍ତ୍ତୀ କାଳରେ କଲିକତା ବିଶ୍ୱବିଦ୍ୟାଳୟରୁ ଶ୍ରମ ଓ ସମାଜକଲ୍ୟାଣରେ ଡିପ୍ଲୋମା ହାସଲ କରନ୍ତି । ଶ୍ରମଜୀବୀ ମଣିଷର ସମସ୍ୟା ଅଧ୍ୟୟନ କରିବା ପାଇଁ ସେ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ସୁଇଜରଲାଣ୍ଡ ଯାଆନ୍ତି । ୧୯୫୫ ମସିହାରେ ସେ ସହକାରୀ ଶ୍ରମ କମିଶନର ଭାବରେ ନିଯୁକ୍ତି ପାଆନ୍ତି । ରାଜ୍ୟ ସରକାରଙ୍କ ଚାକିରିରୁ ଅବ୍ୟାହତି ନେଇ ଭାରତ ସରକାରଙ୍କର ଶ୍ରମ କନସିଲିଏସନ ଅଫିସର ହୁଅନ୍ତି । ନିଜର ଯୋଗ୍ୟତା, ନିଷ୍ଠା ଏବଂ ସାଧୁତା ଯୋଗୁଁ ସେ କେନ୍ଦ୍ର ସରକାରଙ୍କର ଯୁଗ୍ମ ମୁଖ୍ୟ ଶ୍ରମ କମିଶନର ଏବଂ କଲ୍ୟାଣ କମିଶନର ପଦବୀ ପର୍ଯ୍ୟନ୍ତ ଉନ୍ନୀତ ହୁଅନ୍ତି । ତଥାପି ତାଙ୍କର କାର୍ଯ୍ୟର ସମାପ୍ତି ହୁଏନା । ଏହା ଭିତରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ କରନ୍ତି ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ପାଆନ୍ତି ଆପଣାର ସୃଜନଶୀଳ ଗବେଷଣାତ୍ମକ ନିବନ୍ଧ ଲେଖି । ତ୍ରିପୁରା ରାଜ୍ୟରେ ସେ ଦେବୋତ୍ତର କମିଶନର ଭାବରେ ନିଯୁକ୍ତି ପାଆନ୍ତି ଏବଂ ପରବର୍ତ୍ତୀ କାଳରେ ତ୍ରିପୁରା ଲୋକସେବା ଆୟୋଗର ଚେୟାରମାନ ହୁଅନ୍ତି ।

କଲେକ୍ଟର ଅଫିସର କିରାନୀରୁ ଲୋକସେବା ଆୟୋଗର ଅଧ୍ୟକ୍ଷ ହେବାର ଦୀର୍ଘ ପଥ ଅତିକ୍ରମ ପରେ ସେ ଅବସର ଗ୍ରହଣ କରନ୍ତି ।

କିନ୍ତୁ କାମ ତ ସରିନାହିଁ ।

ସେ ଆପଣାକୁ ରିଟାୟାର୍ଡ଼ ବୋଲି କଦାପି ଗ୍ରହଣକରି ନାହାନ୍ତି ।

ଅସଂଗଠିତ ଶ୍ରମିକଙ୍କର କଲ୍ୟାଣ ପାଇଁ, ଦାଦନ ବା ଗୋତି ଶ୍ରମିକଙ୍କୁ ବନ୍ଧନରୁ ମୁକ୍ତ କରିବା ପାଇଁ ତାଙ୍କର କାର୍ଯ୍ୟ ଆରମ୍ଭହୁଏ । ଗୋଟାଏ ରାଜ୍ୟରୁ ଅନ୍ୟ ଏକ ରାଜ୍ୟକୁ ପ୍ରତିଦିନ ଗୋତିଶ୍ରମିକ ଚାଲାଣ ହୁଅନ୍ତି । ସେ କଥା ସେ ନିଜେ ଜାଣିଛନ୍ତି ସରକାରୀ କାର୍ଯ୍ୟରୁ । ଯାହା ସେ ସରକାରୀ କଳରେ କରିପାରି ନଥିଲେ ବର୍ତ୍ତମାନ ତାହା କରିବା ପାଇଁ ସେ ହାତ ମୁଠାକୁ ଟାଣ କଲେ ଏବଂ ଅଣ୍ଟା ଭିଡ଼ିଲେ । ବିଭିନ୍ନ ରାଜ୍ୟକୁ ଚାଲାଣ ହୋଇଯାଉଥିବା ଶ୍ରମିକମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ପାଇଁ ସେ ଲଢ଼ିଲେ– ରାଜରାସ୍ତାରେ, ସରାକାରୀ ଅଫିସରେ ଏବଂ କୋର୍ଟ କଚେରୀରେ । ସେ ଚାଲିଲେ ରାଜ୍ୟରୁ ରାଜ୍ୟକୁ, ସେମାନଙ୍କ ଅବସ୍ଥାର ପ୍ରତ୍ୟକ୍ଷ ଅଭିଜ୍ଞତା ପାଇଁ ଏବଂ ସେମାନଙ୍କୁ ସାହାଯ୍ୟ କରିବା ପାଇଁ, ରାଜ୍ୟ ସରକାର ତାଙ୍କୁ ସର୍ବନିମ୍ନ ମଜୁରୀ ନିର୍ଦ୍ଧାରଣ ବୋର୍ଡ଼ର ଏକ ବରିଷ୍ଠ ଉପଦେଷ୍ଟା ଭାବରେ ଗ୍ରହଣ କରିଥିଲେ ।

ପରିଧାନ ଗେରୁଆ ବସ୍ତ୍ର । ଯ ଧାରୟତି ଇତି ଧର୍ମ । ଯାହା ଧାରଣ କରେ ତାହା ହିଁ ଧର୍ମ । ଏହାଥିଲା ତାଙ୍କର ନୀତି । ସନାତନ ସେବା ଆଶ୍ରମର ସେ ଥିଲେ ପ୍ରତିଷ୍ଠାତା ସଭାପତି । ଶ୍ରମ କଲ୍ୟାଣ ସହିତ ବିଭିନ୍ନ ରାଜ୍ୟର ସନାତନ ସେବା ଆଶ୍ରମ ପରିଦର୍ଶନ ଥିଲା ତାଙ୍କର ଜୀବନଧାରା ।

ଶ୍ରମଜୀବୀ ମଣିଷର କଲ୍ୟାଣ ପାଇଁ ତାଙ୍କର ଅବଦାନ ବିପୁଳ । ଖୁବ୍ କମ୍ ଟ୍ରେଡ୍ ୟୁନିଅନ ନେତା ଏଭଳି କାର୍ଯ୍ୟ କରିଯାଇଛନ୍ତି ।

ସେ ନାହାନ୍ତି । କେହି ରହିବେ ନାହିଁ । ଏହା ହିଁ ଧ୍ରୁବ ସତ୍ୟ । କିନ୍ତୁ ସେ ଛାଡ଼ିଯାଇଛନ୍ତି ଏକ ଉଜ୍ଜ୍ୱଳ ପରମ୍ପରା, ଯାହା ଭବିତବ୍ୟ ପାଇଁ ଆଲୋକର ଉତ୍ସହୋଇ ରହିବ ।



# ଠେକା ଓ ଠେଙ୍ଗା

ସେଇ 'ଠେକା ଓ ଠେଙ୍ଗା' ସନ୍ତକଟା ସେଦିନ ହଜିଗଲା । ଏବଂ ହୋଇଗଲା ଇତିହାସ ଉତ୍ତରପୁରୁଷ ପାଇଁ । ଆଉ କେତେ ବର୍ଷପରେ ହୁଏତ ଲୋକେ ବିଶ୍ୱାସ କରିବେ ନାଇଁ ଇମିତି ଗୋଟାଏ ମଣିଷ ଏଇ ମାଟିରେ ଜନ୍ମଗ୍ରହଣ କରିଥିଲା ବୋଲି ।

ଗୋଟାଏ ଅପାଠୁଆ ମଣିଷ ଯେ ସବୁ ପାଠୁଆ ମଣିଷ ପାଇଁ 'ଜ୍ଞାନମଣ୍ଡଳ ବା ବିଶ୍ୱକୋଷ' ଏକାକୀ ରଚନା କରିଯାଇପାରେ ଏକଥା କ'ଣ ଉତ୍ତରପୁରୁଷ ବିଶ୍ୱାସ କରିବେ ? କଟକ ଜିଲ୍ଲାର ଅଖ୍ୟାତ ମାହାଙ୍ଗା ଅଂଚଳର କେଉଁ ଏକ 'ଶିକ୍ଷାହୀନ' ମଣିଷ ରଚନା କରିଯାଇପାରେ ଚାରିଶହରୁ ଉର୍ଦ୍ଧ୍ୱ ନାଟକ ଏକଥା କିଏ ବିଶ୍ୱାସ କରୁଛି ବର୍ତ୍ତମାନ ? ବିନୋଦ କାନୁନ୍‌ଗୋ, ବୈଷ୍ଣବ ପାଣି ଇତିହାସର ପୃଷ୍ଠାରେ କିନ୍ତୁ ଉଜ୍ଜଳି ରହିବେ ଚିରକାଳ ।

ଠିକ୍ ସେଇପରି ଉତ୍ତରପୁରୁଷ ବିଶ୍ୱାସ କରିବେ ନାଇଁ ଦାଶରଥି ପଟ୍ଟନାୟକଙ୍କ କଥା । ପାଠ ବିଶେଷ ନାହିଁ । ବନ୍ଦୋବସ୍ତ ବିଭାଗ ଠାରୁ ଆରମ୍ଭକରି ଜଂଗଲ ବିଭାଗ ପର୍ଯ୍ୟନ୍ତ ଚାକିରି । ଆମ ଦେଶରେ ସରକାରୀ ଚାକିରିଆମାନେ ଅବସର ନେଲା ପରଦିନ ଆଉ ଗୋଟାଏ ଚାକିରି ଖୋଜନ୍ତି, ନଚେତ୍ କୌଣସି ରାଜନୈତିକ ଦଳ ଅନ୍ତର୍ଭୁକ୍ତ ହୋଇ 'ଟିକେଟ' ମାଗନ୍ତି ନଚେତ୍ ବାଡ଼ିଟିଏ ଧରି ଚାଲନ୍ତି 'ମର୍ଣ୍ଣିଂ ୱାକ୍' ରେ, ନଚେତ୍ ଦେବ ମନ୍ଦିରକୁ । ଦାଶରଥି ପଟ୍ଟନାୟକଙ୍କ କ୍ଷେତ୍ରରେ କିନ୍ତୁ ଠିକ୍ ଓଲଟା କଥା ଘଟିଲା । ସେ ନିଜକୁ 'ରିଟାୟାର୍ଡ଼' ବୋଲି ବିଚାର ନକରି 'ରିଟ୍ରାଏଡ଼' ବୋଲି ବିଚାରକଲେ । ଏପର୍ଯ୍ୟନ୍ତ ଥିଲା 'ପେଷା' କିନ୍ତୁ ବର୍ତ୍ତମାନ ଲାଗିଲା 'ନିଶା' । ସେ ନିଶାସକ୍ତ ହୋଇଗଲେ । ଆଉ କିଛି ତାଙ୍କ ମୁଣ୍ଡରେ ପଶିଲା ନାହିଁ । ଲୁଗାପଟା, ଖାଇବା ରହିବା, ଖରା ବର୍ଷା କାକର ସବୁ ଭୁଲିଗଲେ ସେ । ଇମିତି ନିଶା କ'ଣ କାହାକୁ ଘାରେ ? ମୁଣ୍ଡରେ ଠେକାଟିଏ, ସେଇଟା ଲୁଙ୍ଗି, ଚାଦର ସବୁ କାମ କରେ । ଅଣ୍ଟାରେ କରିଆ ଖଣ୍ଡେ, ଆଣ୍ଠୁ ଲୁଚୁ ନାହିଁ । ଖାଲି ପାଦ, ଫୁଙ୍ଗୁଳା ଦେହ । ହାତରେ ଠେଙ୍ଗାଟିଏ ।

ସେ ନିଷ୍ପତ୍ତି କଲେ ପାଠାଗାରଟିଏ କରିବେ । ମଦ ଦୋକାନ ନୁହେଁ, ତେଜରାତି ଦୋକାନ ନୁହେଁ, କ୍ଲବ ନୁହେଁ । ପାଠାଗାର ଗ୍ରନ୍ଥାଗାର ପାଲଟିଲା, ଗ୍ରନ୍ଥାଗାର ପାଲଟିଲା ସଂଗ୍ରହାଳୟ । ଯାହା ପଡ଼ିଲା ହାତରେ ତାକୁ ଗୋଟାଇ ମୁଣ୍ଡରେ ରଖି ଚାଲିଲେ ସେ ଆଗକୁ । ଚରୈବତି, ଚରୈବତି, ଚରୈବତି, ଚାଲ, ଚାଲ, ଆଗକୁ ଚାଲ । ଓଡ଼ିଶାର ସବୁ ଅଂଚଳ ସେ ଖେଦିଗଲେ । ସମସ୍ତଙ୍କୁ ଭେଟିଲେ, ମାଗିଲେ ଭିକ୍ଷା ! ଏ କି ଅଜବ ଭିକ୍ଷା ! କେହି କେବେ ଆଗରୁ ଶୁଣି ନଥିଲେ । ବହିଟିଏ, ମେଗାଜିନ୍‌ଟିଏ, ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ୱାରା ବ୍ୟବହୃତ ଛତା, ବାକ୍ସ, ଦୁଆତ ଦାନ ମାଗୁଛି ଏଇ ବୁଢ଼ାଟା ! ଗୋଟାଏ ଆଖି ଗଲାଣି, କିନ୍ତୁ ସେଇ ଗୋଟାଏ ଆଖିରେ କି ଦୃପ୍ତ ଚାହାଣୀ । ହାଡୁଆ ଦିହ, ପାକୁଆ ପାଟି, କିନ୍ତୁ ସେଇଥିରେ କି ବାକ୍ୟ, କି କଥା ! ''ଆଜ୍ଞା, ଅଫିସର ପାଠ ପଢ଼ିଛନ୍ତି ସତ । କିନ୍ତୁ ଗ୍ରହଟିଏ ତ !'' କାହାକୁ ହଁ ଜୀ, କରିବା ପାଇଁ ପ୍ରସ୍ତୁତ ନୁହନ୍ତି ସେ । ଉଦୟପୁର, ନୁଆଗାଁ । ବାଟ କୁଆଡ଼େ ? ଏଇଟାକୁ ଉଠାଇ ନେଉନ ନୟାଗଡ଼ କି ଭୁବନେଶ୍ୱରକୁ ? ସାଂଗେ ସାଂଗେ ଉତ୍ତର ମିଳିବ ବିଶ୍ୱଭାରତୀ, ଶାନ୍ତିନିକେତନ କେଉଁ ଜାତୀୟ ରାଜପଥରେ ? ଭେଲୋର ଡାକ୍ତରଖାନାକୁ କେଉଁ ଟ୍ରେନରେ ଆପଣ ସିଧା ପହଞ୍ଚିପାରିବେ ? ପୁଟପର୍ତ୍ତି, ପ୍ରଶାନ୍ତି ନିଳୟମ କେଉଁଠି, କେଉଁ ରାଜରାସ୍ତା ବା ଟ୍ରେନଲାଇନ କଡ଼ରେ ?

ଠେଙ୍ଗା ଓ ଠେକା ଧୀରେ ଧୀରେ ସନ୍ତକ ବା ସିମ୍ବଲରେ ପରିଣତ ହେଲା । ଥଟ୍ଟା, ଅବିଶ୍ୱାସ, ଧୀରେ ଧୀରେ ସମ୍ମାନ ଏବଂ ତ୍ୟାଗର ପ୍ରତୀକ ହେଲା । ଏଇଠି ତିଆରି ହେବ ପାଠାଗାର ଏବଂ ସଂଗ୍ରହାଳୟ ! ଏଇ ଥୁଣ୍ଟା ଗଛଭରା ପାହାଡ଼ିଆ ମାଟିରେ ? ହୁଁ, ଏଇଠି । ଇତିହାସରେ ଦିନେ ଚାଣକ୍ୟ କୁଶଗଛ ନିର୍ମୂଳ କରିବା ପାଇଁ ଶପଥ ନେଇଥିଲେ । ସେ ପୁରାଣ-ବିସ୍ମୃତ । ବୃଦ୍ଧ ଦାଶରଥି ପଟ୍ଟନାୟକ ଲାଗିଲେ ଖୁଣ୍ଟା ଉପୁଡ଼ାଇବା ପାଇଁ ହାତରେ ଶାବଳ ଧରି । 'ଖୁଣ୍ଟାତଡ଼ା ବୁଢ଼ା' ନାମରେ ସେ ଖ୍ୟାତ ହୋଇଗଲେ ।

ଉଦୟପୁର, ନୂଆଗାଁ ତୀର୍ଥଭୂମି ପାଲଟିଲା । ସେମାନେ ଆସିଲେ, ଆସିଲେ ଗବେଷକ, ଅଧ୍ୟାପକ, ଛାତ୍ର, ନେତା, କର୍ମୀ, ସମାଜସେବୀ, ଦଳମତ ଗୋଷ୍ଠୀ ନିର୍ବିଶେଷରେ । ବୃଦ୍ଧ ଯାହା ଯେଉଁଠୁ ପାଇଲେ ସବୁକୁ ସଜାଡ଼ିବାକୁ ଲାଗିଲେ । ''ଏଗୁଡ଼ାକ କ'ଣ ରଖିହେବ ? କାହିଁକି ରଖିଛନ୍ତି ଏସବୁ ?'' ବୃଦ୍ଧଙ୍କର ଆଖି ଦପ୍‌ଦପ୍ ହୋଇ ଜଳୁଛି । କ'ଣ ହେଲା ମୁଁ ଏସବୁକୁ ଫୋପାଡ଼ି ଦେବି ?

ବୟସ ଅତିକ୍ରାନ୍ତ ହୋଇଛି । ଘର ଢ଼ିଙ୍କି କୁମ୍ଭୀର ପାଲଟିଛି । ଦେହ ବୋଲ ମାନୁନାହିଁ । ସେ ଅସୁସ୍ଥ ହୋଇ ଉଠିଲେଣି । କ'ଣ ହେବ ମୋ' ପରେ, କିଏ ସମ୍ଭାଳିବ

ଏହାକୁ ? ତାଙ୍କର ବି' ଧାଡ଼ିଆ ଚିଠି ପାଇଛି ମୁଁ ଅନେକ । ପୋଷ୍ଟକାର୍ଡ଼ର ଚିଠି । ''ଅମୁକ ବହି ପ୍ରକାଶିତ ହେଲା, ପଠାଇଲେ ନାହିଁ ?'' ''କ'ଣ କରିବି, ଲେଖିବେ'' । ''ଆସିବେ ନିଶ୍ଚୟ'' । ଚିଠିସବୁ ଆଜି ବି ହାବୁକା ମାରେ ମନରେ । ବହିଟିଏ ପ୍ରକାଶିତ ହେଲେ ମନ ହୁଏ ଚିଠିଟିଏ ପାଇବା ପାଇଁ । କିନ୍ତୁ ଚିଠି ତ ଆସିବ ନାହିଁ ।

ଜନ୍ମ ହୋଇଥିଲା ଅଖ୍ୟାତ ପଲ୍ଲୀରେ, ଅଖ୍ୟାତ ଘରେ । କରୁଣ ପରିସ୍ଥିତିରେ ମୃତ୍ୟୁ । କିନ୍ତୁ ଖ୍ୟାତ କରିଗଲା ନିଜକୁ, ନିଜର ଜନ୍ମ ମାଟିକୁ ଏବଂ ନିଜର ଅନୁଷ୍ଠାନକୁ ।

ପାଲଟିଗଲା ପ୍ରବାଦପୁରୁଷ । ହେ, ପ୍ରବାଦ ପୁରୁଷ ତୁମକୁ ପ୍ରଣାମ । ଯୁଗେଯୁଗେ ତମପରି ପୁଅ ଏ ମାଟିମାଆ ଜନ୍ମ କରୁ । ଜନ୍ମମାଟି ଧନ୍ୟ ହେଉ ।



# ସାମ୍ବାଦିକର ଶେଷ ସଂବାଦ

ଦୀନବଂଧୁ ତ୍ରିପାଠୀ ମୋର ପଡ଼ୋଶୀ ବହୁବର୍ଷ ଧରି, ୧୯୫୧ ମସିହାରୁ । ତାଙ୍କ ସହିତ ପରିଚୟ କିନ୍ତୁ ଅନେକ ଦିନରୁ । କବି ରାଧାମୋହନ ଗଡ଼ନାୟକ ତାଙ୍କର ଅନ୍ତରଂଗ ବନ୍ଧୁମାନଙ୍କ ମଧ୍ୟରେ ଅନ୍ୟତମ ।

ପିଲାଦିନରୁ ସେ ସମାଜସେବା ପ୍ରତି ଆକୃଷ୍ଟ ଥିଲେ । ଗାନ୍ଧିଜୀଙ୍କ ଓଡ଼ିଶା ପରିଭ୍ରମଣ ସମୟରେ ଅନୁଗୋଳ ଦେଇ ଯାତ୍ରା କରିବା କାଳରେ ସେ ତାଙ୍କ ସହିତ ଥିଲେ । ୰ ଆନନ୍ଦ ପ୍ରଧାନ, ୰ ହୃଷିକେଶ ତ୍ରିପାଠୀଙ୍କର ସେ ଥିଲେ ସମସାମୟିକ ସହକର୍ମୀ । ୰ ଡାକ୍ତର କୃପାସିନ୍ଧୁ ଭୁକ୍ତା, ୰ ଗିରିଜା ଭୂଷଣ ଦତ୍ତଙ୍କର ମଧ୍ୟ ସେ ଥିଲେ ସହକର୍ମୀ । ଗାନ୍ଧିବାଦୀ ଦୀନବନ୍ଧୁ ତ୍ରିପାଠୀ କିନ୍ତୁ ବନ୍ଧୁଥିଲେ ବିଭିନ୍ନ ଦଳର ବ୍ୟକ୍ତିମାନଙ୍କର । ୧୯୪୦ ମସିହାରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମାରେ ଅନୁଗୋଳ ଜେଲରେ ବନ୍ଦୀ ଥିଲେ ବହୁ କମ୍ୟୁନିଷ୍ଟ ନେତା । ସେମାନଙ୍କ ସହିତ ମଧ୍ୟ ପ୍ରଗାଢ଼ ବଂଧୁତ୍ୱ ଥିଲା । ଦୀନବନ୍ଧୁ ତ୍ରିପାଠୀଙ୍କର ବିଶେଷତଃ କମ୍ୟୁନିଷ୍ଟ ପାର୍ଟିର ନେତା ଶରତ ପଟ୍ଟନାୟକଙ୍କ ସହ ତାଙ୍କର ବଂଧୁତା ଅତୁଟ ରହିଥିଲା ପରବର୍ତ୍ତୀ କାଳରେ ।

୰ ନବକୃଷ୍ଣ ଚୌଧୁରୀ ଯେତେବେଳେ ଅନୁଗୋଳକୁ ଆପଣାର କର୍ମକ୍ଷେତ୍ର ଭାବରେ ବାଛିନେଲେ ସେତେବେଳଠାରୁ ଦୀନବନ୍ଧୁ ତ୍ରିପାଠୀ ତାଙ୍କର ସହକାରୀ ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । ସେ ତତ୍‌କାଳୀନ ସମାଜ କାଗଜର ଏଜେଣ୍ଟ ଥିଲେ ଅନୁଗୋଳରେ । ଏହି କାଗଜ ଥିଲା ତାଙ୍କ ପାଇଁ ମାଧ୍ୟମ, ଜନସାଧାରଣଙ୍କ ଭିତରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାର ପାଇଁ । ଏହି କାଗଜର ପରବର୍ତ୍ତୀ କାଳରେ ସାମ୍ବାଦିକ-ପ୍ରତିନିଧି ଥିଲେ ଦୀନବନ୍ଧୁ ତ୍ରିପାଠୀ ଅନୁଗୋଳରେ ଏବଂ ଶଯ୍ୟାଶାୟୀ ନହେବା ପର୍ଯ୍ୟନ୍ତ ସେ ପ୍ରତିଦିନ ସମାଜକୁ ଖବର ପଠାଇବା ତାଙ୍କର ଥିଲା ଦୈନନ୍ଦିନ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

ପ୍ରତିଦିନ ଆସନ କରି, ସାଇକେଲ ଚଢ଼ି ସେ ଆପଣାର ଶରୀରକୁ ରଖିଥିଲେ ନିରୋଗ କରି । ମୃତ୍ୟୁର କିଛିଦିନ ପୂର୍ବରୁ ସେ ଅଚଳ ହୋଇଯାଇଥିଲେ ନଚେତ୍ ୯୧ ବର୍ଷ ବୟସରେ ତାଙ୍କର ପରଲୋକ ଘଟିବା ପର୍ଯ୍ୟନ୍ତ ସେ କର୍ମଠ ଥିଲେ । 'ସମାଜ' ପରିବାରର ଜଣେ ସଭ୍ୟ ବୋଲି ଆପଣାକୁ ବିଚାର କରୁଥିଲେ । ଓଡ଼ିଶାର ବହୁନେତାଙ୍କ ସହିତ ତାଙ୍କର ପରିଚିତି ଥିଲା । ସେମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ହରେକୃଷ୍ଣ ମହତାବ, ରାଧାନାଥ ରଥ ପ୍ରମୁଖ ଅନ୍ତର୍ଭୁକ୍ତ ।

କ୍ରମେ କଂଗ୍ରେସର ସକ୍ରିୟ କାର୍ଯ୍ୟରୁ ସେ ଆପଣାକୁ ନିଷ୍କ୍ରାନ୍ତ କରିନେଇ କେବଳ ସାମ୍ବାଦିକତାକୁ ଏକମାତ୍ର କାର୍ଯ୍ୟ ଭାବରେ ଗ୍ରହଣ କରିନେଇଥିଲେ । ପ୍ରତିଦିନ ସେ 'ସମାଜ' ସମେତ ବହୁ ସଂବାଦପତ୍ରକୁ ସଂବାଦ ପଠାଇ ଆସିଛନ୍ତି, ବହୁବର୍ଷ ଧରି । ସେ ଥିଲେ ଉତ୍ତମ ପଡ଼ୋଶୀ, ଅଭିଭାବକ ଏବଂ ଶୁଭେଚ୍ଛୁ । ପୁରାତନ ଗାନ୍ଧିବାଦୀ ଦୃଷ୍ଟିକୋଣ ତାଙ୍କୁ ଅନେକ ସମୟରେ ମର୍ମାହତ କରୁଥିଲା, ସମାଜରୁ ମୂଲ୍ୟବୋଧର ଅବକ୍ଷୟ ଦେଖି ।

କୌଣସି ପ୍ରକାର ମାଦକ ଦ୍ରବ୍ୟର ସେ ପାଖ ମାଡୁନଥିଲେ ଏବଂ ନିଶାମୁକ୍ତି ଆନ୍ଦୋଳନ ତାଙ୍କର 'ନିଶା'ରେ ପରିଣତ ହୋଇଥିଲା ।

୯୧ ବର୍ଷ ବୟସ ହୋଇଥିଲା । କ୍ରମେ ସେ ଅତ୍ୟନ୍ତ ଅସୁସ୍ଥ ହୋଇପଡ଼ିଲେ ଏବଂ ଅଚଳ ହୋଇଆସିଲା ଦେହ । ଏକୁଟିଆ ହୋଇଯାଇଥିଲେ ଜୀବନରେ, କାରଣ ସାଙ୍ଗ ସାଥୀ ବାହୁଡ଼ିଯାଇ ସାରିଲେଣି ଅନେକ ଦିନରୁ ।

୧୪ ଡିସେମ୍ବର, ୨୦୦୦ ମସିହା । ନୂତନ ଶତାବ୍ଦୀ (ଗଣିତ ହିସାବରେ) ଆରମ୍ଭ ହେବାକୁ ମାତ୍ର କେଇଟା ଦିନ । ରାତି ୮ଟା ।

ସାମ୍ବାଦିକ, ସମାଜସେବୀ ଦୀନବନ୍ଧୁ ତ୍ରିପାଠୀ ଆଉ ନାହାନ୍ତି । ଏଇଥିଲା ସାମ୍ବାଦିକର ଶେଷ ସଂବାଦ ।



# ମାନବିକ ମୂଲ୍ୟବୋଧର ପ୍ରତୀକ

ଭଲ ପାଠ ପଢ଼ ବା ନପଢ଼, ଇଂଜିନିଅର, ଡାକ୍ତର ହୁଅ ବା ନହୁଅ, କିନ୍ତୁ ଭଲ ମଣିଷ ହୁଅ, ଏଇକଥା ଲେଖନ୍ତି ଚୌଧୁରୀ ଧୀରେନ୍ଦ୍ରନାଥ ମିଶ୍ର ତାଙ୍କର ପୁଅମାନଙ୍କୁ । ନିଜେ ପଢ଼ିପାରି ନଥିଲେ, ତେଣୁ ପିଲାମାନଙ୍କୁ ପଢ଼ାଇବାରେ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲେ । କିନ୍ତୁ ପିଲାମାନେ ପାଠପଢ଼ୁ ପଢ଼ୁ ଯେପରି ଅମଣିଷ ହୋଇ ନ ଯାଆନ୍ତି ଏହା ଥିଲା ତାଙ୍କର ଲକ୍ଷ୍ୟ । ପାଠ ଏକ ମାଧ୍ୟମ ମାତ୍ର । ଏହା ନିରୁପଣ ଲକ୍ଷ୍ୟ ନୁହେଁ, ଏଇ ଥିଲା ତାଙ୍କର ଉକ୍ତି ଏବଂ ବିଶ୍ୱାସ ।

ଧୀରେନ୍ଦ୍ରନାଥ ଜନ୍ମ ହୋଇଥିଲେ ଇତିହାସ ପ୍ରସିଦ୍ଧ ଭେଡ଼ା ଜମିଦାର ବଂଶରେ, ୧୯୧୨ ମସିହା ଅକ୍ଟୋବର ମାସରେ । ୧୯୩୦ ମସିହାରେ ସେ ପାଠ ପଢ଼ୁଥିଲେ କଟକରେ ରେଭେନ୍ସା କଲେଜିଏଟରେ । ସମସାମୟିକମାନଙ୍କ ଭିତରେ ଥିଲେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ସୁରେନ୍ଦ୍ରନାଥ ପଟ୍ଟନାୟକ, ବିନୋଦ କାନୁନଗୋ, ପ୍ୟାରୀଶଙ୍କର ରାୟ, ବୈକୁଣ୍ଠନାଥ ମହାନ୍ତି, ବିପିନ ବିହାରୀ ମହାନ୍ତି, କୃପାସିନ୍ଧୁ ଖୁଣ୍ଟିଆ ପ୍ରମୁଖ । ବିଭିନ୍ନ ସ୍କୁଲରେ ଛାତ୍ର ସମସ୍ତେ ।

ମୁକ୍ତିର ଦାମାମା ଧ୍ୱନି ବାଜୁଛି । ନୂଆ ଇତିହାସ ଲେଖା ହେଉଛି । ମଦ ଦୋକାନ, ବିଲାତି ଲୁଗା ଦୋକାନରେ ପିକେଟିଂ ଚାଲିଛି । ସ୍କୁଲ ଛାତ୍ରମାନେ 'ବାନରସେନା' ସାଜି ପିକେଟିଂ କରୁଛନ୍ତି । ସେମାନେ ଗୀତ ଗାଉଛନ୍ତି, ଲଠି ମାଡ଼ରେ ହାତ ପିଠି ମୁଣ୍ଡ ଫାଟି ରକ୍ତ ଝରୁଛି । ତଥାପି ସେମାନେ ଗୀତ ଗାଉଛନ୍ତି, ହସି ହସି । ଆଜି ଗିରଫ, ପୁଣି ଖଲାସ ପୁଣି କାଲିକି ପିକେଟିଂ ।

''ତୁମେ କେତେଜଣ,     ଜୀବନକୁ ପାଣି
ଛଡ଼ାଇ ନଦେଲେ ଚଳିବକି ?

ଦଧିଚୀର ହାଡ଼ ଉଜାଡ଼ି ନ ଦେଲେ
ଏ ଦେଶର ଭାଗ୍ୟ ଫେରିବକି ?''

କିମ୍ବା

''ମାର ତୁମେ ଯେତେ ମାରିବ,
ଦେଶ ଲାଗି ପ୍ରାଣ ବିକିଛୁ ଆମେ,
ଆମକୁ କି ତୁମ ମାଡ଼ କାଟିବ ?''

ଧୀରେନ୍ଦ୍ରନାଥ ସେଇ ଦଳରେ ଅନ୍ତର୍ଭୁକ୍ତ ହୋଇଗଲେ, ମୁକ୍ତିର ପିପାସାରେ । ପୋଥିପାଠରେ ଡୋର ବଂଧାହେଲା, ରାଜରାସ୍ତାରେ ଜୀବନର ପାଠ ଆରମ୍ଭହେଲା ।

ପ୍ରଥମେ ମାସେ ଜେଲ, ଖଲାସହେଲା ପରେ ପୁଣି ସତ୍ୟାଗ୍ରହ ଏବଂ ଛଅମାସ ଜେଲ, କିନ୍ତୁ ଏହା ତ ଏକ ପ୍ରବାହ ! ଏହା ସରିବ ନାହିଁ । ଧୀରେନ୍ଦ୍ରନାଥ ପୁଣି ଗିରଫହୋଇ କଟକ ଜେଲରେ ଏବଂ ପରେ ସ୍ଥାନାନ୍ତରିତ ହୋଇ ପାଟନା କ୍ୟାମ୍ପ ଜେଲରେ ରହିଲେ । କିନ୍ତୁ ଏଥର ସେ ଏକାକୀ ନୁହନ୍ତି । ମାହାଙ୍ଗା, ବରୀ ଅଂଚଳରେ ରୂପାନ୍ତର ଘଟିଛି । ସେ ଫେରୁଛନ୍ତି ପାଟନା ଜେଲରୁ, ଓହ୍ଲାଉଛନ୍ତି ଟ୍ରେନରୁ ବରୀ ଷ୍ଟେସନରେ । ଏ କି କୋଳାହଳ, ଏ କି ଜନ ସମାଗମ । ଖୁବ୍ କମ ବୟସର ଏଇ ବାଳକକୁ ସଂବର୍ଦ୍ଧନା ଦେବାପାଇଁ ସେ ଦିନ ରେଲବାଇ ଷ୍ଟେସନରେ ଉପସ୍ଥିତ ଥିଲେ ହଜାର ହଜାର ମଣିଷ ଏବଂ ସେମାନଙ୍କ ଭିତରେ ଥିଲେ ଧୀରେନ୍ଦ୍ରନାଥଙ୍କ ପିତୃବ୍ୟ ସ୍ୱାଧୀନତା ସଂଗ୍ରାମୀ ୰ ଚୌଧୁରୀ ପ୍ରାଣକୃଷ୍ଣ ମିଶ୍ର ।

ସ୍ୱାଧୀନତା ସଂଗ୍ରାମୀ ଅନ୍ନପୂର୍ଣ୍ଣା ମହାରଣା ସ୍ମରଣ କରନ୍ତି । ସେତେବେଳେ ବର୍ଣ୍ଣଭେଦ ଜାତିପ୍ରଥା ଥିଲା ଉତ୍କଟ । କିନ୍ତୁ ଚୌଧୁରୀ ଧୀରେନ୍ଦ୍ରନାଥ ମିଶ୍ର ନିଜ ଘରେ ଖାଇବାକୁ ଦେଉଥିଲେ ହରିଜନମାନଙ୍କୁ । ଜମିଦାର ଘରର ପିଲା, କିନ୍ତୁ ଆଭିଜାତ ଭାଙ୍ଗି ପଡ଼ିଥିଲା । ମୁକ୍ତିର ଦୁର୍ବାର ଆହ୍ୱାନରେ, ମହାତ୍ମା ଗାନ୍ଧୀଙ୍କ ଡାକରାରେ ।

ବିନୟୀ, ଧୀର ସ୍ୱଭାବର ଧୀରେନ୍ଦ୍ର ନାଥ କ୍ଷମତା ପଛରେ ଗୋଡ଼ାଇ ନାହାନ୍ତି, ଟିକଟ ପାଇଁ ମାଲିସ କରି ନାହାନ୍ତି । କୌଣସି ଲାଭ ବା ଅଭିଳାଷ ନେଇ କାର୍ଯ୍ୟକରି ନାହାନ୍ତି । ସମସ୍ତଙ୍କ ସହିତ ସଦ୍ଭାବ ରଖି କାମକରିବା ଥିଲା ତାଙ୍କର ଆର୍ଟ ବା କଳା । ସଂକ୍ରାମକ ରୋଗ ସମୟରେ ଗ୍ରାମବାସୀମାନଙ୍କୁ ସାହାଯ୍ୟ କରିବା, ବନ୍ୟା ବା ବାତ୍ୟାରେ ପଡ଼ିଥିବା ଲୋକଙ୍କୁ ଉଦ୍ଧାର କରିବା, ଗାଁ ଗାଁ ଭିତରେ ବିବାଦ ହେଲେ ତୁଟାଇବା ପ୍ରଭୃତି କାମରେ ସେ ଆପଣାକୁ ବିନିଯୋଗ କରିଥିଲେ ।

ଦଶପଲ୍ଲା ମେଳିର ସର୍ଦ୍ଦାର ଗୋବିନ୍ଦ ମିଶ୍ରଙ୍କ ଚମ୍ପାପୁର ଆଶ୍ରମ ଏକ ଯୁଗାନ୍ତକାରୀ ଘଟଣା । ଏହି ଆଶ୍ରମ ପାଇଁ ଯେଉଁମାନେ ଅକ୍ଲାନ୍ତ ସାହାଯ୍ୟ କରିଥିଲେ ସେମାନଙ୍କ ମଧ୍ୟରେ ଧୀରେନ୍ଦ୍ରନାଥ ଅନ୍ୟତମ । ଭେଡ଼ା ଅଂଚଳରେ ଶିକ୍ଷାର ଅଭିବୃଦ୍ଧି ପାଇଁ ତାଙ୍କର ଅବଦାନ ଥିଲା ବିପୁଳ ।

ଧୀରେନ୍ଦ୍ର ନାଥ ମିଶ୍ର ତାଙ୍କ ଅଂଚଳରେ ମୁରବି ଭାବରେ ଗଣା ହେଉଥିଲେ । ତାଙ୍କ ନାମରେ ହାଇସ୍କୁଲ ପ୍ରତିଷ୍ଠା ହୋଇଛି । ଜାତି ଧର୍ମ ବର୍ଣ୍ଣ ଗୋଷ୍ଠୀ ନିର୍ବିଶେଷରେ ସେ ସମସ୍ତଙ୍କର ପ୍ରିୟ ଥିଲେ ।

ପ୍ରତାପ, ବାପା କ'ଣ ତମର ବିଚାରପତି ହେବା ସମ୍ବାଦକୁ ଅପେକ୍ଷା କରିଥିଲେ ନା କ'ଣ ? ପ୍ରତାପ ଆଖିରେ ଲୁହ । ନା, ସେ ଜାଣିପାରି ନାହାନ୍ତି ତାହା । ଜଜ ହେବା ନିଯୁକ୍ତି ଆସିବା ପୂର୍ବରୁ ସେ ଅଜ୍ଞାନ, ଅଚେତ ହୋଇ ଯାଇଥିଲେ ।

ଯିବାକୁ ହେବ ସମସ୍ତଙ୍କୁ । ତାଙ୍କର ଆଉ କିଛି କାମ ବାକି ନଥିଲା । ଜୀବନ ଏକ ପ୍ରବାହ । ତାରି ଭିତରେ ଜୀବନ କାଟିଥିବା ଧୀରେନ୍ଦ୍ର ଏକ ଆବଦ୍ଧ ପୋଖରୀ ଭିତରେ ରହନ୍ତେ କାହିଁକି ? ଚଳମାନ ବ୍ୟକ୍ତି ସ୍ଥିରହୋଇ ରହିବା ଭାରି କଠିନ ।

ସେ କିନ୍ତୁ ଛାଡ଼ିଗଲେ ଏକ ଇତିହାସ, ଏକ ପରମ୍ପରା ଯାହାକୁ ଉତ୍ତରପୀଢ଼ି ହେଜିବେ, ଜୀବନର ସ୍ୱାଦ ପାଇଁ ।



# ଅନନ୍ୟ ପ୍ରତିଭାର ପରଲୋକ

'ନେତ୍ରମଣି'ର ଡାଇରୀ ଆଉ ଲେଖାହେବ ନାହିଁ । ଓଡ଼ିଶାରେ ପ୍ରଗତିଶୀଳ ସାହିତ୍ୟର ଜନ୍ମ କୁଣ୍ଡଳୀ ଆଉ ଟିପାହେବ ନାହିଁ । ସଖାହୀନ ପଞ୍ଚସଖା ଜଣେ ସଖା ପାଇ ପାରିବେ ନାହିଁ । ଓଡ଼ିଆ ସାହିତ୍ୟର ଅନନ୍ୟ ସମାଲୋଚକ ଅଧ୍ୟାପକ ନଟବର ସାମନ୍ତରାୟ ଆଉ ନାହାନ୍ତି । ଅଗଷ୍ଟ ୧୭, ୨୦୦୦ର ସକାଳ ଦେଖିବାକୁ ସେ ରହିଲେ ନାହିଁ । ଓଡ଼ିଆ ସାହିତ୍ୟର ସମାଲୋଚନାର ଗୋଟାଏ ଅଧ୍ୟାୟ ଉପରେ ହଠାତ୍ ଯବନିକା ପଡ଼ିଗଲା । ସେ ଥିଲେ ଅନନ୍ୟ ଏବଂ ଏକକ । ସମାଲୋଚନାର ଏକ ନୂତନ ଆଭିମୁଖ୍ୟ, ନୂତନ ଦିଗନ୍ତ ସେ ଉନ୍ମୋଚନ କରି ଯାଇଛନ୍ତି । ତାଙ୍କ ପୂର୍ବରୁ ସେ ଭଳି କେହି ନଥିଲେ କି ବର୍ତ୍ତମାନ ବି ନାହାନ୍ତି । ଆଗାମୀ କଥା ମୁଁ କହିପାରିବି ନାହିଁ ।

୧୯୧୮ ମସିହା ଡିସେମ୍ବର ମାସ ୧୯ ତାରିଖରେ ନଟବର ସାମନ୍ତରାୟ ଜନ୍ମଗ୍ରହଣ କରିଥିଲେ ପୁରୀ ଜିଲ୍ଲାର ଡେଲାଙ୍ଗ ଥାନା ଅନ୍ତର୍ଗତ ରାମଚନ୍ଦ୍ରପୁର ଗ୍ରାମରେ । ପ୍ରସିଦ୍ଧ ଦାର୍ଶନିକ ଦୀନନାଗଙ୍କ ଜୀବନୀ ତାଙ୍କର ଅର୍ନ୍ତଭେଦୀ ଜିଜ୍ଞାସା ଯେପରି ତାଙ୍କର ରକ୍ତରେ ଆସିଥିଲା । ୧୯୪୨ ମସିହାରେ ଏକ ସ୍କୁଲ ଶିକ୍ଷକ ଭାବରେ ତାଙ୍କର କର୍ମ ଜୀବନ ଆରମ୍ଭ ହୁଏ । ସେତିକିବେଳେ ସେ ଅନୁଗୋଳ ହାଇସ୍କୁଲରେ ଶିକ୍ଷକତା କରିଥିଲେ କିଛି ବର୍ଷ । ତାଙ୍କ ସହିତ ପରିଚିତି ଘଟିଥିଲା । ସେ ୧୯୪୯ ମସିହାରେ ଯୋଗ ଦିଅନ୍ତି ସରକାରୀ କଲେଜର ଅଧ୍ୟାପକ ଭାବରେ । ଜଣେ ପ୍ରଗତିଶୀଳ କ୍ରିଟିକ ଭାବରେ ସେ ସବୁ ପ୍ରଗତିଶୀଳ ଶକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ତାଙ୍କର ସମାଲୋଚନା ଏକ ଗତାନୁଗତିକ ସମାଲୋଚନା ନଥିଲା । 'ମାଟିର ମଣିଷ' ଉପନ୍ୟାସରେ ଛକଡ଼ିର ସ୍ତ୍ରୀ ନେତ୍ରମଣିର ଡାଇରୀ ଶୀର୍ଷକ ଯେଉଁ ସମାଲୋଚନା ତାଙ୍କର କଲମରୁ ଝରିଥିଲା, ତାହା କେବଳ ଏଇ ଉପନ୍ୟାସ ତଥା ପ୍ରଗତିଶୀଳ ସାହିତ୍ୟ ଉପରେ ନୂତନ ଆଲୋକପାତ କଲା ନାହିଁ, ସମାଲୋଚନାର ଏକ ନୂତନ ସ୍ୱାଦ ସମସ୍ତେ ଅନୁଭବ କଲେ । ନେତ୍ରମଣିର ବ୍ୟଥା, ତା'ର ସ୍ୱପ୍ନ କଥା ତ କେହି କହିଲେ ନାହିଁ ? ସମସ୍ତେ ଖାଲି ଦେଖିଲେ ତାହାର ଦୋଷ ।

ଏଇଟା କ'ଣ ଯଥାର୍ଥ ବା ନ୍ୟାୟୋଚିତ ହେଲା ? ମୋର ଏଇ ସମାଲୋଚନା ପଢ଼ି ମନେହେଲା ଯେ ରାମାୟଣର ଉର୍ମିଳା ତ ଏଇପରି ଏକ ଡାଇରୀ ଲେଖି ପାରିଥାନ୍ତେ ? ରାମଚନ୍ଦ୍ର, ସୀତା, ଲକ୍ଷ୍ମଣ, ଭରତ ସମସ୍ତଙ୍କ କଥା କୁହାଯାଇଛି କିନ୍ତୁ ଅବହେଳିତା ଉର୍ମ୍ମିଳାର କଥା ତ କେହି କହିଲେ ନାହିଁ ?

ଠିକ୍ ସେଇପରି ପ୍ରଗତିଶୀଳ ଓଡ଼ିଆ ସାହିତ୍ୟର ଜନକ କିଏ— ଭଗବତୀ ଚରଣ ପାଣିଗ୍ରାହୀ ନା ସଚ୍ଚି ରାଉତରାୟ ? ସଚ୍ଚିବାବୁ ଭଗବତୀବାବୁଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଦେଇ କହିଛନ୍ତି ଯେ ସେ ପ୍ରଗତିଶୀଳ ଆନ୍ଦୋଳନର ଜନକ କିନ୍ତୁ ପ୍ରଗତିଶୀଳ ସାହିତ୍ୟର ନୁହନ୍ତି । ଏହାର ଭୟାନକ ବିରୋଧୀ ହେଉଛନ୍ତି ରବି ସିଂ ପ୍ରଭୃତି ।

କିନ୍ତୁ ଧୀର, ଶାନ୍ତ, ନମ୍ର ନଟବର ସାମନ୍ତରାୟ ମାସ, ଦିନ, ତାରିଖ ଦେଇ ପ୍ରମାଣିତ କରିଗଲେ ଯେ ଭଗବତୀ ହିଁ ପ୍ରଗତିଶୀଳ ସାହିତ୍ୟର ଜନକ । ଏହା ସହିତ ସେ କହିଲେ ଯେ ଅନୁବାଦ ମଧ୍ୟ ଏକ ନିଛକ ସାହିତ୍ୟ ।

ଠିକ୍ ସେଇପରି ସଖାହୀନ ପଞ୍ଚସଖା ବହି ପଞ୍ଚସଖାଙ୍କ ଉପରେ ଏକ ନୂତନ ଆଲୋକପାତ କରିଗଲା । ପଞ୍ଚସଖା କିପରି ସଖାହୀନ ହୋଇଗଲେ ତାହାର ବିବରଣୀ ତ ଆଉ କେଉଁଠାରେ ମିଳି ନଥିଲା ?

ଅଧ୍ୟାପକ ସାମନ୍ତରାୟ ଚାକିରିରୁ ଅବସର ନେଲେ ୧୯୭୩ ମସିହାରେ । କିନ୍ତୁ ଅନ୍ୱେଷଣ, ଗବେଷଣା ଉଭୟ ଚାଲିଲା ଅବାରିତ ଭାବରେ । ୧୯୭୩ ରୁ ୧୯୭୯ ପର୍ଯ୍ୟନ୍ତ ସେ ବିଶ୍ୱବିଦ୍ୟାଳୟ ଆୟୋଗ ଅଧୀନରେ କାମ କଲେ । ପରବର୍ତ୍ତୀ କାଳରେ ସ୍ୱାଧୀନ ଭାବରେ କାର୍ଯ୍ୟକରି ଚାଲିଲେ । ବୟସ ଅତିକ୍ରାନ୍ତ ହେବାକୁ ଲାଗିଲା । ଦେହ ଦୁର୍ବଳ ହେବାକୁ ଲାଗିଲା । କିନ୍ତୁ ସାମନ୍ତରାପୁରର 'ବାଣୀବିତାନ'ରେ ବାଣୀ ଆରାଧନା ଚାଲିଲା ସେଇପରି ।

ସ୍ୱୀକୃତି ମିଳିଛି ବହୁ ଅନୁଷ୍ଠାନରୁ, ପୁରସ୍କାର ବି ମିଳିଛି । କିନ୍ତୁ ନଟବର ସାମନ୍ତରାୟ ରହିଯାଇଛନ୍ତି ସେଇପରି ବିନୀତ, ନମ୍ର କିନ୍ତୁ ଶାଣିତ, ସ୍ୱାଭିମାନୀ ହୋଇ ।

ତାଙ୍କର ପରଲୋକରେ ସାହିତ୍ୟ କ୍ଷେତ୍ରରେ ଏପରି ଏକ ଶୂନ୍ୟତା ସୃଷ୍ଟିହେଲା, ଯାହାକୁ ପୂରଣ କରିବା ପାଇଁ ଓଡ଼ିଶାର ଗବେଷକମାନଙ୍କୁ ବହୁ ବର୍ଷ ଲାଗିଯିବ ।



# ପରଦେଶୀ ବଂଧୁ ତୁମେ ଗଲ ଉଡ଼ି ଉଡ଼ି କି ?

ସୁରର ଗୋଟାଏ ଛନ୍ଦ ହଠାତ୍ ବେସୁରା ହୋଇଯାଇଛି । ସୁରକାର ନରସିଂହ ମହାପାତ୍ର ଆଉ ନାହାନ୍ତି । ସୁରର ଗୋଟାଏ ଝଂକାର ହଠାତ୍ ହଜିଯାଇଛି ମହାକାଳ ଗର୍ଭରେ । ନରସିଂହ ମହାପାତ୍ରଙ୍କ ଜନ୍ମ ୧୯୨୬ ମସିହା ଜୁଲାଇ ୨୪ ତାରିଖରେ ବାଲେଶ୍ୱର ଜିଲ୍ଲାର କୋରଟ ଗ୍ରାମରେ । କିନ୍ତୁ କର୍ମସ୍ଥଳୀ କଟକ ସହର ।

୧୯୬୦ ମସିହାରେ 'ଶ୍ରୀ ଲୋକନାଥ' ଚଳଚିତ୍ର ଆସିଲା ପ୍ରେକ୍ଷାଳୟକୁ । ଓଡ଼ିଆ ଚଳଚିତ୍ରର ନବଜନ୍ମର ସମୟ କାଳ । ''ଫୁଲ ରସିଆରେ ମନ ମୋର ଛୁଇଁ ଛୁଇଁ ଯା'' ଓଡ଼ିଆ ଦର୍ଶକଙ୍କ ମନକୁ ଛୁଇଁଯାଇଥିଲା ଏବଂ ଏହାର ଲେଖକ ନରସିଂହ ଛୁଟି ଆସିଥିଲେ ଜନ-ମାନସକୁ । ତା'ପରେ ସେ ଆଉ ପଛକୁ ଫେରି ଚାହିଁବାର ଅବକାଶ ନଥିଲା । 'ଅମଡ଼ାବାଟ' (୧୯୬୪, 'ଅରୁନ୍ଧତୀ' (୧୯୬୬), 'ଭକ୍ତ ସାଲବେଗ', 'ସୁନା ସଂସାର' ପ୍ରଭୃତି ଆଠଟି ଚଳଚିତ୍ର ପାଇଁ ସେ ଗୀତ ଓ ସଂଳାପ ଲେଖିଥିଲେ । ଲୋକ ମୁଖରେ ଯଶ ପାଇଥିଲେ । କିନ୍ତୁ ବହୁ ସୃଜନଶୀଳ ପ୍ରତିଭାଙ୍କର ଯାହାହୁଏ ତା' ତାଙ୍କୁ ମଧ ଘାରିଥିଲା । କଟକରେ ତାହା ଥିଲା ଏକ ସୁବର୍ଣ୍ଣ ଯୁଗ, ବିଶେଷତଃ ନାଟ୍ୟକାରମାନଙ୍କ ପାଇଁ କଟକରେ ଜନତା, ଅନ୍ନପୂର୍ଣ୍ଣା (ବି) ଗ୍ରୁପ୍ ଏବଂ କଳାଶ୍ରୀ ତିନୋଟି ଥିଏଟର ସପ୍ତାହକୁ ଛଅଦିନ ଚାଲୁଥିଲା । ପ୍ରାୟ ପୂର୍ଣ୍ଣ ପ୍ରେକ୍ଷାଳୟରେ । ନରସିଂହ ଜନତା ଥିଏଟରର ପୃଷ୍ଠପୋଷକ ଥିଲେ, ଏହା ସତ୍ତ୍ୱେ ସେ କଳାଶ୍ରୀ ଥିଏଟର ଏବଂ ଅନ୍ନପୂର୍ଣ୍ଣା (ବି) ଗ୍ରୁପ୍ ଥିଏଟର ସହିତ ଗଭୀର ଭାବରେ ଜଡ଼ିତ ଥିଲେ । କଳାକାରର ବିସ୍ତାର ଏବଂ ଔଦାର୍ଯ୍ୟ ପ୍ରମାଣିତ ହେଉଥିଲା ତାଙ୍କର କାର୍ଯ୍ୟରେ ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରି ନଥିଲା । ''ସଂଜ ସକାଳେ ତୁମେ'' ପାଇଁ ସେ ବହୁ ଶ୍ରୋତାମାନଙ୍କର ମନେପଡୁଥିଲେ ସକାଳୁ ସଂଜ ପର୍ଯ୍ୟନ୍ତ । ଗୁଣୁଗୁଣୁ କରି ଲୋକେ ସେଇ ଗୀତକୁ ଗାଉଥିଲେ ଅନେକ ଜାଗାରେ । ଠିକ୍ ସେଇପରି ଚଢ଼େଇଟିଏ ଦେଖିଲେ, କାହାର ବିଦାୟ ବେଳାରେ ପହଞ୍ଚିଲେ ଲୋକେ ଗୁଣୁଗୁଣୁ କରି ଗାଉଥିଲେ ''ପରଦେଶୀ ବନ୍ଧୁ ତୁମେ ଯିବ ଉଡ଼ି ଉଡ଼ି କି'' । ନରସିଂହ ମହାପାତ୍ରଙ୍କର ବିଦାୟରେ ମନେ ହେଉଛି ସତେ ଯେପରି ସେ ନିଜେ ଏକ ପରଦେଶୀ ଚଢ଼େଇ ଯେ ଆଜି ଉଡ଼ି ଉଡ଼ି ଚାଲିଗଲେ ନିଜର ନୀଡ଼କୁ ।

ମଦର ଟେରେସା କହନ୍ତି ମୃତ୍ୟୁ ହେଉଛି ସୁନ୍ଦର । ଏହା ଘର ବାହୁଡ଼ା ଭଳି । ସେ ଘର କେହି ଦେଖିନାହାନ୍ତି । କିନ୍ତୁ ଲୋକଙ୍କର ବିଶ୍ୱାସ ରହିଛି ନିଶ୍ଚୟ କେଉଁଠି ଘରଟିଏ ଥିବ । ନଚେତ୍ ସେ ଗଲା କୁଆଡ଼େ ? ନରସିଂହ ବାବୁ ତମେ ସତରେ ଆଜି ହଠାତ୍ ଚାଲିଗଲ କୁଆଡ଼େ ? ସେଇଠି କ'ଣ କୋଉଠି ନୂତନ ଚଳଚ୍ଚିତ୍ରର ସଂଗୀତ ଲେଖିବା ଆବଶ୍ୟକ ପଡ଼ିଲା କି ?

ଚଳଚ୍ଚିତ୍ର 'ସ୍ତ୍ରୀ', 'କବି ଜୟଦେବ' ଆକାଶବାଣୀରେ ପ୍ରଚାରିତ ଧାରାବାହିକ ଗୀତିନାଟ୍ୟ 'ଗୋବର ଗଣେଶ', ତାଙ୍କର ସୃଜନଶୀଳ ପ୍ରତିଭାର ଆଲେଖ୍ୟ ବହନ କରେ । ନରସିଂହ ବାବୁ ଅନେକ ଲୋକପ୍ରିୟ ନାଟକର ମଧ୍ୟ ଲେଖକ । ସବୁଜ ମସଲା, ବାଇମୁଣ୍ଡି, ମାଣିକପାଟଣା, ଗୃହଲକ୍ଷ୍ମୀ, ଯାନି ଯୌତୁକ ପାଲା, ସିଦ୍ଧ ପୂର୍ଣ୍ଣିମା, ଦେବକୀନନ୍ଦନ ପ୍ରଭୃତି ଗୀତିନାଟ୍ୟ, ମଲାଜାତକ, ଚାରଣକବି, ଅଲିଭା ପରଶ, ନକ୍ସା, ମରୁ ଫସଲ ସାବେରୀ, ଫୁଲମାଳ, କରତାଳି ପ୍ରଭୃତି ନାଟକ ତାଙ୍କର କଲମର ମନଛୁଆଁ ସୃଜନର ଆଲେଖ୍ୟ ବହନକରେ । ଲୋକପ୍ରିୟତା ବଢ଼ିଥିଲା, କିଛି କିଛି ସ୍ୱୀକୃତି ମଧ୍ୟ ଆସିଥିଲା । ୧୯୮୭ ମସିହାରେ ସେ ସଂଗୀତ ନାଟକ ଏକାଡେମୀର ପୁରସ୍କାର ପାଇଥିଲେ ।

ଘର ଦୁଆର ଥିଲା । ସ୍ତ୍ରୀ, ପିଲାମାନେ ଥିଲେ । କିନ୍ତୁ ସଂସାରର ଚିନ୍ତା ତାଙ୍କୁ ଘାରି ନଥିଲା । ସୁର, ସାଥୀ ଏବଂ ସୁରାରେ ସେ ନିମଗ୍ନ ଥିଲେ । ଅନେକ ପ୍ରତିଭାଶାଳୀ କଳାକାରଙ୍କ ଜୀବନ କ୍ଷେତ୍ରରେ ଏଇଆ ଘଟିଛି । ସେ ବଂଧୁବତ୍ସଳ ଥିଲେ । ଦେଖାହୁଏ ସବୁବେଳେ । ବୟସରେ ପାଞ୍ଚବର୍ଷ ବଡ଼ ଥିଲେ ସେ । କିନ୍ତୁ ସୌହାର୍ଦ୍ଦ୍ୟ ତାଙ୍କର ସମାନ ଥିଲା ବୟସ ନିର୍ବିଶେଷରେ । ତାଙ୍କୁ ଦେଖିଲେ, ତାଙ୍କ ସାଥିରେ ଗପିଲେ ଜୀବନର ଉଷ୍ଣତା ଜଣାପଡ଼େ ।

ହଠାତ୍ ଯେପରି ସବୁ ଶୀତଳ ହୋଇଯାଇଛି । ସେ ଉଷ୍ଣତା ହଜିଯାଇଛି । ଏ ଯେଉଁ ଉଷ୍ଣତା ଏଠି ମୃତ୍ୟୁର ଶୀତଳତା ଭିତରୁ ଯେଉଁ ଉଷ୍ଣତା ଆସେ ସେଇ ଉଷ୍ଣତା । ନରସିଂହ ମହାପାତ୍ର ହଜି ଯାଇଛନ୍ତି ମହାକାଳ ଗର୍ଭରେ ।

ତାଙ୍କର ମୃତ୍ୟୁ ସଂବାଦ ପାଇଲି ତାଙ୍କର ଦଶାହର ଉପକଣ୍ଠରେ । ହଠାତ୍ କ'ଣ ଗୋଟାଏ ଠକ୍ କରି ବାଜିଲା ଛାତିରେ । ନରସିଂହ ମହାପାତ୍ରର ଗୀତର ସେଇ ଧାଡ଼ି ଯେପରି ବାଜି ବାଜି ଯାଉଛି ମହାକାଳ ବକ୍ଷରେ "ପରଦେଶୀ ବଂଧୁ ତୁମେ ଯିବ ଉଡ଼ି ଉଡ଼ି କି ?" ସେଇ ଗୀତର ତବଲାଟା ମୋ ଛାତିରେ ବାଜୁଛି ନା କ'ଣ ? ଚମକ ଲାଗିଲା ।

ଏଇ ଚମକ ଲାଗିଥିବ ତାଙ୍କର ଅଗଣିତ ବଂଧୁଙ୍କ ଛାତିରେ । ସେ ଚମକ ଦେଉଛନ୍ତି ନିଜେ ନରସିଂହ ମହାପାତ୍ର । ୧୯୯୮ର ଅକ୍ଟୋବର, ତାଙ୍କର ଅନ୍ତିମ ସୁରର ମାସ ।



# ତୁମକୁ ସଲାମ

ନାଗଭୂଷଣ ମୋର ସହପାଠୀ ଥିଲେ ଆଇନ ପଢ଼ିବାବେଳେ । ସେ ନିଖିଳ ଭାରତ ଛାତ୍ର ସଂଘ ସହିତ ଜଡ଼ିତ ଥିଲେ କିନ୍ତୁ ବେଶି ସକ୍ରିୟ ନଥିଲେ । ତାଙ୍କ ଭିତରେ ଯେଉଁ ସ୍ଫୁଲିଙ୍ଗ ଥିଲା ତାହା ସେତେବେଳେ ଜଣା ନଥିଲା, ଅନ୍ତତଃ ମୋତେ ।

ପାଠପଢ଼ା ସାରି ନାଗଭୂଷଣ, କ'ଣ ଗୋଟାଏ ଦି'ଟା ଚାକିରି ବି କରିଥିଲେ ବୋଲି ମୋର ଟିକିଏ ଟିକିଏ ହେତୁ ହେଉଛି । କିନ୍ତୁ ତାହା କ୍ଷଣସ୍ଥାୟୀ । ନାଗଭୂଷଣ ପରବର୍ତ୍ତୀ କାଳରେ ଓକିଲାତି କଲେ ଗୁଣୁପୁରରେ । ସେ ଓ ଡି. ଭୁବନମୋହନ ପଟ୍ଟନାୟକ ଦୁହେଁ ଓକିଲ ହେଲେ କିନ୍ତୁ ବୋଧହୁଏ ପିପୁଲସ୍ ୱାର୍ ଗ୍ରୁପ ବା ପି.ଡବ୍ଲ୍ୟୁ.ଜି.ର ସଂପର୍କରେ ସେମାନେ ଦୁହେଁ ଆସିଲେ ସେଇଠି । ଡି. ଭୁବନମୋହନ ଥିଲେ ତାଙ୍କର ଆଇଡିଓଲଗ୍ (ideologue) ବା ତାତ୍ତ୍ୱିକ ଗୁରୁ । ଏବଂ ନାଗଭୂଷଣ ହେଲେ ଫ୍ରଣ୍ଟର ବା ସାମ୍ମୁଖ୍ୟର ନେତା । ଗଣ ସଂଗଠନ ଦୁହେଁ ଗଢ଼ି ତୋଳିଲେ ରଇତ, କୁଲି ଏବଂ ଆଦିବାସୀମାନଙ୍କର । ପରବର୍ତ୍ତୀ କାଳରେ ନାଗଭୂଷଣଙ୍କ ମତଭେଦ ହେଲା ଉଭୟ ଭୁବନମୋହନ ପଟ୍ଟନାୟକଙ୍କ ସହିତ ଏବଂ ପିପୁଲସ୍ ୱାର ଗ୍ରୁପ ସହିତ । ଦିନେ ହଠାତ୍ ନାଗଭୂଷଣଙ୍କ ଘର ଉପରେ ସଶସ୍ତ୍ର ଆକ୍ରମଣ ହେଲା । ଅବଶ୍ୟ ସେତେବେଳକୁ ନାଗଭୂଷଣ ଦୈବାତ୍ ଘରେ ନଥିଲେ । ନଚେତ୍ କ'ଣ ହୋଇଥାନ୍ତା କହିହେବ ନାହିଁ ।

ବାମପନ୍ଥୀମାନଙ୍କ ଭିତରେ ଏଇ ପ୍ରକାର ଅବସ୍ଥା ଦେଖାଦେଇଛି । ସେମାନେ ବହୁଧା ବିଭକ୍ତ ଏବଂ ଶ୍ରେଣୀ ଶତ୍ରୁ ଅପେକ୍ଷା ଆପଣା ବିରୋଧୀ ଦଳମାନଙ୍କ ଉପରେ ସେମାନଙ୍କର କ୍ରୋଧ ବେଶି । ବିହାରରେ ସେଇ ଅବସ୍ଥା ବର୍ତ୍ତମାନ ଦେଖାଦେଇଛି ଏବଂ ଆଇ.ପି.ଏଫ୍ ବା ଇଣ୍ଡିଆନ ପିପୁଲସ୍ ଫ୍ରଣ୍ଟ ସହିତ ସି.ପି. (ଏମ୍.ଏଲ୍.)ର ସଂପର୍କ ବେଶ୍ ଲୋମହର୍ଷକ ।

ନାଗଭୂଷଣ ନକ୍ସଲବାଦୀ ଆନ୍ଦୋଳନର ପ୍ରମୁଖ ନେତା ଭାବରେ ପରିଗଣିତ ହେଲେ । ତାଙ୍କ ନାମରେ ୱାରେଣ୍ଟ ଜାରି ହେଲା । ସେ ପ୍ରବାଦ ପୁରୁଷ ପାଲଟିଗଲେ । ତାଙ୍କୁ ଗିରଫ କରାଗଲା ପରବର୍ତ୍ତୀ ସମୟରେ । କିନ୍ତୁ ସେ ପୋଲିସ ହାତରୁ ଖସି

ପଳାଇଲେ । ଫଳ ଯାହାହୁଏ ତାଙ୍କୁ ଧରିବା ପାଇଁ ହୁଲିଆ ଜାରିହେଲା କିନ୍ତୁ ସେ ଧରାପଡ଼ିଲେ ନାହିଁ । ବଂଗଳାର ଚାରୁ ମଜୁମଦାରଙ୍କ ନେତୃତ୍ୱରେ ପରିଚାଳିତ ନକ୍ସଲବାଦୀ ଆନ୍ଦୋଳନ ସହିତ ତାଙ୍କର ସଂପର୍କ ପ୍ରତିଷ୍ଠା ହେଲା । ତାଙ୍କ ନାମରେ ବହୁ କାହାଣୀ ପ୍ରଚଳିତ ହେଲା । ଆଇନ କଲେଜର ଛାତ୍ରର ସ୍ଫୁଲିଙ୍ଗ ଦାବାନଳରେ ପରିଣତ ହେଲା ଏବଂ ତାହା ଆକୃଷ୍ଟ କଲା ବହୁ ତରୁଣ ତରୁଣୀଙ୍କୁ । ସେମାନେ ବାଜି ରଖିଲେ ଜୀବନକୁ । ସେମାନେ ଧରିନେଲେ ଯେ ଭାରତୀୟ ଜନତାର ମୁକ୍ତିର ବାଟ ହେଉଛି ସଶସ୍ତ୍ର ସଂଗ୍ରାମର ବାଟ । କିନ୍ତୁ ସେ ବାଟ ତ ସହଜ ନୁହେଁ । ବିନା ଗଣସଂଗଠନ ଏବଂ ଗଣ ଆନ୍ଦୋଳନ ବିନା କେବଳ ଜନ ଅସନ୍ତୋଷ ଉପରେ ଭରସା ରଖି ସଶସ୍ତ୍ର ସଂଗ୍ରାମ କରାଯାଇ ପାରେନା । ଏହା ସନ୍ତ୍ରାସବାଦୀ କାର୍ଯ୍ୟରେ ପରିଣତ ହେବାର ସବୁ ଆଶଂକା ରହିଛି ।

କିନ୍ତୁ ନାଗଭୂଷଣଙ୍କ ଜନପ୍ରିୟତା ବଢ଼ିବାକୁ ଲାଗିଲା । କାରଣ ଲୋକେ ଭାବିଲେ ଯେ ସେ ହେଉଛନ୍ତି ତ୍ରାଣକର୍ତ୍ତା । ବଡ଼ ହାକିମ, ମନ୍ତ୍ରୀ, ବଡ଼ ମହାଜନ କେହି ଅବଶ୍ୟ ସେମାନଙ୍କର ଗୁଳିରେ ମଲେ ନାହିଁ । କିନ୍ତୁ ସମସ୍ତଙ୍କ ଭିତରେ ଭୀତି ସଂଚାର ହେଲା ନିଶ୍ଚିତ ଭାବରେ । ନାଗଭୂଷଣ କେଉଁ ହତ୍ୟା ପାଇଁ କେତେ ପ୍ରତ୍ୟକ୍ଷ ଭାବରେ ଦାୟୀ ତାହା ବିବାଦର ବିଷୟ । କିଛି କୁଳିନେତା, କୁଳି ଅଫିସର, କୁଳି ପୋଲିସ ସେମାନଙ୍କର ରୋଷର ଶିକାର ହେଲେ । କେତେକଙ୍କର ମୃତ୍ୟୁ ବି ହେଲା ସେଇ ସଶସ୍ତ୍ର ସଂଘର୍ଷରେ । ନେତା ହିସାବରେ ନାଗଭୂଷଣଙ୍କୁ ଦାୟୀ କରାଗଲା । ନରହତ୍ୟା ଅପରାଧରେ ତାଙ୍କ ନାମରେ ୱାରେଣ୍ଟ ଜାରି ହେଲା । ଆନ୍ଧ୍ର, ଓଡ଼ିଶା, ବିହାରରେ ତାଙ୍କୁ ଖୋଜା ଚାଲିଲା । ନାଗଭୂଷଣ ପାଲଟିଲେ ଏକ 'ଭୟାନକ ନାଗ' ।

ନାଗଭୂଷଣ ଶ୍ୱାସରୋଗୀ । ଥରେ ସେ ଅସୁସ୍ଥ ହୋଇ ଆସିଥିଲେ କଟକ । ଏକ ଡାକ୍ତର ଦମ୍ପତିଙ୍କ ଘରେ ରହି ଚିକିତ୍ସିତ ହେଲେ କଟକରେ । ଉକ୍ତ ଡାକ୍ତର ଦଂପତି କଟକ ମେଡ଼ିକାଲ କଲେଜରେ ଅଧ୍ୟାପନା କରୁଥିଲେ । ନିଜ ଉପରକୁ ଗଭୀର ବିପଦ ବରଣ କରି ଉକ୍ତ ଦମ୍ପତି ତାଙ୍କର ଚିକିତ୍ସା କରିଥିଲେ କଟକ ସହରରେ । ଠିକ୍ ସେତିକିବେଳେ ତାଙ୍କର ନାମ ଶୁଣିଲେ ଅନେକ ଲୋକଙ୍କର ଦେହରେ ଆତଙ୍କ ଖେଳିଯାଉଥିଲା ।

ନାଗଭୂଷଣ ପୁଣି ଗିରଫ ହେଲେ କିନ୍ତୁ ବିଚାର ଆରମ୍ଭ ହେବା ପୂର୍ବରୁ ସେ ପଳାୟନ କଲେ ପୋଲିସ ଡ୍ରାଗନେଟରୁ । ସେତିକିବେଳେ ସେ ଗୁଳିରେ ଆହତ ହେଲେ ଏବଂ ଚିକିତ୍ସା ପାଇଁ ଆସିଲେ କଟକ । ତାଙ୍କର ବଂଧୁ ବିପ୍ଳବୀ କବି ରବି ସିଂଙ୍କର ରାଜାବଗିଚା ଲେବର କଲୋନୀରେ ରହିଲେ କିଛିଦିନ । ମୋର ମନେପଡୁଛି । ଖାଁ ଅବଦୁଲ ଗଫୁର ଖାଁ ଯେଉଁଦିନ କଟକ ଆସିଥିଲେ ଠିକ୍ ସେଇଦିନ ସେ ରବି ସିଂଙ୍କ ଘରେ ରହିଥିଲେ, ଚିକିତ୍ସା ଅପେକ୍ଷାରେ । କମ୍ୟୁନିଷ୍ଟ ପାର୍ଟିର ଲକ୍ଷ୍ମଣ ପଟ୍ଟନାୟକଙ୍କ ସହିତ ତାଙ୍କର ସଂପର୍କ ଥିଲା ଆଗରୁ । ଏବଂ ପୂର୍ବରୁ ସେ ସୁସ୍ଥ ଓ ଅସୁସ୍ଥ ଉଭୟ ସମୟରେ ତାଙ୍କୁ ଭେଟୁଥିଲେ । ଏପରିକି ପୁଲିସ ହାତରୁ ପ୍ରଥମ ପଳାୟନ ସମୟରେ ମଧ୍ୟ ସେ ଲକ୍ଷ୍ମଣ ବାବୁଙ୍କୁ ଭେଟିବା ମୁଁ ଦେଖିଛି । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କ ସହିତ ମତଭେଦ ଘଟିଲା, ବରଂ ଜେଲ ହାଜତରୁ ପଳାଇ

ଆସିଲା ପରେ ପୁଲିସ ଗୁଳିରେ ଆହତ ନାଗଭୂଷଣ ଆଉ ଲକ୍ଷ୍ମଣ ପଟ୍ଟନାୟକଙ୍କୁ ଭେଟିଲେ ନାହିଁ । କିନ୍ତୁ ସେତିକିବେଳେ ଅନ୍ୟାନ୍ୟ ଯୁବନେତାମାନଙ୍କ ସହିତ ଆଇନ କଲେଜର ଛାତ୍ର ଅରୁଣ ଦେଙ୍କୁ ଭେଟିଥିଲେ । କିନ୍ତୁ ଅରୁଣ ତାଙ୍କର ନୀତି ସହିତ ଆପଣାର ଭିନ୍ନ ମତ ପୋଷଣ କରିଥିଲେ ।

ପରିଶେଷରେ ନାଗଭୂଷଣ ଗିରଫ ହେଲେ ଏବଂ ତାଙ୍କ ନାମରେ ଏକାଧିକ ମର୍ଡ଼ର କେଶର ମୋକଦ୍ଦମା ଦାୟର ହେଲା । ତାଙ୍କର ଫାଶି ପାଇବା ସୁନିଶ୍ଚିତ ବୋଲି ସମସ୍ତେ ଧରି ନେଇଥିଲେ । ସେତେବେଳକୁ ନାଗଭୂଷଣ ସର୍ବ ଭାରତୀୟ ସ୍ତରରେ ପରିଚିତ ହୋଇ ସାରିଛନ୍ତି । ତାଙ୍କୁ ମୃତ୍ୟୁ ଦଣ୍ଡରୁ ରିହାତି ଦେବା ପାଇଁ ସାରା ଭାରତବର୍ଷର ଜନସାଧାରଣ ହଜାର ହଜାର ସଂଖ୍ୟାରେ ଦସ୍ତଖତ କଲେ ନିବେଦନ ପତ୍ରରେ । ଓଡ଼ିଶାର ଦୁଇ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଏବଂ ନବକୃଷ୍ଣ ଚୌଧୁରୀ ସେଇ ନିବେଦନ ପତ୍ରରେ ଦସ୍ତଖତ କଲେ । ନବକୃଷ୍ଣ ଚୌଧୁରୀ-ମାଳତୀ ଚୌଧୁରୀ ତ ନାଗଭୂଷଣ ମୁକ୍ତି ଆନ୍ଦୋଳନର ନେତା ହୋଇଗଲେ ।

ନାଗଭୂଷଣ ଜେଲରେ ଥିଲାବେଳେ ଶ୍ୱାସ ରୋଗରେ ଆକ୍ରାନ୍ତ ହେଲେ । ମୋର ସ୍ତ୍ରୀ କମଳକୁମାରୀ ସେତେବେଳେ ଶ୍ୱାସରୋଗ ଲାଗି ଔଷଧ ଦେଉଥାନ୍ତି । ମାଳତୀ ଦେବୀ ଦିନେ ଆସିଥିଲେ ଆମ ଘରକୁ ନାଗଭୂଷଣଙ୍କୁ ଚିକିତ୍ସା କରିବା ପାଇଁ ମୋ ସ୍ତ୍ରୀଙ୍କର ସମ୍ମତି ପାଇଁ । କାରଣ ମୋ ସ୍ତ୍ରୀ ଥିଲେ ସରକାରୀ କର୍ମଚାରୀ । ମୋ ସ୍ତ୍ରୀ ସମ୍ମତି ଦେଇଥିଲେ ନାଗଭୂଷଣଙ୍କୁ ଭେଟିବା ପାଇଁ ଜେଲରେ ଏବଂ ଚିକିତ୍ସା କରିବା ପାଇଁ ମଧ୍ୟ ।

କିନ୍ତୁ ନାଗଭୂଷଣ ଖଲାସ ହୋଇଗଲେ । ସାରା ଭାରତବର୍ଷରୁ ତ ନିବେଦନ ଯାହା ହୋଇଥିଲା, ତାଙ୍କ ବିରୁଦ୍ଧରେ ଅଭିଯୋଗର କୌଣସି ଚାକ୍ଷୁସ ବା ପ୍ରତ୍ୟକ୍ଷ ପ୍ରମାଣ ନଥିଲା । ତାଙ୍କର ନେତୃତ୍ୱର ନୀତି ହେଲା ଶ୍ରେଣୀ ଶତ୍ରୁର ବିଲୋପ କିନ୍ତୁ ଅଭିଯୋଗ ହୋଇଥିବା ହତ୍ୟା ନେତାଙ୍କ ଦ୍ୱାରା ହୋଇଛି ଏହାର କୌଣସି ପ୍ରତ୍ୟକ୍ଷ ପ୍ରମାଣ ନଥିଲା । ତେଣୁ ସୁପ୍ରିମ କୋର୍ଟରେ ସେ ଖଲାସ ହୋଇଗଲେ ।

ତାଙ୍କର ପି.ଡବ୍ଲ୍ୟୁ.ଜି. ସହିତ ମତଭେଦ ବଢ଼ିଥିଲା । ସେ କ୍ରମେ କ୍ରମେ ଇଣ୍ଡିଆନ ପିପୁଲ୍‌ସ ଫ୍ରଣ୍ଟର ନିକଟବର୍ତ୍ତୀ ହେବାକୁ ଲାଗିଥିଲେ ଏବଂ ପରେ ତାହାର ସଭାପତି ମଧ୍ୟ ହୋଇଥିଲେ । ବିହାରର ପାଞ୍ଚୋଟି ଜିଲ୍ଲାରେ ତାଙ୍କର ରାଜୁତି ଚାଲିଥିଲା । ମୋର ପ୍ରତ୍ୟକ୍ଷ ଅନୁଭୂତି ରହିଛି ଏଇ ସଂପର୍କରେ ।

ନାଗଭୂଷଣ ଶ୍ୱାସରୋଗୀ । ଜେଲଖାନାରୁ ଖଲାସ ହେଲାପରେ ବି ତାଙ୍କ ଉପରେ ସମସ୍ତଙ୍କର ଆଖି । ସେ ଦିନେ ଆସି ପହଞ୍ଚିଲେ ଦି' ୟୁନିଭର୍ସରେ । ତାଙ୍କ ପାଇଁ ଔଷଧ ଦିଆଗଲା । କିନ୍ତୁ ଔଷଧକୁ ଅଧା ଖାଇ ସେ ଦିନେ ଆସି ପହଞ୍ଚିଲେ ଏବଂ କହିଲେ ଏହାକୁ ଖାଇ ମୋ ଦେହ ଭଲ ଲାଗୁଛି, ପେଲା ହେଉନାହିଁ । କିନ୍ତୁ ମୁଁ ଆଉ ଖାଇପାରିବି ନାହିଁ । କାରଣ ମୁଁ ଚାଲିଯାଉଛି ଉତ୍ତର ପ୍ରଦେଶର ତରାଇ ଅଂଚଳକୁ । ସେଠାରେ ଟ୍ରେନିଂ ଦିଆଯିବ ଏବଂ ସେମାନଙ୍କର ରାଜନୈତିକ କ୍ଲାସ ମୁଁ ନେବି । ଔଷଧକୁ ଅଧାଛାଡ଼ି ନଯାଇ ସାଂଗରେ

ନେଇଯିବା ପାଇଁ ମୋର ଅନୁରୋଧକୁ ସେ ଗ୍ରହଣ କଲେନାହିଁ । ମୁଁ ତ ସ୍ଥିରହୋଇ ରହିପାରିବି ନାହିଁ । ତେଣୁ ଔଷଧ ମିଛଟାରେ ନେବି କାହିଁକି ? ବରଂ ଅନ୍ୟ କାହାରି ଉପକାରରେ ଆସିଲେ ମୁଁ ସୁଖୀ ହେବି । ମୋ ଆଖିରେ ଲୁହ ଝକେଇ ଆସୁଥିଲା । ନାଗଭୂଷଣ, ବିପ୍ଳବ କ'ଣ ୟୁନିଭର୍ସ ଗେଟରେ ଅପେକ୍ଷା କରିଛି କି, ଯେ ଏତେ ତରତର ହେଉଛ ? ବିପ୍ଳବ କାହାରିକୁ ଅପେକ୍ଷା କରେ ନାହିଁ କମ୍ରେଡ଼ ତାକୁ ତ୍ୱରାନ୍ୱିତ କରିବାର ଦାୟିତ୍ୱ ଆମର— ତମେ ପରା ମୋତେ ଏଇକଥା କହିଥିଲ ଆଇନ ପଢ଼ିଲାବେଳେ ?

ଆଉ ତାଙ୍କ ସାଂଗରେ ମୋର ଦେଖା ହୋଇନାହିଁ । ଯଦିଓ ସେ ଗୁଣୁପୁରରେ ରହନ୍ତି ବେଳେବେଳେ ଏବଂ ମୋତେ ଯିବାକୁ ପଡ଼ିଛି ଗୁଣୁପୁର ଅନେକଥର, ତଥାପି ମୋର ଦେଖା ହୋଇନାହିଁ । କାରଣ ସବୁଥର ଗଲାବେଳକୁ ସେ ନଥାନ୍ତି ।

ମଣିଷ ଓ ଅରଣ୍ୟ ଉପରେ ଆମେ ଗବେଷଣା କରୁଥାଉ । ତା' ସହିତ ବୃକ୍ଷଲତାର ଔଷଧିଗୁଣ ଉପରେ ମୋ ସ୍ତ୍ରୀ ଗବେଷଣା କରୁଥାନ୍ତି । ସେ ସେତେବେଳକୁ ଓଡ଼ିଶା ପବ୍ଲିକ ସର୍ଭିସ କମିଶନରେ ସଭ୍ୟ ଥାଆନ୍ତି । ଆମେ ଯାଉଥାଉ ଗୁଣୁପୁର ସେଇ ଗବେଷଣା ସଂକ୍ରାନ୍ତରେ । କିନ୍ତୁ ସେଠାକାର ସରକାରୀ ହାକିମ ''ଆମେ ପବ୍ଲିକ ସର୍ଭିସ କମିଶନର ସଭ୍ୟ ତାଲିକା ପାଇ ନାହୁଁ'' ଏହି ଆଳରେ ଆମପାଇଁ ସରକାରୀ ଡାକ ବଂଗଳାରେ ଗୋଟିଏ କୋଠରୀ ଦେଲେନାହିଁ । ନାଗଭୂଷଣଙ୍କ ପାଖକୁ କଥାଗଲା । ସେ ଉକ୍ତ ଅଫିସରଙ୍କୁ କେବଳ କୋଠରୀ ନଦେବାର କାରଣ ପଚାରୁ ପଚାରୁ ଉକ୍ତ ଅଫିସର ଡରରେ ସବୁଯାକ କୋଠରୀ ଦେଇଦେଲେ ଆମପାଇଁ ।

ନାଗଭୂଷଣ ପ୍ରଥମେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ । ବହୁଦିନ ପରେ ବୋଧହୁଏ ସେ ବୁଝିବାକୁ ଆରମ୍ଭ କରିଥିଲେ ଯେ ବାମପନ୍ଥୀ ସାମ୍ମୁଖ୍ୟ ବିନା ଶ୍ରେଣୀ ଶତ୍ରୁକୁ ପରାସ୍ତ କରିହେବ ନାହିଁ ଏବଂ ସେଇ ଯୋଗୁଁ ସେ ରାଜି ହୋଇଥିଲେ କମ୍ୟୁନିଷ୍ଟ ପାର୍ଟିର ପାର୍ଟି କଂଗ୍ରେସରେ ଯୋଗଦେବା ପାଇଁ ''ଫ୍ରାଟରନାଲ ଡେଲିଗେଟ୍'' ଭାବରେ ଯୋଗଦେବା ପାଇଁ । ସେଇଠିକୁ ଯାଇଥିବା ବେଳେ ସେ ହଠାତ୍ ଅସୁସ୍ଥ ହୋଇପଡ଼ିଲେ ଏବଂ ଜଣାଗଲା ଯେ କ୍ୟାନସର ରୋଗରେ ଆକ୍ରାନ୍ତ ସେ । ତା' ମଧ ବହୁ ଆଡ଼ଭାନ୍ସ ଷ୍ଟେଜରେ । ତାଙ୍କର ପରଲୋକ ହୋଇଗଲା ଏବଂ ମର ଦେହକୁ ଅଣାଗଲା ଭୁବନେଶ୍ୱର ସଂସ୍କାର ପାଇଁ ।

ତାଙ୍କର ମୃତ୍ୟୁ ଶୋଭାଯାତ୍ରା ପରି ଶୋଭାଯାତ୍ରା ଭୁବନେଶ୍ୱର ଆଗରୁ କେବେ ଦେଖି ନଥିଲା । ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ ଆସିଥିବା ହଜାର ହଜାର ଯୁବକ ଯୁବତୀ ହାତମୁଠା ଉପରକୁ ଟେକି ତାଙ୍କୁ ସଲାମ କରୁଥିଲେ । ସଲାମ, ସଲାମ, ତୁମକୁ ସଲାମ ପ୍ରିୟ ସାଥୀ ନାଗଭୂଷଣ । କବି ସଚ୍ଚି ରାଉତରାୟଙ୍କ ଭାଷାରେ ତମେ 'ଲକ୍ଷ ଉଦୟ ନାଗ' ହୋଇ ଜନ୍ମହୁଅ ଏଇ ଧରାପୃଷ୍ଠରେ ।



# ବାବା

ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ ସଂପର୍କରେ ଲେଖିବା ମୋ ପାଇଁ ଭାରି କଠିନ । ଏହାର ଅନେକ କାରଣ ଅଛି । ପ୍ରଥମ କାରଣ ହେଉଛି ମୁଁ ତାଙ୍କରି ପୁଅ । ବିଶ୍ୱମ୍ଭର ଯେମିତି ମୁଁ ସେମିତି । ବିଶ୍ୱମ୍ଭର କ'ଣ ଲେଖିପାରିବ ତାଙ୍କ ବିଷୟରେ ? ଦ୍ୱିତୀୟ କାରଣ ହେଉଛି ସେ ହେଉଛନ୍ତି 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥଙ୍କ ପରେ ଚଳିତ ଶତାବ୍ଦୀର ସର୍ବଶ୍ରେଷ୍ଠ ଦର୍ଶକ । ସେ ଥିଲେ ସ୍ୱପ୍ନାବିଷ୍ଟ । ବହୁ ଦୂରକୁ ଦେଖି ସେ ସ୍ୱପ୍ନ ଦେଖୁଥିଲେ । ପାରାଦ୍ୱୀପ ବନ୍ଦର କାହାର ବିଜୟଗାନ କରିବ ସେ ସ୍ୱତନ୍ତ୍ର କଥା, କିନ୍ତୁ ଏଇ ବନ୍ଦରର ସ୍ୱପ୍ନ ଯିଏ ପ୍ରଥମେ ଦେଖିଥିଲେ ସେ ନିଶ୍ଚୟ ନାରାୟଣ ବୀରବର ସାମନ୍ତ ।

ଠିକ୍ ସେଇପରି ଗଡ଼ କୁଜଙ୍ଗ ଗ୍ରାମରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା । କେଉଁ କାଳରୁ ଅବହେଳିତ ଏବଂ ଉପେକ୍ଷିତ ହୋଇ ପଡ଼ିରହିଥିଲା । କିନ୍ତୁ ତାହାକୁ କେବଳ ଧର୍ମପୀଠ ନୁହେଁ ସ୍ମୃତିପୀଠ ଏବଂ ସାରସ୍ୱତପୀଠରେ ପରିଣତ କରିବାର ସ୍ୱପ୍ନ ଦେଖୁଥିଲେ ସେଇ ନାରାୟଣ ବୀରବର ସାମନ୍ତ । ଇମିତି ଲେଖିଲେ ସରିବ ନାହିଁ ସେ ତାଲିକା ।

ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କର ପୈତୃକ ଘର ଅବିଭକ୍ତ କଟକ ଜିଲ୍ଲାର ଇନ୍ଦୁପୁର ଗାଁରେ । ଆଠଗଡ଼କୁ ଯାଇଥିଲେ ପୁଅ ହୋଇ । ଆଠଗଡ଼ ସ୍କୁଲରେ ପାଠପଢ଼ା । କୁଜଙ୍ଗ ଯାଇଥିଲେ । ସେଇଠାରେ ଷଣ୍ଢରାଜାଙ୍କ ଜୋଇଁ ହୋଇ ରହିଗଲେ । କୁଜଙ୍ଗ ପାରାଦ୍ୱୀପ ଗଡ଼ । ତା' ପୂର୍ବରୁ ତାଙ୍କର କର୍ମକ୍ଷେତ୍ର ଥିଲା ବଣିକୁଦ । ବଣିକୁଦ ଠାରେ ଉଦୟବଟ । ଉଭୟର ମଠ ଏବଂ ମହନ୍ତ ସ୍ୱାଧୀନତା ସଂଗ୍ରାମୀ ହେବା ଫଳରେ ସେମାନଙ୍କର ପ୍ରଭାବରେ ଥିବା ସବୁ ମଣିଷ ଆସିଯାଇଥିଲେ ସ୍ୱାଧୀନତା ସଂଗ୍ରାମ ଭିତରକୁ । ଧର୍ମ ଏବଂ ସ୍ୱାଧୀନତା ସଂଗ୍ରାମର ଏଇ ସମନ୍ୱୟ ଭାରତବର୍ଷରେ ଖୁମ୍ କମ ସ୍ଥାନରେ ଘଟିଛି । ଏବଂ ଯେଉଁଠି ଘଟିଛି ସେଇଠି ଜାତୀୟ କଂଗ୍ରେସ ମହାଦ୍ରୁମରେ ପରିଣତ ହୋଇଛି ।

ଶ୍ରୀ ନାରାୟଣ ବୀରବର ସାମନ୍ତ ଆଖି ମୁଦି ଦେଇଛନ୍ତି ପ୍ରାୟ ୧୦୦ ବର୍ଷ ବୟସରେ । ୧୦୦ ବର୍ଷ ହେବାପାଇଁ ମାସ କେଇଟା ବାକି ଥିଲା । ୨/୩ ବର୍ଷ ସେ ଅଚଳ ହୋଇ ଶଯ୍ୟାଶାୟୀ ହୋଇ ରହିଥିଲେ । ଜୀବନ ଦୀପ ଧୀରେ ଧୀରେ ଲିଭି ଆସୁଥିଲା । ମାମା, ବିଶ୍ୱମ୍ଭର ଏବଂ ବାଣୀ ତାଙ୍କୁ ଘେରି ରହିଥିଲେ । କିନ୍ତୁ ପ୍ରାୟ ୯୪ ବର୍ଷ ପର୍ଯ୍ୟନ୍ତ ସେ ଚାଲିକରି ଯାଉଥିଲେ ଅନେକ ସ୍ଥାନକୁ । ସେଇଟା ତାଙ୍କର ସଉକ ଥିଲା । ସାଇକେଲ ପଛ କ୍ୟାରିଅରରେ ବସି ସେ ଯାଆନ୍ତି । ୯୪ ବର୍ଷ ବୟସରେ ଗଲାବେଳେ ଏକ ଦୁର୍ଘଟଣା ଘଟିବାରୁ ସେହି ଅଭ୍ୟାସ ବନ୍ଦ ରହିଲା । ଦେହ ଅସୁସ୍ଥ । ବାଣୀ (ଝିଅ ଡାକ୍ତର ଜଟଣୀରେ) ପାଖରେ ଚିକିତ୍ସିତ ହେଉଥିଲେ । ମନାହୋଇଛି କୁଆଡ଼େ ନ ଯିବା ପାଇଁ । ଦିନେ ହଠାତ୍ ଦେଖିଲାବେଳକୁ ସେ ନାହାନ୍ତି । କୁଆଡ଼େ ଗଲେ ? ଦେଖିଲାବେଳକୁ ଭୁବନେଶ୍ୱରରେ କୌଣସି ମନ୍ତ୍ରୀଙ୍କ ପାଖରେ ବସି ଜଗନ୍ନାଥ ମନ୍ଦିର ନକ୍ସା ଦେଖାଉଛନ୍ତି । କ'ଣ ସବୁ କରାଯିବାର ପରିକଳ୍ପନା ରହିଛି ତା ବୁଝାଉଛନ୍ତି । ଡାକ୍ତର ସିନା ମନାକରିଛି ଯିବା ପାଇଁ । ଭୁବନେଶ୍ୱରଟା ଜଟଣୀରୁ କେତେବାଟ କି ?

ମନ୍ଦିରରେ ହରିଜନମାନଙ୍କର ପ୍ରବେଶକୁ ନାରାୟଣ ବୀରବର ସାମନ୍ତ ସ୍ୱାଧୀନତା ଆନ୍ଦୋଳନରେ ମିଶେଇଦେଇଥିଲେ, ଏଭଳି ଘଟଣା ଭାରତବର୍ଷରେ ଖୁବ୍ କମ ସ୍ଥାନରେ ହୋଇଛି, କେରଳରେ ଏହା ସଫଳତାର ସହ ହୋଇଛି, ଏବଂ ଯେଉଁଠି ହୋଇଛି ସେଇଠି ଏହାର ନେତୃବୃନ୍ଦ ଯଥାର୍ଥରେ ପ୍ରବାଦ ପୁରୁଷରେ ପରିଣତ ହୋଇଛନ୍ତି । ନାରାୟଣ ବୀରବର ସାମନ୍ତ ସେହି ବିରଳ ନେତାମାନଙ୍କ ମଧ୍ୟରେ ଅନ୍ୟତମ । କୁଜଙ୍ଗର ଷଣ୍ଢରାଜା ଥରେ ଇଂରେଜ ସରକାରଙ୍କୁ ଠକି ଡଙ୍ଗାରେ ବସି ଚଂପଟ ଦେଇଥିଲେ କୁଜଙ୍ଗକୁ । ତା'ପରେ ତାଙ୍କର କୌଣସି ଟେର ପାଇ ନଥିଲେ ଇଂରେଜ ସରକାର । ତାଙ୍କ ନାମରେ ବହୁ ଲୋକଗଳ୍ପ, ଲୋକଗୀତି ପ୍ରଚାର ହେଉଛି କୁଜଙ୍ଗରେ । ନାରାୟଣ ବୀରବରଙ୍କର ଠିକ୍ ସେଇ ଅବସ୍ଥା ।

ଶ୍ରୀ ନାରାୟଣ ବୀରବର ସାମନ୍ତ ବିହାର ଓଡ଼ିଶା କାଉନ୍‌ସିଲ ସଭ୍ୟ ଥିଲେ । ପରବର୍ତ୍ତୀ ନିର୍ବାଚନରେ ସେ ଆଉ ଠିଆହେଲେ ନାହିଁ । ପ୍ରାର୍ଥୀ ହେବାକୁ ମନାକଲେ । କାରଣ କ'ଣ ? ସେ ଏକ ବେଶ ଇଣ୍ଟରେଷ୍ଟିଂ କଥା କହନ୍ତି । ସେ କୌଣସି ନେତାଙ୍କ ଘର ସିଡ଼ି ଉଠିଲା ବେଳେ ଶୁଣିଲେ ଭିତରୁ ବିଭିନ୍ନ ଚକ୍ରାନ୍ତ । କରଣ-ବ୍ରାହ୍ମଣ ଲଢ଼େଇ ଏବଂ ଶୁଣିଲେ ଏଇ ନାରାୟଣ ବୀରବର ସାମନ୍ତଙ୍କୁ ଜିତିବାକୁ ଦେବା ଉଚିତ୍ ନୁହେଁ । କବାଟରେ ଠକ୍ ଠକ୍ କରି ଭିତରକୁ ପଶିଲେ ଏବଂ କହିଲେ ମୁଁ ଏକ ନିବେଦନ କରିବାକୁ ଆସିଛି । ସମସ୍ତେ ଭାବିଲେ ଯେ ସେ ନିଶ୍ଚୟ ଯାଇଛନ୍ତି ତାଙ୍କର ପ୍ରାର୍ଥୀତ୍ୱ ପାଇଁ । କିନ୍ତୁ ସମସ୍ତଙ୍କୁ ଚକିତ କରି ସେ କହିଲେ ଯେ ସେ କହିବାକୁ ଆସିଛନ୍ତି ପ୍ରାର୍ଥୀ ନହେବା ପାଇଁ । ସତେ ଯେପରି ତାଙ୍କ ବିରୁଦ୍ଧରେ ହୋଇଥିବା କଥାବର୍ତ୍ତା ସେ କିଛି ଶୁଣିନାହାନ୍ତି କି ଜାଣି ନାହାନ୍ତି ।

ଏଭଳି ଭଙ୍ଗୀ ପାଇଁ ସେ ଓସ୍ତାଦ । ଅନ୍ୟପକ୍ଷ ଭାବିବ ଯେ ଲୋକଟା ଖୁବ୍ ବୋକା ବା ସରଳ । କିନ୍ତୁ ଆପଣାର ଅଭିନୟରେ ସାମନ୍ତଙ୍କ ଠାରୁ ଓସ୍ତାଦ କାହାକୁ ଦେଖିନାହିଁ । ମୋର ଜଣେ ବନ୍ଧୁ (ସେ ଆଉ ନାହାନ୍ତି) କଲ୍ୟାଣ ମଜୁମଦାର ଗୋଟିଏ ଝିଅକୁ ବାହା ହେବା ସକାଶେ କଲିକତାରୁ ନେଇ ପଳାଇ ଆସିଥିଲେ କଟକ । ଝିଅଟାକୁ ବାହାହେବା ପାଇଁ ବଂଗଳାର କୌଣସି ଜଣେ ଶକ୍ତିଶାଳୀ ଯୁବକଂଗ୍ରେସ ନେତା ଏକାନ୍ତ ଆଗ୍ରହୀ ଥିଲେ । ଯୁବକଂଗ୍ରେସ ନେତା ବଙ୍ଗଳାରେ ଶାସକ ଗୋଷ୍ଠୀର । ପୋଲିସ୍ ଭୀଷଣ ଅତ୍ୟାଚାର କଲା କଲ୍ୟାଣଙ୍କ ବନ୍ଧୁମାନଙ୍କ ଉପରେ ଏବଂ ସେହି ଦିନ ଖବର ପାଇଲା ଯେ କଲ୍ୟାଣ ଏବଂ ତାଙ୍କର ଭାବିପତ୍ନୀ ଓଡ଼ିଶା ଯାଇଛନ୍ତି । କଲ୍ୟାଣ ମଜୁମଦାର ନାରାୟଣ ବୀରବର ସାମନ୍ତଙ୍କର ପୁତ୍ର ବିଶ୍ୱମ୍ଭର ଏବଂ ଆମ ସମସ୍ତଙ୍କର ବନ୍ଧୁ ଥିଲେ । ତେଣୁ କଲ୍ୟାଣ ଯୋବ୍ରା କୁଞ୍ଜଙ୍ଗ କୁଟୀରରେ ଆଶ୍ରୟ ନେଇଥାଆନ୍ତି ଏବଂ ତାଙ୍କର ବିବାହ ବାବା ଓ ମାମା କରାଇ ଦେଇଥାନ୍ତି ଯୋବ୍ରାର ପ୍ରସିଦ୍ଧ ମଠରେ । ବଙ୍ଗଳାର ଘରୋଇ ମନ୍ତ୍ରୀ ଏବଂ ପୁଲିସ ଆଇ.ଜି.ଙ୍କ ଠାରୁ ସେମାନଙ୍କର ବନ୍ଧୁ ଓଡ଼ିଶାର ଘରୋଇ ମନ୍ତ୍ରୀ ଓ ପୁଲିସ ଆଇ.ଜି.ଙ୍କ ପାଖକୁ ଦୁଇଟି ଚିଠିନେଇ ସେ ଯୁବନେତା ହାଜର ସାମନ୍ତ ଓ ଜେମା ପ୍ରଖ୍ୟାତ କଂଗ୍ରେସ ନେତାଙ୍କ ପାଖରେ ।

ତାଙ୍କ ଘର ରେଡ୍ କରିବାପାଇଁ ପୁଲିସ କୁଣ୍ଠିତ । ତେଣୁ ଉକ୍ତ ନେତା ସାମନ୍ତଙ୍କୁ ଦେଖାକଲେ ଓ ସାହାଯ୍ୟ ପାଇଁ ନିବେଦନ କଲେ, ସାଆନ୍ତେ ସବୁ କଥା ଶୁଣିଲେ । ଭରସା ଦେଇ କହିଲେ ମୁଁ ଏସବୁ ଜାଣି ନଥିଲି ଆଗରୁ । ତେବେ ସେମାନେ ଥିଲେ ଏଇଠି । ମୁଁ ଜାଣିଥିଲେ ସେମାନଙ୍କୁ ଛାଡ଼ି ନଥାନ୍ତି । ତେବେ ବର୍ତ୍ତମାନ ଏ ଲଢ଼େଇ ହେଉଛି କଂଗ୍ରେସ-କମ୍ୟୁନିଷ୍ଟ ଲଢ଼େଇ । ମୁଁ ଜଣେ କଂଗ୍ରେସ ଲୋକ । ଆଉ ଆମେ ଲଢ଼ିବା ନା ଯୁଦ୍ଧରେ ହାରିଯିବା ? ମୁଁ ସନ୍ଧାନ କରୁଛି, ତମେ କାଲି ଆସ । ମୁହଁରେ ବିରାଟ ଶ୍ମଶ୍ରୁ, ଏବଂ କେଶ ଉଭୟ ପକ୍ୱ ହେବାକୁ ଆରମ୍ଭ କରିଛି । ଖଦଡ଼ ଧୋତି ଓ ଚଦର । ଦୀପ୍ତ ଚକ୍ଷୁ । କଣ୍ଠ ସ୍ୱର ଧାତବ ଏବଂ ଷ୍ଟେଣ୍ଟୋରିଆନ । ଯୁବନେତା ବାହୁଡ଼ିଲେ ଗଭୀର ଆଶ୍ୱସନା ପାଇ । ମଝିରେ ଗୋଟାଏ କବାଟ । ଠିକ୍ କବାଟ ଆରପଟେ କଲ୍ୟାଣ ଏବଂ ତାଙ୍କ ସ୍ତ୍ରୀ । ତା ପରଦିନ ନେତା ପହଞ୍ଚିଲେ । ସାଆନ୍ତେ ତାଙ୍କୁ ଦେଖୁ ଦେଖୁ କହିଲେ ଆମର ଜୟ ହୋଇଛି ।

ମୁଁ ତାଙ୍କର ସନ୍ଧାନ ପାଇଛି । ଆଜି ରାତିରେ ହିଁ ତମର ତା ସହିତ ଦେଖାହେବାର ବନ୍ଦୋବସ୍ତ ମଧ୍ୟ ମୁଁ କରିଦେଇଛି । ଯୁବନେତାଙ୍କର ନିଶା ଲାଗିଲାଣି । ସେ ପାଇବେ ତାଙ୍କର ପ୍ରିୟତମାକୁ । କି ଶକ୍ତିଶାଳୀ ଲିଡର ଆମ ସାଆନ୍ତେ ! ଯାହା କରିବା ପାଇଁ ଓଡ଼ିଶା ପୁଲିସ ସକ୍ଷମ ହୋଇନାହିଁ ତା, ଏଇ ବ୍ୟକ୍ତିଙ୍କ ପାଇଁ ସମ୍ଭବ ହେଲା । ସେ କୃତଜ୍ଞତାରେ ନଇଁ ଆସିଲେ ସାଆନ୍ତଙ୍କ ପାଖରେ । ସାଆନ୍ତେ କହି ଚାଲିଛନ୍ତି– ଶୁଣ ୟଙ୍ଗମ୍ୟାନ ! ମୁଁ ଶୁଣିବାକୁ ପାଇଲି ସେମାନେ ବିବାହ କରିସାରିଛନ୍ତି । ହୁ କେୟାର୍ସ ଫର ଦ୍ୟାଟ୍ ! ସେ କି ବିବାହ ନା

କଣ କହୁଛ ? ଯଙ୍ଗମାନଙ୍କ ମୁହଁ ଶୁଖି ଆସୁଛି । ହଁ ଶୁଣ ମୁଁ ମଧ ଶୁଣିଲି ଯେ ସେ ଝିଅ କୁଆଡ଼େ ଅନ୍ତଃସତ୍ତ୍ୱା ହେଉ କ'ଣ ହେଲା ସେଇଠୁ ? ଆଜି ରାତିରେ ତମେ ତା ସାଥିରେ ଦେଖାହେଲେ ସେଇଟା ସେଟଲ୍ କରିନେବ । ଆମେ କଂଗ୍ରେସ ଲୋକ, ଆମେ ସମାଜ ସଂସ୍କାରକ, ଆମେ ଏହି ଛୋଟ କଥାକୁ ଡରିବା ନା କ'ଣ ?

ଭଦ୍ରଲୋକ ବିଦାୟ ନେଲେ । ସେଇ ରାତିରେ ସାକ୍ଷାତ ଆଡ଼ଭୋକେଟ ଅମଲକୃଷ୍ଣ ରାୟଙ୍କର ତତ୍‌କାଳୀନ ବିଶ୍ୱନାଥ ଲେନ୍ ଘରେ । ଯାହା ହୋଇଥିବ ଅନୁମେୟ । ଗୋଟିଏ ବୋଲି ପୁଅ ବିଶ୍ୱମ୍ଭର । କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଛି । ପୋଲିସର ଲାଠି ଅତ୍ୟାଚାରରେ ତା'ର ଦେହ ଫାଟିଛି ବାରମ୍ବାର । ଜେଲଖାନାକୁ ବାରମ୍ବାର ଯାଉଛ । ସେ ବର୍ଷ ବିଶ୍ୱମ୍ଭର ଜେଲରେ । ତା'ର ଜନ୍ମଦିନ ଆଜି । ମାମା କାନ୍ଦୁଛନ୍ତି ସକାଳୁ । ବାବା ଉଠିଲେ । ଗଲେ ସିଧା ମୁଖ୍ୟମନ୍ତ୍ରୀଙ୍କ ପାଖକୁ । ବିଶ୍ୱମ୍ଭରକୁ ନେଇ ଫେରିଲେ । ଜନ୍ମଦିନ ପାଳିତ ହେଲା ଆନନ୍ଦରେ । ବାବା କିନ୍ତୁ ସେଇଭଳି ନିର୍ଲିପ୍ତ । କୁଜଙ୍ଗ କୁଟୀରରେ ଆଡ୍‌ଡ଼ା ଜମେ । ପ୍ରବୀରଦା, ବ୍ରଜ ଭାଇନା, ଶିବାଜୀ, ଯୋଗେନଦା । ସାରାଦିନ ନିର୍ଧୂମ ତାସଖେଳ ହୁଏ । ଯୋବ୍ରା ଠାରେ ମହାନଦୀରେ ଗାଧୁଆ ହୁଏ । ନିଷ୍ପତ୍ତି ହୁଏ । ଆଜି ଶେଷ ଖେଳ । ଆମେ ସକାଳୁ ବାହାରୁ କଲେଜ ଛକକୁ । ସେଇଠୁ ଯିଏ ଯୁଆଡ଼େ ଯିବେ । ଶାନ୍ତି ଭାଇ ଦୋକାନରେ ଜଳଖିଆ ଚା' । ମାମା କହନ୍ତି ପିଲାଗୁଡ଼ା ଆଜି ଚାଲିଗଲେ । ଘର ଖାଲି ଲାଗୁଛି । ବାବା କହନ୍ତି ରୋଷେଇ କରିଥାଅ, ସେମାନେ ଫେରି ଆସିବେ । ଆମେ ସତକୁ ସତ ଫେରୁ । ଦିନେ ନୁହେଁ, ସପ୍ତାହେ ଧରି । ମନୋଜ ବିଭାହୁଏ ଉମୁନିକୁ । ସେତେବେଳକୁ ପାରାଦ୍ୱୀପ ବନ୍ଦର ହୋଇନାହିଁ । ଅନନ୍ତପୁର ଲକ୍‌ରୁ ବରଯାତ୍ରୀ ଯିବେ ଡଙ୍ଗାରେ । ବରଯାତ୍ରୀଙ୍କ ଭିତରେ ଅଛନ୍ତି ବହୁ ବିଶିଷ୍ଟ ବ୍ୟକ୍ତି । କାଳିକିଙ୍କର ସାମଲ, ଆଇ.ଏ.ଏସ୍. ମନୋଜର ମାମୁଁ । ରକ୍ଷଣଶୀଳ ବ୍ୟକ୍ତି । କିନ୍ତୁ ବରକର୍ତ୍ତା, ତିନୋଟି ବୋଟ୍‌ରେ ଆମେ ଉଠିଲୁ । ପାଖ ଗାଁମାନଙ୍କରୁ ବାଣଫୁଟା ହେଉଛି ବରଯାତ୍ରୀଙ୍କୁ ଅଭିନନ୍ଦନ ଜଣାଇବା ଲାଗି । ନଦୀର ଦୁଇ କଡ଼ରେ ଶହ ଶହ ଲୋକ ଧାଉଁଛନ୍ତି । ପାରଦ୍ୱୀପ ଗଡ଼ରେ ପହଞ୍ଚିଲା ବେଳକୁ ଧୀବରମାନଙ୍କର ଜାଲରେ ଏକ ତୋରଣ ନିର୍ମାଣ ହୋଇଛି, ତଳେ ଉପରେ ଦୁଇପଟରେ ଜାଲ । ନଈ ଭିତରଦେଇ ଯିବାକୁ ହେବ ପ୍ରାୟ ଏକ କିଲୋମିଟର । ଲୋକ ଦଶକୋଡ଼ିଏ ହଜାର ଅଭ୍ୟର୍ଥନା ଜଣାଇବାକୁ ଉପସ୍ଥିତ ଫୁଲ ସହିତ । ଖନ୍ଦା ଖୋଲା ହୋଇଛି ବିଭିନ୍ନ ସ୍ଥାନରେ । ସାଇନବୋର୍ଡ଼ ମରାଯାଇଛି କେଉଁ ଗାଁବାଲାଙ୍କ ପାଇଁ ତାହା ଉଦ୍ଦିଷ୍ଟ । କାଳୀକିଙ୍କର ବାବୁ ମୁଗ୍ଧ, ଚକିତ ଓ ଆନନ୍ଦିତ । କହିଲେ ମୁଁ ଭାବିଥିଲି ମଣ୍ଟୁ (ମନୋଜ) ପିଲାଲୋକ । କ'ଣ ଗୋଟାଏ ନିଷ୍ପତ୍ତି କରିଛି । କିନ୍ତୁ ପ୍ରକୃତରେ ଭୁଲ୍ ଆମର ।

୧୯୫୦ ମସିହାରେ ପାରାଦ୍ୱୀପ ଗଡ଼ ନଅର ମନ୍ଦିରରୁ କନକଦୁର୍ଗାଙ୍କ ପ୍ରତିକୃତି ଚୋରି ହୋଇଯାଏ । କନକ ଦୁର୍ଗା ପ୍ରତ୍ୟକ୍ଷ ଦେବୀ । ନିଦା ସୁନାରେ ଗଢ଼ା ପ୍ରତିମୂର୍ତ୍ତି ଏବଂ ବୈଠକୀ । ଚାରିଆଡ଼େ ଚାଞ୍ଚଲ୍ୟ । ପୁଲିସ ଗାଁ ଗାଁରେ ମାରଧର ପିଟାପିଟି ଆରମ୍ଭକଲା ।

ବାବା ଥାଆନ୍ତି କଟକରେ । ଖବର ପଠାଇଲେ, ଏସବୁ ବନ୍ଦକର । କନକ ଦୁର୍ଗାଙ୍କୁ ଆମ ଅଞ୍ଚଳରେ କେହି ଛୁଇଁବାକୁ ସାହାସ କରିବେ ନାହିଁ । ନିଶ୍ଚୟ ଆମ ପରିବାରର କେହି ବ୍ୟକ୍ତିଙ୍କ ଦ୍ୱାରା ଏହା ସଂଘଟିତ ହୋଇଛି । ତାହା ହିଁ ସତ୍ୟ । କନକ ଦୁର୍ଗା ମୂର୍ତ୍ତି ଚୋରି ହୋଇଥିଲା କ'ଣ ପାଇଁ ଏବଂ ତା' ଭିତରେ କେତେ ବ୍ୟକ୍ତିଗତ ବାଟମାରଣା ହୋଇଥିଲା । ତାହା ହିଁ ସ୍ତମ୍ଭୀଭୂତ କଲା ଅନେକଙ୍କୁ । ଏବଂ ବିଶ୍ୱମ୍ଭରର ତଥାକଥିତ ବିପ୍ଳବୀମାନଙ୍କ ପ୍ରତି ଭରସା ତୁଟିବାର ପ୍ରଥମ ପର୍ବ ଆରମ୍ଭ ହେଲା ।

ନାରାୟଣ ବୀରବର ସାମନ୍ତଙ୍କ ସାଂଗଠନିକ ଶକ୍ତି ଏବଂ ବିଚକ୍ଷଣ ଦୂରଦୃଷ୍ଟିର ପରିଚାୟକ ଇମିତି ଅନେକ ଘଟଣାରୁ ଜଣାଯାଏ । ସାଆନ୍ତେ ମହା ଖର୍ଚ୍ଚୀ । ଜଣେ ବନ୍ଧୁପୁତ୍ର ମାମାଙ୍କର ମୋଟର କାର୍‌ଟି କିଣିନେଲା ଏବଂ ଦୈବାତ୍ ସାଇକେଲଟି ଦେଇଥିଲା । ମଟରକାର୍‌ଟି ପାଇଁ ତ ଟଙ୍କା ଦେଲାନାହିଁ । ସମସ୍ତେ ବ୍ୟସ୍ତ ହେଲେ । ସାଇକେଲଟିଏ ଦେଇ ମୋଟର ଗାଡ଼ିଟା ନେଇଯିବ । ବାବା କିନ୍ତୁ କହିଲେ ଯେ, ଯାହାହେଉ ସାଇକେଲଟିଏ ତ ଦେଇଛି ପରେ ଦେଖିବା । ଆଉ ପଇସା ନା କାର୍ ? ବାବା ନିର୍ଲିପ୍ତ । କୁଜଙ୍ଗ କୁଟୀର ଘରୁ ପାଣି ଗଳୁଛି । ଛପର ହେବ ବୋଲି ହୋଇନାହିଁ । ବାବାଙ୍କ ଅବହେଳାରୁ । ପ୍ରବଳ ବର୍ଷା । ଦେଖାଗଲା ବାବା ଛତାଟିଏ ଧରି ଖଟ ଉପରେ ବସିଛନ୍ତି ରାତିଯାକ । ରାଗନାହିଁ କି ଦୁଃଖନାହିଁ । କ'ଣ କରିବ ମଣିଷ ଏଇ ଲୋକଟାର । କୁଜଙ୍ଗ କୁଟୀରରୁ ଚୋରି ହୋଇଛି । ଚୋର ଧରା ପଡ଼ିଛି । ବାବା କିନ୍ତୁ ତାକୁ ଦଣ୍ଡଦେବାକୁ ନାରାଜ । ପୁଲିସକୁ ଗିରଫ କରିବା ପାଇଁ ମଧ ଦେଉନାହାନ୍ତି । ଓଃ ଅଭାବରେ ଥିଲା ବୋଲି ଚୋରି କରିଥିବ । ତେଣୁ ଦଣ୍ଡଦେଲେ ବଡ଼ ଚୋର ହୋଇଯିବ । ତାକୁ ଡାକି କିଛି ଟଙ୍କାଦେଇ ବୁଝାଇ ସୁଝାଇ ତା' ଗାଁକୁ ଫେରାଇ ଦିଆଗଲା । କି ବିଚିତ୍ର ମଣିଷ । କେତେଟଙ୍କା ଦେଇ କିଏ କେତେ ଜମି ନେଇଛି । ଘର ନେଇଛି ତା'ର ହିସାବ ମିଳେ ନାହିଁ । ଟଙ୍କା ଆସିଛି ହୁଏତ, କୁଆଡ଼େ ଗଲା ତା'ବି କହିବେ ନାହିଁ କି କାହାକୁ ଜଣାଇବେ ମଧ ନାହିଁ । ବାବା ଏକ ବିଚିତ୍ର ମଣିଷ । ତାଙ୍କୁ କଳିବା ଭାରି କଠିନ ।

ଉଦୟବଟ ଅଛି କିନ୍ତୁ ରାଜୀବଲୋଚନ ନାହାନ୍ତି । ତାଙ୍କ ସହିତ ବାବାଙ୍କର ସଂପର୍କ ସ୍ଥାପିତ ହୁଏ ବଣିକୁଦରୁ । ଆଠଗଡ଼ରୁ ବଣିକୁଦ ଯାତ୍ରା ତାଙ୍କ ପାଇଁ ଥିଲା ଅଭିପ୍ସିତ । ରେଭେନ୍ସା କଲେଜ ଛାଡ଼ିଲେ ୧୯୨୦ ମସିହା ଗାନ୍ଧିଜୀଙ୍କ ଡାକରାରେ । କୁହାଯାଏ ଯେ ସେ ହେଉଛନ୍ତି ଗାନ୍ଧିଙ୍କ ଡାକରାରେ କଲେଜ ଛାଡ଼ିବାର ପ୍ରଥମ ଛାତ୍ର । ବଣିକୁଦରୁ ଲୁଣମରା ଅନ୍ଦୋଳନ । ସେଇ ଲୁଣମରା ଆନ୍ଦୋଳନକୁ ଟାଣିଆଣନ୍ତି ରାଜଜେମା ରତ୍ନମାଳୀଙ୍କୁ ଏବଂ ରତ୍ନମାଳୀ ହୋଇଯାଆନ୍ତି ରାଜନୈତିକ ସହଯୋଦ୍ଧା ସହିତ ଜୀବନର ସାଥୀ ମଧ । ନାରାୟଣ ବୀରବର ସାମନ୍ତ ଆଉ ପଛକୁ ଫେରି ଅନେଇନାହାନ୍ତି । ନାରାୟଣ ବୀରବର ସାମନ୍ତ ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ନଥିଲେ । ସେ ଅପେକ୍ଷା କରିଥିଲେ ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କୁ । ଭାରତର ପୂର୍ବପଟ ବେଶି ସୁରକ୍ଷିତ

ନଥିଲା । ଏଇ ପଟରେ ଜର୍ମାନୀରୁ ଜାହାଜ ବୋଝେଇ ବନ୍ଧୁକ ଆସୁଥିଲା । ଏଇ ପଟରେ ଜାପାନୀମାନେ ବ୍ରିଟିଶ ନୌବହରକୁ ବୁଡ଼ାଇ ଦେଉଥିଲେ, ଏଇ ପଟରେ ସୁବାଷ ଚନ୍ଦ୍ର ବୋଷଙ୍କ ଜାତୀୟ ସୈନ୍ୟବାହିନୀ ଆଣ୍ଡାମାନ, ନିକୋବରରେ ଅବତରଣ କରିଥାଆନ୍ତି ।

ନିର୍ବାଚନ । କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀ ଲୋକନାଥ ଚୌଧୁରୀ । ବିଶ୍ୱମ୍ଭର ପ୍ରଚାର କରିବାକୁ ଯିବ ନା ନାହିଁ । କଂଗ୍ରେସ ଦଳ ଅଡ଼ିବସିଲାଣି । ବିଶ୍ୱମ୍ଭର ଯିବ ତାଙ୍କ ଦଳ ପାଇଁ, ବାବା କାହିଁକି ନ ଯିବେ କଂଗ୍ରେସ ଦଳ ପାଇଁ ? ବାବା ମହା ଚତୁର । ସେ କହିଲେ ବେଙ୍ଗୁଲି ଯଦି ଯିବ ମୁଁ ଯିବି ନିଶ୍ଚୟ । କିନ୍ତୁ ବେଙ୍ଗୁଲି ଗଲା ନାହିଁ । କାରଣ ବାବା ଯଦି ଯିବେ ପ୍ରଚାରକୁ କଂଗ୍ରେସ ଦଳପାଇଁ ତା ହେଲେ ଲୋକନାଥ ବାବୁ ଜିଣିପାରିବେ ନାହିଁ । ବାବା ଗଲେ ନାହିଁ କି ବିଶ୍ୱମ୍ଭର ଗଲାନାହିଁ । ଧୀବରମାନେ ଆସି ପହଞ୍ଚିଗଲେ କୁଜଙ୍ଗ କୁଟୀରରେ ବାବାଙ୍କ ପାଖରେ । ବାବା ତାଙ୍କୁ କହିଲେ ମୁଁ କଂଗ୍ରେସ ଦଳର ଲୋକ । ମୁଁ ତୁମକୁ କଂଗ୍ରେସ ଦଳକୁ ଭୋଟ ଦେବାପାଇଁ କହିବି । କିନ୍ତୁ ତମେମାନେ କ'ଣ ତାହା ମାନିବ ? ତମେ ଯାହା କରୁଛ କମ୍ୟୁନିଷ୍ଟମାନେ ପରା ସେଇଆ । ତମେସବୁ ଏକାଠି ଯାଅ ମାଛଧର । ଯାହା ମାର ତାକୁ ବାଣ୍ଟିନିଅ । ଫଳରେ ଲୋକନାଥ ବାବୁ ଜିତିଲେ ।

ବାବା ଭାରି ଅମାନିଆ । ଯାହା ଭାବିବେ କରିବେ । ଯିଏ ଯାହା କରୁ କେଉଁ ଜମି କାହାକୁ ଦେଲେଣି, ଗାଡ଼ି କିଏ ନେଇଗଲାଣି, କୁଜଙ୍ଗ କୁଟୀରରେ କାହାକୁ ରଖେଇଲେଣି ମାମା, ଉମୁନି କି ବେଙ୍ଗ କି ବାଣୀ କେହି ଜାଣିପାରନ୍ତି ନାହିଁ । ଏଇଥିରୁ ଅନେକ ଲୋକ ବେଉସା କରନ୍ତି । ବାବା ତା'ର ଶିକାର ହୁଅନ୍ତି । ତଥାପି ସେ ମାନନ୍ତି କାହାକୁ ? ଇମିତି ମଣିଷ ଯେ କିଛି କହିବା ମଧ କଠିନ ଯାଙ୍କୁ । ଏକଦା ସେ ଉକ୍ତ ଅଞ୍ଚଳରେ ପ୍ରବାଦ ପୁରୁଷ ଥିଲେ । ତାଙ୍କୁ ନେଇ ବହୁ କାହାଣୀ ଶୁଣାଯାଉଥିଲା । ବାବା ଏକ ବିଚିତ୍ର ମଣିଷ । କାହାକୁ କେତେବେଳେ ଟଙ୍କା, ଜମି କି ଆଉକିଛି ଦେଲେଣି ସେ ଖବର କେହି ପାଆନ୍ତି ନାହିଁ । ପେନ୍‌ସନ୍ ଟଙ୍କା ପାଇ ଘରକୁ ଫେରିବା ବାଟରେ ସରିଯାଇଥାଏ । ପଚାରିଲେ ହସନ୍ତି ଖାଲି । ଏଭଳି ଡିସଆର୍‌ମିଙ୍ଗ ହସ ଯେ କିଛି କହିବା କଠିନ ତାଙ୍କୁ ।

ସେଇ ମଣିଷ ଆଜି ଆଖି ବୁଜି ଦେଇଛି । କୁଜଙ୍ଗର ଜନସାଧାରଣ ଥିଲେ ତାଙ୍କର ସବୁଠାରୁ ପ୍ରିୟ । ପୁଅ ସନ୍ନ୍ୟାସୀ, ଝିଅ ବାଣୀ ଅବିବାହିତା, ବଡ଼ଝିଅ ପଣ୍ଡିଚେରୀବାସିନୀ.... ତାଙ୍କର କୁଜଙ୍ଗ ସଂପତ୍ତି, କଟକ ସଂପତ୍ତି, ଭୁବନେଶ୍ୱର ସଂପତ୍ତିକୁ ନେଇ ଏକ ଟ୍ରଷ୍ଟରେ ପରିଣତ କରି ଏଇ ପ୍ରବାଦ ପୁରୁଷଙ୍କ ସ୍ମୃତିରକ୍ଷାରେ ବିନିଯୋଗ କରିବାର ଦାୟିତ୍ୱ ଦଳମତ, ଗୋଷ୍ଠୀ ନିର୍ବିଶେଷରେ କୁଜଙ୍ଗର ଜନସାଧାରଣଙ୍କର, ଯେଉଁ ଜନତା ପାଇଁ ସେ ସାରାଜୀବନ ଲଢ଼ି ଯାଇଛନ୍ତି ।



# ଭୂଇଁ ପଣ୍ଡିତଙ୍କର ଶେଷ ଭୂଇଁ

ନୃସିଂହ ଚରଣ ବେହୁରିଆ ଆଉ ନାହାନ୍ତି । ଓଡ଼ିଶାର ଜମିଜମା ସଂକ୍ରାନ୍ତରେ ସେ ବୋଧହୁଏ ଓଡ଼ିଶାର ପ୍ରଶାସନରେ ଶେଷ ଟାୱାର ।

୧୯୪୬ ମସିହାରେ ନୃସିଂହ ବାବୁ ଶ୍ରେଷ୍ଠ ସ୍ନାତକ ହୋଇଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟରୁ । ଗୋଟାଏ ଅଘଟଣ ଘଟିଗଲା ସମାବର୍ତ୍ତନ ଉତ୍ସବରେ । ସେ ବର୍ଷ ଦୀକ୍ଷାନ୍ତ ଭାଷଣ ଦେବାପାଇଁ ନିମନ୍ତ୍ରଣ କରାଯାଇଥିଲା ସାର୍ କ୍ଲାଉଡ ଅଚିନେଲକଙ୍କୁ । ସେ ହେଉଛନ୍ତି ଭାରତବର୍ଷରେ ଶେଷ ବ୍ରିଟିଶ ସେନାଧକ୍ଷ । ତାଙ୍କୁ ଡକାଯିବା ହେତୁ ଛାତ୍ରମାନଙ୍କ ଭିତରେ ପ୍ରବଳ ଅସନ୍ତୋଷ ଦେଖାଗଲା ଏବଂ ଏହି ସମାବର୍ତ୍ତନ ଉତ୍ସବକୁ ବୟକଟ୍ କରିବାର ନିଷ୍ପତ୍ତି ନିଆଗଲା । ଅବସ୍ଥା ଗୁରୁତର ହେବା ଜାଣି ଶ୍ରୀ ନବକୃଷ୍ଣ ଚୌଧୁରୀ 'ଆମର ଜରୋରୀ ଆବଶ୍ୟକତା' ଶୀର୍ଷକ ଏକ ବକ୍ତୃତା ପ୍ରଦାନ କଲେ ଛାତ୍ରମାନଙ୍କୁ । ନବବାବୁ ଇମିତି କାମ କରିବାରେ ଏବଂ ଦାୟିତ୍ୱ ନେବା ବିଷୟରେ ଧୁରନ୍ଧର ଭାବି ଛାତ୍ର ସମାଜ, ବିଶେଷତଃ ସମାଜବାଦୀ ଚିନ୍ତାଧାରାର ଛାତ୍ର ସମାଜର ତାଙ୍କ ପ୍ରତି ବେଶ୍ ସମ୍ମାନ ଥିବାହେତୁ ତାହରି ସୁବିଧା ନେବାପାଇଁ ତାଙ୍କୁ ଏ ଦାୟିତ୍ୱ ଅର୍ପଣ କରିଥିଲେ ଉଚ୍ଚ କର୍ତ୍ତୃପକ୍ଷ ।

କିନ୍ତୁ ତାହା ସଫଳ ହେଲା ନାହିଁ । ଲାଠିଚାର୍ଜ, ଲୁହବୁହା ବାଷ୍ପ ଭିତରେ ସମାବର୍ତ୍ତନ ଉତ୍ସବ ଚାଲିଲା, ରେଭେନ୍ସା କଲେଜ ଟେନିସ ପଡ଼ିଆରେ ।

ଯେଉଁ ଜଣେ ଦୁଇଜଣ ଛାତ୍ର ଡିଗ୍ରୀ ନେବାପାଇଁ ଉପସ୍ଥିତ ଥିଲେ ବା ନେଇ ପାରିଲେ ସେମାନଙ୍କ ମଧ୍ୟରେ ସେ ବର୍ଷର ଶ୍ରେଷ୍ଠ ସ୍ନାତକ ନୃସିଂହ ଚରଣ ବେହୁରିଆ ଅନ୍ୟତମ । ନୃସିଂହ ବାବୁ ଏମ୍.ଏ. ପଢ଼ିବାକୁ ଗଲେ ଆଲାହାବାଦ । ସେତେବେଳକୁ ଉଚ୍ଚଶିକ୍ଷା ପାଇବା ପାଇଁ ଆଲାହାବାଦ ପାଲଟିଥିଲା କେନ୍ଦ୍ର ସ୍ଥଳ, ପାଟନା ପରେ । ପରେ ଦିଲ୍ଲୀ ଏହିସ୍ଥାନ ଗ୍ରହଣ କରିଥିଲା ।

ନୃସିଂହ ବାବୁ ଏମ୍.ଏ. ପାଠକୁ ଅଧାରେ ରଖି ଯୋଗଦେଲେ ଓଡ଼ିଶା ପ୍ରଶାସନିକ ସେବାରେ ।

ରାଜସ୍ୱ ଏବଂ ଜମି ସଂପର୍କରେ ଯେଉଁମାନଙ୍କୁ ମାଷ୍ଟର ବା ଦକ୍ଷ ଉପାଧି ଲୋକେ ଦେଇଥାଂନ୍ତି ସେମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି ନୃସିଂହ ବାବୁ । ଓଡ଼ିଶାର ଜମିଜମାର କିସମ୍ ବିଚିତ୍ର ଏବଂ ଜଟିଳ । ସେଇଟା ବୋଧହୁଏ ସବୁଠାରୁ ଜଟିଳ ଶାସନ ଏବଂ ପାଠ । ନୃସିଂହ ବାବୁ ତାକୁ ଇ ଆଦରିନେଲେ । କେବଳ ସେତିକି ନୁହେଁ, ସେ ପାଲଟିଲେ ଜମିଜମା ସଂକ୍ରାନ୍ତରେ ଧୂରୀଣ ଏବଂ ପଣ୍ଡିତ ।

ନୃସିଂହ ବାବୁ ଥାଆନ୍ତି କଟକରେ । ସେତେବେଳେ ହୋଲି ଉତ୍ସବର ଲକ୍ଷ୍ୟ ସୌହାର୍ଦ୍ଧ୍ୟତାକୁ ବଢ଼ାଇବା ପାଇଁ ଏବଂ ଏଥିରେ ଘଟୁଥିବା ବିଭତ୍ସତାକୁ ଏଡ଼ାଇବାପାଇଁ ଦୁଇଟି ଦଳ ଗଠନ କରାଯାଇଥିଲା । ଗୋଟିକର ସଂଯୋଜକ ଶ୍ରୀ ତ୍ରିଲୋଚନ କାନୁନଗୋ ଏବଂ ଅନ୍ୟ ଗୋଟିକର ମୁଁ । ଆମେ ପରିକ୍ରମା କରୁ ସହରକୁ । ଗୋଟିଏ ହୋଲି ଉତ୍ସବରେ ଆମେ ଯାଇ ପହଞ୍ଚିଲୁ ନୃସିଂହ ବାବୁଙ୍କ ଘରେ । ତାଙ୍କ ସ୍ତ୍ରୀ ବସିଥିଲେ ବାରଣ୍ଡାରେ ଏବଂ ସେ ଥିଲେ ଘର ଭିତରେ । ତାଙ୍କର ସ୍ତ୍ରୀ ଡାକ ପକାଇଲେ, ''ହେଇଟି ଆସ, ହୋଲି ଖେଳିବାକୁ ଆସିଲେଣି ।'' କିଏ ସବୁ ସେମାନେ.... ନୃସିଂହ ବାବୁଙ୍କ ପାଟି ଶୁଭିଲା ଘର ଭିତରୁ । ତାଙ୍କ ସ୍ତ୍ରୀ ଉତ୍ତର ଦେଲେ— ମଲା ମଲା ସେମାନେ ଯେପରି ବେଶଭୂଷା ହୋଇଛନ୍ତି ତାଙ୍କର ନିଜ ସ୍ତ୍ରୀମାନେ ତାଙ୍କ ସ୍ୱାମୀଙ୍କୁ ଚିହ୍ନିପାରିବେ ନାହିଁ, ମୁଁ କେମିତି ଚିହ୍ନିବି ? ସମସ୍ତଙ୍କ ଭିତରେ ହାସ୍ୟରୋଳ ଖେଳିଗଲା । ଫେରିଲାବେଳକୁ ନୃସିଂହ ବାବୁ ତାଙ୍କ ଘର ପାଖରେ ମୋତେ କହିଲେ, ଗିରିଜା, ମୋ ମୁହଁଟାକୁ ଟିକିଏ ପୋଛାପୋଛି କରିଦେଲ, ନଚେତ୍ ମୋ ସ୍ତ୍ରୀ ଯଦି ମୋତେ ଚିହ୍ନି ନ ପାରିଲେ ମୁଁ ଯିବି କୁଆଡ଼େ ? ପୁଣି ହସର ରୋଳ ଖେଳିଗଲା ।

ନୃସିଂହ ବାବୁ ମେଥଡ଼ିକାଲ ଏବଂ ମେଟିକୁଲସ୍ । ଓଡ଼ିଶା ଗେଜେଟିଅରର ସଂପାଦନାରେ ସେ ଆପଣାର କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

ସମସ୍ତଙ୍କୁ ଦିନେ ନା ଦିନେ ଯିବାକୁ ହେବ । ମହାକାଳର ଏଇ ଅଲଂଘନୀୟ ନିୟମକୁ ସେ ଏଡ଼ାଇ ଯାଇପାରିବେ କିପରି ?

ନୃସିଂହ ବାବୁ ଆଉ ନାହାନ୍ତି ।

ରାଜସ୍ୱ ଓ ଜମିଜମା ସଂକ୍ରାନ୍ତୀୟ ବିଶାରଦକୁ ହରାଇ ଏ ଜାତି ଦରିଦ୍ର ହୋଇଛି । ମୋର ଅନ୍ୟତମ ବଂଧୁ ଅଧ୍ୟାପକ ଚିତ୍ତରଂଜନ ଦାସଙ୍କ ଭଉଣୀଙ୍କୁ ସେ ବିବାହ କରିଥିଲେ ଏବଂ ସେ ଦୃଷ୍ଟିରୁ ତାଙ୍କ ସହିତ ସଂପର୍କ ଥିଲା ବେଶ୍ ମଧୁର ।

ମହାକାଳ ସମୟ ତାଙ୍କୁ କେତେ ମନେରଖିବ କହିବା କଠିନ । କିନ୍ତୁ ତାଙ୍କର ବନ୍ଧୁ ଗହଣରେ ସେ ସ୍ମୃତ ହୋଇ ରହିବେ ଚିରଦିନ ।



# ଏକ ଅବିସ୍ମରଣୀୟ ବ୍ୟକ୍ତିତ୍ୱ

ପି.ଏନ୍. ହକସର ଆଉ ନାହାନ୍ତି । ସେ ଥିଲେ ଜଣେ ଦକ୍ଷ ପ୍ରଶାସକ, ପ୍ରବୁଦ୍ଧ କୂଟନୀତିଜ୍ଞ, ଜଣେ ପ୍ରଗତିଶୀଳ ଏବଂ ବିଚାରବନ୍ତ ଲେଖକ ଓ ସଂପାଦକ । ତାଙ୍କର ବହୁମୁଖୀ ପ୍ରତିଭା ଜୀବନର ବହୁ ବିଭାବକୁ ପରିବ୍ୟାପ୍ତ ଥିଲା ଏବଂ ଆପଣାର ଦକ୍ଷତା ଏବଂ ଅଙ୍ଗୀକାରବଦ୍ଧତା ଯୋଗୁଁ ସେ ସବୁ ବିଭାବରେ ଆପଣାର ଆଲେଖ୍ୟ ରଖିଯାଇଛନ୍ତି । ପ୍ରଧାନମନ୍ତ୍ରୀଙ୍କ ମୁଖ୍ୟ ସେକ୍ରେଟେରୀ ଭାବରେ (ମେ ୧୯୬୭ ରୁ ସେପ୍ଟେମ୍ବର ୧୯୭୧) ସେ ଥିଲେ ଏ ଦେଶର ସବୁଠାରୁ ଶକ୍ତିଶାଳୀ ବ୍ୟୁରୋକ୍ରାଟ । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ସବୁଠାରୁ ବିଶ୍ୱସ୍ତ ଅଫିସର ଭାବରେ ସେ ଥିଲେ ଖୁବ୍ ଶକ୍ତିଶାଳୀ । ଏହା ସତ୍ତ୍ୱେ ସେ ଥିଲେ ଅନନ୍ୟ । କାରଣ ଏକ ଦିଗରେ ସେ ଯେପରି ଇନ୍ଦିରା ଗାନ୍ଧୀଙ୍କ ସ୍ୱେଚ୍ଛାଚାରିତାକୁ ଗ୍ରହଣ କରିପାରି ନଥିଲେ ଠିକ୍ ସେଇପରି ତତ୍କାଳୀନ ବିରୋଧି ଦଳମାନଙ୍କର ନାସ୍ତିମୂଳକ ବିରୋଧ ଏବଂ ଫମ୍ପା ସ୍ଲୋଗାନକୁ ମଧ ଗ୍ରହଣ କରିପାରି ନଥିଲେ । ଏଭଳି ବ୍ୟୁରୋକ୍ରାଟ ବା କୂଟନୀତିଜ୍ଞ ମିଳିବା କଠିନ ଏବଂ ସେ ଦୃଷ୍ଟିରୁ ସେ ଥିଲେ ସ୍ୱତନ୍ତ୍ର ।

ଜୀବନରେ ବହୁ ଉତ୍ଥାନ ପତନ, ଝଡ଼ଝଂଜା ସେ ଦେଖିଯାଇଛନ୍ତି । ଅନେକ ସମୟରେ ତାଙ୍କର ବ୍ୟକ୍ତିଗତ ଜୀବନରେ ମଧ ବହୁ ବିପର୍ଯ୍ୟୟ ଦେଖାଦେଇଛି । ଯେଉଁ ମୂଲ୍ୟବୋଧ ପାଇଁ ସେ ଜୀବନବ୍ୟାପୀ ସଂଗ୍ରାମ କରି ଯାଇଛନ୍ତି ସେଇ ମୂଲ୍ୟବୋଧର ଅବକ୍ଷୟ ତାଙ୍କୁ ବିମର୍ଶ କରିଛି । କିନ୍ତୁ ସେ ଥିଲେ ସ୍ଥିତପ୍ରଜ୍ଞ ଏବଂ ଅଶାବାଦୀ, ଠିକ୍ ପୁରାଣର ଋଷିମାନଙ୍କ ପରି । ଇନ୍ଦିରା ଗାନ୍ଧୀଙ୍କ ଶାସନରେ ସେ ଥିଲେ ସର୍ବଶକ୍ତିମାନ ବ୍ୟୁରୋକ୍ରାଟ । ଜାତୀୟ ଯୋଜନା କମିଶନର ସେ ଥିଲେ ଚେୟାରମାନ (୧୯୭୫-୭୭), ପରମାଣୁ ଶକ୍ତି କମିଶନର ସଭ୍ୟ (୧୯୬୭-୭୦) ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟେରୀଏଟର ମୁଖ୍ୟ ସେକ୍ରେଟେରୀ (ମେ ୧୯୬୭ରୁ ସେପ୍ଟେମ୍ବର, ୧୯୭୧) । ଏହା ସତ୍ତ୍ୱେ ସେ ଆପଣାର ସ୍ଥିତପ୍ରଜ୍ଞତା ଏବଂ ପ୍ରଗତିଶୀଳ ଦୃଷ୍ଟିକୋଣକୁ ହରାଇ ନଥିଲେ ।

ପି.ଏନ୍. ହକସର ସେପ୍ଟେମ୍ବର ୪, ୧୯୧୩ ମସିହାରେ ଜନ୍ମଗ୍ରହଣ କରିଥିଲେ । ମଧ୍ୟପ୍ରଦେଶର କଟନି ସହରରେ ଅବସ୍ଥିତ ସାଧୁରାମ ମ୍ୟୁନିସିପାଲ ହାଇସ୍କୁଲରୁ ମାଟ୍ରିକୁଲେଶନ ପାଶକରି ସେ ଆଲାହାବାଦ ବିଶ୍ୱବିଦ୍ୟାଳୟ, ଲଣ୍ଡନ ବିଶ୍ୱବିଦ୍ୟାଳୟ, ଲଣ୍ଡନ ସ୍କୁଲ ଅଫ ଇକନମିକ୍ସରେ ଅଧ୍ୟୟନ କରିଥିଲେ । ବାରିଷ୍ଟରୀ ପାଶ କରି ସେ ଆଲହାବାଦ ଫେରି ଓକିଲାତୀ ଆରମ୍ଭ କରନ୍ତି ।

ସଦ୍ୟ ସ୍ୱାଧୀନ ଭାରତବର୍ଷର ବିଦେଶରେ ପ୍ରତିନିଧିତ୍ୱ କରିବା ପାଇଁ ଉପଯୁକ୍ତ ଲୋକ ଖୋଜୁଥାନ୍ତି ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ । ସାର୍ ତେଜବାହାଦୁର ସାପ୍ରୁ ଜବାହରଲାଲଙ୍କୁ ସୁପାରିଶ କଲେ ହକ୍ସରଙ୍କ ନାମ । ''ସେ ହେଉଛି ଆଲହାବାଦ ବାର୍‌ର ଉଜ୍ଜ୍ୱଳ ତାରକା ।'' ହକ୍ସର ଆଉ ଫେରି ଅନେଇ ନାହାନ୍ତି । ଦୀର୍ଘ କୂଟନୀତିଜ୍ଞ ଜୀବନ ଆରମ୍ଭ ହୁଏ ।

ଲାଗୋସ, ଭିଏନା, ଲଣ୍ଡନ, ନ୍ୟୁୟର୍କ, ଜେନିଭା ପ୍ରଭୃତିରେ ସେ ଭାରତର ପ୍ରତିନିଧିତ୍ୱ କରିଛନ୍ତି । ପରବର୍ତ୍ତୀ କାଳରେ ସେ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟେରିଏଟରେ ମୁଖ୍ୟ ସେକ୍ରେଟେରୀ ଏବଂ ପରେ ପ୍ରଧାନମନ୍ତ୍ରୀଙ୍କ ମୁଖ୍ୟ ସେକ୍ରେଟେରୀ ହୋଇ ଅବସର ଗ୍ରହଣ କରିଛନ୍ତି ।

ହକ୍ସରଙ୍କ ଉପରେ ପ୍ରଭାବ ପଡ଼ିଥିଲା ଗାନ୍ଧୀ, ଲେନିନ ଏବଂ ନେହେରୁଙ୍କର । ଏବଂ ସେ ଥିଲେ ଫେବିଆନ ସୋସଲିଷ୍ଟ । ''ଆମ ଭିତରେ ମତଭେଦ ମୋତେ ବିବ୍ରତ କରିନାହିଁ, ବିବ୍ରତ କରିଛି ତା' ପଛରେ ଥିବା ହୀନମନ୍ୟତା'' ହକ୍ସର ସବୁବେଳେ କହନ୍ତି ।

ସମସ୍ୟା ଆସିଛି, ସଂକଟ ଦେଖାଦେଇଛି, ବିଶେଷତଃ ଇନ୍ଦିରା ଗାନ୍ଧୀଙ୍କ ଜରୋରୀକାଳୀନ ପରିସ୍ଥିତି ସମୟରେ । ତାଙ୍କର ନିଜର ଏକାନ୍ତ ଆତ୍ମୀୟ ଏବଂ ଏକ ବିଶିଷ୍ଟ ଲୋକ ଗିରଫ ହୋଇଛନ୍ତି ଇନ୍ଦିରା ଗାନ୍ଧୀଙ୍କ ଜରୋରୀ ଶାସନ କାଳରେ । ସେତିକିବେଳେ ତାଙ୍କ ମାଆଙ୍କର ପରଲୋକ ହୋଇଯାଇଛି, ଭଉଣୀ ଏବଂ ଭିଣୋଇଙ୍କର ପରଲୋକ ହୋଇଯାଇଛି । ପରିଶେଷରେ ତାଙ୍କର ଧର୍ମପତ୍ନୀଙ୍କର ପରଲୋକ ହୋଇଯାଇଛି । ଧର୍ମପତ୍ନୀ ଥିଲେ ତାଙ୍କ ସହକର୍ମୀ, ସହଯୋଦ୍ଧା ଏବଂ ପ୍ରେରଣାଦାୟିନୀ । ଇନ୍ଦିରା ଗାନ୍ଧୀଙ୍କ ଜରୋରୀ ଶାସନ କାଳରେ ତାଙ୍କ ଉପରେ ପ୍ରବଳ ଚାପ ପଡ଼ିଛି । ସେ ବିମର୍ଷ ହୋଇଛନ୍ତି କିନ୍ତୁ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରି ନାହାନ୍ତି, ମହାଭାରତର ଅର୍ଜୁନ ପରି । ଭାରତୀୟ ବୁଦ୍ଧିଜୀବୀମାନଙ୍କ ଭିତରେ ହତୋତ୍ସାହ, ନୈରାଶ୍ୟ ତାଙ୍କୁ ବେଶି ବ୍ୟଥିତ କରିଛି । ଅଂଧକାର ପରେ ଆଲୋକ ଆସିବ ଏବଂ ସେ ଆଲୋକ ଆଣିବେ ଭାରତର ଯୁବ ସମାଜ, ଏ ବିଶ୍ୱାସ ଥିଲା ତାଙ୍କର ପ୍ରଗାଢ଼ ଭାବରେ ।

କାଳକ୍ରମେ ସେ ଏକୁଟିଆ ହୋଇଯାଇଥିଲେ । ସେ ଶାସନକଳର ପ୍ରେମରୁ ଆପଣାକୁ ମୁକ୍ତ କରିଦେଇଥିଲେ ଧୀରେ ଧୀରେ ଏବଂ ଫେରିଥିଲେ ସମଧର୍ମା ବୁଦ୍ଧିଜୀବୀମାନଙ୍କ ଗହଣକୁ ।

ନଭେମ୍ବର ମାସ ୨୯ ତାରିଖ, ୧୯୯୮ ମସିହା । ପି.ଏନ. ହକ୍‌ସରଙ୍କ ପରଲୋକ ହୋଇଗଲା । ଦୀର୍ଘ ୬୦ ବର୍ଷର କର୍ମମୟ, ସୃଜନଶୀଳତାର ଶେଷ ହୋଇଗଲା ଚିତାଗ୍ନିରେ । ତା' ପୂର୍ବରୁ ସେ "ଭାରତବର୍ଷର ଜାତୀୟ ପୁନରଭ୍ୟୁତ୍ଥାନ" ଉପରେ ଏକ ଜାତୀୟ ସେମିନାରର ଆୟୋଜନ କରିଥିଲେ । ୬୭ଟି ନିବନ୍ଧ ସେଇ ସେମିନାରରେ ଉପସ୍ଥାପିତ ହୋଇଥିଲା ଏବଂ ସର୍ବଭାରତୀୟ ସ୍ତରରେ ପ୍ରାୟ ସାତ ହଜାର ବୁଦ୍ଧିଜୀବୀ ଏଥିରେ ଅଂଶ ଗ୍ରହଣ କରିଥିଲେ । ଗୋଟିଏ ସେମିନାରରେ ଜାତୀୟ ପୁନରଭ୍ୟୁତ୍ଥାନ ହୋଇଯିବ ନାହିଁ । କିନ୍ତୁ ପି.ଏନ୍. ହକ୍ସରଙ୍କ ମତ ସହିତ ସମସ୍ତେ ଏକମତ ହେବେ ଯେ 'ଗୋଟିଏ ପାଦ' ଆଗକୁ ଚାଲିଲେ ବି ଯଥେଷ୍ଟ । ସେଇ ହେବ ତୃପ୍ତି । ଅଭିପ୍‌ସିତ ଲକ୍ଷ୍ୟରେ ଗୋଟିଏ ପାଦ କ'ଣ କମ୍ କଥା ?

ନିଜର ଘଟଣାବହୁଳ ଜୀବନକୁ ସ୍ମରଣ କରି ସେ କହନ୍ତି ଯେ ତାଙ୍କର କୂଟନୀତିଜ୍ଞ ପ୍ରଶାସକ ଜୀବନ ତାଙ୍କ ପାଇଁ ସବୁଠାରୁ ବେଶି ଗୁରୁତ୍ୱପୂର୍ଣ୍ଣ ନୁହେଁ, ଗୁରୁତ୍ୱପୂର୍ଣ୍ଣ ହେଉଛି ତାଙ୍କର ଯୌବନକାଳ ଯେତେବେଳେ ଗାନ୍ଧୀ, ଲେନିନ୍, ନେହେରୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲା ।

ସେ ଏକୁଟିଆ ହୋଇ ଯାଇଥିଲେ । ସମସାମୟିକମାନେ ବାହୁଡ଼ି ସାରିଲେଣି । ଜୀବନର ସେଇ ମୂଲ୍ୟବୋଧ ଆଉ ନାହିଁ, କିନ୍ତୁ ମୃତ୍ୟୁକୁ ତାଙ୍କର ଭୟ ନାହିଁ । "ମୃତ୍ୟୁକୁ ମୁଁ ଭୟକରି ନାହିଁ, ମୁଁ ଅନେକ ଦିନ ବଂଚି ସାରିଛି । ଏବଂ ଯାହା ଅବଶ୍ୟମ୍ଭାବୀ ତାହା ଘଟିବାକୁ ଆଉ ଡେରି ନାହିଁ । ମୃତ୍ୟୁ ହିଁ ତ ଜୀବନକୁ ପ୍ରତିପାଦିତ କରେ । କେହି ମରୁ ନଥିବା ଏକ ସଂସାରର ପରିକଳ୍ପନା ମୋତେ ତ୍ରସ୍ତ କରେ । ଜନ୍ମ ଯେପରି ଏକ ସତ୍ୟ, ମୃତ୍ୟୁ ବି ସେଇପରି ଏକ ସତ୍ୟ । ଏହି ଦୁଇ ସତ୍ୟ ମଧ୍ୟରେ ଜୀବନ ପ୍ରବାହିତ । ମୃତ୍ୟୁର ପଦଧ୍ୱନି ଶୁଭିଲାଣି । ମୁଁ ପ୍ରତିଜ୍ଞା କରୁଛି ଯେ ମୁଁ ଶାନ୍ତିରେ ଏବଂ ପ୍ରଶାନ୍ତିର ସହିତ ମୃତ୍ୟୁବରଣ କରିବି । ଏବଂ ମୋ ସଂପର୍କରେ କିଛି ଅକୁହା ନ ରହିଯିବାକୁ ଚେଷ୍ଟା କରିବି ।"

ତାହା ହିଁ ଘଟିଲା । ଆପଣାର ଆତ୍ମଜୀବନୀ ସେ ଲେଖିଗଲେ ଜୀବନର ଶେଷକୃତି ଭାବରେ ।

ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବା ପାଇଁ ମୁଁ ତାଙ୍କୁ ନିମନ୍ତ୍ରଣ କରିଥିଲି । ତାଙ୍କ ସହିତ ପରିଚିତି ଥିଲା । ସେ ଉତ୍ତର ଦେଇ ଲେଖିଥିଲେ ଯେ "ଦେହ ଆଉ ଭଲ

ରହୁନାହିଁ । ଦୁର୍ବଳ ହୋଇ ପଡ଼ିଲିଣି । ତେଣୁ ଯାଇ ପାରିବି ନାହିଁ । ତମେ ମୋର ପୂର୍ବଦିନ ଗୁଡ଼ିକୁ ସ୍ମରଣକରି ବୋଧହୁଏ ନିମନ୍ତ୍ରଣ କରିଛ । କିନ୍ତୁ ମୁଁ କ'ଣ ଆଉ ଯୁବକ ହୋଇରହିଛି । ମନ ଅଛି ଯୁବକ କିନ୍ତୁ ଦେହ ?''

''ଆଚ୍ଛା ମୋତେ କ'ଣ କହିପାରିବ ଯେ ପ୍ରାକୃତିକ ସମ୍ପଦରେ ଭରା ଓଡ଼ିଶା କାହିଁକି ଭାରତବର୍ଷରେ ସବୁଠାରୁ ଦରିଦ୍ର ? କାହିଁକି ?''

ମୁଁ ଉତ୍ତର ଦେଇଥିଲି । ଓଡ଼ିଶାବାସୀଙ୍କର ଆପଣାର ଦାବିକୁ ଉପସ୍ଥାପିତ କରିବାରେ ପ୍ରଚେଷ୍ଟା ଓ ଐକ୍ୟର ଅଭାବ ।

ଏବଂ ଦିଲ୍ଲୀର ବାଦଶାହମାନେ ଓଡ଼ିଶାକୁ ସେମାନଙ୍କର ଉପନିବେଶ ଭାବେ ବିଚାରକରି ଓଡ଼ିଶାକୁ ଅବହେଳା କରିବା ।

ଏଇ ଦୁଇଟି ମୁଖ୍ୟ କାରଣ ।

ସେ ଉତ୍ତର ଦେଇଥିଲେ ଧନ୍ୟବାଦ ଜଣାଇ ଏବଂ କହିଥିଲେ ପ୍ରଥମଟି ଶକ୍ତିଶାଳୀ ହେଲେ ଦ୍ୱିତୀୟଟି ତା'ମନକୁ କାର୍ଯ୍ୟକାରୀ ହେବ ।

ମୁଁ ଅପେକ୍ଷାକରିବି ସେଇ ଦିନକୁ ।

ପି.ଏନ୍. ହକ୍‌ସର ଆଉ ନାହାନ୍ତି । ସେ ଯାହା କହିଥିଲେ ତାହା ବି କାର୍ଯ୍ୟକାରୀ ହୋଇନାହିଁ ।



# ତୁମେ କେତେଜଣ

''ତୁମେ କେତେଜଣ ଜୀବନକୁ ପାଣି
ଛଡ଼ାଇ ନଦେଲେ ଚଳିବକି,
ଦଧୀଚିର ହାଡ଼ ଉଜାଡ଼ି ନ ଦେଲେ,
ଏ ଜାତିର ଭାଗ୍ୟ ଫେରିବ କି ?''

ଆଜି ବି ଏ ସଂଗୀତ ଶିହରଣ ସୃଷ୍ଟିକରେ । କାରଣ ଆଜି ବିପର୍ଯ୍ୟୟ ପଡ଼ିଲେ ଏଇଭଳି ମଣିଷର ଆବଶ୍ୟକତା ବେଶି ଅନୁଭୂତ ହୁଏ । କୁଆଡ଼େ ଗଲେ ସେମାନେ ? ଆଜି ରାଜନୀତି, ସମାଜସେବା ବହୁ ଲୋକଙ୍କ ପାଇଁ ପେଷା ପାଲଟିଛି, ବିଶ୍ୱାସ ନୁହେଁ । ସେ ଦିନ କିନ୍ତୁ ଇମିତି ନଥିଲା । ଦେଶର ବହୁ ଯୁବକ ଆପଣାର ଜୀବନକୁ ପାଣି ଛଡ଼ାଇ, ଜୀବନକୁ ବାଜି ରଖି ବାହାରି ଆସିଥିଲେ ରାଜପଥକୁ । ଭାରତବର୍ଷର ମୁକ୍ତି ପାଇଁ କେବଳ ନୁହେଁ, ଏକ ସାମ୍ୟ ସମୃଦ୍ଧ ଭାରତବର୍ଷ ଗଢ଼ିବା ପାଇଁ ।

ସେମାନଙ୍କ ଭିତରୁ ହଜି ଯାଉଛନ୍ତି, ଜଣକ ପରେ ଜଣେ । ଠିକ୍ ସେତିକିବେଳେ ଯେତେବେଳେ ଲୋକେ ଖୋଜୁଛନ୍ତି ସେଇଭଳି ମଣିଷକୁ, ଦେଶ ବି ଖୋଜୁଛି ।

ଏଇଭଳି ଜଣେ ମଣିଷ ହେଉଛନ୍ତି ପୁରୁଷୋତ୍ତମ ସିଂହ । ତାଙ୍କୁ ଅନେକ ଲୋକ ଜାଣନ୍ତି । ସବୁ ସଭା ସମିତି ବୈଠକ ଏବଂ କାର୍ଯ୍ୟ-କ୍ରମରେ ତାଙ୍କୁ ଦେଖିବାକୁ ମିଳେ । ନମ୍ର, ନିରଳସ ମଣିଷଟିଏ । ୧୯୧୩ ମସିହା, ମାଘ ପୂର୍ଣ୍ଣମୀ ବାସି । ଶ୍ୟାମସୁନ୍ଦର ଏବଂ ଲକ୍ଷ୍ମୀପ୍ରିୟାଙ୍କ ଔରସରୁ ପିଲାଟିଏ ଜନ୍ମହେଲା ବାଟେସିଂପୁର, ପଲ୍ଲୀ ଗ୍ରାମରେ । ଉତ୍ତମ ପୁରୁଷ ହେବାର କଳ୍ପନା କରି, ସ୍ୱପ୍ନ ଦେଖି ବାପା ମାଆ ନାମ ଦେଇଥିଲେ ପୁରୁଷୋତ୍ତମ । ସତକୁ ସତ ସେଇଆ ହେଲା, ପିଲାଟି ପଢ଼ିଲା ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ବନବିହାରୀ ସ୍କୁଲ, କୁଜଙ୍ଗରେ ।

ଦେଶରେ କିନ୍ତୁ ମୁକ୍ତି ସଂଗ୍ରାମର ଦୁନ୍ଦୁଭି ବାଜୁଛି । ସ୍କୁଲ କଲେଜ ଛାଡ଼ି ଚାଲିଆସ ପିଲାମାନେ, ଗାଉନ ଫିଙ୍ଗିଦେଇ ଚାଲିଆସ ଆଇନଜୀବମାନେ, ଆସ ବିଚାରପତି ଦଳ

ମିଶଲ ଛାଡ଼ି । ୧୯୩୦ ମସିହାର କଥା । ନବକୃଷ୍ଣ ଚୌଧୁରୀ ଛାଡ଼ିଲେଣି କଲେଜ, ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସୁରେନ୍ଦ୍ର ନାଥ ପଟ୍ଟନାୟକ ସ୍କୁଲ ପାଚିରୀ ଡେଇଁ ଆସିଲେଣି ରାଜପଥକୁ । ମୁକ୍ତିର ଦୁନ୍ଦୁଭି ବାଜୁଛି । କୁଜଙ୍ଗ ଗାନ୍ଧୀ ନାମରେ ପରିଚିତ ନାରାୟଣ ବୀରବର ସାମନ୍ତ ଯୋଗ ଦେଲେଣି ।

ପୁରୁଷୋତ୍ତମଙ୍କ ବହି ବସ୍ତାନୀରେ ଡୋର ବଂଧାହେଲା । ସେ ଯୋଗଦେଲେ ବାନରସେନା ଭାବରେ । ପିକେଟିଂ କଲେ ବିଲାତି ଲୁଗା ଦୋକାନମାନଙ୍କ ଆଗରେ । ହେଲା ବେତମାଡ଼ । ହାତ ନୋଳାରେ ଫାଟିଗଲା । ସେମାନେ କାନ୍ଦିଲେ ନାହିଁ । ଗୀତ ଗାଇଲେ—

''ମାର ତୁମେ ଯେତେ ମାରିବ,
ଜୀବନକୁ ଯିଏ ପଣ କରିଅଛି,
ତୁମେ କି ତାହାକୁ ପାରିବ ''

ଥାନାରେ ମାଡ଼, କୋର୍ଟରେ ମାଡ଼ । କେବେ କେବେ ନେଇ ଜଂଗଲରେ ଛାଡ଼ିଦେଇ ଆସୁଥାନ୍ତି । ଅଗଣିତ ପିଲା । ପୁରୁଷୋତ୍ତମ ପରବର୍ତ୍ତୀ କାଳରେ 'ବାନର ସେନା'ଙ୍କର ଜୀବନୀ ପ୍ରକାଶ କରିଛନ୍ତି— ପ୍ରଥମ, ଦ୍ୱିତୀୟ ଭାଗ ପ୍ରକାଶିତ ହୋଇଛି । ତୃତୀୟ ଭାଗ ଯନ୍ତ୍ରସ୍ଥ । ବହୁ ଯନ୍ତ୍ରଣା କଞ୍ଚା ଲୁହାକୁ ଇସ୍ପାତରେ ପରିଣତ କରିଛି । ପୁରୁଷୋତ୍ତମ ଆଉ ପଛକୁ ଫେରି ଅନେଇ ନାହାନ୍ତି । ବାନରସେନା ମାନଙ୍କୁ ଛାଡ଼ିଦିଆଯାଇଛି ଗଭୀର ଅରଣ୍ୟ ଭିତରେ, ବାଘ ଭାଲୁ ହାତୀ ହାବୁଡ଼ରେ ପଡ଼ି, ମରିବା ପାଇଁ । ପୁରୁଷୋତ୍ତମ ସେମାନଙ୍କ ମଧ୍ୟରେ ଅନ୍ୟତମ । କିନ୍ତୁ ସେମାନେ ବଞ୍ଚି ଫେରିଛନ୍ତି ଏବଂ ପୁଣି ଚାଲିଛି ପିକେଟିଂ । ଆହାଦ୍ ସେତେବେଳକାର ନାମଜାଦା ମାଜିଷ୍ଟ୍ରେଟ୍ । ବ୍ରିଟିଶ ରାଜଭକ୍ତ ସେ । ତାଙ୍କ କୋର୍ଟ ଭିତରେ 'ବାନର ସେନା'ଙ୍କୁ ପୁଣି ମାଡ଼ହୁଏ । ପୁଣି ସେଇ ଗୀତ । ଜୀବନ ବିତିଯାଏ, ସମୟ ଗଡ଼ିଚାଲେ ।

ପୁରୁଷୋତ୍ତମ କାରାଗାରରେ ବନ୍ଦୀ ହୁଅନ୍ତି । କଟକ ଜେଲରେ ପ[illegible] ନମ୍ବର ୱାର୍ଡ଼ । ସେ ୱାର୍ଡ଼କୁ ପୁରୁଷୋତ୍ତମ ଭୁଲି ନାହାନ୍ତି [illegible]ଟକରୁ ଜେଲଖାନା ଉଠିଗ[illegible] । ପରେ ଯେଉଁମାନେ କଟକ ଜେଲ୍‌ର ୧୫, ୧୬, ୧୭ ନମ୍ବର ୱାର୍ଡ଼କୁ ସ୍ୱାଧୀନତା ସ୍ମାର[illegible] ଭବନ କରିବାକୁ ଲଗାତର ଉଦ୍ୟମ କରିଆସିଛନ୍ତି ସେମାନଙ୍କ ମଧ୍ୟରେ ପୁରୁଷୋତ୍ତମ ଅନ[illegible]ମ । ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ ମାନଙ୍କରେ ସେଇଠି ପତାକା ଉ[illegible]ଳନ କରିବାରେ ଅଗ୍ରଗଣ୍ୟ ପୁରୁଷୋତ୍ତମ ।

ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଦେବ[illegible] ପ୍ରତି ଅଗାଧ ଭକ୍ତି, ଅନୁରକ୍ତି ତାଙ୍କର । ସେ ସେମାନଙ୍କର ପରିବାରଭୁକ୍ତ ହୋଇ ଯାଇଛ[illegible]

ଏବଂ ଏହି ପରିବାରର ଆଦର୍ଶ ତାଙ୍କୁ ଅନୁପ୍ରାଣିତ କରିଛି । କାରାଗାରରୁ ମୁକ୍ତି ପରେ ସେ ଆଉ ଟିକଟ ପାଇଁ ପ୍ରାର୍ଥୀ ହୋଇନାହାନ୍ତି । ନିଜେ ପ୍ରେସ୍‌ଟିଏ କରି ଗୁଜରାଣ ମେଣ୍ଟାଇଛନ୍ତି । କାହାରି ଅନୁଗ୍ରହ ପ୍ରାର୍ଥୀ ହୋଇ ନାହାନ୍ତି କି ଦଳର ଟିକଟ ପାଇଁ ଦୌଡ଼ି ନାହାନ୍ତି । ଗାନ୍ଧୀ-ବିନୋବା ଧାରାରେ ରଚନାତ୍ମକ କାର୍ଯ୍ୟରେ ଆପଣାକୁ ଲିପ୍ତ ରଖିଛନ୍ତି ।

ସବୁ ପ୍ରକାର ରଚନାତ୍ମକ କାର୍ଯ୍ୟକ୍ରମ, ଗାନ୍ଧୀ-ବିନୋବା ବିଚାରଧାରାରେ ସେ ଆପଣାକୁ ନିୟୋଜିତ କରିଛନ୍ତି । ଶୋଷଣ, ଭ୍ରଷ୍ଟାଚାରରୁ ଆପଣାକୁ ଦୂରେଇ ରଖିଛନ୍ତି । ନେତାଜୀ ସେବା ସଦନ, ସର୍ଦ୍ଦାର ପଟେଲ ଶିଶୁ ଭବନ, ଭୂଦାନ ଯଜ୍ଞ ସମିତି ପ୍ରଭୃତିରେ ମନୋନିବେଶ କରିଛନ୍ତି । ଡକ୍ଟର ରାଧାନାଥ ରଥ, ଡକ୍ଟର ହରେକୃଷ୍ଣ ମହତାବଙ୍କର ଜନକଲ୍ୟାଣ କାର୍ଯ୍ୟକ୍ରମ ତାଙ୍କର କାର୍ଯ୍ୟରେ ପରିଣତ ହୋଇଛି ।

ବାନର ସେନାମାନଙ୍କ ନାମ ସଂଗ୍ରହ କରିବା, ଜୀବନୀ ସଂଗ୍ରହ କରିବା ତାଙ୍କର ଏ ଜାତିକୁ ବିରାଟ ଅବଦାନ । ସେମାନଙ୍କୁ ଲୋକେ ଭୁଲିଯାଇ ଥାଆନ୍ତେ, ସେମାନଙ୍କୁ ଜନସ୍ମୃତିରେ ଜାଗରୂକ କରିଯାଇଛନ୍ତି ପୁରୁଷୋତ୍ତମ ସିଂହ । ସମୟ ଅତିକ୍ରାନ୍ତ ହୋଇଛି ।

ଡିସେମ୍ବର ୧୭ ତାରିଖ ସକାଳ ଆସିଛି । ରୋଗ ନାହିଁ, ଯନ୍ତ୍ରଣା ନାହିଁ, କାହାକୁ କଷ୍ଟ ବା ଦୁଃଖ ଦେଇନାହାନ୍ତି । ହଠାତ୍ । ସାମାନ୍ୟ ଯନ୍ତ୍ରଣା ଏବଂ ତା'ପରେ ବିଦାୟ । ପଛରେ ରହିଗଲା ଇତିହାସ । 'ବାନରସେନା' ଜୀବନୀ ତୃତୀୟ ଖଣ୍ଡର ପ୍ରୁଫ ଦେଖିଛନ୍ତି ଏବଂ ଆବଶ୍ୟକ ସଂଶୋଧନ କରିଛନ୍ତି । ତା'ପରେ ଚାଲିଯାଇଛନ୍ତି ସେଇଠାକୁ, ଯେଉଁଠାରୁ କେହି ଫେରି ନାହାନ୍ତି ।

ଇତିହାସ ମଥା ପିଟୁଛି ।



# ପ୍ରତାପ ଆଉ ନାହିଁ

ପ୍ରତାପ ଆଉ ନାହିଁ । ମାତ୍ର ୫୯ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଗଲା କ୍ୟାନସର ରୋଗରେ । ଚାକିରି ଥିଲା ଆଉ କିଛିକାଳ । କିନ୍ତୁ ସେ ଚାକିରିରୁ ଅବସର ନେଇଗଲେ ତା' ପୂର୍ବରୁ । ଚାକିରି କରିବା ପାଇଁ ଆଉ ସ୍ପୃହା ନଥିଲା । ବୟସରେ ଚାକିରିରେ ଯେଉଁମାନେ କନିଷ୍ଠ ସେମାନଙ୍କ ତଳେ କାମ କରିବାର ଆଉ କିଛି ଆବଶ୍ୟକତା ନଥିଲା । ମାତ୍ର ଗୋଟିଏ ସନ୍ତାନ, ଝିଅଟିଏ । ସେ ଚାଲିଗଲେ ହଠାତ୍ । ସମସ୍ତଙ୍କୁ ଚକିତ କରି । କାରଣ ତାଙ୍କର ଅସୁସ୍ଥତା କଥା ବାହାର ଲୋକେ ବେଶି ଜାଣି ନଥିଲେ । ଜାଣିବାର ଅବକାଶ ନଥିଲା । କାରଣ ପ୍ରତାପ ପବ୍ଲିସିଟି ବିମୁଖ ଥିଲା ।

କାମ କରିଯାଅ ନିରଳସ ଭାବରେ । ଚାକିରି ଏକ ଜୀବିକା ନୁହେଁ । ଅଙ୍ଗୀକାର ହେଉଛି ମୁଖ୍ୟ କଥା । ଜଣେ ବ୍ୟକ୍ତି, ଜଣେ ଅଫିସର ! ସେ କ'ଣ ଶାସନକଳକୁ ସୁଧାରି ଦେଇପାରିବ, ସମାଜର କଳୁଷକୁ ଦୂରକରି ପାରିବ ? ସେ ଦାବି ସେ କଦାପି କରିନାହାନ୍ତି । କିନ୍ତୁ କାମ କରିଯିବି, ଗୋଟିଏ ପାଦ ଆଗକୁ ସେତିକି ଯଥେଷ୍ଟ । ଯାହା କରିଯିବି, ନିଷ୍ଠାର ସହିତ କରିଯିବି । ସେଥିପାଇଁ କାହାକୁ ଭୟକରିବି ନାହିଁ ।

ପ୍ରତାପ ୧୯୬୪ ମସିହାର ଆଇ.ଏ.ଏସ୍ । ତାଙ୍କୁ ମୁଁ ଜାଣିଛି ସେଇ ଦିନରୁ । ପୁଅ ପଢୁଥିଲା କଲେଜରେ । ଦେହ ଖରାପ ଥିଲା । ପୁଅ ହାତରେ ପଠାଇଥିଲି କୋଡ଼ିଏ ପଚିଶିଟି କ୍ୟାଲେଣ୍ଡର ସେକ୍ରେଟେରିଏଟର ଅଫିସରମାନଙ୍କୁ ଦେବାପାଇଁ । ସେ ଫେରିଲା ସବୁ କ୍ୟାଲେଣ୍ଡର ବାଣ୍ଟି । ଫେରି କହିଲା ବାପା, ପ୍ରତାପ ମୁଖୋପାଧ୍ୟାୟ କିଏ ? ମୁଁ କାରଣ ପଚାରିଲି । ସେ କହିଲା ଏତେ ଲୋକଙ୍କୁ ଦେଲି । ଅଧିକାଂଶ ସ୍ଥାନରେ ଅପେକ୍ଷା କରିବାକୁ ହେଲା । କିନ୍ତୁ ପ୍ରତାପବାବୁଙ୍କ ପାଖରେ ନୁହେଁ । ବିନୀତ ମଣିଷ । କ୍ୟାଲେଣ୍ଡର ପାଇ ଧନ୍ୟବାଦ ଦେଲେ । ତମ ବିଷୟରେ କହିଲେ ଏବଂ ପଚାରିଲେ । ଏବଂ ସବୁଠାରୁ ଆଶ୍ଚର୍ଯ୍ୟର କଥା ଫେରିଲାବେଳେ ସେ ମୋତେ ବଳେଇ ଦେଇଗଲେ କବାଟ ପର୍ଯ୍ୟନ୍ତ । ଏଡ଼େ ଅଫିସର କିନ୍ତୁ ଏତେ ଭଦ୍ର ଏବଂ ବିନୟୀ ! କାଲି ସେ ଖବରକାଗଜରୁ ପଢ଼ି ମୋତେ

ଏ ସଂବାଦ ଦେଲା । ଏବଂ ଦେଲାବେଳକୁ ତା'ର ଆଖିରେ ଲୁହ ଜମିଥିଲା । ଅନେକ ବର୍ଷ ତଳର କଥା । ତଥାପି ସେ ମନେରଖିଚି ।

ଏଇ ତ ଆମର ପ୍ରତାପ ! ମଣିଷ ଯାଏ, କିନ୍ତୁ ସ୍ମୃତି ରହିଯାଏ ।

ପ୍ରତାପ କଟକରେ ଥିଲେ । ଅନେକ ଦିନ ହେଲା ଦେଖାହୋଇ ନଥିଲା । ତାଙ୍କୁ ଗୋଟିଏ କାର୍ଯ୍ୟକ୍ରମକୁ ନିମନ୍ତ୍ରଣ କରିବା ପାଇଁ ସ୍ଥିର କଲି । ଭାବିଲି ଯିବି ନିଜେ ଡାକିବା ପାଇଁ, ଫୋନ କଲି । ପ୍ରତାପ ନିଜେ ଫୋନ ଧରିଲେ । କାରଣ ପି.ଏ. ଆସିନାହାନ୍ତି । ପ୍ରତାପ କିନ୍ତୁ ଅଫିସରେ ହାଜର । ମୋ ନାମ କହି ପଚାରିଲି ପ୍ରତାପ ବାବୁ ଅଛନ୍ତି ? ସେପଟରୁ ଉତ୍ତର ଆସିଲା, ''ଗିରିଜା ଦାଦା ପାଇଁ ଏଠାରେ ପ୍ରତାପବାବୁ ନାହାନ୍ତି, ପ୍ରତାପ ଅଛି ।''

ଏଇ ହେଉଛି ପ୍ରତାପ ମୁଖୋପାଧ୍ୟାୟ । ଆଇ.ଏ.ଏସ୍., ବୋର୍ଡ଼ ଅଫ ରେଭିନ୍ୟୁର ସଭ୍ୟ ।

ପ୍ରତାପ କାହାରି ସହିତ ଝଗଡ଼ା କରେ ନାହିଁ । କିନ୍ତୁ ତା' ଉପରେ କୌଣସି ଚାପାକୁ ସେ ଗ୍ରହଣ କରେ ନାହିଁ । ତାର ଚରିତ୍ର ଜାଣି ମଧ କେହି ଅନ୍ୟାୟ କଥା କିଛି କହନ୍ତି ନାହିଁ । ସେଥିପାଇଁ ଭଲ ପୋଷ୍ଟିଂ ମିଳିନାହିଁ । ସେଥିପ୍ରତି ମଧ ତା'ର ଆଗ୍ରହ ନାହିଁ ।

ପ୍ରତାପ ଆସିଲେ କାର୍ଯ୍ୟକ୍ରମକୁ । ଏକ ପୁରସ୍କାର ବିତରଣ କାର୍ଯ୍ୟକ୍ରମ । ମୁଁ ତାଲିକା ମିଳାଇ ଦସ୍ତଖତ କରୁଥିଲି ସାର୍ଟିଫିକେଟ ମାନଙ୍କରେ । ସେ ମୋ ସାଂଗରେ ବସି ମୋତେ ସାହାଯ୍ୟ କଲେ । ମୁଁ ଅପ୍ରତିଭ ହେଲି । ସେ ମୋତେ କହିଲେ, ତମେ କରୁଛ, ମୁଁ କରିବି ନାହିଁ ? ମୋର କୌଣସି ଉତ୍ତର ନଥିଲା । ସାମୂହିକ କାର୍ଯ୍ୟପାଇଁ କୌଣସି ସଂକୋଚ ନଥିଲା । ଅସୁସ୍ଥ ଥେଲେ ସେ । କିନ୍ତୁ ଆସିଲେ । ଅସୁସ୍ଥତା କଥା ଆଦୌ କହିଲେ ନାହିଁ । ବସି କିଛି ସମୟ ଗପକଲେ ଏବଂ କହିଲେ ଯେ ଦାଦା, ମୁଁ ଅସୁସ୍ଥ । ଖାଇପାରିବି ନାହିଁ । ରୋଗମୁକ୍ତ ଯଦି ହୁଏ, ଆସି ଦିନେ ଖାଇଯିବି ଘରେ । ମୁଁ ଜାଣି ନଥିଲି ସେ ପର୍ଯ୍ୟନ୍ତ ତାଙ୍କର କ୍ୟାନସର ରୋଗ କଥା ।

ପରେ ଶୁଣି ତାଙ୍କୁ ପଚାରିଲି । ସେ ହସିଲେ, କହିଲେ ରୋଗ କଥା କହି ଲାଭ କ'ଣ ? ତୁମକୁ ଦେଖିଲି । କେତେ ଲୋକଙ୍କ ସହ ଦେଖା ହେଲା । ସେଇଥିରେ ଅଧା ରୋଗ ଭଲ ହୋଇଗଲା । ଜନ୍ମହେଲେ ତ ଗୋଟାଏ କଥା ସୁନିଶ୍ଚିତ । ତା' ହେଉଛି ମୃତ୍ୟୁ ! ତେଣୁ ଜୀବନ କଥା କହିବା ଭଲ ।

ମଥା ନଇଁଗଲା ଏଭଳି ମଣିଷ ପାଖରେ, ଯଦିଓ ସେ ମୋ ଠାରୁ ମାତ୍ର ୧ ୧ ବର୍ଷ ସାନ ।

କିନ୍ତୁ ସେ ଆଉ ନାହିଁ । ମୁଁ କିନ୍ତୁ ରହିଛି ଜୀବନ୍ମୃତ ହୋଇ ।



# ପ୍ରତିଭାର ବିଦାୟ

ପ୍ରଦ୍ୟୁମ୍ନ ବଳ ଆଉ ନାହାନ୍ତି ।

ପ୍ରଥିତଯଶା ସମାଜସେବୀ, ସାମ୍ବାଦିକ, ସଂପାଦକ ପ୍ରଦ୍ୟୁମ୍ନବାବୁଙ୍କର ହଠାତ୍ ପରଲୋକ ତାଙ୍କର ଅଗଣିତ ବଂଧୁଙ୍କୁ ଚକିତ କରିଦେଲା ।

ମୃତ୍ୟୁ ବି ଇମିତି ଆସେ । ମନେପଡ଼ିଲା ସେଇ ଆପ୍ତ ବାଣୀ ।

''ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ,
ହାବୋଡ଼ି ଯିବଟି ଆଚମ୍ବିତେ ଆସି''

୧୯୩୨ ମସିହା ନଭେମ୍ବର ୮ ତାରିଖରେ କଟକ ଜିଲ୍ଲା କୁସୁପୁର ଗାଁରେ ତାଙ୍କର ଜନ୍ମ । ପଲ୍ଲୀକବି ନନ୍ଦକିଶୋର ବଳଙ୍କ ପୁତ୍ର କୃଷ୍ଣକୁମାର ବଳଙ୍କର ପୁତ୍ର ପ୍ରଦ୍ୟୁମ୍ନ ବଳଙ୍କର ରକ୍ତରେ ସମାଜ ସଂସ୍କାରର ବ୍ରତ ଆସିଥିଲା ପିତାମହଙ୍କ ଠାରୁ ।

ବୟସରେ ସେ ଥିଲେ ମୋ ଠାରୁ କିଛି ସାନ । ବୟସ ବଢ଼ିଥିଲା, କିନ୍ତୁ ଆମେ ବୁଢ଼ା ହୋଇନଥିଲୁ । ସେ ମୋ ଠାରୁ ବେଶି ସକ୍ରିୟ ଥିଲେ ଏବଂ ସମାଜର ବହୁ ବିଭାବକୁ ତାଙ୍କର କର୍ମ ପରିବ୍ୟାପ୍ତ ହୋଇଥିଲା । ସେ ସବୁ ବିଭାବରେ ଆପଣାର ଅଭିଲେଖ ରଖିଯାଇଛନ୍ତି । ସେ ସ୍ୱପ୍ନ ଦେଖୁଥିଲେ ନୂତନ ଓଡ଼ିଶା, ନୂତନ ଭାରତବର୍ଷର ଏବଂ ସେଇ ସ୍ୱପ୍ନ ତାଙ୍କୁ ଆବିଷ୍ଟ କରି ରଖିଥିଲା ମୃତ୍ୟୁ ପର୍ଯ୍ୟନ୍ତ । ସେଇଯୋଗୁଁ ସେ ଜୀବନଟେ ସାଲିସ କରି ନାହାନ୍ତି କାହା ସହିତ, କୌଣସି ମତ ସହିତ । ନିଜର ଚିନ୍ତା ଓ କାର୍ଯ୍ୟକୁ ସେ ଶାଙ୍କୁଳିରେ ବନ୍ଧାପଡ଼ିବାକୁ ଦେଇ ନାହାନ୍ତି ।

ସେ ପିଲାଦିନୁ ସ୍ୱାଧୀନଚେତା ଥିଲେ । ନିଜର ସ୍ୱାଧୀନ ମତ ପ୍ରକାଶ କରିବାକୁ ଯାଇ ବହୁ ବିପଦର ସମ୍ମୁଖୀନ ହୋଇଥିବା ସତ୍ତ୍ୱେ ସେ ଭାଙ୍ଗିପଡ଼ି ନାହାନ୍ତି । ସାହାସର ସହିତ ସମ୍ମୁଖୀନ ହୋଇଛନ୍ତି ।

ତାଙ୍କ ସଂପର୍କରେ କୁହାଯାଇପାରେ ଯେ ସେ ନେତା ନଥିଲେ, ନେତା ଗଢ଼ିବାର ନେତା ଥିଲେ । ଯୁବ ରାଜନୈତିକ କର୍ମୀମାନଙ୍କ ପ୍ରତି ତାଙ୍କର ଦରଦ ଥିଲା, ବିଶ୍ୱାସ ବି

ଥିଲା । ସେମାନଙ୍କୁ ତାଲିମ ଦେବାର ଦକ୍ଷତା ବି ଥିଲା । ଆଜିର ଅନେକ ନେତା, କର୍ମୀ ସେ କଥା ଲୁହଭରା ଆଖିରେ ସ୍ମରଣ କରନ୍ତି । ଜୀବନର ରାଜପଥରେ ସେମାନଙ୍କ ଭିତରୁ ଅନେକ ତାଙ୍କୁ ଛାଡ଼ି ଚାଲିଯାଇ ପ୍ରତିଷ୍ଠିତ ହୋଇପାରିଛନ୍ତି । ସେଥିପାଇଁ ସେ ଦୁଃଖିତ ହୋଇନାହାନ୍ତି କି ସେମାନଙ୍କ ପ୍ରତି ଅସୂୟା ପୋଷଣ କରିନାହାନ୍ତି । କିନ୍ତୁ ନିଜର ମତରେ ଅଟଳ ରହିଛନ୍ତି ।

ମନେପଡୁଛି ଗୋଟିଏ ଘଟଣା । ଦେଶରେ ଜରୋରୀ ପରିସ୍ଥିତି ଘୋଷଣା କରାଯାଇଥାଏ । ଏକଦା କଂଗ୍ରେସ ଭିତରେ ଥିବା 'ତରୁଣ ତୁର୍କ' (Young Turk) ମାନଙ୍କ ଭିତରେ ଅନ୍ୟତମ ପ୍ରଦ୍ୟୁମ୍ନ ବଲ ଜରୋରୀ ପରିସ୍ଥିତିର ବିରୋଧ କରନ୍ତି । ଟିକିଏ ଆପୋଷ କରିଥିଲେ ବା ଚୁପ୍‌ହୋଇ ରହିଯାଇଥିଲେ, ଜୀବନର ମାନଚିତ୍ର ବଦଳି ଯାଇଥାନ୍ତା କିନ୍ତୁ ଦେଶର ମାନଚିତ୍ର ବଦଳାଇବା ପାଇଁ ବଦ୍ଧପରିକର ପ୍ରଦ୍ୟୁମ୍ନ ବଲ ତା' ଚାହିଁଲେ ନାହିଁ । ଗିରିଫଦାରୀ ପରବାନା ଜାରିହେଲା । ତା' କାର୍ଯ୍ୟକାରୀ ହେବା ପୂର୍ବରୁ ସେ 'ପଳାତକ' ହେବାପାଇଁ ସ୍ଥିରକଲେ । ଏକଦା ତାଙ୍କର ନେତା, ସହକର୍ମୀ, ସମଧର୍ମା ପାର୍ଲ୍ୟାମେଣ୍ଟ ସଦସ୍ୟ ଶ୍ୟାମସୁନ୍ଦର ମହାପାତ୍ରଙ୍କ ସହିତ ଆମର ଭେଟ ହୁଏ କଟକ ସର୍କିଟ ହାଉସରେ । ସେଇଠି ବି ଦେଖାହୁଏ ୰ ବନମାଳୀ ପଟ୍ଟନାୟକ, ୰ ଭୈରବଚନ୍ଦ୍ର ମହାନ୍ତି ଓ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ  ଦାସଙ୍କ ସହିତ । ସେଇ ସଂଧ୍ୟାରେ ଭେଟହୁଏ ଅନ୍ୟାନ୍ୟ ବଂଧୁମାନଙ୍କ ସହିତ ୰ ବ୍ରଜମୋହନ ମହାନ୍ତିଙ୍କ ଘରେ । ସେମାନଙ୍କ ମଧ୍ୟରେ ବ୍ରଜବାବୁଙ୍କ ଛଡ଼ା, ତ୍ରିଲୋଚନ କାନୁନଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ନାମ ମନେପଡୁଛି ।

ଶ୍ୟାମସୁନ୍ଦର ବାବୁ ଇନ୍ଦିରା ଗାନ୍ଧୀଙ୍କ ସହିତ ରହିବା ପାଇଁ ଆପଣାର ନିଷ୍ପତ୍ତି ଖୋଲାଖୋଲି ଜଣାଇଦେଲେ । ପ୍ରଦ୍ୟୁମ୍ନ ବାବୁ ତାଙ୍କୁ ଉତ୍ତର ଦେଲେ, ହେ ବଂନ୍ଧୁ ବିଦାୟ ! ପୁଣି ଦେଖାହେବ । ମୁଁ କଂଗ୍ରେସର ସଭ୍ୟ । ଜରୋରୀ ପରିସ୍ଥିତି ଘୋଷଣା କରି ଭାରତୀୟ ଜାତୀୟ କଂଗ୍ରେସ ଆପଣା ନୀତିର ବିରୁଦ୍ଧାଚରଣ କରିଛି । ତେଣୁ ମୁଁ ଚାଲିଲି ।

ପ୍ରଦ୍ୟୁମ୍ନ ବାବୁ ପଳାତକ ହେଲେ । ପରବର୍ତ୍ତୀ ସମୟ ହେଉଛି ଇତିହାସ ।

ପ୍ରଦ୍ୟୁମ୍ନ ବାବୁ ଷ୍ଟୁଆର୍ଟ ବିଜ୍ଞାନ କଲେଜରେ ଆଇ.ଏସ୍‌ସି. ପଢ଼ି ବମ୍ବେ ଗଲେ ପଢ଼ିବାକୁ । କିନ୍ତୁ ଫେରି କଂଗ୍ରେସରେ ସକ୍ରିୟ ସଭ୍ୟ ହେଲେ, ଯୁବ କଂଗ୍ରେସର ସଭାପତି ହେଲେ । ତରୁଣ ତୁର୍କ ଗୋଷ୍ଠୀର ଅନ୍ୟତମ ନେତା ହେଲେ ।

ମୋର ମନେପଡୁଛି । ଚନ୍ଦ୍ରଶେଖର ଗୋଟାଏ ସମୟରେ ତାଙ୍କୁ ରାଜ୍ୟପାଳ ହେବା ପାଇଁ ପ୍ରସ୍ତାବ ଦେଲେ । ପ୍ରଦ୍ୟୁମ୍ନ ବାବୁ ତାଙ୍କୁ ସିଧାସଳଖ ମନା କରିଦେଇ କହିଲେ ଯେ ମୁଁ ସେ ନିଷ୍କର୍ମା ପଦବୀ ଗ୍ରହଣ କରିବାପାଇଁ ଅକ୍ଷମ । କାରଣ ଅନେକ କାମ ବାକି ଅଛି । ସେ ସ୍ୱପ୍ନ ହେଉଛି ନୂତନ ଭାରତବର୍ଷ ଗଢ଼ିବାର ସ୍ୱପ୍ନ, ମହାତ୍ମା ଗାନ୍ଧୀ, ଜବାହରଲାଲଙ୍କ କଳ୍ପିତ ଭାରତବର୍ଷ ଗଢ଼ିବାର ସ୍ୱପ୍ନ । ଭ୍ରଷ୍ଟାଚାରକୁ ପବିତ୍ରୀକୃତ କରିବାର ସ୍ୱପ୍ନ ନୁହେଁ ।

ପ୍ରଦ୍ୟୁମ୍ନ ବାବୁ ପାର୍ଲ୍ୟାମେଣ୍ଟ ସଦସ୍ୟ ହେଲେ । ମୂଲ୍ୟବୋଧ ଭିତ୍ତିକ ରାଜନୀତି ଥିଲା ତାଙ୍କର ରାଜନୀତି । କ୍ଷମତା ଭତ୍ତିକ ନୁହେଁ । ତାଙ୍କର ସାଉଥ୍ ଆଭିନ୍ୟୁ ଘରେ ବହୁବାର ଅତିଥି ହୋଇଛି । ସେଇଠି ଦେଖିଛି, ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ଗରମାଗରମ ଆଲୋଚନା । ଅନ୍ୟ ରାଜ୍ୟମାନଙ୍କ ପରି ଆମେ ସବୁ ଦଳର ପାର୍ଲ୍ୟାମେଣ୍ଟ ସଭ୍ୟମାନେ ମିଶି ଏକାଠି କେନ୍ଦ୍ର ସରକାର ପାଖରେ ଓଡ଼ିଶାର ଦାବୀ ଉପସ୍ଥାପିତ କରିବା ପାଇଁ ଏବଂ ଆପଣଙ୍କୁ ହିଁ ତାହାର ନେତୃତ୍ୱ ଗ୍ରହଣ କରିବାକୁ ପଡ଼ିବ । ଓଡ଼ିଶାର ଜାତୀୟ ଦାବୀ ଆଗରେ ଦଳ ମତ ଗୋଷ୍ଠୀ ବିବାଦ ଭାଜିପଡୁ ।

ପ୍ରଦ୍ୟୁମ୍ନ ବଳ ସେଇଥିପାଇଁ ସଂଗ୍ରାମ ଜାରି ରଖିଥିଲେ ଏବଂ ପୁଣି ତାଙ୍କର ନେତା ବିଜୁ ପଟ୍ଟନାୟକଙ୍କ ସହିତ ସେ ନିର୍ବାଚନ ସଂଗ୍ରାମରେ ଯୋଗ ଦେଇଥିଲେ, ଏଥର ତାଙ୍କ ବିରୁଦ୍ଧରେ ।

ତାଙ୍କୁ ଇଣ୍ଡିଭିଜୁଆଲିଷ୍ଟ ବୋଲି କୁହାଯାଇପାରେ, କିନ୍ତୁ ସେ ନିଜ ମତକୁ ଅନ୍ୟମାନଙ୍କ ସହ ସାଲିସ କରିବା ପାଇଁ ପ୍ରସ୍ତୁତ ନଥିଲେ । ସେଇ ଯୋଗୁଁ ସେ ଏକାକୀ ହୋଇଗଲେ । ଶେଷକୁ, ରବି ମଧ ତାଙ୍କୁ ଛାଡ଼ି ଚାଲିଗଲେ 'ପର୍ଯ୍ୟବେକ୍ଷକ' ସମ୍ବାଦପତ୍ର ପ୍ରକାଶନ କରିବା ପାଇଁ ।

ପ୍ରଦ୍ୟୁମ୍ନ ବାବୁ ଏକ ସାପ୍ତାହିକ ପ୍ରଗତିବାଦୀ ପ୍ରକାଶନ କଲେ । ନିଜର ମତ ସେ ସଂପାଦକୀୟରେ ଲେଖନ୍ତି କିନ୍ତୁ ଅନ୍ୟମାନଙ୍କ ଲେଖାରେ ହସ୍ତକ୍ଷେପ ଆଦୌ କରନ୍ତି ନାହିଁ । ସାପ୍ତାହିକ 'ପ୍ରଗତିବାଦୀ'ର ପ୍ରକାଶନରେ ଅନେକଦିନ ଜଡ଼ିତ ରହି ମୋର ଏହି ଅଭିଜ୍ଞତା ହୋଇଛି ।

ପ୍ରଗତିବାଦୀ ଦୈନିକ ହୋଇଛି ଏବଂ ପ୍ରକାଶ ପାଇଛି ଭୁବନେଶ୍ୱରରୁ । ଏହାକୁ ଏକ କ୍ୱାଲିଟି ମୁଖପତ୍ରରେ ପରିଣତ କରିବା ପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ରହିଛି । ସଂଘର୍ଷ ଉପୁଜିଛି । ପରିବାରର ସଭ୍ୟମାନଙ୍କ, ସହଯୋଗୀମାନଙ୍କ ସହିତ । ସେଇ ମତଭେଦକୁ ସେ ସମସ୍ତଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ସଂକୋଚ ମନେକରି ନାହାନ୍ତି ।

ଆଜିର ଉପରାଷ୍ଟ୍ରପତି କୃଷ୍ଣକାନ୍ତ, ପ୍ରାକ୍ତନ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର, ଇନ୍ଦର ଗୁଜୁରାଲଙ୍କ ସହିତ ତାଙ୍କର ସଂପର୍କ ବେଶ୍ ନିବିଡ଼ ଥିଲା, ଏଥିରେ କୌଣସି ସଂଦେହ ନାହିଁ । ଚାହିଁଥିଲେ ସେ ଅନେକ ସୁବିଧା ହାସଲ କରିପାରି ଥାଆନ୍ତେ, କିନ୍ତୁ ସେ ତାହା କରିବାକୁ ନାରାଜ । କାଳକ୍ରମେ ସେ ଏକସିଙ୍ଗିଆ, ଜିଦ୍‌ଖୋର ହୋଇଗଲେ ବୋଲି ଅନେକ ଅଭିଯୋଗ କରିଛନ୍ତି । ସେ କିନ୍ତୁ ଯାହା ଠିକ୍ ବୋଲି ସ୍ଥିର କରିଛନ୍ତି, ତାହା କରିବାକୁ ପଛାଇ ନାହାନ୍ତି । ବାପା, ପୁଅ, ବଂଧୁ, ସହକର୍ମୀ ଯେ ହେଉନା କାହିଁକି । ମତରେ ଅଟଳ ରହିବା ଲୋକ ଇମିତି ମିଳିବେ କେଉଁଠୁ ?

ଅନେକ ଅନୁଷ୍ଠାନ ସେ ଗଢ଼ିଯାଇଛନ୍ତି । ପଦବୀ ପାଇଁ ଲାଳାୟିତ ହୋଇ ନାହାନ୍ତି । ଅନୁଷ୍ଠାନ ଗଢ଼ିବା ପାଇଁ ଆଗ୍ରହୀ ହୋଇଛନ୍ତି ଏବଂ ଅନ୍ୟମାନଙ୍କୁ ସେଗୁଡ଼ିକର ନେତୃତ୍ୱ ନେବାପାଇଁ ଥାପି ଯାଇଛନ୍ତି । ଯୁବ ପୀଢ଼ି ଉପରେ ଦାୟିତ୍ୱ ଦେଇ ସେମାନଙ୍କ ନେତୃତ୍ୱକୁ ବିକଶିତ କରିବାର ଏଭଳି ଏକନିଷ୍ଠ ଉଦ୍ୟମ ଖୋଜିଲେ ମିଳିବେ ନାହିଁ ।

ପ୍ରଦ୍ୟୁମ୍ନ ବଳ ଭଦ୍ର । ଉତ୍ତେଜିତ ହୋଇ ପାଟିକରନ୍ତି ନାହିଁ । କିନ୍ତୁ ନିଜର ମତକୁ ଉପସ୍ଥାପିତ କରିବାରେ ବେଶ୍ ତୀକ୍ଷ୍ଣ । କାହାରି ସହିତ ମତଭେଦ ହେଲା ବୋଲି ତା' ପ୍ରତି ସ୍ନେହ ବା ଭକ୍ତି ଊଣାକରି ନାହାନ୍ତି । ସେଇଟା ତାଙ୍କର ଏକ ବିଶେଷତ୍ୱ ।

ସେ ଗୋଟାଏ ଦଳର ଲୋକ । ମୁଁ ଥିଲି ଭିନ୍ନ ଦଳରେ ସେତେବେଳେ । ବହୁତ ଯୁକ୍ତି ହୋଇଛି, ମତଭେଦ ତୀବ୍ର ହୋଇଛି । କିନ୍ତୁ ବ୍ୟକ୍ତିଗତ ସଂପର୍କ ସେଇପରି ଅମଳିନ, ଉଷ୍ମ ରହିଛି । ମୋ ଝିଅକୁ ସେ ଝିଅ କରିଛନ୍ତି । ସ୍ମୃତି ଚହଲି ଯାଉଛି ମନରେ । ଆଖି, ମନ ସବୁ ରୁନ୍ଧି ହୋଇ ଯାଉଛି ।

ତାଙ୍କ ସାଂଗରେ ଦିଲ୍ଲୀରେ ମୋର ସର୍ବଶେଷ ସାମୂହିକ କାର୍ଯ୍ୟ ହୋଇଛି ଭାରତ ବୁଲଗେରିଆ ମୈତ୍ରୀ ସମିତିର ଜାତୀୟ ସମ୍ମିଳନୀ । ସେ ଯାଇଥିଲେ ଖାଲି ପ୍ରତିନିଧି ଭାବରେ । ଫେରିଲେ ସଂପାଦକ ହୋଇ । ସମ୍ମିଳନୀ ଶେଷରେ ମୋତେ ଏକ ନମସ୍କାର ପକାଇ କହିଲେ ଯେ ମୋତେ ଆର.କେ. ସିହ୍ନା, ଏଚ.ଡି. ମାଳବ୍ୟ ଠିକ୍ କଥା କହୁଥିଲେ । ତମ ସାଂଗରେ ବୁଲି ଯାଇଥିଲେ ମଧ୍ୟ ତମେ କେଉଁ ଦାୟିତ୍ୱ ଲଦିଦେବ ତାହା କଳିହେବ ନାହିଁ । ଆଜି ଲୋତକଭରା ଆଖିରେ ସେଇ କଥା (ବଧାଇ ନା ଗାଳି) ସ୍ମରଣ କରୁଛି ।

ପ୍ରଦ୍ୟୁମ୍ନ ବାବୁ ଛାଡ଼ିଯାଇଛନ୍ତି ଏକ ଉଇଲ୍ । ଏହା ମୋ ଦେହରେ ଶିହରଣ ସୃଷ୍ଟିକଲା । ମିନୁ ମାସାନୀଙ୍କୁ ଉଦ୍ଧୃତ କରି କୁହାଯାଇପାରେ ଯେ ଏଇ ମଣିଷ ସହିତ ହିଁ ଏକବିଂଶ ଶତାବ୍ଦୀକୁ ଯାଇହେବ । ଏକବିଂଶ ଶତାବ୍ଦୀ ଆରମ୍ଭ ହେଲା । ପ୍ରଦ୍ୟୁମ୍ନ ବାବୁ ମୋଠାରୁ ସାନ । ମୁଁ ତାଙ୍କ ଆଗରୁ ଯିବାର କଥା । ସେ ମୋ' କଥା ଲେଖିଥାନ୍ତେ କିନ୍ତୁ ମୋତେ ତାଙ୍କ କଥା ଲେଖିବାକୁ ପଡୁଚି, ହେଜିବାକୁ ପଡୁଚି । ଆଜିକୁ କିଛିବର୍ଷ ତଳେ ମୁଁ ବି ମୋର 'ଉଇଲ' ବା ଶେଷ ଇଚ୍ଛା ଲେଖିଯାଇଛି । ପ୍ରଦ୍ୟୁମ୍ନ ବାବୁଙ୍କ ଉଇଲ ପଢ଼ି ଦେଖିଲି ଯେ ମୋ ଉଇଲ ସହିତ ତାଙ୍କ ଉଇଲରେ ଅନେକ ମେଳ ରହିଛି । କେବଳ ସେ ଚାହିଁଛନ୍ତି 'ସ୍ୱର୍ଗଦ୍ୱାର'ରେ ଦାହ ହେବାପାଇଁ, ମୋର ହେଉଛି 'ବୈଦ୍ୟୁତିକ ଚୁଲା'ରେ । କାରଣ ମୁଁ ସ୍ୱର୍ଗ ବା ସ୍ୱର୍ଗଦ୍ୱାର ବିଶ୍ୱାସ କରେନା ।

ଆଉସବୁ କ'ଣ ମେଳ ବା ଅମେଳ ଅଛି ତା' ଲେଖି ମୁଁ ମୋର 'ଶେଷ ଇଚ୍ଛା' ଉପରେ ସୂଚନା ଦେବାପାଇଁ ଚାହେଁନା । କିନ୍ତୁ ତାଙ୍କର ଉଇଲ ପଢ଼ିଲେ ମନେହୁଏ ଯେ ଏଇ ହେଉଛି ଏକ 'ମଡ଼ର୍ଣ୍ଣ ମ୍ୟାନ' ।

ତାଙ୍କର ଚିକିତ୍ସାରେ ଅବହେଳା ହୋଇଛି ଏଥିରେ ସଂଦେହ ନାହିଁ । ଓଡ଼ିଶାରେ ଓଡ଼ିଶାବାସୀଙ୍କ ପାଇଁ ଏକ ଅତ୍ୟାଧୁନିକ ଡାକ୍ତରଖାନା ଖୋଲିବା ପାଇଁ କିଛି ଓଡ଼ିଆଙ୍କର ବିରାଟ ତ୍ୟାଗ, ଉଦ୍ୟମ ପାଇଁ ଏହା ଏକ ଶକ୍ତ ଧକ୍କା ଏବଂ ଦୁଃଖଦାୟକ ଘଟଣା । ଜଣେ ଡାକ୍ତରଙ୍କର ଅବହେଳା (କ୍ରିମିନାଲ ଅବହେଳା) ପାଇଁ ଏହା ଘଟିଛି । ଜଣେ ଲୋକର କାର୍ଯ୍ୟ ପାଇଁ ଏକ ମୂଲ୍ୟବାନ ଜୀବନ କେବଳ ନଷ୍ଟ ହୋଇଯାଇ ନାହିଁ, ଏକ ପ୍ରତିଷ୍ଠିତ ଡାକ୍ତରଖାନାର ସୁନାମ ଉପରେ ଗଭୀର ଆଞ୍ଚ ଆସିଛି ।

ଗୋଟାଏ ରୋଗର ପରୀକ୍ଷା କରିବାକୁ ଯାଇ ଆଉ ଗୋଟିଏ ରୋଗରେ ଜଣେ ଡାକ୍ତରଙ୍କ ଅବହେଳା ଯୋଗୁଁ ଏଭଳି ଏକ ମୂଲ୍ୟବାନ ଜୀବନ ନଷ୍ଟ ହୋଇଯିବା ଆମ ସମସ୍ତଙ୍କୁ ବ୍ୟଥିତ କରିଛି । କଳିଙ୍ଗ ହସ୍‌ପିଟାଲର ଚେୟାରମାନ୍ ଡାକ୍ତର ରମେଶ ଚନ୍ଦ୍ର ରାୟଚୌଧୁରୀ ଆମେରିକାରେ ଏ ସଂବାଦ ପାଇ ଗଭୀର ମର୍ମାହତ ହୋଇଛନ୍ତି । କାରଣ ସେ କେବଳ ପ୍ରଦ୍ୟୁମ୍ନ ବାବୁଙ୍କର ପଡ଼ୋଶୀ ନୁହନ୍ତି ତାଙ୍କର ପାରିବାରିକ ବଂଧୁ ମଧ । କଳିଙ୍ଗ ହସ୍‌ପିଟାଲର ପରିଚାଳକ ମଣ୍ଡଳୀର ଜଣେ ସଭ୍ୟ ଭାବରେ ମୋର ବ୍ୟକ୍ତିଗତ ଦୁଃଖ ବଢ଼ିଯାଇଛି । ମୁଁ ଦେଖା କରିପାରି ନାହିଁ ଶାଶ୍ୱତୀ ଦେବୀଙ୍କୁ, ସାହସ ପାଇ ନାହିଁ । ଶାରୀରିକ ଅସୁସ୍ଥତା ସହିତ ମାନସିକ ଅନୁତପ୍ତତା ବଢ଼ିଯାଇଛି । ମୃତ୍ୟୁକୁ ଆମେ ଏଡ଼ାଇ ଦେଇ ପାରିଥାନ୍ତୁ କି ନାହିଁ ତାହା ବିତର୍କର ବିଷୟ । କିନ୍ତୁ ଅବହେଳାକୁ ତ ଏଡ଼ାଇ ପାରିଥାନ୍ତୁ ?

ଦେଶର ମୂଲ୍ୟବୋଧର ଅବକ୍ଷୟ ସମାଜର ସବୁ ସ୍ତରକୁ ବ୍ୟାପି ଯାଇଛି । ସାମାଜିକ, ରାଜନୈତିକ, ସାଂସ୍କୃତିକ ସବୁ ବିଭାବର ଅବକ୍ଷୟ କ୍ୟାନସର ବ୍ୟାଧିରେ ପରିଣତ ହୋଇଛି । ବାହୁବଳ ଏବଂ ଅର୍ଥବଳ ହୋଇଯାଇଛି ଏକମାତ୍ର ନିୟାମକ । ଏତିକିବେଳେ ମନେପଡ଼ିବେ ପ୍ରଦ୍ୟୁମ୍ନ ବଳ । ଠିକ୍ ଯେତିକିବେଳେ ଏଇପରି ମଣିଷର ଆବଶ୍ୟକତା ବେଶି, ଠିକ୍ ସେତିକିବେଳେ ସେ ଛାଡ଼ି ଚାଲିଗଲେ ଆମକୁ ।

ମହାକାଳ ବକ୍ଷରେ ସେ କେତେଦିନ ସ୍ମୃତିହୋଇ ରହିବେ, ତାଙ୍କ ଦ୍ୱାରା ସଂଗଠିତ ଅନୁଷ୍ଠାନସବୁ କିପରି ବିକାଶଲାଭ କରିବ ସେ ସ୍ୱତନ୍ତ୍ର କଥା, ଇତିହାସ ତାହା କହିବ କିନ୍ତୁ ତାଙ୍କର କଳ୍ପିତ ଓଡ଼ିଶା ଗଢ଼ାଯାଇ ପାରିଲେ, ତାଙ୍କର ମୂଲ୍ୟବୋଧ ଭିତ୍ତିକ ଚେତନାର ପୁନରୁଦ୍ଧାର ହୋଇ ପାରିଲେ, ସେଇ ହେବ ତାଙ୍କ ପାଇଁ ପ୍ରକୃତ ଶ୍ରଦ୍ଧାଞ୍ଜଳି ।



# ପ୍ରଫୁଲ୍ଲ ଚରଣ ଦାସ– ଏକ ଅନନ୍ୟ ପ୍ରତିଭା

ଅସୁସ୍ଥତା ଭିତରେ ଖବର ପାଇଲି ଯେ ପ୍ରଫୁଲ୍ଲ ବାବୁ ଆଉ ନାହାନ୍ତି । ଆଖିକୁ ଆଉ ଭଲ ଦେଖାଯାଉ ନାହିଁ । ତେଣୁ ତାଙ୍କର ପରଲୋକ ସଂବାଦ କେଉଁ ଖବରକାଗଜରେ ପ୍ରକାଶ ପାଇଥିଲା ତା' ମୋ ଆଖିରେ ପଡ଼ିନାହିଁ । ଜଣେ କିଏ ବଂଧୁ ଆସି ଏଇ ଖବର ଦେଲେ ।

ମନ ପହଁରି ଗଲା ୧୯୫୭ ମସିହାକୁ । ମୁଁ ଯାଉଥାଏ ଷଷ୍ଠ ବିଶ୍ୱଯୁବ ସମ୍ମିଳନୀରେ ଯୋଗ ଦେବାପାଇଁ ମସ୍କୋ । ପ୍ରଫୁଲ୍ଲ ବାବୁଙ୍କ ସହିତ ବଂଧୁତା ପ୍ରଗାଢ଼ । ସେ ଅନୁରୋଧ କଲେ, ଏକ ବିଚିତ୍ର ଅନୁରୋଧ । ମୋର ଦୁଇକିଲୋ ସାମଗ୍ରୀ ଆପଣ ନେଇଯିବେ ହାତରେ । ସେଥିରୁ ଗୋଟିଏ କେ.ଜି. ସୋଲକଭଙ୍କ ପାଇଁ ଆଉ ଗୋଟିଏ କେ.ଜି. ଇଲିଆ ଇହରୁନବର୍ଗଙ୍କ ପାଇଁ । ମସ୍କୋରେ ସେତେବେଳକୁ ବସନ୍ତ । ତେଣୁ ଶୀତ ଲୁଗା ବେଶି ଦରକାର ନଥିଲା । ମୁଁ ହଁ ଭରିଲି । ଚକଚକିଆ ଦୁଇଟି ସୁନ୍ଦର ପ୍ୟାକେଟ ସେ ମୋତେ ଧରାଇଦେଲେ । ମୋତେ ତାଗିଦ କରିଥିଲେ ଯେ ଟ୍ରେନରେ ପ୍ୟାକେଟ ଦୁଇଟିକୁ ବାକ୍ସରେ ନେଇପାରନ୍ତି କିନ୍ତୁ ଉଡ଼ାଜାହାଜରେ ତାହା ହ୍ୟାଣ୍ଡବ୍ୟାଗରେ ଯିବ ।

ଇମିତି ବାସନା ବାହାରୁଚି ସେ ପ୍ୟାକେଟ ଦୁଇଟିରୁ ଯେ ପତ୍ୟେକ ଲୋକ ମୋତେ ଅନେଇବାକୁ ଆରମ୍ଭ କଲେ ଏବଂ ବାସନା ଶୁଙ୍ଘିବାକୁ ଲାଗିଲେ । କଷ୍ଟମ ଅଫିସର ଠାରୁ ଆରମ୍ଭକରି ସବୁ ବୈଦେଶିକ ବନ୍ଧୁଙ୍କ ପର୍ଯ୍ୟନ୍ତ । କ'ଣ ଘଟଣା କ'ଣ ? କ'ଣ ନେଇ ଯାଉଛନ୍ତି କି ସାଂଗରେ ?

ସେ ପ୍ୟାକେଟ ପାଇ ଉଭୟ ସୋଲକଭ ଏବଂ ଇହରୁନବର୍ଗ ଏତେ ଖୁସି ଯେ କହିବାର କଥା ନୁହେଁ, ପ୍ରଫୁଲ୍ଲ ସେ ଦୁଇଜଣଙ୍କ ପାଇଁ ଖୁବ୍ ଭଲ ଭାରତୀୟ ଚା' ପଠାଇଛନ୍ତି ଉପହାର ଭାବରେ କାରଣ ସେମାନଙ୍କ ବହିର ଓଡ଼ିଆ ଅନୁବାଦ ପାଇଁ ଦୁହେଁ କୌଣସି ପ୍ରାପ୍ୟ ନେବାପାଇଁ ମନା କରିଦେଇଛନ୍ତି । ଫେରି ମୁଁ ପଚାରିଥିଲି ପ୍ରଫୁଲ୍ଲଙ୍କୁ । କେତେ

ଦାମ ପଡ଼ିଲା ? ସେ ଟିକିଏ ହସିଦେଇ କହିଲେ ଯେ ଛାଡ଼ ଆମର ଏତେ ପଇସା କାହିଁ ? ଆଠ ହଜାର ଟଙ୍କା କେଜିରେ ହିଁ କିଣିବାକୁ ହୋଇଥିଲା ।

ଆମେସବୁ କଲ୍‌କତି-କଟକୀତ ! ତେଣୁ ଚା'ବାଲାଙ୍କ ସହିତ ଆମର ପରିଚିତି ବହୁ ଦିନର । ତେଣୁ ଟିକିଏ ସୁବିଧା ହୋଇଥିଲା ।

ଆଜି ପ୍ରଫୁଲ୍ଲ ବାବୁଙ୍କ କଥା ମନେପଡ଼ିଲେ ସେଇ ଚାହାର ବାସନା ନାକରେ ବାଜୁଛି ଏବଂ ମନ ବିନ୍ଧିହୋଇ ଯାଉଛି ।

ପ୍ରଫୁଲ୍ଲ ବାବୁ ଏକ ବିଚିତ୍ର ମଣିଷ । କର୍ପୂର ଯାଇଥିଲା, କନା ପଡ଼ିଥିଲା । ପ୍ରଫୁଲ୍ଲ ବାବୁ ଗୋଟିଏ ଟ୍ରେଡ଼ଲ ମେସିନରେ ଛାପନ୍ତି । ଛପାସବୁ ନିଜର । କିନ୍ତୁ ଚଳିବା ପାଇଁ ବେଳେ ବେଳେ ବାହାର ଅର୍ଡ଼ର ନିଅନ୍ତି । ପ୍ରାୟ ଆର୍ଟିଷ୍ଟିକ ଅର୍ଡ଼ର ପାଆନ୍ତି । ବିବାହ ନିମନ୍ତ୍ରଣ, ବୈଦେଶିକ ପ୍ରତିନିଧିଙ୍କ ପାଇଁ ଆୟୋଜିତ କାର୍ଯ୍ୟକ୍ରମମାନଙ୍କର କାର୍ଡ଼ ।

ଅର୍ଡ଼ର ଦେବେ । କିନ୍ତୁ କେମିତି ହେବ କେଉଁ କାଳିରେ ଛପାହେବ, ତା' କହିବାର ଅଧିକାର ନାହିଁ ତମର । ତମେ କ'ଣ ଜାଣ ସେସବୁ ଟେକ୍‌ନିକାଲିଟିଜ୍‌ର ? ପୁଣି ଛପା ପାଇଁ ତରତର ହେଲେ ଚଳିବ ନାହିଁ । ସେ ଟାଇମ୍ ନେବେ । ବିଭିନ୍ନ କାଳି ମିଶାଇବେ, ଯେଉଁ କଲର ପସନ୍ଦ ହେବ ସେ କାଳିରେ ଛାପିବେ । ଅକ୍ଷର ବାଛିବା ତ ତାଙ୍କର ମନୋପଲି । ସେସବୁ ବିଷୟରେ ସେ ଏକଦମ୍ ବ୍ଲଣ୍ଟ୍ । କାରଣ ସବ୍-ଷ୍ଟାଣ୍ଡାର୍ଡ଼ ଜିନିଷ ସେ ଛାପିବେ ନାହିଁ । କ'ଣ ଖାଲି ପଇସା ଦେବ ବୋଲି ଯିଏ ଯାହା ପାଇବ ଅର୍ଡ଼ର ଦେଇଯିବ ନା କ'ଣ ?

ସୋଭିଏଟ୍ ରୁଷରୁ ଏକ ପ୍ରତିନିଧି ଦଳ ଆସିଥିଲେ କଟକ, ରୋମାନଭସ୍କିଙ୍କ ନେତୃତ୍ୱରେ । ତାଙ୍କର ସମ୍ବର୍ଦ୍ଧନା ପାଇଁ ଏକ ସଭା ହେବ ବାରବାଟୀ ଷ୍ଟାଡ଼ିଅମରେ । ବଂଧୁ ନନ୍ଦ କିଶୋର ପଟ୍ଟନାୟକ ଏବଂ ମୁଁ ଯାଇ ପହଞ୍ଚିଲୁ ପ୍ରଫୁଲ୍ଲଙ୍କ ପାଖରେ । ସେ ହଁ ଭରିଲେ କିନ୍ତୁ ଅନେଇଲେ ତାଙ୍କ କାଳିର କମ୍ବିନେଶନ ସାମ୍ପଲ୍ ଆଡ଼କୁ । ଧାଡ଼ି ଧାଡ଼ି ସାମ୍ପଲ୍ ବା ନମୁନା ରଖାଯାଇଛି । ସେ କିନ୍ତୁ ସନ୍ତୁଷ୍ଟ ନୁହନ୍ତି । ବୁଲି ଅନେଇ କହିଲେ, ସମୟ ଲାଗିବ । ପ୍ରଫୁଲ୍ଲ ବାବୁ ବହୁଦିନର ବଂଧୁ । ହଁ ଭରିବା ଛଡ଼ା ଉପାୟ ନଥିଲା ।

ତା' ପରଦିନ ଗଲାବେଳକୁ ପ୍ରଫୁଲ୍ଲ ବାବୁ ନିବିଷ୍ଟ ମନରେ ଅନେଇଛନ୍ତି ଏକ ନୂଆ ସାମ୍ପଲ ଆଡ଼କୁ । ସତେ ଯେପରି ଧ୍ୟାନସ୍ଥ ! ପ୍ରଫୁଲ୍ଲବାବୁ ସେଦିନ ରୁଷ ଭାଷାର ବ୍ୟାକ୍‌ଗ୍ରାଉଣ୍ଡରେ ଯେଉଁ ନିମନ୍ତ୍ରଣ ପତ୍ର ଛାପିଥିଲେ ତାହା ସୋଭିଏଟ୍ ପ୍ରତିନିଧି ଦଳଙ୍କୁ ବିସ୍ମିତ କରିଥିଲା ।

ପ୍ରଫୁଲ୍ଲ ବାବୁ ଅନୁବାଦ କରିଛନ୍ତି ଯେତିକି ଅନୁବାଦ କରାଇଛନ୍ତି ସେତିକି । ରୋମାରୋଲାଁ, ହରମାନ୍ ହେସ୍, ହେମିଂୱେ, ପର୍ଲ ଏସ୍ ବକ୍, ଆନ୍ଦ୍ରେ ଜିଦ୍, ନ୍ୟୁଟ ହାମସୁନ୍, ସେଲମା ଲାଗର୍‌ଲଫ୍ ପ୍ରଭୃତିଙ୍କର ଲେଖା ଅନୂଦିତ ହୋଇଛି ତାଙ୍କ କଲମରେ । କ୍ୟାମ୍ବୁ, ରସେଲ, ବର୍ଣ୍ଣାଡ଼ଶ, ଇଲିଅଟ, ଏଜରା ପାଉଣ୍ଡ୍, ହୁଇଟମାନ୍, ଇଭାନ ବୁନ୍ଦିନ୍ ପାସ୍ତରନାକ, ସ୍ୱାଇଦ୍‌ଜରଙ୍କର ଲେଖା ଅନ୍ୟମାନେ ଅନୁବାଦ କରିଛନ୍ତି ତାଙ୍କର ଅନୁରୋଧରେ ଓ ପ୍ରେରଣାରେ ।

ପାରିବାରିକ ଜୀବନ ଖୁବ୍ ଭଲ ନଥିଲା । ବାପା ମୋହନ ଚରଣ ଦାସ ଥିଲେ ପ୍ରତିଷ୍ଠିତ ପ୍ରକାଶକ । ମନମୋହନ ପୁସ୍ତକାଳୟ ଏକଦା ଥିଲା ଓଡ଼ିଶାର ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା । ପିତାଙ୍କର ସେଇ ଗୁଣ, ପ୍ରଫୁଲ୍ଲ ବାବୁଙ୍କ ଜିନ୍ (Gene)ରେ ଆସିଥିଲା । ନାନା କାରଣରୁ ସେ ଅଧିକାଂଶ ପୈତୃକ ସମ୍ପତ୍ତିରୁ ବଂଚିତ ହେଲେ । ପରିବାରର ଏକ ଅଂଶ ସହିତ ପ୍ରଫୁଲ୍ଲ ବାବୁଙ୍କର ଭଲ ପଡ଼ିଲା ନାହିଁ । ବହୁତ ହଇରାଣ ହରକତ ସେ ହୋଇଛନ୍ତି ସେଇଯୋଗୁଁ । ଏପରିକି ଗୁରୁତର ଅସୁସ୍ଥ ଥିଲାବେଳେ ମଧ୍ୟ ସେ ହଇରାଣରୁ ମୁକ୍ତ ହୋଇପାରି ନାହାନ୍ତି । ବସ୍ତୁତଃ ସେ ଯାହା ଗଢ଼ିଲେ ପରବର୍ତ୍ତୀ କାଳରେ ତାହା ନିଜସ୍ୱ ଉଦ୍ୟମରେ ।

ଅସୁସ୍ଥ ପ୍ରଫୁଲ୍ଲ ବାବୁ ଧୀରେ ଧୀରେ ନିସ୍ତବ୍ଧ ହୋଇ ଯିବାକୁ ଲାଗିଲେ, ଅଚଳ ହୋଇଗଲେ । ସେଦିନ ହଠାତ୍ ତାଙ୍କର ଜୀବନ ଦୀପ ଲିଭିଗଲା ଏବଂ ଅନୁବାଦ ସାହିତ୍ୟ, ଅନୁବାଦ ପାଇଁ ପ୍ରେରଣାର ଏକ ବିରାଟ ବତୀଖୁଣ୍ଟ ଖସିପଡ଼ିଲା, ଅଂଧାର ତିଆରି କରି । ସେ ଅଂଧକାର ଦୂର କରିବେ ଯେଉଁ ଆଗାମୀ ପୀଢ଼ି, ସେମାନଙ୍କ ଭିତରୁ କେହି ଆଖିରେ ପଡୁନାହାନ୍ତି, ତାଙ୍କ ଭଳି ହେବା ପାଇଁ । ସେଇ ଏ ଜାତିର ଦୁର୍ଭାଗ୍ୟ !



# ବଂଧୁର ବିୟୋଗରେ

ଇମିତି ବି ହୁଏ । ମୃତ୍ୟୁ ଆସେ ଅଚାନକ । ପ୍ରଫୁଲ୍ଲ ହୃଦରୋଗୀ ଥିଲେ, କିନ୍ତୁ ହଠାତ୍ ଅଚାନକ ସେ ଚାଲିଯିବେ, କାହାକୁ କିଛି ନକହି ବୋଲି ତ ବିଶ୍ୱାସ ହୁଏନା । ପ୍ରଫୁଲ୍ଲ ରାୟ ମୋର ସହପାଠୀ । ବୟସରେ ସେ କିଛି ବଡ଼ ମୋ ଠାରୁ । ଆଉ ତ ଫୋନ ଆସିବ ନାହିଁ । କେଉଁ ଖବରକାଗଜରେ ଲେଖାଟିଏ ପ୍ରକାଶ ପାଇଲେ ଫୋନ ନିଶ୍ଚୟ ଆସିବ ତାଙ୍କଠାରୁ । ମାତ୍ର ସପ୍ତାହକ ପୂର୍ବରୁ ମନେପଡୁଚି ସେ ମୋତେ ଫୋନ କରିଥିଲେ,ନିଜର ପ୍ରତିକ୍ରିୟା ପ୍ରକାଶକରି ମୋର ଏକ ଲେଖା ଉପରେ । ମସ୍ତିଷ୍କ ଥିଲା ସଂପୂର୍ଣ୍ଣ ଆଲର୍ଟ, ଯଦିଓ ହୃଦୟ ଦୁର୍ବଳ ହୋଇ ଆସୁଥିଲା । ସେଇଦିନ (୧୫.୧.୨୦୦୦) ତାଙ୍କ ଘରେ ତାଙ୍କର ପୁତ୍ର ଆହ୍ୱାନ କରିଥିଲେ ଏକ ବୈଠକ 'ସମାଜ' ସଂପାଦକ ରାଧାନାଥ ରଥଙ୍କ ନାମରେ ନାମିତ ଟ୍ରଷ୍ଟ ବୋର୍ଡ଼ର ବୈଠକ । ମୁଁ ସେ ସଭାରେ ଉପସ୍ଥିତ ରହିପାରି ନଥିଲି । ଇମିତି ବି ହୁଏ । ପ୍ରଫୁଲ୍ଲ ସେଇଦିନ ଚାଲିଗଲେ ଏବଂ ତାହା ମୋର ଜାଣିବାର ଭାଗ୍ୟ ହେଲା ୧୦ ଦିନ ପରେ, ତା' ମଧ୍ୟ ଆକସ୍ମିକ ଭାବରେ । କାରଣ ଏଇ ଦଶଦିନ ମୁଁ ଥିଲି ଏପରି ଅଂଚଳରେ ଯେଉଁଠି ଖବରକାଗଜ ପାଇବା ସମ୍ଭବ ନଥିଲା । ପ୍ରଫୁଲ୍ଲର ଅନ୍ତିମ ଯାତ୍ରାରେ ଯୋଗଦେଇ ତା'ର ମରଦେହକୁ କାନ୍ଧେଇ ନେବାର ଭାଗ୍ୟ ମୋର ନାହିଁ ।

ପ୍ରଫୁଲ୍ଲ ଚାଲିଯିବାର ଖବର ମୋର ହୃଦୟରେ ଯେତିକି ଦୁଃଖ ଦେଲା ନାହିଁ, ତା' ଠାରୁ ବେଶି ଲାଗିଲା ଏକାକୀତ୍ୱ । ତଳ ଉପର ଉଭୟ ସ୍ତରରୁ ବଂଧୁ, ପରିଜନ, ବାନ୍ଧବମାନେ ଚାଲିଯାଉଛନ୍ତି, ଚାଲିଯିବା ଆରମ୍ଭ କରିଛନ୍ତି ଦ୍ରୁତ ଗତିରେ । ଯେଉଁମାନେ ରହି ଯାଉଛନ୍ତି ସେମାନ ଏକାକୀ ହୋଇଯାଉଛନ୍ତି ।

ମନେପଡୁଚି । ଥରେ, ଏଇ କିଛିବର୍ଷ ତଳେ, ଜଣେ ବଂଧୁଙ୍କର ଚିତା ପାଖରେ ଆମେସବୁ ଦଳେ ଠିଆ ହୋଇଥିଲୁ, ସମସ୍ତେ ସମସାମୟିକ । ପ୍ରଫୁଲ୍ଲ ବି ତା' ଭିତରେ ଥିଲେ । ଆଶ୍ଚର୍ଯ୍ୟର କଥା, ଆମେ କେହି କାହାକୁ ପଦେ ହେଲେ କଥା କହିନାହୁଁ । ଆଖିରୁ ଲୁହ ଝରୁ ନାହିଁ । ପଥୁରିଆ ଆଖିରେ ସମସ୍ତେ ଅନେଇଥିଲୁ ଚିତାଗ୍ନିକୁ, ଯେଉଁଠି

ବଂଧୁମାନଙ୍କର ମରଦେହ ପୋଡ଼ି ପାଉଁଶ ହୋଇଯାଉଥିଲା । ତା'ପରେ ସମସ୍ତଙ୍କର ହୃଦୟରୁ ବାହାରି ଆସିଥିଲା ଏକ ଦୀର୍ଘଶ୍ୱାସ ! ଯେପରି ସମସ୍ତଙ୍କର ମନରେ ସେଇ ଗୋଟିଏ ପ୍ରଶ୍ନ— ଏହା ପରେ ପାଳି କାହାର ?

ପ୍ରଫୁଲ୍ଲ ପିଲାଦିନରୁ ବେଶ୍ ସଚେତନ ଯୁବକ ଭାବରେ ପରିଚିତ ଥିଲେ । ରାଜନୈତିକ ସଚେତନତା ଥିଲା ତାଙ୍କର । ସେ ଭାରତୀୟ ଜାତୀୟ କଂଗ୍ରେସ ସହିତ ଆପଣାକୁ ସାମିଲ କରିଥିଲେ । ସେତେବେଳେ ଭାରତର ସ୍ୱାଧୀନତାର ଉଷା କାଳ, କିନ୍ତୁ ଥିଲା କାଳି ଅଂଧାର । ସେତିକିବେଳେ ସ୍ୱାଧୀନତା ଆନ୍ଦୋଳନର ଅନେକ ରଥୀ, ମହାରଥୀଙ୍କୁ ସାହାଯ୍ୟ କରିବାର ଦାୟିତ୍ୱ ସେ ଗ୍ରହଣ କରିଥିଲେ । ଏହା ଥିଲା ଏକ କଠିନ କାମ ।

କାରଣ ବ୍ରିଟିଶ ସରକାର ଯିବା ପୂର୍ବରୁ ବେଶ୍ ହିଂସ୍ର ହୋଇ ଉଠିଥିଲା ।

ନରାଜ ଗ୍ରାମପଞ୍ଚାୟତର ସରପଞ୍ଚ ପଦବୀରୁ ଆରମ୍ଭ କରି ସେ ବାରଙ୍ଗ ବ୍ଲକର ପ୍ରଥମ ନିର୍ବାଚିତ ଚେୟାରମାନ୍ ହୋଇଥିଲେ । କ୍ରମାଗତ ତିନିଥର ଚେୟାରମାନ ଭାବରେ ନିର୍ବାଚିତ ହୋଇ ଅନେକ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ସ୍କୁଲ ପ୍ରତିଷ୍ଠା ଠାରୁ ଆରମ୍ଭ କରି ଅନେକ ଅନୁଷ୍ଠାନ ସହିତ ତାଙ୍କର ସକ୍ରିୟ ସଂପର୍କ ତାଙ୍କୁ ଜଣେ ପ୍ରତିଷ୍ଠିତ ସମାଜସେବୀରେ ପରିଣତ କରିଥିଲା । କଟକ ସହରର ବହୁ ଅନୁଷ୍ଠାନ ତାଙ୍କର ଅଭିଲେଖ ବହନ କରେ । ଉତ୍କଳ ବାଳାଶ୍ରମର ସେ ଥିଲେ ପ୍ରତିଷ୍ଠିତ ସଦସ୍ୟ । ପଦବୀ ପ୍ରତି ତାଙ୍କର ଆଗ୍ରହ ନଥିଲା, ଆଗ୍ରହ ଥିଲା କର୍ମ ପ୍ରତି ଏବଂ ଗଢ଼ା ଯାଇଥିବା ଅନୁଷ୍ଠାନର ସ୍ଥାୟୀତ୍ୱ ପ୍ରତି ।

କର୍ମବ୍ୟସ୍ତ ପ୍ରଫୁଲ୍ଲ ଏକ ଦୂର ଦିଗନ୍ତ ଏବଂ ସୁଦୂର ପ୍ରସାରୀ ଲକ୍ଷ୍ୟ ପାଇଁ ଚିନ୍ତିତ ଥିଲେ । ତାହା ତାଙ୍କୁ ନେଇଯାଇଥିଲା ଶ୍ରୀ ଅରବିନ୍ଦ ଓ ଶ୍ରୀ ମାଙ୍କର ଦର୍ଶନକୁ । ସେ ଏକ ସୁନ୍ଦର, ସୃଜନଶୀଳ ଏବଂ 'ଅତିମାନବ'ର ପୃଥିବୀ ପ୍ରତି ଆକୃଷ୍ଟ ହୋଇଥିଲେ କ୍ରମଶଃ । କର୍ମବିହୀନ ରାଜନୀତି ଆଉ ତାଙ୍କୁ ବେଶି ଆକୃଷ୍ଟ କରିପାରି ନଥିଲା । ଶ୍ରୀ ଅରବିନ୍ଦଙ୍କ ଦର୍ଶନ ତାଙ୍କର ବିକ୍ଷୁବ୍ଧ ମନ ପାଇଁ ଶାନ୍ତି ଆଣି ଦେଇଥିଲା ।

ପ୍ରଫୁଲ୍ଲ ଥିଲେ ଏକ ଭାବୁକ, ଦରଦୀ ବଂଧୁ । ତାଙ୍କର ପରଲୋକ ହୋଇଗଲା ବିନା ରୋଗ, ବିନା ଯନ୍ତ୍ରଣାରେ । ଯିବାକୁ ତ ହେବ ସମସ୍ତଙ୍କୁ । କିନ୍ତୁ ଇମିତି ମରଣ କେତେ ଲୋକଙ୍କର ଭାଗ୍ୟରେ ଘଟେ ?

ପ୍ରଫୁଲ୍ଲ, ତମେ ଚାଲିଗଲ । ଯାଅ । ଦେଖାହେବ କେବେ ପୁଣି ତମ ସାଂଗରେ ? ଆମେସବୁ ତୁମକୁ ହେଜୁଛୁ । କିନ୍ତୁ ତମେ ଆଉ ନାହଁ ।



# ତମେ ଚାଲିଗଲ ବଂଧୁ ଆମ

ହଠାତ୍ ଖବର ପାଇଲି ଯେ ପ୍ରହ୍ଲାଦ ବାବୁ (ମହାନ୍ତି) ଆଉ ନାହାନ୍ତି । ଆମ ଉପର ଶ୍ରେଣୀରେ ସେ ପାଠ ପଢୁଥିଲେ । ଛାତ୍ର ଆନ୍ଦୋଳନ, ବିଶେଷତଃ ବାମପନ୍ଥୀ ଆନ୍ଦୋଳନରେ ସେ ଯୋଗ ଦେଇଥିଲେ ବହୁ ପିଲାଦିନରୁ । ସ୍ୱାଧୀନତା ଆସିବାର ସୂଚନା ମିଳିଥିଲା କିନ୍ତୁ ଦେଶ ହୋଇଥିଲା କ୍ଷତବିକ୍ଷତ, ରକ୍ତାକ୍ତ ଏବଂ ଦେଶ ବିଭାଜନ ହେବାର ଉପକଣ୍ଠରେ ପହଞ୍ଚିଥିଲା । କ'ଣ ହେବା ଉଚିତ ଆମର ସ୍ୱାଧୀନତାର ରୂପରେଖ, କ'ଣ ହେବା ଉଚିତ ଏହାର ଆର୍ଥନୈତିକ ଚରିତ୍ର ? ଅନେକ ବିତର୍କ, ଅନେକ ଆଲୋଚନା, ତାତ୍ତ୍ୱିକ ଏବଂ ତାର ବ୍ୟବହାରିକ ରୂପରେଖ । କଂଗ୍ରେସ, ସୋସଲିଷ୍ଟ ଏବଂ କମ୍ୟୁନିଷ୍ଟମାନଙ୍କ ଭିତର ଏଇ ବିତର୍କ ଥିଲା ସଂପୂର୍ଣ୍ଣ ତାତ୍ତ୍ୱିକ ଏବଂ ସାମୂହିକ । ପ୍ରହ୍ଲାଦ ବାବୁ ଛାତ୍ର ସଂଘ ଏବଂ ବାମପନ୍ଥୀମାନଙ୍କର ନେତୃତ୍ୱରେ ଥିଲେ । ଅଖିଳ ମୋହନ ପଟ୍ଟନାୟକ, ବ୍ରଜବଂଧୁ ମିଶ୍ର, ଶିବପ୍ରସାଦ ମିଶ୍ର ପ୍ରମୁଖ ଥିଲେ ତାଙ୍କର ସହକର୍ମୀ ସହଯୋଦ୍ଧା ।

ସେତେବେଳେ ଛାତ୍ରସଂଘର ସଭ୍ୟ ଥିଲା ସାର୍ବଜନୀନ, କିନ୍ତୁ ଯେଉଁମାନେ ସକ୍ରିୟ ସେମାନେ ନିଜେ ତାଲିମ ପାଉଥିଲେ ଆପଣାର ସିନିଅରମାନଙ୍କ ଠାରୁ ଏବଂ ତାଲିମ ଦେଉଥିଲେ ଆପଣାର ଜୁନିଅରମାନଙ୍କୁ । ତେଣୁ ପ୍ରହ୍ଲାଦବାବୁଙ୍କ ସହିତ ଦେଖାସାକ୍ଷାତ ହେଉଥିଲା ଅନେକ ସମୟରେ । ଏହାଛଡ଼ା ସମ୍ମିଳନୀ, ସଭା ସମିତି କଥା ତ ସ୍ୱତନ୍ତ୍ର ।

ସେଇ ସମୟରେ ପ୍ରଚଣ୍ଡ ଛାତ୍ର ଆନ୍ଦୋଳନ ମଥା ପିଟୁଥିଲା ଭାରତବର୍ଷର ତଥା ଓଡ଼ିଶାର ବୁକୁ ଉପରେ । ଆଟିନେଲେକ ବୟକଟ ଆନ୍ଦୋଳନ, ଦୁଦୁମା ଚୁକ୍ତି ବିରୋଧୀ ଆନ୍ଦୋଳନ, ଆଇ.ଏନ.ଏ. ବନ୍ଦୀମାନଙ୍କର ମୁକ୍ତି ଆନ୍ଦୋଳନ, ଟେଷ୍ଟ ପରୀକ୍ଷା ବିରୋଧୀ ଆନ୍ଦୋଳନରେ ମାଟି ଦୋଳୁକୁଥିଲା । ପ୍ରହ୍ଲାଦବାବୁ ସବୁଥିରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଏସବୁ ଥିଲା ସାମୂହିକ ଉଦ୍ୟମ, ସେଇଯୋଗୁଁ ରାଜନୈତିକ ମତଭେଦ ବ୍ୟକ୍ତିଗତ ସଂପର୍କକୁ ସ୍ପର୍ଶ କରି ନଥିଲା ।

ପ୍ରହ୍ଲାଦବାବୁ ଜୀବନର ବହୁ ବିଭାବକୁ ସ୍ପର୍ଶ କରିଥିଲେ । ସବୁଥିରେ ତାଙ୍କର ସକ୍ରିୟ ଭୂମିକା ଥିଲା ଏବଂ ସେ ସବୁଥିରେ ଆପଣାର ଅଭିଲେଖ ରଖି ଯାଇଥିଲେ ।

ପ୍ରହ୍ଲାଦବାବୁ ପରବର୍ତ୍ତୀ କାଳରେ ଆଇନଜୀବୀ ହେଲେ ପୁରୀରେ, କିନ୍ତୁ ଭୁଲି ନଥିଲେ ସମାଜର ଦଳିତ ମଥିତମାନଙ୍କୁ । ପୁରୀ ଜିଲ୍ଲା ତାଙ୍କର କର୍ମସ୍ଥଳୀ ଥିଲା । ସେ କେବଳ ଆଇନଜୀବୀ ନଥିଲେ, ସେ ଥିଲେ ଜନସାଧାରଣଙ୍କ ଓକିଲ । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସହିତ ସେ ନିବିଡ଼ ଭାବରେ ଜଡ଼ିତ ଥିଲେ । କମ୍ୟୁନିଷ୍ଟ ପାର୍ଟିର ବିଭାଜନ ପରେ ତାଙ୍କର ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟି ପ୍ରତି ଅନୁରକ୍ତି ବଢ଼ିଲା ।

ପ୍ରହ୍ଲାଦବାବୁ ଜଣେ ଲେଖକ ଥିଲେ ଏବଂ ଜଣେ ସଫଳ ଲେଖକ ଭାବରେ ତାଙ୍କର ଖ୍ୟାତି ବି ଥିଲା । କିନ୍ତୁ ପରବର୍ତ୍ତୀ କାଳରେ କାହିଁକି କେଜାଣି ସେ ବେଶି ଲେଖାଲେଖି କଲେ ନାହିଁ । କରିଥିଲେ ହୁଏତ ଓଡ଼ିଶାର ସଫଳ ଲେଖକ ଭାବରେ ସେ ପ୍ରତିଷ୍ଠିତ ହୋଇ ପାରିଥାନ୍ତେ । ଗଳ୍ପ ସାହିତ୍ୟ ତାଙ୍କର କଲମ ମୁନରେ ଆଉରି ସମୃଦ୍ଧ ହୋଇ ପାରିଥାନ୍ତା ।

ଜଣେ ମୂଲ୍ୟବୋଧ ଭିତ୍ତିକ ମଣିଷ ଥିଲେ ସେ । ବ୍ୟକ୍ତିଗତ ସଂପର୍କ ମଧୁର, କିନ୍ତୁ ରାଜନୈତିକ ମତଭେଦ ଥିଲା ତୀବ୍ର । ମଣିଷ ଭାବରେ ସେ ଥିଲେ ଦରଦୀ ଏବଂ ଭାବୁକ । ତାଙ୍କର ସ୍ମୃତି ଚିର ସବୁଜ ହୋଇ ରହିବ ତାଙ୍କର ଅଗଣିତ ବଂଧୁମାନଙ୍କ ଭିତରେ ।

ରାତି ବର୍ତ୍ତମାନ ଗଭୀର । ଭବିଷ୍ୟତ ବଂଧାପଡ଼ିଛି ଯୂପକାଠରେ । ସାହସୀ ମଣିଷ ଆଉ ମିଳୁ ନାହାନ୍ତି । ଜନ ଆନ୍ଦୋଳନ ଗଢ଼ି ଉଠୁନାହିଁ ନୂତନ ଭାରତବର୍ଷ ପାଇଁ । ଏତିକିବେଳେ ମନେପଡ଼େ ପ୍ରହ୍ଲାଦବାବୁଙ୍କୁ ।

ସେ ଆଉ ନାହାନ୍ତି ।



# ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀର ବିଦାୟ

ବିଶିଷ୍ଟ ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ପ୍ରହ୍ଲାଦ ରାୟ ଲାଠ ଆଉ ନାହାନ୍ତି । ୯୫ ବର୍ଷ ବୟସରେ ମଇ ମାସ ୨୬ ତାରିଖ, ୨୦୦୦ ମସିହାରେ ସେ ଆପଣାର ବାଖରାବାଦ ବାସଭବନରେ ପରଲୋକ ଗମନ କରିଛନ୍ତି । ତାଙ୍କର ମୃତ୍ୟୁରେ ଓଡ଼ିଶା ତା'ର ସବୁଠାରୁ ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀକୁ ହରାଇବସିଛି । ଓଡ଼ିଶାର ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ସେ ସବୁଠାରୁ ବୟସ୍କ ଥିଲେ । ଗଲା ବେଶ୍ କିଛିଦିନ ହେବ ସେ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତ ହୋଇ ତାଙ୍କ ବାସଭବନରେ ଶଯ୍ୟାଶାୟୀ ଥିଲେ । ତାଙ୍କର ମରଶରୀରରେ ଫୁଲଟିଏ ଦେବାପାଇଁ ମୋର ଶକ୍ତି ନଥିଲା । ମନ କିନ୍ତୁ ପହଁରି ଯାଇଥିଲା ବହୁଦିନ ତଳକୁ ।

ସ୍ୱାଧୀନତା ସଂଗ୍ରାମର ଢେଉ ପିଟୁଥିଲା ସାରା ଦେଶରେ । ସମ୍ବଲପୁର ସହର ସେଥିରୁ ବାଦ ନଥିଲା । ଦ୍ୱିତୀୟ ମହାଯୁଦ୍ଧ, କଟକରୁ ସମ୍ବଲପୁରକୁ ରାଜଧାନୀ ଉଠିଯିବା ପ୍ରଭୃତି ବିଭିନ୍ନ କାରଣରୁ ସମ୍ବଲପୁର ସହରର ଗୁରୁତ୍ୱ ବଢ଼ିଯାଇଥିଲା । ଏତିକିବେଳେ ମୋର ମନେପଡୁଛି ୰ ପ୍ରହ୍ଲାଦରାୟ ଲାଠଙ୍କ ବାସଭବନ ସ୍ୱାଧୀନତା ସଂଗ୍ରାମୀମାନଙ୍କର କେନ୍ଦ୍ରବିନ୍ଦୁ ପାଲଟିଥିଲା । ଯଦିଓ ମୋର ତାହା ଦେଖିବାର ସୁଯୋଗ ହୋଇନାହିଁ, ତାଙ୍କ ଘରେ ଅତିଥି ହୋଇଥିଲେ ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ଜୟପ୍ରକାଶ ନାରାୟଣ ପ୍ରଭୃତି ସର୍ବଭାରତୀୟ ନେତୃବୃନ୍ଦ ।

ସେଇ ଘରେ ମୁଁ କିନ୍ତୁ ଦେଖିଛି ଓଡ଼ିଶାର ସବୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ।

ପ୍ରହ୍ଲାଦ ରାୟ ଲାଠ ବ୍ୟବସାୟୀ ପରିବାରରେ ୧୯୦୭ ମସିହା ଫେବୃଆରୀ ୨୨ ତାରିଖରେ ସମ୍ବଲପୁରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଗୋଷ୍ଠୀର ଲୋକେ ପ୍ରତ୍ୟକ୍ଷ ରାଜନୀତିରେ ବେଶି ଭାଗ ନିଅନ୍ତି ନାହିଁ । ରାଜନୈତିକ ନେତାମାନଙ୍କୁ ସମର୍ଥନ ଜଣାନ୍ତି, ସାହାଯ୍ୟ କରନ୍ତି ଏବଂ ଆବଶ୍ୟକ ହେଲେ ନିୟନ୍ତ୍ରଣ କରନ୍ତି ।

କିନ୍ତୁ ପ୍ରହ୍ଲାଦରାୟ ଲାଠ ଥିଲେ ତା'ର ବ୍ୟତିକ୍ରମ । ସେ ନିଜେ ରାଜନୀତିରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିବା ପାଇଁ ପିଲାଦିନୁ ନିଷ୍ପତ୍ତି ନେଇଥିଲେ । ୧୯୩୧ ମସିହାରୁ

୧୯୪୮ ମସିହା । ଦୀର୍ଘ ୧୮ ବର୍ଷ କାଳ ସେ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ସଭାପତି ଥିଲେ । ଉଦାରମନା, ଦାନବୀର ପ୍ରହ୍ଲାଦରାୟ ଲାଠ ସଂକୀର୍ଣ୍ଣମନା ନଥିଲେ । ସେ କଂଗ୍ରେସ କମିଟିର ସଭାପତି । କଂଗ୍ରେସ ଦଳ ଭିତରେ ବହୁ ପ୍ରକାର ମତ ରହିଥିଲା । ଅନେକ ସମୟରେ ତାହା ତୀବ୍ରରୂପ ଧାରଣ କରୁଥିଲା । ଲାଠଜୀ କିନ୍ତୁ ସମସ୍ତଙ୍କର ବଂଧୁଥିଲେ । ଯେଉଁ ଲୋକ ନିଷ୍ଠା ଓ ସାହସର ସହିତ ଦେଶ ମାତୃକାର ମୁକ୍ତି ପାଇଁ କାମ କରୁଥିଲେ ଲାଠଜୀ ସେମାନଙ୍କୁ ଭଲ ପାଉଥିଲେ, ତାଙ୍କ ପାଖରେ ଠିଆ ହେଉଥିଲେ ।

୧୯୩୭ ରୁ ୧୯୪୦ ପର୍ଯ୍ୟନ୍ତ ସେ ଓଡ଼ିଶା ବିଧାନସଭାର ସଦସ୍ୟ ଥିଲେ । କିନ୍ତୁ ଗାନ୍ଧିଜୀଙ୍କ ଡାକରାରେ ସେ ବିଧାନସଭା ପଦବୀରୁ ଇସ୍ତଫା ଦେଇ କାରାବରଣ କରିଥିଲେ । ଓଡ଼ିଶାର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ସହିତ ସେ ବ୍ରହ୍ମପୁର ଜେଲରେ ବନ୍ଦୀ ହୋଇଥିଲେ । ବିଭିନ୍ନ ମତର ରାଜନୈତିକ ବନ୍ଦୀମାନଙ୍କର ସେ ଥିଲେ ଅନ୍ୟତମ ସମନ୍ୱୟ ରକ୍ଷାକାରୀ ।

ପ୍ରହ୍ଲାଦରାୟ ଲାଠ ସମ୍ବଲପୁରରେ ପ୍ରଥମ ବ୍ୟାଙ୍କ ଖୋଲିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

ଲାଠଜୀ ପରିଣତ ବୟସରେ ବି ନିଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ ସମିତିର ଉପସଭାପତି ଥିଲେ ଏବଂ ଦୀର୍ଘ ଦଶବର୍ଷ ଧରି ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ସମିତିର ସଭାପତି ଥିଲେ । ସ୍ୱାଧୀନତା ସଂଗ୍ରାମୀ ପ୍ରଭା ଦେବୀଙ୍କ ସହଯୋଗରେ ସମ୍ବଲପୁରର ବରଗାଁଓଠାରେ ଆପଣାର ସ୍ୱର୍ଗତ ଧର୍ମପତ୍ନୀ ରୁକ୍ମିଣୀ ଦେବୀ ଲାଠ ବାଳ ନିକେତନ ଗଠନ ତାଙ୍କର ଏକ ଉଲ୍ଲେଖଯୋଗ୍ୟ ଅବଦାନ । ସେ ଉତ୍କଳ ସାହିତ୍ୟ ସମାଜର ପୃଷ୍ଠପୋଷକ ମଧ୍ୟ ଥିଲେ । ୧୯୪୮ରେ ଲାଠଜୀ ବିନୋବା ଭାବେଙ୍କର ଭୂଦାନ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲେ ।

ବିଗତ ବେଶ୍ କିଛି ବର୍ଷ ହେବ ସେ ସମ୍ବଲପୁରରୁ ଆସି କଟକରେ ବାସ କରୁଥିଲେ ଏବଂ ଶାରୀରିକ ସକ୍ଷମତା ନ ହରାଇବା ପର୍ଯ୍ୟନ୍ତ ବହୁପ୍ରକାର କାର୍ଯ୍ୟରେ ଅନ୍ୟମାନଙ୍କୁ ସାହାଯ୍ୟ କରୁଥିଲେ, ପରାମର୍ଶ ଦେଉଥିଲେ ।

ସମୟ ଅତିକ୍ରାନ୍ତ ହୋଇଛି । ଦେହ ଆଉ ବୋଲ ମାନୁନାହିଁ । ସ୍ତ୍ରୀ ରୁକ୍ମିଣୀ ଦେବୀ ଲାଠ ଛାଡ଼ି ଚାଲିଗଲେଣି ଆର ପାରିକୁ । ସମସାମୟିକ ବ୍ୟକ୍ତିମାନେ ମଧ୍ୟ ଆଉ ନାହାନ୍ତି । ଲାଠଜୀ ଏକୁଟିଆ ହୋଇ ଯାଇଛନ୍ତି ।

ତା'ପରେ ସେଇଦିନ ଆସିଗଲା । ଲାଠଜୀ ଆଉ ନାହାନ୍ତି । ହଠାତ୍ ଯେପରି ଏକ ବରିଷ୍ଠ ଅଭିଭାବକ ଆମ ଭିତରେ ଆଉ ନାହାନ୍ତି ।



# ସେ ଆଉ ଆସିବେ ନାହିଁ

କଟକରେ ଥିବା ପର୍ଯ୍ୟନ୍ତ ଏବଂ ଭୁବନେଶ୍ୱରରୁ କଟକ ଆସି ପାରୁଥିବା ପର୍ଯ୍ୟନ୍ତ ତାଙ୍କ ସହିତ ନିଶ୍ଚୟ ଭେଟ ହେବ ଅନ୍ତତଃ ସପ୍ତାହକୁ ଥରେ । ବିନୋଦ କାନୁନ୍‌ଗୋ ଏବଂ ମୋତେ ସେ ନିଶ୍ଚୟ ଭେଟିବେ ଥରେ । କିଛି କାମ ନାହିଁ । ଖାଲି ଦୁଃଖ ସୁଖ, ହାନି ଲାଭ, ଦେଶ ବିଦେଶ, ରାଜନୀତିର ଗଳ୍ପ । ଘଣ୍ଟାଏ ଦୁଇଘଣ୍ଟା କଟିଯିବ ସେଇଥିରେ ।

ପରେ ସେ ଆଉ କଟକକୁ ଆସିଲେ ନାହିଁ । ବିନୋଦ କାନୁନ୍‌ଗୋ, ରାଧାନାଥ ରଥ ଚାଲିଗଲେଣି । ସେ ନିଜେ ମଧ ପାର୍କିନସନ୍ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେଣି । ତଥାପି ଦେଖାହୁଏ ବେଳେବେଳେ । ଜଷ୍ଟିସ ପୀତାମ୍ବର ମିଶ୍ରଙ୍କ ପୁତ୍ର ତାଙ୍କର ଜାମାତା କ୍ଷେତ୍ରପାଳ ମିଶ୍ରଙ୍କ ସରକାରୀ ବାସଭବନରେ । ଯିବା ଖବର ପାଇବା ମାତ୍ରେ ସେ ଔଷଧ ଖାଇ ପ୍ରସ୍ତୁତ ହୋଇ ରହିବେ । ପାର୍କିନସନ୍ ରୋଗର ଏକ ଔଷଧ ଅଛି, ଯାହାକୁ ଖାଇଦେଲେ ରୋଗ କିଛି ଘଣ୍ଟା ଲାଗି ବନ୍ଦ ହୋଇଯାଏ । ଜ୍ୱାଇଁ କ୍ଷେତ୍ରପାଳ ଓଡ଼ିଶା ଅର୍ଥ ବିଭାଗର ଅଫିସର । କୁଶଳୀ ଅଭିନେତା କିନ୍ତୁ ପ୍ରଚଣ୍ଡ ଶ୍ୱାସରୋଗୀ । ଶ୍ୱଶୁର ସାଂଗ, ଜ୍ୱାଇଁ ବି ସାଂଗ । କ୍ଷେତ୍ରପାଳର ଅକାଳ ମୃତ୍ୟୁ ପରେ ସେ ଚାଲିଯାଆନ୍ତି ନାତିର ଧର୍ମ ବିହାର ଘରକୁ । ଆଉ ଦେଖାହୋଇ ନାହିଁ । ଥରେ ଦୁଇଥର ଫୋନରେ କଥା ହୋଇଛୁ ମାତ୍ର ।

ଏପ୍ରିଲ ୨୬ ତାରିଖ, ୨୦୦୧ ମସିହା । ହଠାତ୍ ଟେଲିଫୋନ୍‌ରେ ଖବର ଆସିଲା ଯେ ଫକୀର ମିଶ୍ର ଆଉ ନାହାନ୍ତି । ସେ ତାଙ୍କ ନାତିର ଧର୍ମ ବିହାର ଗୃହରେ ଆଖିବୁଜି ଦେଇଛନ୍ତି ଚିରଦିନ ପାଇଁ । ୧୯୧୮ ମସିହା ଅଗଷ୍ଟ ୧୫ ତାରିଖରେ ପୁରୀ ବଳଭଦ୍ରପୁର ଗ୍ରାମରେ ଜନ୍ମ ଫକୀର ମିଶ୍ରଙ୍କୁ ମୃତ୍ୟୁ ସମୟରେ ୮୩ ବର୍ଷ ହୋଇଥିଲା ।

ଫକୀର ବାବୁ ଥିଲେ ଜଣେ ବିଚିତ୍ର ବ୍ୟକ୍ତି । ଗାନ୍ଧୀବାଦ, ସମାଜବାଦର ଏକ ସମନ୍ୱୟ । ଫକୀର ବାବୁ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବାବେଳେ ସଂତ୍ରାସବାଦୀ ଆନ୍ଦୋଳନର

ଅନ୍ୟତମ ନେତା ସତ୍ୟେନ୍ଦ୍ରନାଥ ଗୁହଙ୍କ ସଂସ୍ପର୍ଶରେ ଆସିଥିଲେ । ସମାଜବାଦ ପ୍ରତି ତାଙ୍କର ଅନୁରକ୍ତି ସେଇ ଦିନରୁ ।

ରେଭେନ୍ସା କଲେଜରେ ପାଠ ପଢ଼ିଲାବେଳେ ୧୯୪୧ ରେ ତାଙ୍କର ପାଠ ବସ୍ତାନିରେ ଡୋର ଲାଗିଲା । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସେ କାରାବରଣ କଲେ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ । ଓଡ଼ିଶାର ନେତୃବୃନ୍ଦଙ୍କ ସହିତ ତାଙ୍କର ଘନିଷ୍ଠତା ସ୍ଥାପନ ହୁଏ ସେଇ ଦିନରୁ । ରାଧାନାଥ ବାବୁଙ୍କ ସହିତ ତାଙ୍କର ଘନିଷ୍ଠତା ଟାଣିଆଣିଥିଲା 'ସମାଜ' ପରିବାରକୁ ପରବର୍ତ୍ତୀ କାଳରେ ।

ଜୀବନରେ ବହୁ କାର୍ଯ୍ୟ ଭିତରଦେଇ ତାଙ୍କର ଜୀବନ ଗତି କରିଛି । ଗ୍ରାମାଞ୍ଚଳରେ ଜନସାଧାରଣଙ୍କର ସେବା ତାଙ୍କୁ ଟାଣି ନେଇଥିଲା ଭୂଦାନ ଆନ୍ଦୋଳନକୁ । କିଛିକାଳ ସେ ଭୂଦାନ ଆନ୍ଦୋଳନରେ ସାମିଲ ହୋଇଥିଲେ ବିନୋବା ବାଭେଙ୍କ ସହ ୧୯୫୨ ମସିହାରେ । ସାକ୍ଷୀଗୋପାଳ ଗୋପବନ୍ଧୁ ଦରିଦ୍ର ନାରାୟଣ ସେବା ସଂସ୍ଥାର ସଂପାଦକ ଭାବରେ କାର୍ଯ୍ୟ କରିଥିଲେ ଏବଂ ରାଧାନାଥ ବାବୁଙ୍କ ପରଲୋକ ପରେ ଏହାର ସଭାପତି ହୋଇଥିଲେ । ୧୯୭୪ ମସିହା ପର୍ଯ୍ୟନ୍ତ ସେ 'ସମାଜ'ର ସହ-ସଂପାଦକ ଥିଲେ ଏବଂ ରାଧାନାଥ ବାବୁଙ୍କ ଘନିଷ୍ଠ ସହକର୍ମୀମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ ।

ତାଙ୍କର ସାଂଗଠନିକ ଶକ୍ତି ଯେପରି ଥିଲା ଜଣେ ସୁବକ୍ତା ଭାବରେ ମଧ୍ୟ ତାଙ୍କର ଖ୍ୟାତି ଥିଲା ସେଇପରି । ବିଜୁ ପଟ୍ଟନାୟକ ତାଙ୍କୁ କିଛିକାଳ ଆପଣାର ସହକର୍ମୀ ଭାବରେ ନେଇଥିଲେ । କିନ୍ତୁ ତାହା ଥିଲା ସ୍ୱଳ୍ପ ସମୟ ପାଇଁ ।

ଫକୀର ବାବୁ ପାର୍କିନସନ୍ ରୋଗରେ ପୀଡ଼ିତ ହେଲେ ଏବଂ ସାମାଜିକ କାର୍ଯ୍ୟରୁ ବିଦାୟ ନେଇ ଆପଣାର ଜାମାତା ପ୍ରସିଦ୍ଧ ନାଟ୍ୟକାର ୰ କ୍ଷେତ୍ରପାଳ ମିଶ୍ରଙ୍କ ପାଖରେ ରହୁଥିଲେ ।

ଫକୀରବାବୁ ବନ୍ଧୁବତ୍ସଳ, ଅମାୟିକ କିନ୍ତୁ ବେଶ୍ ସ୍ପଷ୍ଟବାଦୀ । ଯାହା ଠିକ୍ ବୋଲି ଭାବନ୍ତି ତାହା କହିବାକୁ କୁଣ୍ଠିତ ହୋଇ ନାହାନ୍ତି । କିନ୍ତୁ କହିବେ ସ୍ପଷ୍ଟ କଥା ହସି ହସି । ଦଳମତ ଗୋଷ୍ଠି ନିର୍ବିଶେଷରେ ତାଙ୍କର ବଂଧୁତା ଥିଲା ବହୁ ବ୍ୟକ୍ତିଙ୍କ ସହିତ ।

ସେ ଆଉ ନାହାନ୍ତି । ଆପଣାର ଅଭିଲେଖ ଲେଖିବାର ପ୍ରବୃତ୍ତି ତାଙ୍କର ନଥିଲା । ସେ ଜଣେ ନିରଳସ କର୍ମୀ ଥିଲେ ଏବଂ ତାହା ହିଁ ତାଙ୍କ ଜୀବନର ଶ୍ରେଷ୍ଠ ପରିଚିତି ।

ଏଭଳି ମଣିଷ ମିଳିବା ବିରଳ ।



# ବଂଧୁର ଅନ୍ତିମ ଯାତ୍ରା

ଚଉଦ ତାରିଖ ନଭେମ୍ବର, ୨୦୦୦ । ଅପରାହ୍ନ, ମ୍ଳାନ ଅପରାହ୍ନ । ହଠାତ୍ ଫୋନ ବାଜିଲା ତୁହାକୁ ତୁହା । ଫୋନ ଧରିଲି । ସେପଟରୁ ଖବର ଆସିଲା– ଫନୀ ବାବୁ ଚାଲିଗଲେ ବର୍ତ୍ତମାନ ।

ଫନୀ ଚାଲିଗଲା ? ଛୋଟା ଗୋଡ଼ରେ ଦୌଡ଼ିଲି । କେହି କୁଆଡ଼େ ନାହାନ୍ତି । ଝିଅଟି କାନ୍ଦୁଛି । ପୁଣି ପ୍ରକୃତିସ୍ଥ ହୋଇଯାଉଛି ମାଆକୁ ଅନେଇ । ଘରେ କେବଳ ଜୋଇଁ । ଗୋଟିଏ ପୁଅ ପାରାଦ୍ୱୀପରୁ ଆସୁଛି । ଆର ପୁଅ ଗୋଆରେ । ଫନୀ ଶୋଇଛି ଏକ ମଶିଣା ଉପରେ, ଭୂମି ଶଯ୍ୟା । କ'ଣ ହେଲା ? ଏଇ ତ କାଲି ଦେଖା ହୋଇଥିଲା । ପ୍ରତିଦିନ ସେ ଚାଲିଚାଲି ଯାଏ ବାରବାଟୀ କିଲ୍ଲାକୁ । ମର୍ଣ୍ଣିଂ ୱାକ୍ । ଔଷଧ ଖାଏ, ଇଂଜେକସନ୍ ନିଏ ନିୟମିତ । ପୁଣି ପ୍ରସିଦ୍ଧ ଡାକ୍ତରମାନେ ତା'ର ବଂଧୁ । କ'ଣ ହେଲା ତା'ର ? ଅନେକ ଦିନରୁ ତା'ର ବହୁମୂତ୍ର ରୋଗ । ମୋରି ଭଳି । ସେ ଦୃଷ୍ଟିରୁ ସେ ମୋର ବନ୍ଧୁ । କିନ୍ତୁ ପାଠରେ ସେ ଥିଲା ଧୂରନ୍ଧର । ମୋ ଠାରୁ ବୟସ ପ୍ରାୟ ସାତବର୍ଷ ସାନ । ମୋ ସ୍ତ୍ରୀଙ୍କର ସହପାଠୀ । ରେଭେନ୍ସା କଲେଜରେ ପଢ଼ିବା ଦିନଠାରୁ ମୋର ତା' ସହିତ ପରିଚିତି ।

ଏମ୍.ଏସ୍‌ସି. ପାଶ କଲା ପରେ ସେ ପାଏ ଅଧ୍ୟାପକ ପଦବୀରେ ନିଯୁକ୍ତି । ତା'ପରେ ପିଏଚ୍.ଡି ଏବଂ ତାପରେ ଡି.ଏସ୍‌ସି. । କେବଳ ସେତିକି ନୁହେଁ ପ୍ରାୟ ୫୦ ରୁ ଉର୍ଦ୍ଧ୍ୱ ଛାତ୍ର ଛାତ୍ରୀ ତା' ଅଧୀନରେ ପିଏଚ୍.ଡି ବା ଡି.ଏସସି ପାଇଛନ୍ତି ଗବେଷଣା କରି । ଅବସର ନେଲାପରେ ମଧ୍ୟ ତା'ର ଗବେଷଣା ଶେଷ ହୋଇ ନଥିଲା । କହୁଥିଲା– ଏବେ ଆଉ ବେଶି କାମ କରି ହେଉନାହିଁ । ଆଉ ଗବେଷଣା ପାଇଁ ଗାଇଡ୍ କାମ କରିହେବ ନାହିଁ ।

କେହି ଖବର ପାଇ ବିଶ୍ୱାସ କରିପାରୁ ନାହାନ୍ତି । ଧୀରେ ଧୀରେ ସନ୍ତର୍ପଣରେ ଲୋକେ ଆସି ପଚାରୁଛନ୍ତି ଘଟଣା ସତ ନା ମିଥ୍ୟା ? କାରଣ ଏଇ ସକାଳେ ତାଙ୍କୁ ଲୋକେ ଦେଖିଛନ୍ତି ଚାଲିଚାଲି ଯିବାର ।

କିନ୍ତ ମୃତ୍ୟୁ ଆସେ ଇମିତି । ଅଚାନକ । ଯେଉଁମାନେ ଭାଗ୍ୟବାନ ସେମାନେ

ଯାଆନ୍ତି କର୍ମକ୍ଷମ ଥାଇ ଯାହାକୁ ଇଂରାଜୀରେ କୁହାଯାଏ die in harness କିନ୍ତୁ ଛାଡ଼ିଯାଆନ୍ତି ବହୁ ଲୋକଙ୍କୁ ସ୍ତବ୍ଧ, ଚକିତ କରି ଲୁହରେ ସ୍ମୃତି ପଖାଳିବା ପାଇଁ ।

ଫନୀ ତା'ର ଜୀବନକାଳ ଭିତରେ ଅନେକ ପଦବୀକୁ ଅଳଙ୍କୃତ କରିଛି । କିଛିକାଳ ସେ ଉଚ୍ଚ ମାଧ୍ୟମିକ ଶିକ୍ଷା ବୋର୍ଡ଼ର ସଭାପତି ଥିଲା । ସେ ବର୍ଷ । ଆଗରେ ମାଧ୍ୟମିକ ପରୀକ୍ଷା । ଖାତା ଛପାଯାଇ ନାହିଁ । ହଠାତ୍ କଟକ-ଭୁବନେଶ୍ୱରରେ ପ୍ରେସ ଧର୍ମଘଟ । ପରୀକ୍ଷା ହେବ କିପରି ? ଏକ ଚିନ୍ତିତ ମନରେ ଦିନେ ସେ ଆସି ପହଞ୍ଚିଲେ । କ'ଣ କରିବି କହିଲ, ଦୁଃଖଭରା କଣ୍ଠ । ସୁଗର୍ ବଢ଼ିଗଲାଣି ଚିନ୍ତାରେ । ଖାତାତକ ତମେମାନେ ଛାପି ଦିଅନ୍ତ ନାହିଁ ? ଅଶେଷ ଧର୍ମ ହେବ, ପିଲାମାନେ ପରୀକ୍ଷା ଦେଇ ପାରିବେ । ଧର୍ମଘଟ ଚାଲିଛି, ତେଣୁ ପ୍ରଫେସନାଲ ଲୋକ ମିଳିବେ ନାହିଁ । ୟୁନିଭର୍ସର କର୍ମୀମାନେ ଅଣ୍ଟାଭିଡ଼ିଲେ । ଛପା ଚାଲିଲା ।

ଫନୀ, ତମେ ଅସୁବିଧାରେ ପଡ଼ିବ ନାହିଁ ତ ? କୋଟେସନ୍ ଆହ୍ୱାନ କରିନ, କେବଳ ସରକାରୀ ପ୍ରେସର ସିଡୁଲଡ୍ ରେଟ ଅନୁଯାୟୀ ଅର୍ଡ଼ର ଦେବ । ସେ ଦୃଢ଼ କଣ୍ଠରେ କହିଲା ଯାହାହେବ ମୁଁ ବୁଝିବି । ପିଲାମାନେ ମୋର ପରୀକ୍ଷା ଦେବେ । ସେଇଟା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଆଉ ପ୍ରାଇଭେଟ୍ ପ୍ରେସର ରେଟ୍ ତ ସରକାରୀ ପ୍ରେସର ରେଟ୍ ଠାରୁ କମ୍ । ମୋତେ ତ ଓଲଟି ପ୍ରଶଂସା ମିଳିବାର କଥା ।

ଛପା ଠିକ୍ ସମୟରେ ସରିଥିଲା । ପିଲା ପରୀକ୍ଷା ଦେଇଥିଲେ । କିନ୍ତୁ ଫନୀଭୂଷଣ ତଦନ୍ତର ସମ୍ମୁଖୀନ ହେଲେ । ନିଯୁକ୍ତି କମିଟି ଆଗରେ ସେ ସାକ୍ଷ୍ୟ ଦେଲେ ନିର୍ଭୀକ ଭାବରେ । ଅଭିଯୋଗରୁ ମଧ୍ୟ ମୁକ୍ତ ହେଲେ, ସମ୍ମାନର ସହିତ ।

ଅବସର ନେବାର ସମୟ ଆସିଗଲା । ଫନୀ କହିଲା ଯେ ମୁଁ କିନ୍ତୁ ଗବେଷଣା ଚାଲୁ ରଖିବି । ଚାଲୁ ରଖିଲା ମଧ୍ୟ । ୟୁନିଭର୍ସର କାର୍ଯ୍ୟକ୍ରମ ସଂପାଦକ ହେଲା । କିନ୍ତୁ ଧୀରେ ଧୀରେ ସେ ଦୁର୍ବଳ ହୋଇଗଲା । ବହୁମୂତ୍ର ଯୋଗୁଁ । ଯାହାହୁଏ ସବୁ ବହୁମୂତ୍ର ରୋଗୀଙ୍କ କ୍ଷେତ୍ରରେ ।

ଗବେଷଣାର ଏକ ବିରାଟ କୀର୍ତ୍ତିସ୍ତମ୍ଭ ଉପୁଡ଼ି ପଡ଼ିଛି । ଚାକିରିରୁ ଅବସର ନେବାର ବେଶ୍ କିଛି ବର୍ଷ ହୋଇଗଲାଣି । ତେଣୁ ଜାଣିଥିବା, ଚିହ୍ନିଥିବା ବ୍ୟକ୍ତି କମି କମି ଗଲେଣି । ଆଉ ପରମ୍ପରା, ଐତିହ୍ୟ କଥା ଆଜିକାଲି ପଚାରୁଛି କିଏ ? ଯେଉଁ ଘୋଡ଼ା ଦୌଡ଼ୁଛି, ଯାହା ହାତରେ କ୍ଷମତା ଅଛି ତାକୁ ଇ ହେଜିବାର ଯୁଗ ହୋଇଗଲାଣି ।

ତଥାପି ମଣିଷ ଧାର ଲମ୍ବିବାକୁ ଆରମ୍ଭ କଲାଣି । ସେମାନେ ଆସୁଛନ୍ତି ବିଭିନ୍ନ ବିଭାବରୁ । ସହପାଠୀ, ପୂର୍ବ ପରିଚିତି, ବସ୍ତିବାଲା, ଗବେଷକ, ବନ୍ଧୁବାନ୍ଧବ । ମୁଁ ଉଠି ଠିଆହେଲି । ମୋତେ ଦି' ଜଣ ଧରି ଧରି ନେବେ । ସେ ହେବ ଆଉ ଏକ ଦୃଶ୍ୟ ।

ଫେରି ଚାହିଁଲି । ଫନୀ ଶୋଇ ରହିଛି । ଦୁଇଟୋପା ଲୁହ ଖସି ପଡ଼ିଲା ତା'ର କପାଳ ଉପରେ । କିଏ ଜଣେ ଚମକି ଅନେଇଲା !



# ଦସ୍ୟୁ ସାମ୍ରାଜ୍ଞୀର ରକ୍ତାକ୍ତ ବିଦାୟ

ଦସ୍ୟୁରାଣୀ ଫୁଲନ୍ ଦେବୀଙ୍କୁ ନ ଚିହ୍ନିଛି କିଏ ? ଏକଦା ତାଙ୍କ ନାମ ଶୁଣିଲେ ଆତଙ୍କ ସୃଷ୍ଟି ହେଉଥିଲା । ତାଙ୍କ ନାଁରେ କେତେ ଗପ, କେତେ କାହାଣୀ ସୃଷ୍ଟି ନ ହୋଇଛି । ସେ ଦସ୍ୟୁଜଗତର ପ୍ରବାଦ ପୁରୁଷରେ ପରିଣତ ହୋଇଥିଲେ, ଯଦିଓ ସେ ଥିଲା ଏକ ନାରୀ । ତାଙ୍କୁ କେହି କେହି ଦସ୍ୟୁସୁନ୍ଦରୀ ବା ଦୁସ୍ୟୁରାଣୀ ବୋଲି ଆଖ୍ୟା ଦେଇଥିଲେ । ଦେଖିବା ପାଇଁ ସେ ଆଦୌ ସୁନ୍ଦରୀ ନଥିଲା । କଷଣ, ଅତ୍ୟାଚାର ତାକୁ ହିଂସ୍ର, କଠୋର କରିଦେଇଥିଲା । ପ୍ରତିହିଂସାର ବହ୍ନି ଜଳୁଥିଲା ତା'ର ଆଖିରେ ।

କିନ୍ତୁ ଏଇ ନାରୀର ଜୀବନରେ ପରିବର୍ତ୍ତନ ଆସିଥିଲା । ଦସ୍ୟୁରାଣୀ ପାଲଟିଥିଲା ସମାଜସେବୀ । ମିର୍ଜାପୁର ନିର୍ବାଚନ ମଣ୍ଡଳୀରୁ ସେ ନିର୍ବାଚିତ ହୋଇଥିଲା ଲୋକସଭାକୁ । ମିର୍ଜାପୁର ଉତ୍ତରପ୍ରଦେଶରେ । ଏଇ ଉତ୍ତରପ୍ରଦେଶରେ ତା'ର ବିଚାର ହେବ ନାହିଁ, ହେବ ମଧ୍ୟପ୍ରଦେଶରେ— ଏଇ ଥିଲା ତାର ଆତ୍ମସମର୍ପଣର ସର୍ତ୍ତ । କାରଣ ଏହି ଉତ୍ତର ପ୍ରଦେଶରେ ଠାକୁରମାନେ (ଧନାଢ଼୍ୟ ବ୍ୟକ୍ତିମାନେ) ତା' ଉପରେ ସପ୍ତାହ ସପ୍ତାହ ଧରି ଗଣ-ଧର୍ଷଣ କରିଥିଲେ, ଯାହା ଫଳରେ ତା'ର ଜରାୟୁ ସଢ଼ି ଯାଇଥିଲା । ନାରୀର ସ୍ୱପ୍ନ— ମାଆଟିଏ ହେବାପାଇଁ, ଆଉ ତା'ପାଇଁ ସମ୍ଭବ ହେବ ନାହିଁ । ସେ ପାଲଟିଥିଲା ହିଂସ୍ର । ସେ ଆସିଥିଲା ମାଲହା (Mallah) ସଂପ୍ରଦାୟରୁ । ଯେଉଁମାନେ ତା' ଉପରେ ଅତ୍ୟାଚାର କରିଥିଲେ ସେମାନେ ଥିଲେ ଠାକୁର ସମ୍ପ୍ରଦାୟର । ପ୍ରତିହିଂସାରେ ଜର୍ଜରିତ ଫୁଲନ୍ ପାଲଟିଥିଲା ଦସ୍ୟୁ । ସେମାନେ ପ୍ରକୃତରେ ଯେଉଁ ଅତ୍ୟାଚାର କରିଥିଲେ ତା' ବିରୁଦ୍ଧରେ ଜଣେ ନାରୀ ପ୍ରତିହିଂସା ସୁଝାଇବାର ଆଉ କୌଣସି ବାଟ ନଥିଲା । ବେହମାଇରେ କୋଡ଼ିଏ ବର୍ଷ ତଳେ ଯେଉଁ ନରସଂହାର ଘଟିଗଲା ଏବଂ ଯେଉଁଥିରେ କୋଡ଼ିଏଜଣ ଠାକୁର ଶିକାର ହେଲେ, ତାହାଥିଲା ଏକ ନାରୀର ପ୍ରତିହିଂସା, ଆପଣା ଉପରେ ଅତ୍ୟାଚାରର ଉତ୍ତର ।

ପିଲାଦିନେ ତା'ଠାରୁ ବୟସରେ ବହୁତ ବଡ଼ ଏକ ଲୋକ ସହିତ ତାକୁ ବିବାହ କରିଦିଆଯାଇଥିଲା । ତା'ର ଇଚ୍ଛା ବିରୁଦ୍ଧରେ । ତା'ର ଇଚ୍ଛା ଅନିଚ୍ଛାର ପ୍ରଶ୍ନ ନଥିଲା । ଏହାଥିଲା ପୁରୁଷର ନାରୀ ଉପରେ ଅତ୍ୟାଚାର । ଏହା ଆପଣା ସମ୍ପ୍ରଦାୟ ଭିତରେ ମଧ ଘଟୁଥିଲା ।

ପରବର୍ତ୍ତୀ କାଳରେ ବୁଦ୍ଧିପାକଳ ହୋଇଥିବା ସମୟରେ ଫୁଲନ ବୁଝିପାରିଥିଲା ଯେ ତା'ର ପ୍ରତିଶୋଧ ହୁଏତ କିଛି ବ୍ୟକ୍ତିଙ୍କୁ ଲୋପ କରିଛି, କିନ୍ତୁ ନାରୀ ଉପରେ, ଦୁର୍ବଳ ଶ୍ରେଣୀ ଉପରେ ଅତ୍ୟାଚାର ତଦ୍ୱାରା ଲୋପ ପାଇଯାଇ ନାହିଁ । ତେଣୁ ପାର୍ଲ୍ୟାମେଣ୍ଟ ସଭ୍ୟ ଭାବରେ ସେ ସେଇ ଦଳିତ ମଣିଷ ଓ ନାରୀମାନଙ୍କର କଲ୍ୟାଣ ପାଇଁ ଆପଣାର ସଂଗ୍ରାମ ଜାରି ରଖିଥିଲା ।

ଭାଷାର ବ୍ୟୁତ୍ପତ୍ତି ନଥିଲା, ପାଠ କିଛି ପଢ଼ି ନଥିଲା, କିନ୍ତୁ ପାର୍ଲ୍ୟାମେଣ୍ଟରେ କହିବାକୁ ଶିଖିଥିଲା । ଆପଣାର ପୂର୍ବ ସାହସ ଓ ନିର୍ଭୀକତା ତାକୁ ଏଥିପାଇଁ ସାହାଯ୍ୟ କରିଥିଲା ବହୁଳ ଭାବରେ । ସେ କୁଆଡ଼େ ଆପଣାକୁ ଅନୁତପ୍ତ ମନେ କରିଥିଲା ବେହମାଇର ହତ୍ୟାକାଣ୍ଡ ପାଇଁ ଏବଂ ସେମାନଙ୍କ ପରିବାରବର୍ଗଙ୍କ ପାଇଁ କିଛି କରିବାପାଇଁ ଉଦ୍ୟମ କରୁଥିଲା ବୋଲି କୁହାଯାଏ ।

ବେହମାଇ ହତ୍ୟାକାଣ୍ଡରେ କୋଡ଼ିଏ ଜଣ ଠାକୁର ଫୁଲନର ଗୁଳିରେ ଟଳି ପଡ଼ିଥିଲେ ଏବଂ ଫୁଲନର ଆଉ ପଛକୁ ଫେରିବାର ବାଟ ନଥିଲା ।

ସେ ପାଲଟିଥିଲା ଦସ୍ୟୁରାଣୀ । କିନ୍ତୁ ଗୋଟିକ ପରେ ଗୋଟିଏ ଡାକୁର 'ରାଣୀ' ହେବାକୁ ପଡ଼ିଥିଲା ତାକୁ । ସମଗ୍ର ଚମ୍ବଲ ଉପତ୍ୟକା ତଥା ଉତ୍ତରପ୍ରଦେଶରେ ସେ ପାଲଟିଥିଲା 'ହିରୋଇନ' ଏବଂ ଉତ୍ତରପ୍ରଦେଶ ପୁଲିସ ତଥା ଠାକୁରମାନଙ୍କର ଶରବ୍ୟ ।

୧୯୮୧ରୁ ୧୯୮୩ । ଫୁଲନଦେବୀଙ୍କୁ ଧରିବା ପାଇଁ ସବୁ ଉଦ୍ୟମ ବ୍ୟର୍ଥ ହୋଇଛି । ପୁଲିସର ସବୁ ଯନ୍ତାରୁ ସେ ମୁକୁଳି ଯାଇଛି, ଚାଲୁରଖିଛି ଆପଣାର କାର୍ଯ୍ୟ । ତାକୁ ଧରିବାପାଇଁ ସବୁ ପ୍ରକାର ଚେଷ୍ଟାର କୌଣସି ଫଳ ମିଳିନାହିଁ । ସେ ଅଧିକରୁ ଅଧିକ କାହାଣୀ, ଗଳ୍ପର ଆଧାର ପାଲଟିଛି । ସେ ପାଲଟିଚି କ୍ରୁଦ୍ଧ, ଆଖିରେ ତା'ର ଜଳୁଥିଲା ପ୍ରତିହିଂସାର ଅଗ୍ନି । ଏଇ ଅଗ୍ନି ଦେଖିଥିଲେ ଏକ ପ୍ରଖ୍ୟାତ ଧୁରୀଣ ସାମ୍ବାଦିକ ଫୁଲନ ଦେବୀର ଆତ୍ମ-ସମର୍ପଣ ଦିନ । ଜୀବନରେ ବହୁଲୋକଙ୍କୁ ଉକ୍ତ ସାମ୍ବାଦିକ ଭେଟିଛନ୍ତି, ପଚାରିଛନ୍ତି ବହୁ ଅପ୍ରୀତିକର ପ୍ରଶ୍ନ । ଆଜି ଆପଣଙ୍କୁ କେମିତି ଲାଗୁଛି ? ଏଇ ପ୍ରଶ୍ନର ଉତ୍ତରରେ ଫୁଲନଦେବୀ ତାଙ୍କୁ ଇମିତି ଏକ ଚାହାଣୀରେ ଅନେଇଲେ ଯେ ତାଙ୍କ ଦିହ ଥରିଗଲା, କଳାକାଠ ପଡ଼ିଗଲା ଦେହ, ପାଟି ଖନି ବାଜିଗଲା । ଫୁଲନଦେବୀର ଆଖିରେ

ସେ ଦେଖିଥିଲେ ପ୍ରତିହିଂସାର ଜମାଟ ବାନ୍ଧିଥିବା ବାଡ଼ବାଗ୍ନି । ସେ ଆଉ କିଛି ପଚାରିପାରି ନଥିଲେ । ଆଉଜଣେ ସାମ୍ବାଦିକ ପଚାରିଲେ, ବେହମାଇ ଉପରେ ଆପଣଙ୍କର ପ୍ରତିକ୍ରିୟା କ'ଣ ? ଆଖିରୁ ଅଗ୍ନି ଝଲସାଇ, ଓଠକୁ କାମୁଡ଼ି ଫୁଲନ ଉତ୍ତରଦେଲେ ଯେ ''ତୁ ସେଇଠି ଥିଲୁ କି ?'' ବାସ୍ ଏତିକିରେ ସମସ୍ତେ ସ୍ତବ୍ଧ ।

ଫୁଲନଦେବୀ ସର୍ତ୍ତ ରଖିଥିଲେ ଯେ ତାଙ୍କର ବିଚାର ହେବ ମଧ୍ୟପ୍ରଦେଶରେ, ଉତ୍ତରପ୍ରଦେଶରେ ନୁହେଁ । କାରଣ ଉତ୍ତରପ୍ରଦେଶ ପୁଲିସ ହିଂସ୍ର ପାଲଟିଥିଲା, ପରାଜୟର ଗ୍ଲାନିରେ ।

ମୁଲାୟମ ସିଂହ ଯାଦବ ତାଙ୍କ ଉପରୁ ସବୁ ଅଭିଯୋଗକୁ ପ୍ରତ୍ୟାହାର କରି ତାଙ୍କୁ ଆପଣା ଦଳ ବହୁଜନ ସମାଜ ପାର୍ଟିର ସଭ୍ୟ କଲେ, କେବଳ ସଭ୍ୟ କଲେ ନୁହେଁ ତାଙ୍କୁ ପାର୍ଲ୍ୟାମେଣ୍ଟ ପାଇଁ ପ୍ରାର୍ଥୀ କଲେ ମଧ୍ୟ । ଥରେ ପରାଜୟ ପରେ ଫୁଲନ ମିର୍ଜାପୁରରୁ ଜୟଲାଭ କଲେ ।

ଜେଲଖାନାରୁ ୧୧ ବର୍ଷ ପରେ ସେ ଯେତେବେଳେ ଜେଲରୁ ଖଲାସହେଲେ, ସେତେବେଳେ ତାଙ୍କ ଉପରେ ପୁସ୍ତକ ପ୍ରକାଶିତ ହେଲା 'ବ୍ୟାଣ୍ଡିଟ୍ କୁଇନ୍' ଏବଂ ପରେ ଶେଖର ତା' ଉପରେ ଚଳଚିତ୍ର ପ୍ରସ୍ତୁତ କଲେ । ଏହି ଚଳଚିତ୍ରର ନାୟିକା ସୀମା ବିଶ୍ୱାସ ଏପରି ଜୀବନ୍ତ ଅଭିନୟ କଲେ ଯେ ଫୁଲନଦେବୀଙ୍କ କହିବାନୁଯାୟୀ ସତେ ଯେପରି ସେ ନିଜେ ଅଭିନୟ କରୁଛନ୍ତି ବୋଲି ତାଙ୍କର ମନେହେଲା । ଏହା ଆଣିଦେଲା ତାଙ୍କ ପାଇଁ ପ୍ରଭୂତ ସମ୍ମାନ ଏବଂ ଅର୍ଥ । ଏହି ଅର୍ଥ ତାଙ୍କର ମୃତ୍ୟୁ ପାଇଁ କାଳ ହୋଇଛି ବୋଲି ବର୍ତ୍ତମାନ ଅଭିଯୋଗ ହେଉଛି ।

ଉମେଦ ସିଂ ନାମକ ବ୍ୟକ୍ତି ଆପଣାର ପ୍ରଥମ ସ୍ତ୍ରୀକୁ ଆଇନ ଅନୁଯାୟୀ ଛାଡ଼ପତ୍ର ନଦେଇ ଫୁଲନଙ୍କୁ ବିବାହ କଲେ । ମାତ୍ର ମାସକ ତଳେ ଫୁଲନଦେବୀ ଜଣେ ମନ୍ତ୍ରୀଙ୍କ ପାଖରେ ଅଭିଯୋଗ କରୁଥିଲେ ଯେ ସେ ଅସୁସ୍ଥ ଏବଂ ତାଙ୍କର ପରିବାରବର୍ଗ ତାଙ୍କୁ ଲୁଣ୍ଠନ ଏବଂ ହଇରାଣ କରିଛନ୍ତି । ଏହି ପରିବାରବର୍ଗ ଭିତରେ କ'ଣ ଉମେଦ ସିଂ ଅନ୍ତର୍ଭୁକ୍ତ ? ନା ଏଇ ପରିବାରବର୍ଗ ଭିତରେ ତାଙ୍କର ପିତାଘରର ପରିବାର ଅନ୍ତର୍ଭୁକ୍ତ ? ଏଇସବୁ ପ୍ରଶ୍ନ ତାଙ୍କର ହତ୍ୟାକୁ କ୍ରମଶଃ ରହସ୍ୟାବୃତ କରୁଛି । ଉମେଦ ସିଂକୁ ଛାଡ଼ପତ୍ର ଦେବାପାଇଁ ଦରଖାସ୍ତ ବି ଦିଆ ସରିଥିଲା କିନ୍ତୁ କୋର୍ଟରେ ଏହା ପଡ଼ିବାଦିନ ଫୁଲନ୍ ଉପସ୍ଥିତ ନଥିଲେ ।

କୁହାଯାଏ ଯେ ଫୁଲନ୍ ବର୍ତ୍ତମାନ ଦଶକୋଟି ଟଙ୍କାର ମାଲିକ ଏବଂ ଏହା ହିଁ ତାଙ୍କ ପାଇଁ କାଳ ହୋଇଛି । ଫୁଲନର ହତ୍ୟାର ଅଭିଯୁକ୍ତ ପଙ୍କଜର ବୟାନ ଅନୁଯାୟୀ

ସେ ବେହମାଇ ହତ୍ୟାକାଣ୍ଡର ପ୍ରତିଶୋଧ ନେଇଛି । କିନ୍ତୁ ଏହି କାରଣକୁ କେହି ଗ୍ରହଣ କରି ପାରୁନାହାନ୍ତି ।

ହତ୍ୟାକାଣ୍ଡ ଘଟିଲା ଦିନ ଗୋଟାଏ ବେଳେ । ଫୁଲନଙ୍କ ଘର ୪୪, ଅଶୋକା ରୋଡ଼ରେ । ଏହି ଘର ପାର୍ଲ୍ୟାମେଣ୍ଟର ଅନତି ଦୂରରେ ଅବସ୍ଥିତ । ଦିଲ୍ଲୀ ସହରରେ ଛଅଶହ ସଶସ୍ତ୍ର ପୋଲିସ ଗାଡ଼ି ଦିନରାତି ଚବିଶ ଘଣ୍ଟା ପଇଁତରା ମାରେ । ତେବେ ଏମାନଙ୍କ ଭିତରୁ ଅଧା କେବଳ ବ୍ୟବହୃତ ହୁଏ ଅନ୍ୟ କାମରେ ବୋଲି ଅଭିଯୋଗ । ଏହି ଅଂଚଳ ଏକ ଭି.ଭି.ଆଇ.ପି. ଅଂଚଳ । ଯଦି ଏଇଠି ଜଣେ ପାର୍ଲ୍ୟାମେଣ୍ଟ ସଭ୍ୟର ଏଇ ଭାଗ୍ୟ ହୁଏ, ତା' ହେଲେ ସାଧାରଣ ନାଗରିକର ଜୀବନ କେତେ ନିରାପଦ ?

ଫୁଲନ ଦେବୀ ନାହାନ୍ତି । ସେ ଥିଲେ ନାରୀ ପ୍ରତିହିଂସାର ପ୍ରତୀକ, ଦଳିତ ମଣିଷର ଭାଗ୍ୟର ପ୍ରତୀକ । ତାଙ୍କର ଜୀବନରେ ସେ ପ୍ରତିହିଂସାର ସ୍ୱାଦ ଶିଖାଇ ଦେଇ ଯାଇଛନ୍ତି ଦଳିତମାନଙ୍କୁ, ନାରୀମାନଙ୍କୁ ।

ତାଙ୍କର ହତ୍ୟା ପାଇଁ କିଏ ଦାୟୀ ତା' ପୁଲିସର ଅନୁସଂଧାନରୁ ଜଣାପଡ଼ିବ । କିନ୍ତୁ ହତ୍ୟାକାରୀ ଯିଏହେଉନା କାହିଁକି, ଯେଉଁ କାରଣରୁ ହେଉନା କାହିଁକି, ତାହା ଫୁଲନ ଦେବୀର ପ୍ରଭାକୁ ମଳିନ କରିପାରିବ ନାହିଁ ।



# ଚିତ୍ରଗୁପ୍ତର ଚିର ବିଦାୟ

ଚିତ୍ରଗୁପ୍ତ ବଂଶୀଧର ମିଶ୍ର ଆଉ ନାହାନ୍ତି । ଖବରକାଗଜର ପୃଷ୍ଠାରୁ ହିଁ ଏ ସଂବାଦ ମିଳିଲା । କାରଣ ଏ ସଂବାଦ ଘଟିଲା ଅଚାନକ । ସେ ଯାଇଥିଲେ ଏକ ସଭାକୁ । ଆଲୋଚନା ଟିପିବା ପାଇଁ । ଫେରିଥିଲେ ଘରକୁ ଦି'ପହର ଖରାରେ । ପ୍ରସ୍ତୁତ ହେଉଥିଲେ ଯିବାପାଇଁ ଉପରବେଳା ସଭାକୁ । କାରଣ ସେ ସଭାରେ ସେ କବିତା ଆବୃତ୍ତି କରିବେ । କୌଣସି ବାରଣ ମାନୁ ନଥିଲେ । କେବେ ତ ମାନି ନାହାନ୍ତି । ଆଜି ମାନିବେ କାହିଁକି ? କିନ୍ତୁ ମହାକାଳକୁ ସମସ୍ତେ ମାନିବାକୁ ବାଧ । ଖାଇ ହାତ ଧୋଉଛନ୍ତି । ପଡ଼ି ଅଚେତ ହୋଇଗଲେ ଏବଂ ଆଉ ତାଙ୍କର ଚେତା ଫେରିଲା ନାହିଁ । ମହା ଚିତ୍ରଗୁପ୍ତର ପାଞ୍ଜି (ଯଦି ଥାଏ) ତାଙ୍କୁ ଡାକି ନେଇଗଲା ସେଇଠାକୁ ଯେଉଁଠାରୁ ଆଉ କେହି କେବେ ଫେରି ନାହାନ୍ତି ।

ବଂଶୀଧର ମିଶ୍ରଙ୍କୁ ସମସ୍ତେ ଜାଣନ୍ତି ଏଇ ସହରରେ । ସବୁ ସଭା ସମିତିରେ ତାଙ୍କୁ ଦେଖିବାକୁ ମିଳେ, ତାଙ୍କର ପାଞ୍ଜି ସହିତ । ଅଧାମୋଡ଼ା ଫୁଲପ୍ୟାଣ୍ଟ, ଦେହରେ ହାୱାଇ, ହାତରେ ଏକ ମୋଟା ପୋଥି । ସେ ଟିପିବେ ବିବରଣୀ । ଦଳମତ ଗୋଷ୍ଠୀର ବିବାଦ ନାହିଁ, ସଭାର ବିଷୟବସ୍ତୁ ଗୁରୁତ୍ୱପୂର୍ଣ୍ଣ ହେଲେ ହିଁ ହେଲା । ସେ ଟିପିବେ ଏବଂ ଫେରିବେ ତାଙ୍କର ସାଇକେଲରେ, ଏକ ବ୍ୟାଗରେ ତାଙ୍କର ବିଶାଳ ପୋଥି ସହିତ । ଅନେକ ସମୟରେ ସାଇକେଲକୁ ଗଡ଼ାଇ ଗଡ଼ାଇ ସେ ଯାଆନ୍ତି ରାସ୍ତାରେ, ପଚାରିଲେ କହନ୍ତି, ଚାଲିକରି ଯିବା ତାଙ୍କର ଅଭ୍ୟାସ, ସଉକ । କିନ୍ତୁ ବାଲାନ୍ସ ରଖିବା ପାଇଁ ସେ ସାଇକେଲକୁ ହିଁ ସମ୍ବଳ କରନ୍ତି । ମଣିଷ ଦୁର୍ମୂଲ୍ୟ ଏବଂ ଭରସା କରିହୁଏନା, ସାଇକେଲ ଇକନମିକ୍ ଏବଂ ନିର୍ଭରଶୀଳ ।

ବର୍ଷ ବର୍ଷ ଧରି ସେ ଟିପି ଆସିଛନ୍ତି ସଭ୍ୟମାନଙ୍କର ବିବରଣୀ । ବହିର ରଂଗ ବଦଳିଛି କିନ୍ତୁ ସାଇଜ ବଦଳି ନାହିଁ । କେତେଦିନ ଏଇପରି ଚାଲିବ ? ପଚାରିଲେ ହସି ହସି କହନ୍ତି, ଦିହରେ ଜୀବ ଥିବାଯାଏ ।

ଏସବୁକୁ କ'ଣ ପ୍ରକାଶ କରିବାର ଯୋଜନା କିଛି ରଖିଛନ୍ତି ? କହନ୍ତି ଯେ ପ୍ରଥମ ଖଣ୍ଡ ପାଇଁ ଯୋଜନା ହୋଇ ସାରିଛି । ସେଇଥିରୁ ଜାଣିହେବ କଟକ ସହରର 'ପାଣିପାଗ' । କିନ୍ତୁ ସେଇ ପ୍ରଥମ ଖଣ୍ଡ ପ୍ରକାଶିତ ହେବା ପାଇଁ ସେ ରହିଲେ ନାହିଁ । ଏହା

ଆଉ ଛପା ହୋଇପାରିବ କି ନାହିଁ ମୋର ସନ୍ଦେହ । କିନ୍ତୁ ସେଇଆ ହୁଅନ୍ତା ତାଙ୍କ ପାଇଁ ପ୍ରକୃତ ଶ୍ରଦ୍ଧାଞ୍ଜଳି ।

ବଂଶୀଧର ମିଶ୍ର ଜଣେ କବି । କବିତା ପଢ଼ିବାର ସାମାନ୍ୟ ସ୍କୋପ ପାଇଲେ ସେ ନିଶ୍ଚୟ କବିତାଟିଏ ପଢ଼ିବେ, ନିଜସ୍ୱ ଲେଖା । ଏଭଳି ବ୍ୟକ୍ତିଟିଏ ମିଳିବା କଠିନ । କବିତା, କବିତା ପାଇଁ ନୁହେଁ, କବିତା ହେଉଛି ଟପିକାଲ । କୌଣସି ବିଷୟବସ୍ତୁ ଉପରେ ଆଧାରିତ, କବିତାର ମାଧୁର୍ଯ୍ୟ ନୁହେଁ, କବିତାରେ ରୂପ ପାଇଥିବା ତାଙ୍କର ନିଷ୍ଠା, ଯାହା ଉପରେ କବିତା ଲେଖା ଯାଇଛି ସେଥିପ୍ରତି ତାଙ୍କର ଅଙ୍ଗୀକାର, ଯେଉଁ ବ୍ୟକ୍ତି ଉପରେ କବିତା ଲେଖା ଯାଇଛି ସେଇ ଲୋକ ପ୍ରତି ତାଙ୍କର ଦରଦ, ସେ କବିତାଗୁଡ଼ିକରୁ ବାରିହୋଇ ପଡ଼େ ।

ମଝିରେ ମଝିରେ କବିତା ବହିଟିଏ ଆଣିଦେବେ ଉପହାର ଭାବରେ । ତାକୁ ବାଣ୍ଟିବେ ଅକୁଣ୍ଠିତ ଚିତ୍ତରେ । କବିତା ପୁସ୍ତକକୁ ଦେଖିଲେ ମୋର ମନ ନଇଁଯାଏ । କି ନିଷ୍ଠା ଏଇ ସାଧାରଣ ମଣିଷଟିର !

କୌଣସି ସଭାସମିତିରେ ତାଙ୍କର ଅନୁପସ୍ଥିତି ଦେଖିନାହିଁ । କି ଦରଦ ସଭା ସମିତି ପାଇଁ ଏଇ ମଣିଷଟିର ? ସଭାକୁ ଆସିବେ । କେବେ ସଭା ମଝିରୁ ଉଠିଯିବେ ନାହିଁ । କଦାପି ସଭାକୁ ଡେରିରେ ଆସିବେ ନାହିଁ । ସେଗୁଡ଼ାକ ବଡ଼ଲୋକଙ୍କ କାମ । ଅନେକ ସଭାରେ ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି । ହାତରେ ସେଇ ପୋଥି । ତାଙ୍କୁ ଲୋକେ ଡାକନ୍ତି ସମ୍ମାନରେ, ଶ୍ରଦ୍ଧାରେ— କଟକ ସହରର ଚିତ୍ରଗୁପ୍ତ । ସେ ହସି ଦିଅନ୍ତି କିନ୍ତୁ କେବେ ତାର ପ୍ରତ୍ୟୁତ୍ତର ଦିଅନ୍ତି ନାହିଁ । ସତରେ ବିଚିତ୍ର ମଣିଷଟିଏ !

ଜୀବିକା ଥିଲା କିଲଟରୀ କିରାନୀ । ଘର ଖଣ୍ଡିଏ କରିଥିଲେ ପଟ୍ଟାପୋଲ ଭିତରେ । ତାଙ୍କୁ ଦେଖିଲେ ମୋର ମନକୁ ଆସେ ଦେବାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟ, କର୍ମବୀର ଗୌରୀଶଙ୍କର ଏବଂ ସମାଜ-ସଂସ୍କାରକ ବୈରାଗୀ ମିଶ୍ରଙ୍କ କଥା ।

ସେମାନେ ସମସ୍ତେ କିରାନୀ ଥିଲେ । ତାହା ଥିଲା ପେଷା, କିନ୍ତୁ ନିଶା ଥିଲା ସ୍ୱତନ୍ତ୍ର । ଏଭଳି କେତୋଟି 'କିରାନୀ' ଆମ ଦେଶରେ ଜନ୍ମ ହୋଇଛନ୍ତି ? ଯେଉଁମାନଙ୍କର ପେଷା ଥିଲା ଗୋଟାଏ, କିନ୍ତୁ ନିଶା ଥିଲା ସ୍ୱତନ୍ତ୍ର । ବଂଶୀଧର ମିଶ୍ର ସେ ସ୍ତରକୁ ଯାଇ ପାରିଛନ୍ତି କି ନାହିଁ ତାହା ସ୍ୱତନ୍ତ୍ର କଥା । କିନ୍ତୁ ନିଷ୍ଠାରେ ତ କିଛି କମ ନଥିଲା, ନିଶା ବି କିଛି କମ ନଥିଲା । ସମୟ କୁଳାଇଲା ନାହିଁ, ସେଥିପାଇଁ ତ ସେ ଦାୟୀ ନୁହନ୍ତି ।

ଏଭଳି ମଣିଷଟିଏ ପାଇ ଆମର ଜାତି, ଦେଶ ଗର୍ବିତ । ସେ ଆଉ ନାହାନ୍ତି । ତାଙ୍କ ଭଳି ଚିତ୍ରଗୁପ୍ତ ଆଉ ମିଳିବେ ନାହିଁ । ସେ ଆମ ପୁରୁଷର ସମସ୍ତଙ୍କର ସ୍ମରଣୀୟ ହୋଇ ରହିବେ । ସଭାଟିଏ ହେଲେ ଆମେ ତାଙ୍କୁ ଝୁରିବା । ସଭା ପୂରା ପୂରା ଲାଗିବ ନାହିଁ । ସେଇ ତ ତାଙ୍କର ଜୀବନର ସାଫଲ୍ୟ ।



# ଜୀବନର ଶେଷ ହୁଇସିଲ୍

୧୯୯୯ ମସିହା ଫେବୃଆରୀ ୫ ତାରିଖ । ହଠାତ୍ ଶୁଣିବାକୁ ପାଇଲି ବିଜନ ପାତ୍ର ଆଉ ନାହାନ୍ତି । ମାତ୍ର ଦୁଇଦିନ ତଳେ ସେ ମୋ ସାଂଗରେ ବହୁ ସମୟଧରି ଫୋନରେ କଥାବାର୍ତ୍ତା ହୋଇଛନ୍ତି । ସ୍ମରଣ କରିଛନ୍ତି ବାଞ୍ଛାନିଧି ହୋତା, ବିଜୁ ପଟ୍ଟନାୟକ, ଜର୍ଜ ପଟ୍ଟନାୟକ, ଫେଲୁଦା ପ୍ରଭୃତିଙ୍କ କଥା । କିନ୍ତୁ ମୃତ୍ୟୁ ଅନେକଙ୍କ ପାଇଁ ଆସେ ଅଚାନକ । ହଠାତ୍ ସେମାନଙ୍କର ମୃତ୍ୟୁ ସାଂଗରେ ଭେଟ ହୋଇଯାଏ । ମୃତ୍ୟୁ ତାଙ୍କୁ ନେଇଯାଏ କୋଳାଗ୍ରତ କରି । କାହାରିକୁ କଷ୍ଟ ଦେଇନାହାନ୍ତି, ନିଜେ କଷ୍ଟ ପାଇ ନାହାନ୍ତି । ସକାଳୁ ବଛଣା ଛାଡ଼ି ଘର ବାହାରକୁ ବାହାରିଲା ବେଳକୁ ହଠାତ୍ ତଳେ ପଡ଼ିଗଲେ ଏବଂ ତା' ପରେ ଆଉ ନାହାନ୍ତି । ବହୁତ ଖେଳ ଶେଷରେ ସେ ହୁଇସିଲ୍ ଦେଇଛନ୍ତି ଖେଳର ସମାପ୍ତି ଘୋଷଣା ସୂଚକ ହୁଇସିଲ୍ । ଆଜି ଜୀବନର ଶେଷ ହୁଇସିଲ ଯେ କେତେବେଳୁ ବାଜି ସାରିଲାଣି ଏକଥା ଜାଣିବା ସମ୍ଭବ ହୋଇନାହିଁ ।

ମୋର ମନେପଡୁଛି ବିଜନ ବାବୁଙ୍କ ସାଂଗରେ ମୋର ପ୍ରଥମ ସାକ୍ଷାତ ୧୯୪୨ କି ୧୯୪୩ ମସିହାରେ । ତାଙ୍କର ପରିବାର ଆମର ପଡ଼ୋଶୀ ଥିଲେ ସମ୍ବଲପୁରରେ । ଓଡ଼ିଶା ସେକ୍ରେଟେରିଏଟ୍ କଟକରୁ ସମ୍ବଲପୁର ଉଠିଯାଇଥିଲା ଯୁଦ୍ଧ ସମୟରେ । ବିଜନବାବୁ ସେଇଠାକୁ ଯାଉଥିଲେ ନା ସେଠାରେ ବାପାଙ୍କ ପାଖରେ ରହିଥିଲେ ମୋର ମନେପଡୁ ନାହିଁ । ସବୁ ଭାଇଯାକ ଖେଳ ଓ କଳାରେ ଓସ୍ତାଦ୍ ଥିଲେ । ଲାଲା, ଜିତୁ ମୋର କନିଷ୍ଠ । ବିଜନବାବୁ ବହୁତ ବଡ଼, ପୂର୍ଣ୍ଣବାବୁ ମୋର କିଛି ଉପର କ୍ଲାସରେ ପଢୁଥିଲେ ।

ତାଙ୍କର ବାପା ବିପିନ ପାତ୍ର ପାଟଣା ସେକ୍ରେଟେରିଏଟରେ କାମ କରୁଥିଲେ ଏବଂ ତାଙ୍କର ପ୍ରଥମ ଶିକ୍ଷାଦୀକ୍ଷା ସେଇଠି । ତାଙ୍କର ଦାଦା ପ୍ରଭାତ ପାତ୍ର ଅନୁଗୋଳରେ ଏସ୍.ଡି.ଓ. (ସିଭିଲ) ଥିଲେ ଏବଂ ବିଜନବାବୁ ସେଇଠାରେ ଦାଦା (ସେମାନେ କାକା ଡାକନ୍ତି) ପାଖରେ ରହି ପାଠ ପଢୁଥିଲେ ।

ପିଲାଦିନରୁ କ୍ରୀଡ଼ା ଓ କଳା ତାଙ୍କର ସହଚର । ଖେଳନ୍ତି ଯେପରି, ଗୀତ, ନାଟକ ପ୍ରତି ସଉକ୍ ମଧ ସେଇପରି । ଫୁଟବଲ ଖେଳିବା ସହିତ ସେ ରେଫରୀ ମଧ ଥିଲେ ଏବଂ ରେଫରୀ ଭାବରେ ବହୁ ଜାତୀୟ, ଆନ୍ତର୍ଜାତିକ ମ୍ୟାଚ୍‌ରେ ତାଙ୍କର ରେଫରୀ କାର୍ଯ୍ୟ

ପ୍ରଶଂସିତ ହୋଇଛି । ଖେଳାଳୀ, ରେଫରୀ ଛଡ଼ା ବିଜନବାବୁ ଜଣେ ଦକ୍ଷ ଖେଳ ଉଦ୍‌ଘୋଷକ ବା କମେଣ୍ଟର (Commentator) ମଧ ଥିଲେ । ତାଙ୍କର ଷ୍ଟେଣ୍ଟୋରିଆନ୍ (Stentorian) କଣ୍ଠ ମାଇକ୍‌କୁ ବେଶ୍ ସୁହାଉଥିଲା ଏବଂ ରନିଂ କମେଣ୍ଟିଙ୍ଗ କରିବାରେ ତାଙ୍କର ପାରଦର୍ଶିତା ଥିଲା ପ୍ରଭୁତ ।

ବିବାହ କରିଥିଲେ ସୁତାହାଟ ନିବାସୀ ସୁଜନ ଓ ନଳିନୀ ପ୍ରହରାଜଙ୍କ ଏକମାତ୍ର କନ୍ୟା ସ୍ନେହ ପାତ୍ରଙ୍କୁ । ସମାଜସେବା ପାଇଁ ସ୍ନେହପାତ୍ରଙ୍କର ଇଚ୍ଛାକୁ କେବେ ବାଧାଦେଇ ନାହାନ୍ତି ବିଜନବାବୁ, ବରଂ ଉତ୍ସାହିତ କରିଛନ୍ତି । ତାଙ୍କରି ପ୍ରେରଣା, ଉତ୍ସାହ ଏବଂ ସହଯୋଦ୍ଧୃତ୍ୱ ଯୋଗୁଁ ସ୍ନେହ ପାତ୍ର ଜଣେ ପ୍ରତିଷ୍ଠିତ ସମାଜସେବୀ ।

୧୯୪୮ ମସିହା ଜାନୁଆରୀ ୨୮ ତାରିଖରେ କଟକର ମଧୁପୁର କୋଠିରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠିତ ହେଲା । ଡକ୍ଟର ମହତାବଙ୍କ ସୁପାରିଶ କ୍ରମେ ବିଜନବାବୁ ଆକାଶବାଣୀର ଉଦ୍‌ଘୋଷକ ଭାବରେ ଯୋଗଦେଲେ । ତାଙ୍କର ଗମ୍ଭୀର କଣ୍ଠ ଏବଂ ନାଟକୀୟ ଭଂଗୀରେ କଥନ ତାଙ୍କୁ ଜନପ୍ରିୟ କରିସାରିଥିଲା । ମହତାବବାବୁଙ୍କ ସାହାଯ୍ୟ ତାଙ୍କ ପାଇଁ ଜୀବନର ଏକ ନୂତନ ଦିଗ୍‌ବଳୟ ଉନ୍ମୋଚନ କଲା ।

ବିଜନବାବୁ ଓଡ଼ିଶା ଓଲମ୍ପିକ୍ ଆସୋସିଏସନ୍‌ର ସଭ୍ୟ ଭାବରେ ବାରବାଟୀ ଷ୍ଟାଡ଼ିଅମ ନିର୍ମାଣ ପାଇଁ ଆପଣାର ଅବଦାନ ଦେଇ ଯାଇଛନ୍ତି । କ୍ରୀଡ଼ାରେ ଭୈରବ ମହାନ୍ତି ଯୁଗର ସେ ଅନ୍ୟତମ ସଭ୍ୟ । ଓଡ଼ିଶା ବାଡ଼ମିଣ୍ଟନ ଆସୋସିଏସନର ସେ ବହୁବର୍ଷ ଧରି ସଂପାଦକ ଥିଲେ ଏବଂ ନିଖିଳ ଭାରତ ବାଡ଼ମିଣ୍ଟନ ଆସୋସିଏସନରେ କିଛିକାଳ ଉପସଭାପତି ମଧ ଥିଲେ ।

ସବୁ ଜୀବନ ପରି ତାଙ୍କ ଜୀବନରେ ମଧ ସରକାରୀ କାର୍ଯ୍ୟରୁ ଅବସର ନେବାର ସମୟ ଉପସ୍ଥିତ ହୋଇଥିଲା । ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲେ ସତ୍ୟ କିନ୍ତୁ କର୍ମରୁ ଅବସର ନେଲେ ନାହିଁ । ନାଟକ କରିବା ପ୍ରତି ପିଲାଦିନର ସଉକ ମେଣ୍ଟିଲା ବର୍ତ୍ତମାନ । ବହୁ ନାଟକ ଆୟୋଜନ କରି ସେ ସଫଳତାର ସହିତ ଅଭିନୟ କରିଛନ୍ତି ବହୁ ନାଟକରେ । 'ସ୍ୱପ୍ନ-ସାଗର' ଚଳଚିତ୍ରରେ ସ୍ୱଳ୍ପ ସମୟ ପାଇଁ ଅଭିନୟ କରିଛନ୍ତି କିନ୍ତୁ ସେ ଲାଇନ୍‌ଟା ତାଙ୍କୁ ଖାପ ଖୁଆଇଲା ନାହିଁ ବା ସୁହାଇଲା ନାହିଁ ।

୧୯୧୯ ମସିହା ଜୁଲାଇ ୨୨ ତାରିଖରେ ତାଙ୍କର ଜନ୍ମ । ସମୟ ଅତିକ୍ରାନ୍ତ ହେବାକୁ ଲାଗିଲା । ଧୀରେ ଧୀରେ ସେ ବିଭିନ୍ନ ଦାୟିତ୍ୱରୁ ଆପଣାକୁ ନିଷ୍କ୍ରାନ୍ତ କରିନେଲେ । ଖ୍ରୀଷ୍ଟ କଲେଜିଏଟ ସ୍କୁଲ ସହିତ ସେ ନିବିଡ଼ ଭାବରେ ଜଡ଼ିତ ଥିଲେ । ଏହି ବିଦ୍ୟାଳୟର ସଂପାଦକ ଭାବରେ ସେ ଅନେକ କାର୍ଯ୍ୟ କରିଯାଇଛନ୍ତି ।

ତା' ପରେ । ତା' ପରେ ସେଇଦିନ ଆସିଗଲା ଅଚାନକ । କାଲି ଥିଲେ, ଆଜି ନାହାନ୍ତି । ସେ ହସହସ ମୁହଁ, ଦରଦୀ ଭାଷା, ସ୍ନେହସିକ୍ତ ବ୍ୟବହାର ହଠାତ୍ ଉଭେଇଗଲା ।



# ସ୍ୱାଧୀନତା ସଂଗ୍ରାମର ମହାରଥୀ–
# ବିଜୟ ପାଣି

ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ମହାରଥୀ ବିଜୟ ପାଣି ଆଉ ନାହାନ୍ତି । ଏପ୍ରିଲ ଚାରି ତାରିଖ, ୧୯୯୯ ମସିହା ରାତି ଦେଖିବାକୁ ସେ ଆଉ ନାହାନ୍ତି । ଜୀବନର ରାତି ଘୋଟିଯାଇଛି, ଏ ରାତି ତାଙ୍କ ପାଇଁ ପାହିବ ନାହିଁ ।

ବିଜୟ ପାଣି ଜନ୍ମ ହୋଇଥିଲେ ୧୯୧୮ ମସିହା ସେପ୍ଟେମ୍ବର ୧ ତାରିଖରେ ସିଂହଭୂମିର ଚକ୍ରଧରପୁରରେ । ଜାତୀୟତାବାଦ ତାଙ୍କର ରକ୍ତରେ ଆସି ଯାଇଥିଲା । ପିତା କାହ୍ନୁଚରଣ ପାଣି ସକ୍ରିୟ କଂଗ୍ରେସ କର୍ମୀ ଥିଲେ ଏବଂ କିଛିକାଳ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟିର ସଭାପତି ବି ହୋଇଥିଲେ । ସେତେବେଳେ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟି ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ ଥିଲା । ଭାରତୀୟ ଜାତୀୟ କଂଗ୍ରେସର ଭାଷା ଭିତ୍ତିରେ ପ୍ରଦେଶ ଗଠନକୁ ଗ୍ରହଣ କରିଥିଲେ ଏବଂ ସେଇ କାରଣରୁ ସିଂହଭୂମି ବ୍ରିଟିଶ ଶାସନାଧୀନ ବିହାରର ଅନ୍ତର୍ଭୁକ୍ତ ହୋଇଥିଲେ ହେଁ ଭାରତୀୟ ଜାତୀୟ କଂଗ୍ରେସ ଆପଣାର ନୀତି ଦୃଷ୍ଟିରୁ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟିକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ କରିଥିଲେ । ଦୁଃଖର ବିଷୟ ସ୍ୱାଧୀନତା ପରେ ନିଖିଳ ଭାରତ କଂଗ୍ରେସ କମିଟି ଉକ୍ତ ଅଙ୍ଗୀକାରରୁ ଓହରିଲା ଏବଂ ରାଜନୈତିକ ତଥା ଅର୍ଥନୈତିକ ଚାପ ଆଗରେ ମୁଣ୍ଡ ନୁଆଁଇଲା । ବିଜୟ ପାଣି ମାତ୍ର ୧୦ ବର୍ଷ ବୟସରେ ସତ୍ୟାଗ୍ରହରେ ଯୋଗଦେଇ ପାଠ ଛାଡ଼ିଥିଲେ । ପାଠ ସିନା ପାଠଶାଳାରେ ପଢ଼ିଲେ ନାହିଁ କିନ୍ତୁ ଜୀବନର ରାଜପଥରେ ସଞ୍ଚିତ ଅଭିଜ୍ଞତା ତାଙ୍କୁ ଓଡ଼ିଶାର ପ୍ରମୁଖ ନେତାମାନଙ୍କର ତାଲିକାକୁ ନେଇ ଯାଇଥିଲା । ଚତୁର୍ଥ ଶ୍ରେଣୀରେ ପଢ଼ିଲାବେଳେ ପାଠ ଛାଡ଼ିଥିଲେ ହେଁ ପରବର୍ତ୍ତୀ କାଳରେ ସେ ମାଟ୍ରିକ ବି ପାଶ କରିଯାଇଥିଲେ । ସେତିକିବେଳୁ ତାଙ୍କର ସାଂଗଠନିକ ଶକ୍ତିର ପରିଚୟ ମିଳିଥିଲା ଯାହା ପରେ ଶାଣିତ ହୋଇ ତାଙ୍କୁ ଏକ ଦକ୍ଷସଂଗଠକ ଭାବରେ ଗଢ଼ି ତୋଳିଥିଲା ।

ସମୟ ଥିଲା କଠୋର । ଦେଶରେ ଚାଲିଥିଲା ହିଂସ୍ର ରାଜନୀତି ବ୍ରିଟିଶ ସରକାରଙ୍କର । ଏଣେ ବିହାରରେ କିଛି ଶକ୍ତି ଲାଗିଥିଲେ ଓଡ଼ିଆ ଭାଷାକୁ, ସଂସ୍କୃତିକୁ ଲୋପ କରିବା ପାଇଁ ସିଂହଭୂମିରୁ । ସେମାନଙ୍କର ପୃଷ୍ଠପୋଷକ ଥିଲେ ଅର୍ଥନୈତିକ ଏବଂ ରାଜନୈତିକ ଶକ୍ତିର ଧ୍ୱଜାଧାରୀମାନେ । ପୃଷ୍ଠପୋଷକତା ମଧ୍ୟ ମିଳୁଥିଲା ବ୍ରିଟିଶ ସରକାରଙ୍କଠାରୁ । ତମିସ୍ରା ଆହୁରି ଗାଢ଼ ହୋଇଯାଇଥିଲା ସେମାନଙ୍କ ପାଇଁ । ପାଖକୁ ଲାଗି ରହିଥିଲା ଦୁଇଟି ଗଡ଼ଜାତ ଷଢ଼େଇକଳା ଏବଂ ଖରସୁଆଁ । ଓଡ଼ିଶା ସହିତ ସଂଯୋଗ ଥିଲା ଏଇ ଦୁଇଟି ଗଡ଼ଜାତ ଦେଇ । ସେଠାକାର ପ୍ରଜାମାନେ ଗଡ଼ଜାତୀ ଶାସନର ବିଲୋପ ପାଇଁ ସଂଗ୍ରାମରେ ଲିପ୍ତ ଥିଲେ । ସେମାନଙ୍କର ମୁକ୍ତି ସଂଗ୍ରାମ ସହିତ ମଧ୍ୟ ବିଜୟ ପାଣି ଜଡ଼ିତ ହୋଇଯାଇଥିଲେ ସେହି କାଳରୁ ।

ସିଂହଭୂମିର ଜାତୀୟତାବାଦୀ ଓଡ଼ିଆମାନଙ୍କ ପାଇଁ ତିନି ସାମ୍ମୁଖ୍ୟରେ ସଂଗ୍ରାମ କରିବାକୁ ପଡ଼ିଥିଲା ଏବଂ ବିଜୟ ପାଣି ସେଇ ସଂଗ୍ରାମୀମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ । ଓଡ଼ିଶା ସହିତ ମିଶ୍ରଣ ପାଇଁ କାମକରୁଥିବା ଅନେକ ସେନାନୀ ସ୍ୱାଧୀନତା ଆନ୍ଦୋଳନରୁ ବିଚ୍ଛିନ୍ନ ହୋଇ ଯାଇଥିଲେ । ସେମାନଙ୍କ ସହିତ ଯୋଗଦେବାକୁ ବିଜୟ ପାଣି ରାଜିହୋଇ ନଥିଲେ । ବିନା ସ୍ୱାଧୀନତାରେ ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷିତ ହୋଇପାରିବ ନାହିଁ ବୋଲି ତାଙ୍କର ଦୃଢ଼ ମତଥିଲା । ଏହି ସଂଗ୍ରାମ ପାଇଁ ଆବଶ୍ୟକ ଥିଲା ବିଚକ୍ଷଣତା ଏବଂ ଦକ୍ଷତା । ବିଜୟ ପାଣି ଆପଣାର ସାଂଗଠନିକ ଦକ୍ଷତା ଯେପରି ପ୍ରତିପାଦିତ କରିଥିଲେ, ବିଚକ୍ଷଣତା ବି ସେଇପରି ।

ବିଜୟ ପାଣି ଭାରତୀୟ ଜାତୀୟ ଟ୍ରେଡ୍ ୟୁନିଅନ କଂଗ୍ରେସର ସଂଗଠନରେ ଜଡ଼ିତ ଥିଲେ ଏବଂ ଜଣେ ଶ୍ରମିକ ନେତା ଭାବରେ ତାଙ୍କର ଖ୍ୟାତି ଥିଲା ବେଶ୍ । ବ୍ରଜରାଜନଗର କାଗଜ କଳ, କୋଇଲା ଖଣି ତାଙ୍କର ଥିଲା ମୁଖ୍ୟ କର୍ମସ୍ଥଳୀ । ଏହି କାର୍ଯ୍ୟରେ ସେ କିନ୍ତୁ ବିବାଦୀୟ ହୋଇ ଉଠିଥିଲେ । ସମ୍ବଲପୁର ଅଂଚଳର ବହୁ କଂଗ୍ରେସ ନେତା ତଥା ଅଣ-କଂଗ୍ରେସ ନେତାଙ୍କର ପ୍ରବଳ ବିରୋଧର ସମ୍ମୁଖୀନ ହୋଇଥିଲେ । ବିଜୟ ପାଣି କିନ୍ତୁ ନରମା ବା ଉଦାରପନ୍ଥୀ ନେତା ନଥିଲେ । ବିବାଦକୁ ସେ ଏକପ୍ରକାର ସୁଖ ପାଉଥିଲେ ଏବଂ ବିବାଦ ତାଙ୍କୁ ଗୋଡ଼ାଉଥିଲା । ଶ୍ରମିକ ନେତା ଭାବରେ ସେ ଉଭୟ ମାଲିକ ଓ ଶ୍ରମିକଙ୍କର ବନ୍ଧୁ ଭାବରେ ପରିଚିତ ଥିଲେ । ଶ୍ରମିକ ଆନ୍ଦୋଳନ ଭିତରେ ସେତେବେଳକୁ ଅନେକ ଉଗ୍ରପନ୍ଥୀ କାମ କରୁଥିଲେ ଏବଂ ମାଲିକ ଶ୍ରେଣୀ ପ୍ରତି ଉଦାର ମନୋଭାବ ପୋଷଣ କରୁ ନଥିଲେ । ସମ୍ବଲପୁର ଜିଲ୍ଲା କଂଗ୍ରେସର କିଛି ନେତାମାନଙ୍କ ସହିତ ବିଜୟ ପାଣିଙ୍କର ମତଭେଦ ଥିଲା ତୀବ୍ର ।

ବିଜୟ ପାଣି ୧୯୪୧ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ ବିହାରରେ । ହଜାରିବାଗ ଜେଲରୁ ସେ ପୁଲିସ ଆଖିରେ ଧୂଳିଦେଇ

ଚାଲି ଯାଇଥିଲେ ସାହେବ ବେଶରେ ଚନ୍ଦନ ନଗର ଓ ପରେ ପଣ୍ଡିଚେରୀ, ଫରାସୀ ଉପନିବେଶକୁ ଏବଂ ସେଇଠାରୁ ଗୁପ୍ତରେ ଆନ୍ଦୋଳନ ପରିଚାଳନା କରୁଥିଲେ । ଏକ କୁଲି ବେଶରେ ଆସି ସେ ବେଶ୍ କିଛିଦିନ ଭୁବନେଶ୍ୱର କୁଲି ବସ୍ତିରେ କଟାଇଥିଲେ । ୧୯୪୭ ମସିହାରେ ଷଢ଼େଇକଳା-ଖରସୁଆଁର ଓଡ଼ିଶାରେ ମିଶ୍ରଣ ଦାବୀକରି ଜେଲ ଯାଇଥିଲେ । ଜେଲରୁ ଖଲାସ ହେଲା ପରେ ସେ ଆସି ସମ୍ବଲପୁରରେ ରହିଲେ ଏବଂ ଏହା ତାଙ୍କର କର୍ମସ୍ଥଳୀ ହୋଇଗଲା । ୧୯୫୨ ମସିହା ପର୍ଯ୍ୟନ୍ତ ସେ ସଂବିଧାନ ସଭାର ସଦସ୍ୟ ଥିଲେ, ପରେ ଝାରସୁଗୁଡ଼ା-ଲଇକେରା ନିର୍ବାଚନ ମଣ୍ଡଳୀରୁ ଦୁଇଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୦ରୁ ୧୯୬୨ ପର୍ଯ୍ୟନ୍ତ ସେ ଆଇଏନ୍‌ଟିୟୁସିର ଜାତୀୟ କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ଶ୍ରମିକମାନଙ୍କ ଭିତରେ ସକ୍ରିୟ ଭାବରେ କାର୍ଯ୍ୟ କରିଥିଲେ । ୧୯୬୨ ମସିହାରେ ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହୋଇଥିଲେ ଏବଂ ତାଙ୍କରି ନେତୃତ୍ୱରେ ଭୁବନେଶ୍ୱରରେ ଜାତୀୟ କଂଗ୍ରେସର ଅଧିବେଶନ ସଂଗଠିତ ହୋଇଥିଲା । ୧୯୬୪ ମସିହାରେ ସେ ସମ୍ବଲପୁରରେ ବୀର ସୁରେନ୍ଦ୍ର ସାଏ ନଗର ପ୍ରତିଷ୍ଠ କରିଥିଲେ ।

କାଳକ୍ରମେ କଂଗ୍ରେସ ସଂଗଠନରୁ ତାଙ୍କର ହାତମୁଠା ଶିଥିଳ ହୋଇଯାଇଥିଲା ଏବଂ ନୂତନ ପୀଢ଼ି ସହିତ ତାଙ୍କର ସଂପର୍କର ଉଷ୍ଣତା ହଜି ଯାଇଥିଲା । ପ୍ରତ୍ୟକ୍ଷ ରାଜନୀତିକୁ ସେ ଫେରିବା ପାଇଁ ଚେଷ୍ଟା କରିଥିଲେ ସର୍ବଭାରତୀୟ ନେତାମାନଙ୍କ ସାହାଯ୍ୟରେ କିନ୍ତୁ ତାହା ସଫଳ ହୋଇପାରି ନଥିଲା ।

ସେ ପ୍ରତ୍ୟକ୍ଷ ରାଜନୀତିରୁ ବିଦାୟ ନେଇ ସ୍ୱାଧୀନତା ସଂଗ୍ରାମୀ ସଂଗଠନ ସହିତ ଜଡ଼ିତ ଏବଂ ଏହାର ଓଡ଼ିଶା ଶାଖାର ସଭାପତି ଥିଲେ ।

ବଂଧୁବତ୍ସଳ ବିଜୟ ପାଣିଙ୍କର ଆତ୍ମୀୟତା ବି ବିଚିତ୍ର । ଅନେକ ବିରୋଧୀମାନଙ୍କ ସହିତ ତାଙ୍କର ଆତ୍ମୀୟତା ପ୍ରବଳ କିନ୍ତୁ ଅନେକ ସହଯୋଗୀମାନଙ୍କ ସହିତ ତାଙ୍କର ବ୍ୟକ୍ତିଗତ ସଂପର୍କ ଶୀତଳ । ଏଭଳି ମଣିଷ ଦେଖିବାକୁ ମିଳିବେ କ୍ୱଚିତ ।

''ଆସିଛ, ଖାଇକରି ଯିବ ନାହିଁ ? ନିଶ୍ଚୟ ଯିବ । ଭାତ ନ ହେଲେ ଅନ୍ତତଃ ଜଳଖିଆ । କହିବାର ଭଂଗୀ ଶାଣିତ ଏବଂ ବେଶ୍ ଗମ୍ଭୀର ।'' ଅନେକଥର ମୋତେ ଏଇପରି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଛି । ଏହା ସହିତ ରାଜନୈତିକ ମତବାଦର କୌଣସି ସଂପର୍କ ନାହିଁ । ଏହା ସେ ସବୁର ଉର୍ଦ୍ଧ୍ୱରେ ।

ଏଇପରି ଏକ ମଣିଷ ହଜିଯାଇ ପାଲଟି ଯାଇଛି ଇତିହାସ ।



# ବିଚିତ୍ର, ବର୍ଣ୍ଣାଢ଼୍ୟ, ବହୁଦର୍ଶୀ ପରୁଷର ବିଦାୟ

୧୯୯୯ ମସିହା ଜୁନ୍ ମାସ ଦୁଇ ତାରିଖ ସକାଳ । ଜହ୍ନଳନିଭ ରାତ୍ରିର ନିକଷରେ ସୁର ନନ୍ଦିନୀ ଉଷା ରୂପସୀର ଉଜ୍ଜ୍ୱଳ ହିମରେଖା ଅଙ୍କିତ ହେବା ସହିତ ପ୍ରଥିତଯଶା ଅଧ୍ୟାପକ ବିଧୁ ଭୂଷଣ ଦାସଙ୍କର ଜୀବନ-ସୂର୍ଯ୍ୟ ଅସ୍ତ ହୋଇଗଲା ଚିରଦିନ ପାଇଁ ।

ଅଧ୍ୟାପକ ବିଧୁଭୂଷଣ ଦାସଙ୍କ ପରି ବିଚିତ୍ର ମଣିଷଟିଏ ମିଳିବେ ନାହିଁ । ଇଂରାଜୀ ସୁଟ୍ ଏବଂ 'ବୋ', ଚିପା ଚିପା କୁଇନ୍ସ ଇଂଲିଶ, ମୁହଁରେ ହସର ଏକ ମ୍ଳାନ ରେଖା । ସେ ହେଲେ ଇଂରାଜୀ ସାହିତ୍ୟ ଅଧ୍ୟାପକ ବିଧୁଭୂଷଣ ଦାସ । ସତେ ଯେପରି ପିତା ୰ ଦୁର୍ଗାଚରଣ ଦାସଙ୍କ ସନ୍ତକ ! ଘରେ ସେଇ ମଣିଷଟିକୁ ଦେଖାଯାଏ ପାଟବସ୍ତ୍ର ପରିହିତ, ଚଣ୍ଡୀ ଉପାସକ, ନିରାମିଷାଶୀ ଏବଂ ସେଇ ଚିପା ଚିପା କଣ୍ଠରେ ବିଶୁଦ୍ଧ ଓଡ଼ିଆ । ହଠାତ୍ ଚମକ ଲାଗିବ ଏପରି ପାରାଡକ୍ସ ଲୋକ ମୁଁ ଖୁବ୍ କମ ଦେଖିଛି । ବାହାରେ ଦେଖିଲେ ମନେହେବ ସାହେବ ଖାଉଥିବେ ସାଇବ ଖାଦ୍ୟ । କିନ୍ତୁ ଖାଇବା ବିଚିତ୍ର ! କେତେ ସ୍ୱଳ୍ପ !

ଅଧ୍ୟାପକ ବିଧୁଭୂଷଣ ଦାସ, ପ୍ରସିଦ୍ଧ ପ୍ରଶାସକ ୰ ଦୁର୍ଗାଚରଣ ଦାସ ଏବଂ ୰ ନିର୍ମଳାଦେବୀଙ୍କ ପ୍ରଥମ ସନ୍ତାନ । ଜନ୍ମ ପୁରୀ ସହରରେ । ଦୁର୍ଗାଦାସ ପ୍ରଚଣ୍ଡ ପ୍ରଶାସକ ଥିଲେ ବ୍ରିଟିଶ ସରକାରଙ୍କ ସମୟରେ । ବ୍ରିଟିଶ କମିଶନରଙ୍କ ଅତ୍ୟନ୍ତ ପ୍ରିୟ ହୋଇଥିବାରୁ କମିଶନର ତାଙ୍କର ପ୍ରିୟ କୁକୁରର ନାମ ଦେଇଥିଲେ 'ଦୁର୍ଗାଦାସ' । ଏହା ୰ ଶଶି ଭୂଷଣ ରାୟ ତାଙ୍କର ଷାଠିଏ ବର୍ଷ ତଳର ଓଡ଼ିଶା ନିବନ୍ଧରେ ଉଲ୍ଲେଖ କରିଛନ୍ତି । ଇଂରେଜମାନେ ଭାରତୀୟମାନଙ୍କର ଠିକ୍ ଓଲଟା । ପ୍ରିୟ କୁକୁରକୁ ସେ ଆପଣାର ପ୍ରିୟ ବ୍ୟକ୍ତିମାନଙ୍କ ନାମରେ ନାମିତ କରନ୍ତି । ମାଆ ନିର୍ମଳା ଦେବୀ ସ୍ୱାମୀଙ୍କର ଠିକ୍ ଓଲଟା । କାବ୍ୟିକ, ସ୍ପର୍ଶକାତର ଏବଂ ଲେଖିକା । ଦୁଇ ଦୁଇଥର ସାହିତ୍ୟ ଏକାଡେମୀ ତାଙ୍କୁ ଆୱାର୍ଡ଼ ଦେଇଛି, ପୁରସ୍କୃତ କରିଛି ତାଙ୍କର ଲେଖା ପାଇଁ ।

ଏ ଦୁଇ ବୀପରିତ ଧର୍ମୀ ବ୍ୟକ୍ତିଙ୍କର ଚରିତ୍ରର ଛିଟା ପୁତ୍ରକନ୍ୟାମାନଙ୍କ ଭିତରେ ଦେଖାଯାଏ । ବିଧୁବାବୁଙ୍କର ବାରଟି ଭାଇଭଉଣୀ । ଭାଇ ଯାମିନୀ ମୋହନ

(ଅବସରପ୍ରାପ୍ତ ବିଦ୍ୟୁତ ଇଂଜିନିଅର, ଅବିବାହିତ), ଭଉଣୀ ପ୍ରିୟମ୍ବଦା (୰ ଭବକୃଷ୍ଣ ମହାନ୍ତିଙ୍କ ସ୍ତ୍ରୀ), ଭାଇ ଚଣ୍ଡୀଚରଣ (ଅବସରପ୍ରାପ୍ତ ପ୍ରାଣୀବିଜ୍ଞାନ ଅଧ୍ୟାପକ), ଭଉଣୀ ଅନସୂୟା (ଦେବୀପ୍ରସାଦ ମହାନ୍ତିଙ୍କ ସ୍ତ୍ରୀ), ଭାଇ ଗୌରୀଶଙ୍କର ଦାସ (ଅବସରପ୍ରାପ୍ତ କୃଷିବିଜ୍ଞାନୀ), ଭାଇ ମନମୋହନ ଦାସ (ବ୍ୟବସାୟୀ), ଭାଇ ରବିନାରାୟଣ (ଅବସରପ୍ରାପ୍ତ ଚିଫ୍ ସେକ୍ରେଟେରୀ), ଭାଇ ଭବାନୀଶଙ୍କର (ନୌବାହିନୀ ଇଂଜିନିଅର), ଭାଇ ଅନ୍ନଦା ପ୍ରସାଦ (ପରଲୋକଗତ ଆଇ.ଏ.ଏସ୍.), ଭଉଣୀ ସାଗରିକା (ଡାକ୍ତର), ଭଉଣୀ କସ୍ତୁରିକା (ସମାଜସେବୀ, ସଙ୍ଗୀତଜ୍ଞ ପ୍ରଣବ ପଟ୍ଟନାୟକଙ୍କ ସ୍ତ୍ରୀ), ଭାଇ ପ୍ରିୟରଂଜନ (ଚିଫ୍ ଜେନେରାଲ ମ୍ୟାନେଜର ଏସ୍.ଆଇ.ଡି.ଏ. ବ୍ୟାଙ୍କ) କେବଳ ଅନ୍ନଦାର ପରଲୋକ ହୋଇ ଯାଇଛି ଅକାଳରେ, ଅପରେସନ୍ ଟେବୁଲରେ ।

ଏଇଭଳି ଏକ ସାଫଲ୍ୟମଣ୍ଡିତ ଭାଇଭଉଣୀମାନଙ୍କର ମୁଖ୍ୟ ହେଉଛନ୍ତି ଅଧ୍ୟାପକ ବିଧୁଭୂଷଣ ଦାସ । ପୁରୀ, ଅନୁଗୋଳ ପ୍ରଭୃତି ସ୍ଥାନରେ ହାଇସ୍କୁଲ ଶିକ୍ଷା ସମାପ୍ତ କରି ସେ ରେଭେନ୍ସା କଲେଜରେ ପଢ଼ନ୍ତି ଏବଂ ପରେ ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଇଂରାଜୀରେ ଏମ୍.ଏ. ପାସ କରନ୍ତି । ରେଭେନ୍ସା କଲେଜରେ ଇଂରାଜୀ ସାହିତ୍ୟର ଶିକ୍ଷକ ଭାବରେ ସେ ଯୋଗ ଦିଅନ୍ତି । ଏଇ ସମୟରେ ପ୍ରଭାତ ନଳିନୀ ଦାସଙ୍କ ସହିତ ତାଙ୍କର ବିବାହ ହୋଇଯାଏ ।

ଅଧ୍ୟାପକ ବିଧୁଭୂଷଣ ଦାସ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଶିକ୍ଷା (Education)ରେ ଏ.ଏମ୍ ଏବଂ ଇଂରାଜୀ ସାହିତ୍ୟରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ବି.ଲିଟ୍. ଉପାଧି ପାଇ ଭାରତବର୍ଷ ଫେରି ପୁଣି ରେଭେନ୍ସା କଲେଜରେ ଯୋଗଦିଅନ୍ତି । ଇଂରାଜୀ ବିଭାଗର ଶିକ୍ଷାରେ ରୂପାନ୍ତର ଘଟେ । ଇଉରୋପୀୟ ଏବଂ ଆମେରିକାନ୍ ସାହିତ୍ୟ ପଠନ ଆରମ୍ଭ ହୁଏ । ସାହିତ୍ୟିକ ସମାଲୋଚନା ବୁଦ୍ଧିମନ୍ତ ହୁଏ । ଅଧ୍ୟାପକ ଦାସ ଇଂରାଜୀ ସାହିତ୍ୟରେ ଏ.ଏମ୍. ନକରି ଶିକ୍ଷା ବିଷୟକୁ କାହିଁକି ଗ୍ରହଣ କଲେ ମୁଁ ଜାଣି ନାହିଁ । ଠିକ୍ ସେଇପରି ତତ୍କାଳୀନ ସମୟରେ ବିଲାତ, ଆମେରିକା ଯାଇଥିବା ଅଧିକାଂଶ ବ୍ୟକ୍ତି ପି.ଏଚ୍‌ଡି. କରିବାକୁ ପସନ୍ଦ କରୁଥିଲେ ହେଁ ଅଧ୍ୟାପକ ଦାସ ତା' କାହିଁକି କଲେ ନାହିଁ ତା'ବି ଜାଣି ନାହିଁ ।

ଅଧ୍ୟାପକ ଦାସ ପାଠପଢ଼ାନ୍ତି । କଲେଜରେ ଆଇ.ଏ. ପଢୁଥିବା ପିଲାମାନଙ୍କ ପାଇଁ ତାହା ଟିକିଏ କଠିନ ହୋଇଯାଏ । କାରଣ ଅଧ୍ୟାପକ ଦାସଙ୍କର ବିଶାଳ ବିସ୍ତାର (wide range) ସହିତ ସେମାନେ ଖାପ ଖୁଆଇ ପାରନ୍ତି ନାହିଁ । କିନ୍ତୁ ବି.ଏ. ପଢ଼ିଲାବେଳକୁ ତାହାର ମହତ୍ତ୍ୱ, ଗୁରୁତ୍ୱ, ବୁଝିହୁଏ । ଇଂରାଜୀ ଏମ୍.ଏ. ପଢୁଥିବା ଛାତ୍ରମାନେ କହନ୍ତି ଯେ ଇଂରାଜୀ ସାହିତ୍ୟରେ ସାର୍‌ଙ୍କ ଭଳି ବିସ୍ତାର ଖୁବ୍ କ୍ୱଚିତ ଦେଖିବାକୁ ମିଳେ ।

ନୂଆ ନୂଆ କଥା ଭାବନ୍ତି, ନୂଆ ନୂଆ ବିଷୟ ଉତ୍ଥାପନ କରନ୍ତି ଏବଂ ଅନେକ ସମୟରେ ସେଇ ନୂତନତ୍ୱ ତାଙ୍କୁ ଅନ୍ୟମାନଙ୍କ ଠାରୁ ଖାପଛଡ଼ା କରିଦିଏ । ତାହାର ସ୍ୱୀକୃତି କିନ୍ତୁ ମିଳେ ବାହାରୁ । ୧୯୫୯ ମସିହାରେ ସେ ନେପାଳର ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ଇଂରାଜୀ ଅଧ୍ୟାପକ ହେଲେ । ଆଜି ମଧ ଉକ୍ତ ବିଶ୍ୱବିଦ୍ୟାଳୟରେ କିଛି ବ୍ୟକ୍ତି ଅଛନ୍ତି ଯେଉଁମାନେ ତାଙ୍କୁ ମନେପକାନ୍ତି । ୧୯୬୩ ମସିହାରେ ସେ ରାଞ୍ଚି ବିଶ୍ୱବିଦ୍ୟାଳୟର ଅଧକ୍ଷ ରୂପେ ନିଯୁକ୍ତ ହୁଅନ୍ତି । ୧୯୬୮ ମସିହାରେ ରେଭେନ୍ସା କଲେଜକୁ ଫେରି ପ୍ରିନ୍ସିପାଲ ହୁଅନ୍ତି, ପରେ ଡି.ପି.ଆଇ. ହୁଅନ୍ତି ଏବଂ ସ୍ୱଳ୍ପକାଳ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୁଅନ୍ତି ।

ବହୁ ଛାତ୍ର ତାଙ୍କର ପ୍ରେରଣା ପାଇଁ ପ୍ରସିଦ୍ଧି ଲାଭ କରିଛନ୍ତି, ବହୁ ଅଧ୍ୟାପକ ତାଙ୍କର ପ୍ରେରଣା ପାଇଁ ଆପଣାର ଜ୍ଞାନ ଓ ଅଧ୍ୟୟନର ପରିସୀମାକୁ ବ୍ୟାପୃତ କରିଛନ୍ତି । ଦୁଇଝିଅ ପ୍ରଜ୍ଞା ପାରମିତା, ଉପାଲି ଅପରାଜିତା ଅପାଣାର ଜୀବନକୁ ଆପଣାର ଇଚ୍ଛା ଅନୁଯାୟୀ ରୂପାୟିତ କରିଛନ୍ତି । ଏକମାତ୍ର ପୁତ୍ର ଆଶୁତୋଷ ଶେଷବଳୟ ମଧ ବେଲଜିଅମରେ ସାମ୍ବାଦିକତା କରନ୍ତି । ସ୍ତ୍ରୀ ଅଧ୍ୟାପିକା ପ୍ରଭାତ ନଳିନୀ ଇଂରାଜୀ ଅଧ୍ୟାପକ ଭାବରେ ଅବସର ଗ୍ରହଣ କରିଛନ୍ତି । ପରୀକ୍ଷା ଖାତାରେ ଉଦାର ନମ୍ବର ଦେବା ଅଧ୍ୟାପକ ବିଧୁଭୂଷଣ ଦାସ ନିଜ ଜୀବନର ପରୀକ୍ଷା ଖାତାରେ ଉଦାର ନମ୍ବର ପାଇପାରି ନାହାନ୍ତି ।

କାଳକ୍ରମେ ସାର ଏକୁଟିଆ ହୋଇ ଯାଇଛନ୍ତି । ଚତୁର୍ଦ୍ଦିଗରେ ଅବକ୍ଷୟ ତାଙ୍କୁ ଅସନ୍ତୁଷ୍ଟ କରିଛି । ଏହା ବିରୁଦ୍ଧରେ କିଛି କରିବା ପାଇଁ ଶକ୍ତି ନାହିଁ । ସେ କ୍ରୁଦ୍ଧ ହୋଇଛନ୍ତି, କେବଳ ନିଜ ଉପରେ ।

ତାହା ତାଙ୍କୁ ଟାଣି ନେଇଛି ବାର୍ଦ୍ଧକ୍ୟକୁ, ଏବଂ ମୃତ୍ୟୁ ମୁହଁକୁ । ପରିବାର, ସମାଜ, ଶିକ୍ଷା କେହି ତାଙ୍କର ମନଲାଖି ହୋଇପାରି ନାହାନ୍ତି । ବୋଧହୁଏ ଏଇ ସବୁଥିରୁ ନିଷ୍କ୍ରାନ୍ତ ହେବାର ଇଚ୍ଛା ତାଙ୍କୁ ଜରାଗ୍ରସ୍ତ କରିଛି । ଏପ୍ରିଲ ୧୨, ୧୯୨୨ ମସିହାରେ ଜନ୍ମିତ ଏଇ ମଣିଷ ଜୁନ୍ ୨, ୧୯୯୯ ତାରିଖ ପୂର୍ବାହ୍ଣରେ ଆଖି ବୁଜିଦେଲେ ଚିରଦିନ ପାଇଁ ।



(ଅବସରପ୍ରାପ୍ତ ବିଦ୍ୟୁତ ଇଂଜିନିଅର, ଅବିବାହିତ), ଭଉଣୀ ପ୍ରିୟମ୍ବଦା (୰ ଭବକୃଷ୍ଣ ମହାନ୍ତିଙ୍କ ସ୍ତ୍ରୀ), ଭାଇ ଚଣ୍ଡୀଚରଣ (ଅବସରପ୍ରାପ୍ତ ପ୍ରାଣୀବିଜ୍ଞାନ ଅଧ୍ୟାପକ), ଭଉଣୀ ଅନସୂୟା (ଦେବୀପ୍ରସାଦ ମହାନ୍ତିଙ୍କ ସ୍ତ୍ରୀ), ଭାଇ ଗୌରୀଶଙ୍କର ଦାସ (ଅବସରପ୍ରାପ୍ତ କୃଷିବିଜ୍ଞାନୀ), ଭାଇ ମନମୋହନ ଦାସ (ବ୍ୟବସାୟୀ), ଭାଇ ରବିନାରାୟଣ (ଅବସରପ୍ରାପ୍ତ ଚିଫ୍ ସେକ୍ରେଟେରୀ), ଭାଇ ଭବାନୀଶଙ୍କର (ନୌବାହିନୀ ଇଂଜିନିଅର), ଭାଇ ଅନ୍ନଦା ପ୍ରସାଦ (ପରଲୋକଗତ ଆଇ.ଏ.ଏସ୍.), ଭଉଣୀ ସାଗରିକା (ଡାକ୍ତର), ଭଉଣୀ କସ୍ତୁରିକା (ସମାଜସେବୀ, ସଙ୍ଗୀତଜ୍ଞ ପ୍ରଣବ ପଟ୍ଟନାୟକଙ୍କ ସ୍ତ୍ରୀ), ଭାଇ ପ୍ରିୟରଂଜନ (ଚିଫ୍ ଜେନେରାଲ ମ୍ୟାନେଜର ଏସ୍.ଆଇ.ଡି.ଏ. ବ୍ୟାଙ୍କ) କେବଳ ଅନ୍ନଦାର ପରଲୋକ ହୋଇ ଯାଇଛି ଅକାଳରେ, ଅପରେସନ୍ ଟେବୁଲରେ ।

ଏଇଭଳି ଏକ ସାଫଲ୍ୟମଣ୍ଡିତ ଭାଇଭଉଣୀମାନଙ୍କର ମୁଖ୍ୟ ହେଉଛନ୍ତି ଅଧ୍ୟାପକ ବିଧୁଭୂଷଣ ଦାସ । ପୁରୀ, ଅନୁଗୋଳ ପ୍ରଭୃତି ସ୍ଥାନରେ ହାଇସ୍କୁଲ ଶିକ୍ଷା ସମାପ୍ତ କରି ସେ ରେଭେନ୍ସା କଲେଜରେ ପଢ଼ନ୍ତି ଏବଂ ପରେ ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଇଂରାଜୀରେ ଏମ୍.ଏ. ପାସ କରନ୍ତି । ରେଭେନ୍ସା କଲେଜରେ ଇଂରାଜୀ ସାହିତ୍ୟର ଶିକ୍ଷକ ଭାବରେ ସେ ଯୋଗ ଦିଅନ୍ତି । ଏଇ ସମୟରେ ପ୍ରଭାତ ନଳିନୀ ଦାସଙ୍କ ସହିତ ତାଙ୍କର ବିବାହ ହୋଇଯାଏ ।

ଅଧ୍ୟାପକ ବିଧୁଭୂଷଣ ଦାସ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଶିକ୍ଷା (Education)ରେ ଏ.ଏମ୍ ଏବଂ ଇଂରାଜୀ ସାହିତ୍ୟରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ବି.ଲିଟ୍. ଉପାଧି ପାଇ ଭାରତବର୍ଷ ଫେରି ପୁଣି ରେଭେନ୍ସା କଲେଜରେ ଯୋଗଦିଅନ୍ତି । ଇଂରାଜୀ ବିଭାଗର ଶିକ୍ଷାରେ ରୂପାନ୍ତର ଘଟେ । ଇଉରୋପୀୟ ଏବଂ ଆମେରିକାନ୍ ସାହିତ୍ୟ ପଠନ ଆରମ୍ଭ ହୁଏ । ସାହିତ୍ୟିକ ସମାଲୋଚନା ଋଦ୍ଧିମନ୍ତ ହୁଏ । ଅଧ୍ୟାପକ ଦାସ ଇଂରାଜୀ ସାହିତ୍ୟରେ ଏ.ଏମ୍. ନକରି ଶିକ୍ଷା ବିଷୟକୁ କାହିଁକି ଗ୍ରହଣ କଲେ ମୁଁ ଜାଣି ନାହିଁ । ଠିକ୍ ସେଇପରି ତତ୍‌କାଳୀନ ସମୟରେ ବିଲାତ, ଆମେରିକା ଯାଇଥିବା ଅଧିକାଂଶ ବ୍ୟକ୍ତି ପି.ଏଚ୍‌ଡି. କରିବାକୁ ପସନ୍ଦ କରୁଥିଲେ ହେଁ ଅଧ୍ୟାପକ ଦାସ ତା' କାହିଁକି କଲେ ନାହିଁ ତା'ବି ଜାଣି ନାହିଁ ।

ଅଧ୍ୟାପକ ଦାସ ପାଠପଢ଼ାନ୍ତି । କଲେଜରେ ଆଇ.ଏ. ପଢୁଥିବା ପିଲାମାନଙ୍କ ପାଇଁ ତାହା ଟିକିଏ କଠିନ ହୋଇଯାଏ । କାରଣ ଅଧ୍ୟାପକ ଦାସଙ୍କର ବିଶାଳ ବିସ୍ତାର (wide range) ସହିତ ସେମାନେ ଖାପ ଖୁଆଇ ପାରନ୍ତି ନାହିଁ । କିନ୍ତୁ ବି.ଏ. ପଢ଼ିଲାବେଳକୁ ତାହାର ମହତ୍ତ୍ୱ, ଗୁରୁତ୍ୱ, ବୁଝିହୁଏ । ଇଂରାଜୀ ଏମ୍.ଏ. ପଢୁଥିବା ଛାତ୍ରମାନେ କହନ୍ତି ଯେ ଇଂରାଜୀ ସାହିତ୍ୟରେ ସାର୍‌ଙ୍କ ଭଳି ବିସ୍ତାର ଖୁବ୍ କ୍ୱଚିତ ଦେଖିବାକୁ ମିଳେ ।

ନୂଆ ନୂଆ କଥା ଭାବନ୍ତି, ନୂଆ ନୂଆ ବିଷୟ ଉତ୍ଥାପନ କରନ୍ତି ଏବଂ ଅନେକ ସମୟରେ ସେଇ ନୂତନତ୍ୱ ତାଙ୍କୁ ଅନ୍ୟମାନଙ୍କ ଠାରୁ ଖାପଛଡ଼ା କରିଦିଏ । ତାହାର ସ୍ୱୀକୃତି କିନ୍ତୁ ମିଳେ ବାହାରୁ । ୧୯୫୯ ମସିହାରେ ସେ ନେପାଳର ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ଇଂରାଜୀ ଅଧ୍ୟାପକ ହେଲେ । ଆଜି ମଧ୍ୟ ଉକ୍ତ ବିଶ୍ୱବିଦ୍ୟାଳୟରେ କିଛି ବ୍ୟକ୍ତି ଅଛନ୍ତି ଯେଉଁମାନେ ତାଙ୍କୁ ମନେପକାନ୍ତି । ୧୯୬୩ ମସିହାରେ ସେ ରାଞ୍ଚି ବିଶ୍ୱବିଦ୍ୟାଳୟର ଅଧକ୍ଷ ରୂପେ ନିଯୁକ୍ତ ହୁଅନ୍ତି । ୧୯୬୮ ମସିହାରେ ରେଭେନ୍ସା କଲେଜକୁ ଫେରି ପ୍ରିନ୍ସିପାଲ ହୁଅନ୍ତି, ପରେ ଡି.ପି.ଆଇ. ହୁଅନ୍ତି ଏବଂ ସ୍ୱଳ୍ପକାଳ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୁଅନ୍ତି ।

ବହୁ ଛାତ୍ର ତାଙ୍କର ପ୍ରେରଣା ପାଇଁ ପ୍ରସିଦ୍ଧି ଲାଭ କରିଛନ୍ତି, ବହୁ ଅଧ୍ୟାପକ ତାଙ୍କର ପ୍ରେରଣା ପାଇଁ ଆପଣାର ଜ୍ଞାନ ଓ ଅଧ୍ୟୟନର ପରିସୀମାକୁ ବ୍ୟାପୃତ କରିଛନ୍ତି । ଦୁଇଝିଅ ପ୍ରଜ୍ଞା ପାରମିତା, ଉପାଲି ଅପରାଜିତା ଅପାଣାର ଜୀବନକୁ ଆପଣାର ଇଚ୍ଛା ଅନୁଯାୟୀ ରୂପାୟିତ କରିଛନ୍ତି । ଏକମାତ୍ର ପୁତ୍ର ଆଶୁତୋଷ ଶେଷବଳୟ ମଧ୍ୟ ବେଲଜିଅମରେ ସାମ୍ବାଦିକତା କରନ୍ତି । ସ୍ତ୍ରୀ ଅଧ୍ୟାପିକା ପ୍ରଭାତ ନଳିନୀ ଇଂରାଜୀ ଅଧ୍ୟାପକ ଭାବରେ ଅବସର ଗ୍ରହଣ କରିଛନ୍ତି । ପରୀକ୍ଷା ଖାତାରେ ଉଦାର ନମ୍ବର ଦେବା ଅଧ୍ୟାପକ ବିଧୁଭୂଷଣ ଦାସ ନିଜ ଜୀବନର ପରୀକ୍ଷା ଖାତାରେ ଉଦାର ନମ୍ବର ପାଇପାରି ନାହାନ୍ତି ।

କାଳକ୍ରମେ ସାର ଏକୁଟିଆ ହୋଇ ଯାଇଛନ୍ତି । ଚତୁର୍ଦ୍ଦିଗରେ ଅବକ୍ଷୟ ତାଙ୍କୁ ଅସନ୍ତୁଷ୍ଟ କରିଛି । ଏହା ବିରୁଦ୍ଧରେ କିଛି କରିବା ପାଇଁ ଶକ୍ତି ନାହିଁ । ସେ କ୍ରୁଦ୍ଧ ହୋଇଛନ୍ତି, କେବଳ ନିଜ ଉପରେ ।

ତାହା ତାଙ୍କୁ ଟାଣି ନେଇଛି ବାର୍ଦ୍ଧକ୍ୟକୁ, ଏବଂ ମୃତ୍ୟୁ ମୁହଁକୁ । ପରିବାର, ସମାଜ, ଶିକ୍ଷା କେହି ତାଙ୍କର ମନଲାଖି ହୋଇପାରି ନାହାନ୍ତି । ବୋଧହୁଏ ଏଇ ସବୁଥିରୁ ନିଷ୍କ୍ରାନ୍ତ ହେବାର ଇଚ୍ଛା ତାଙ୍କୁ ଜରାଗ୍ରସ୍ତ କରିଛି । ଏପ୍ରିଲ ୧୨, ୧୯୨୨ ମସିହାରେ ଜନ୍ମିତ ଏଇ ମଣିଷ ଜୁନ୍ ୨, ୧୯୯୯ ତାରିଖ ପୂର୍ବାହ୍ନରେ ଆଖି ବୁଜିଦେଲେ ଚିରଦିନ ପାଇଁ ।



# ବିଶ୍ୱର ଦୂରନ୍ତ ଶିଶୁ ମୃତ୍ତିକାର ଶେଷ ସ୍ତନନ୍ଧୟ

ବିନୟ ଚୌଧୁରୀଙ୍କର ପରଲୋକ ହୋଇଯାଇଛି ମଇ ମାସ ଛଅ ତାରିଖରେ, ୮୯ ବର୍ଷ ବୟସରେ । ମୂଲ୍ୟ ଭିତ୍ତିକ ରାଜନୀତିରେ ପ୍ରଗାଢ଼ ବିଶ୍ୱାସୀ ବିନୟ ଆପଣା ପାର୍ଟି ଭିତରେ ଦେଖା ଦେଇଥିବା ଘଟଣାବଳୀରେ ଅସନ୍ତୋଷ ପ୍ରକାଶ କରି ଗଲା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ପାଇଁ ମନାକରି ଦେଇଥିଲେ, କିନ୍ତୁ ବଂଗଦେଶ ରାଜନୀତିରେ ''ରାଜନୈତିକ ସନ୍ୟାସୀ'' ଭାବରେ ପରିଚିତ ବିନୟ ରାଜନୀତିରୁ ସନ୍ୟାସ ନେଇ ନଥିଲେ ବରଂ ଶାସନଭାରରୁ ମୁକ୍ତ ବିନୟ ପାର୍ଟି ଭିତରେ ଆହୁରି ସକ୍ରିୟ ହୋଇ ଉଠୁଥିଲେ, କରପ୍ସନ ବା ଭ୍ରଷ୍ଟାଚାର ବିରୁଦ୍ଧରେ ତାଙ୍କର ସଂଗ୍ରାମ ଆହୁରି ତୀବ୍ରତର, ଶାଣିତ ହୋଇଥିଲା । ଜ୍ୟୋତି ବସୁଙ୍କ ଠାରୁ ସେ ବୟସରେ ବଡ଼, ଉଭୟଙ୍କ ମଧ୍ୟରେ ପାର୍ଟିର ନୀତି, ସଂଗଠନ, ଲାଇଫ୍‌ଷ୍ଟାଇଲ ସଂପର୍କରେ ମତଭେଦ ତୀବ୍ର । କିନ୍ତୁ ଶୃଙ୍ଖଳିତ ସୈନିକ ତାଙ୍କର ମତଭେଦକୁ ପାର୍ଟି ଭିତରେ ହିଁ ସୀମିତ ରଖିଥିଲେ । ଗାନ୍ଧିବାଦୀ ସାରଲ୍ୟ ଏବଂ ମାର୍କ୍ସବାଦୀ ଦର୍ଶନର ସେ ଥିଲେ ଅପୂର୍ବ ସମନ୍ୱୟ । ବଂଗଦେଶର ସେକ୍ରେଟେରିଏଟରେ କୌଣସି ବିଦାୟୀ ମନ୍ତ୍ରୀଙ୍କୁ 'ସମ୍ବର୍ଦ୍ଧନା' ଦିଆଯାଇ ନାହିଁ । ତାହାର ଏକମାତ୍ର ବ୍ୟତିକ୍ରମ ଥିଲେ ବିନୟ ଚୌଧୁରୀ । ସେ ଯେଉଁଦିନ ଆଉ ନିର୍ବାଚନ ନ ଲଢ଼ିବା ପାଇଁ ସ୍ଥିର କଲେ ତାରି ଅବ୍ୟବହିତ ପରେ ସେକ୍ରେଟେରିଏଟ କର୍ମଚାରୀ ଓ ଅଫିସର ମାନଙ୍କ ତରଫରୁ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା । ବିନୟ ଥିଲେ ବିନୟୀ, ଶୃଙ୍ଖଳିତ, ନିୟମାନୁବର୍ତ୍ତୀ ଏବଂ ଆପାଣାର କାର୍ଯ୍ୟରେ ଧୂରୀଣ ।

କଲିକତାରେ ଏକ ସମ୍ମିଳନୀ ଡାକିଥାନ୍ତି ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ । ସବୁ ରାଜ୍ୟର ମୁଖ୍ୟମନ୍ତ୍ରୀ, ପଞ୍ଚାୟତରାଜ ଏବଂ ରାଜସ୍ୱ ମନ୍ତ୍ରୀମାନଙ୍କର ଏବଂ ତତ୍‌ସହିତ ରାଜ୍ୟ ସରକାରମାନଙ୍କର ସଂପୃକ୍ତ ବିଭାଗର ସେକ୍ରେଟେରୀ ଓ ସରକାରୀ ଉପଦେଷ୍ଟା ମାନଙ୍କର । ରାଜୀବ ଗାନ୍ଧୀ ପଞ୍ଚାୟତରାଜ ଏବଂ ଭୂସଂସ୍କାର ସଂପର୍କରେ ଆପଣାର ଏକ ଚିଠା ପ୍ରସ୍ତାବ ସେଠାରେ ଉପସ୍ଥାପିତ କରିବାର କଥା । ସେଦିନ ଜ୍ୟୋତିବସୁଙ୍କ ଦେହ ଭଲ ନଥିବାରୁ

ସେ ସଭାରେ କିଛି ସମୟ ରହି ରାଜୀବ ଗାନ୍ଧୀଙ୍କୁ କହିଗଲେ ଯେ ମୋର ଦେହ ଭଲ ନାହିଁ । ତେଣୁ ମୁଁ ରହିପାରୁ ନାହିଁ । ଆମ ସରକାର ତରଫରୁ ବିନୟ ଚୌଧୁରୀ ପ୍ରତିନିଧିତ୍ୱ କରିବେ । ରାଜୀବ ଗାନ୍ଧୀ କିନ୍ତୁ ଭାବିଲେ ଯେ ଏହା ଏକ ଆଳ ମାତ୍ର । ସେ ଭାବିଲେ ଯେ ସେ ପଞ୍ଚାୟତରାଜ ଏବଂ ଭୂସଂସ୍କାର ସଂପର୍କରେ ଏଭଳି ଏକ ବୈପ୍ଳବିକ ଏବଂ ଅଭିନବ ପ୍ରସ୍ତାବ ପେଶ୍ କରିବେ ଯାହା ପଶ୍ଚିମବଂଗ ସରକାରଙ୍କୁ ବିସ୍ମିତ କରିବ । ବୋଧହୁଏ ତାହାରି ସୁରାକ ପାଇ ଜ୍ୟୋତିବସୁ ତାଙ୍କୁ ଏଡ଼ାଇଦେଇ ବିଦାୟ ନେଇଗଲେ ।

ଯଥା ସମୟରେ ପଶ୍ଚିମବଂଗ ସରକାରଙ୍କ ତରଫରୁ ବିନୟ ଚୌଧୁରୀ ଆପଣାର ଭାଷଣ ଦେଲେ । ପଶ୍ଚିମବଂଗରେ ଉଭୟ ପଞ୍ଚାୟତରାଜ ଏବଂ ଭୂସଂସ୍କାର ସମ୍ପର୍କରେ କ'ଣ ସବୁ କରାଯାଇଛି ତାହାର ବିବରଣୀ ଦେଇ, କ'ଣ ସବୁ ତ୍ରୁଟି ରହିଯାଇଛି, ତାକୁ କିପରି ସୁଧାରିହେବ ତା'ର ଏକ ତୁଳନାତ୍ମକ ବିଶ୍ଳେଷଣ ମଧ୍ୟ ପେଶ କଲେ । ବର୍ତ୍ତମାନ ବିସ୍ମିତ ରାଜୀବ ଗାନ୍ଧୀ କହିବାର ପାଳି । ସେ ସ୍ୱୀକାର କଲେ ଯେ ବିନୟ ବାବୁଙ୍କ କହିବା ପରେ ତାଙ୍କର ଆଉ କିଛି କହିବାର ନାହିଁ । କାରଣ ସେ ଯାହାସବୁ ପରିକଳ୍ପନା କରି ଆଣିଥିଲେ ସେ ସବୁ ତ ବିନୟବାବୁ କହି ସାରିଛନ୍ତି, କେବଳ ସେତିକି ନୁହେଁ, ଅନେକ ନୂଆ କଥା କହିଛନ୍ତି ଯା'ହା ତାଙ୍କର ନିଜର ପରିକଳ୍ପନା ମଧ୍ୟରେ ନଥିଲା । ଉପସ୍ଥିତ ଜଣେ ମୁଖ୍ୟମନ୍ତ୍ରୀଙ୍କୁ ରାଜୀବ ଗାନ୍ଧୀ କହିଲେ ଯେ ମୋତେ ଏଇଭଳି ଜଣେ ସହକାରୀ ମିଳିଥାନ୍ତା କି ?

ବିନୟବାବୁ ତାଙ୍କ କାର୍ଯ୍ୟରେ କେବଳ ଧୂରୀଣ ନଥିଲେ । ନିଜର ମତରେ ଦୃଢ଼ ବି ଥିଲେ ସେଇପରି । ତାଙ୍କର ପରଲୋକରେ ବଂଗଳାରେ କେବଳ ସମାଜବାଦୀ ଶକ୍ତିର ନୁହେଁ ତା' ପରବର୍ତ୍ତୀ ସ୍ୱାଧୀନତା ଆନ୍ଦୋଳନର ଏକ ଯୁଗର ପରିସମାପ୍ତି ଘଟିଛି । ମୂଲ୍ୟବୋଧ ଭିତ୍ତିକ ରାଜନୀତିରେ ବିଶ୍ୱାସୀ ବିନୟବାବୁ ଜୀବନର ସାୟଂ କାଳରେ ତାଙ୍କର ଦଳ, ତାଙ୍କର ସରକାରର କାର୍ଯ୍ୟରେ ଗଭୀର ଅସନ୍ତୋଷ ପ୍ରକାଶ କରିଥିଲେ ।

୧୯୧୧ ମସିହା ଜାନୁଆରୀ ୧୪ ତାରିଖରେ ସେ ବର୍ଦ୍ଧମାନର ଏକ ସମୃଦ୍ଧିଶାଳୀ ଜୋତଦାର ବା ଭୂମ୍ୟାଧିକାରୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । କାଜୀ ନଜରୁଲ ଇସଲାମଙ୍କ ଗୁରୁ ନିବାରଣ ଘୋଷଙ୍କ ସହକର୍ମୀ ଥିଲେ ତାଙ୍କର ଦାଦା ଏବଂ ତାଙ୍କର ପ୍ରଭାବ ପଡ଼ିଥିଲା ବିନୟ ବାବୁଙ୍କ ଉପରେ । ୧୯୨୪ ମସିହାରେ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ ପାଇଁ ଯୁବକକୁଳଙ୍କୁ ଉଦାତ୍ତ ଆହ୍ୱାନ ତାଙ୍କୁ ଅନୁପ୍ରାଣିତ କରିଥିଲା ଏବଂ ସେ କାରାବରଣ କରିଥିଲେ ।

ତାଙ୍କର ସହପାଠୀ ଏବଂ ବାଲ୍ୟକାଳର ବଂଧୁ ଥିଲେ ପ୍ରଖ୍ୟାତ ମାର୍କ୍ସବାଦୀ ସରୋଜ ମୁଖର୍ଜୀ ଏବଂ ଏହି ବଂଧୁତ୍ୱ, ସହଯୋଦ୍ଧୃତ୍ୱ ନିବିଡ଼ ରହିଥିଲା ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ପରବର୍ତ୍ତୀ କାଳରେ ସେ ଯୁଗାନ୍ତର ଗ୍ରୁପରେ ଏବଂ ଭଗତ ସିଂହଙ୍କ ଦ୍ୱାରା ପ୍ରତିଷ୍ଠିତ ହିନ୍ଦୁସ୍ଥାନ ସୋସଲିଷ୍ଟ ରିପବ୍ଲିକାନ ପାର୍ଟିରେ ଯୋଗ ଦେଇଥିଲେ । ତାହା ସହିତ ଗାନ୍ଧିଜୀଙ୍କ

ଅସହଯୋଗ ଆନ୍ଦୋଳନରେ ମଧ୍ୟ ସେ ଯୋଗ ଦେଇଥିଲେ ଏବଂ କାରାବରଣ କରିଥିଲେ । ସେ, ସରୋଜ ମୁଖର୍ଜୀ ଏବଂ ପ୍ରସିଦ୍ଧ କଂଗ୍ରେସ ନେତା ଅତୁଲ୍ୟ ଘୋଷଙ୍କର ଏଇ ତିନିମୂର୍ତ୍ତି ବଂଗଳା ରାଜନୀତିକୁ ବହୁକାଳ ଧରି ପ୍ରଭାବିତ କରି ଆସିଥିଲେ । ପରବର୍ତ୍ତୀ କାଳରେ ସରୋଜ ମୁଖର୍ଜୀ ଏବଂ ବିନୟ ଚୌଧୁରୀ ସାମ୍ୟବାଦୀ ଶିବିରରେ ଏବଂ ଅତୁଲ୍ୟ ଘୋଷ କଂଗ୍ରେସ ଶିବିରରେ ରହିଗଲେ । ରାଜନୈତିକ ମତଭେଦ କିନ୍ତୁ ସେମାନଙ୍କର ବ୍ୟକ୍ତିଗତ ବଂଧୁତ୍ୱକୁ ମଳିନ କରି ନଥିଲା । ସେ କରାଚୀ କଂଗ୍ରେସରେ ଯୋଗଦେଲେ ଏବଂ ଜମିଦାର ଗୋଷ୍ଠୀ ପ୍ରତି କଂଗ୍ରେସର ନରମନୀତି ତାଙ୍କୁ କଂଗ୍ରେସ ପ୍ରତି ବୀତସ୍ପୃହ କରିଥିଲା । ପରେ ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପିତାମହ ମୁଜାଫର ଅହମ୍ମଦଙ୍କ ପ୍ରେରଣାରେ ଅକ୍ଟୋବର, ୧୯୩୮ରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ଏବଂ ସେଇଦିନଠାରୁ ଅବିଚଳିତ ଭାବରେ ସେ ମେହନତୀ ମଣିଷ ପାଇଁ କାର୍ଯ୍ୟ କରିଆସିଛନ୍ତି । କମ୍ୟୁନିଷ୍ଟ ପାର୍ଟିର ବିଭାଜନ ପରେ ସେ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି । ପ୍ରସିଦ୍ଧ ଚୀନା ସମାଜବାଦୀ ତାତ୍ତ୍ୱିକ ଲିଓସାଓଚୀଙ୍କର How to be a good communist ଥିଲା ତାଙ୍କର ଆଦର୍ଶର ରୂପାନ୍ତର ।

ମାର୍କ୍ସବାଦକୁ ସେ ଏକ ଡଗ୍‌ମା (Dogma) ବୋଲି ଗ୍ରହଣ କରୁନଥିଲେ । ସେଇ ଯୋଗୁଁ ପାର୍ଲ୍ୟାମେଣ୍ଟାରୀ ନୀତିକୁ ସେ ଜନ ସଂଗ୍ରାମର ଅଂଶ ଭାବରେ ବିଚାର କରୁଥିଲେ । କିନ୍ତୁ ପାର୍ଲ୍ୟାମେଣ୍ଟାରୀ ଜୀବନ ଯେତେବେଳେ ଅନେକ କମ୍ୟୁନିଷ୍ଟଙ୍କୁ ନିରାପଦ ଏବଂ ସ୍ୱଚ୍ଛଳ ଜୀବନଯାପନର ପନ୍ଥାକୁ ବିଚ୍ୟୁତ କରିବାକୁ ଆରମ୍ଭ କଲା, ବିନୟବାବୁ ଆପଣାକୁ ସେ ଜୀବନରୁ ନିଷ୍କ୍ରାନ୍ତ କହିନେଇ ଏକ ଆଦର୍ଶର ପ୍ରତିଷ୍ଠା କରିଗଲେ ଯାହା ଆଜି ଦୁର୍ଲ୍ଲଭ ଏବଂ ବିରଳ ।

କେବଳ ସେତିକିରେ ଏହା ସୀମିତ ରହିନାହିଁ । ଆପଣାର ଆଖି, କିଡନୀ ଏବଂ ଶରୀରକୁ ସେ ଶ୍ମଶାନରେ ନଷ୍ଟ ନକରି ଜନସାଧାରଣଙ୍କ କଲ୍ୟାଣରେ ବିନିଯୋଗ କରିବା ପାଇଁ ଇଚ୍ଛା ପ୍ରକାଶ କରି ସେ ମାନବିକତାର ଏଭଳି ଏକ ତୁଙ୍ଗ ଆଦର୍ଶ ପ୍ରତିଷ୍ଠା କରିଯାଇଛନ୍ତି ଯାହା ତାଙ୍କୁ ସ୍ମରଣୀୟ କରି ରଖିବ । କଲିକତାର ମେଡିକାଲ କଲେଜରେ ତାଙ୍କର ମରଦେହ ରହିବ ପିଲାମାନଙ୍କର ଶିକ୍ଷା ପାଇଁ, ଆଖି ଦାନକରି ଯାଇଛନ୍ତି କୌଣସି ଦୃଷ୍ଟିହୀନକୁ ଦୃଷ୍ଟିଦେବା ପାଇଁ, କିଡନୀ ଦାନକରି ଯାଇଛନ୍ତି କୌଣସି ରୋଗୀର ଦେହରେ କିଡନୀ ରୋପଣ କରିବା ପାଇଁ ।

ଏହାକୁ ହିଁ କହନ୍ତି ପ୍ରକୃତ ସ୍ପିରିଚୁଆଲ ସ୍ପିରିଟ ।



# ହାତରେ ଗଢ଼ା ମଣିଷଟିଏ

•

ବିନୟ କୁମାର ପଟ୍ଟନାୟକ ଆଉ ନାହାନ୍ତି । ଗଲା କାଲି ୧୦.୪.୨୦୦୧ ଦିନ ପୁରୀ ସହରର ଦକ୍ଷିଣ ସାହିରେ ଆପଣାର ବାସଭବନରେ ତାଙ୍କର ପରଲୋକ ହୋଇଯାଇଛି । ଗଲା କେତେ ମାସ ହେଲା ତାଙ୍କର ସ୍ମରଣଶକ୍ତି ଲୋପ ପାଇଥିଲା ଏବଂ ପିଲାଦିନରେ ଜାଣିଥିବା ବ୍ୟକ୍ତିମାନଙ୍କ ଛଡ଼ା ସେ ଅନ୍ୟମାନଙ୍କୁ ଚିହ୍ନିପାରୁ ନଥିଲେ । କାଳକ୍ରମେ ତାଙ୍କର ଚକ୍ଷୁଶକ୍ତି ମଧ ହ୍ରାସ ପାଇଥିଲା ଉଦ୍‌ବେଗଜନକ ଭାବରେ । ପଢ଼ିବା ଥିଲା ତାଙ୍କର ନିଶା । ପଢ଼ି ନପାରି ସେ ଅସ୍ତବ୍ୟସ୍ତ ହୋଇ ଉଠୁଥିଲେ ।

ସେ ଜନ୍ମ ହୋଇଥିଲେ ୩.୭.୧୯୨୮ରେ ରସେଲକୋଣ୍ଡା ସହରରେ (ବର୍ତ୍ତମାନ ଭଂଜନଗର) । ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ତାଙ୍କର ଅଜା । ୰ ଡାକ୍ତର ଜର୍ଜ ପଟ୍ଟନାୟକ, ୰ ବିଜୁ ପଟ୍ଟନାୟକ ଏବଂ ୰ ସିଜୁ ପଟ୍ଟନାୟକ ତାଙ୍କର ମାମୁଁ । ବାପା ବନ୍ୟ ବିଭାଗରେ ଚାକିରି କରୁଥିଲେ କିନ୍ତୁ ମାମୁଁ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ପ୍ରଭାବ ତାଙ୍କ ଉପରେ ବେଶ୍ ପଡ଼ିଥିଲା । ବିନୟକୁମାରଙ୍କ ଘରେ ପୂଜା ପାର୍ବଣ ପ୍ରାୟ ନଥିଲା କିନ୍ତୁ ଜଗନ୍ନାଥଙ୍କ ପ୍ରତି ତାଙ୍କର ଥିଲା ଅଚଳାଚଳ ଭକ୍ତି । ସେଇଯୋଗୁଁ ଶେଷ ଜୀବନ ସେ ପୁରୀରେ କଟାଇବା ପାଇଁ ନିଷ୍ପତ୍ତି କରିଥିଲେ ।

ବିନୟ କୁମାର କଠୋର ଜୀବନ ସଂଗ୍ରାମ ଭିତରେ ଦେଇ ଗତି କରିଥିଲେ ଏବଂ ତାହାରି ଭିତରେ ଆପଣାର ସୃଜନଶୀଳତାର ଭୂୟସୀ ପ୍ରମାଣ ଦେଇପାରିଥିଲେ । ମାଟ୍ରିକ ପାଶ କରିସାରିଲା ପରେ ସେ କୃଷି ବିଜ୍ଞାନରେ ସ୍ନାତକ ଡିଗ୍ରୀ ପାଇବା ପାଇଁ ଆଲାହାବାଦର ପ୍ରସିଦ୍ଧ ନୈନି ଇନଷ୍ଟିଚ୍ୟୁଟରେ ନାମ ଲେଖାଇଥିଲେ । ସେତିକିବେଳୁ ହିଁ ସେ ଲେଖିବା ଆରମ୍ଭ କରିଥିଲେ ଯାହା ପରବର୍ତ୍ତୀ କାଳରେ ପରିସ୍ଫୁଟ ହୋଇଥିଲା ।

ବାପା ଥିଲେ ଜଂଗଲ ବିଭାଗର କିରାନୀ । କାହାରିଠାରୁ କୌଣସି ସାହାଯ୍ୟ ସେ ସହଜରେ ଗ୍ରହଣ କରୁ ନଥିଲେ । ନିଜ ଗୋଡ଼ରେ ଛିଡ଼ା ହେବା ହିଁ ଜୀବନର ସାଫଲ୍ୟ, ଏଇଥିଲା ତାଙ୍କର ଜୀବନାଦର୍ଶ । ବିନୟ କୁମାର ସେଇ ଆଦର୍ଶରେ ଦୀକ୍ଷିତ ହୋଇଥିଲା ।

ଆଲହାବାଦରୁ ଫେରିଲା ପରେ ତାଙ୍କର ପୋଷ୍ଟିଂ ହୁଏ ସୁଦୂର କୋରାପୁଟରେ ଏକ କୃଷି ଫାର୍ମରେ ଏବଂ ସେଇଠି ସେ ହଠାତ୍ ଶୁଣନ୍ତି ତାଙ୍କର ବାପାଙ୍କର ମୃତ୍ୟୁ ସଂବାଦ । ତଳେ ତିନି ଭଉଣୀ, ଚାରିଭାଇ । ସମସ୍ତେ ସାନ ସାନ । କିନ୍ତୁ ବିନୟ କୁମାର ଭାଙ୍ଗିପଡ଼ିବାର ଲୋକ ନଥିଲେ । ସେ ଅଣ୍ଟା ଭିଡ଼ିଲେ, ଜୀବନ ସଂଗ୍ରାମରେ ଝାସ ଦେବାପାଇଁ ।

ସବୁ ଭାଇ ଭଉଣୀମାନଙ୍କୁ ବିଧବା ମାଆଙ୍କୁ ନେଇ ସେ ଚାଲିଲେ କୋରାପୁଟ । ଭାଇ ଭଉଣୀମାନେ ପାଠପଢ଼ିବେ । ମଣିଷ ହେବେ, ଏଇଥିଲା ତାଙ୍କର ସ୍ୱପ୍ନ ।

ତାଙ୍କର ଅବସ୍ଥା କୃଷି ବିଭାଗର ଉଚ୍ଚ ପଦସ୍ଥ କର୍ମକର୍ତ୍ତାମାନଙ୍କର ଦୃଷ୍ଟିକୁ ଆସିଥିଲା । ସେ ବଦଳି ହୋଇ ଆସିଲେ ରଙ୍ଗେଇଲୁଣ୍ଡା କୃଷି ସ୍କୁଲକୁ । କିନ୍ତୁ ପାଖରେ ତ ସ୍କୁଲ ନାହିଁ । ଭାଇଭଉଣୀମାନେ ପଢ଼ିବେ କିମିତି ? ପୁଣି ଭଉଣୀଟିଏ କଲେଜରେ ପଢ଼ିବ । ବିଜୁ ପଟ୍ଟନାୟକ ସାହାଯ୍ୟ ପାଇଁ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ତାହା ଅନ୍ୟମାନେ କାର୍ଯ୍ୟକାରୀ କରାଇ ଦେଲେ ନାହିଁ । ଆହତ ସ୍ୱାଭିମାନରେ ବିନୟକୁମାର ପଣକଲେ ଯେ ସବୁ ଭାଇଭଉଣୀମାନେ ପଢ଼ିବେ । କିନ୍ତୁ ଆୟ ?

ସେ ବହି ଲେଖିଲେ କୃଷି ଉପରେ । ଧାନଚାଷ, ଆଖୁଚାଷ, ନଡ଼ିଆ ଚାଷ, ପରିବା ଚାଷ ପ୍ରଭୃତି ଉପରେ । ପାହାନ୍ତିଆରୁ ଉଠି ସେ ଯାଆନ୍ତି ରଂଗେଇଲୁଣ୍ଡା ସମୁଦ୍ର ପବନକୁ ସାମନା କରି, ଫେରନ୍ତି ପାଞ୍ଚଟାରେ । ଖାଇଦେଇ ଯାଆନ୍ତି ବ୍ରହ୍ମପୁର ସହରକୁ । ପ୍ରେସରେ ବହି ଛାପିବା ପରିଦର୍ଶନ କରି ଫେରନ୍ତି ରାତି ଦଶଟାରେ । ଲେଖନ୍ତି ରାତି ବାରଟା ପର୍ଯ୍ୟନ୍ତ । ପୁଣି ପାହାନ୍ତିଆରୁ ଦୌଡ଼ । ଚାଲିଲା ବର୍ଷ ବର୍ଷ ଧରି ।

ସେ ସ୍ମରଣ କରୁଥିଲେ ୰ ବିନାୟକ ଆଚାର୍ଯ୍ୟଙ୍କୁ ସବୁବେଳେ । ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ବିନାୟକବାବୁ ଏକ ପ୍ରେସର ମ୍ୟାନେଜର ଥିଲେ । ଛୋଟିଆ ପ୍ରେସଟିଏ । ସେଇଠି ଛପାହୁଏ ବିନୟ କୁମାରଙ୍କ ବହିସବୁ । ବଂଧୁତା ପ୍ରଗାଢ଼ଥିଲା, ଗଭୀର ହୋଇଥିଲା ସମୟକ୍ରମରେ । ବିନାୟକ ବାବୁ ମୁଖ୍ୟମନ୍ତ୍ରୀ ହେଲେ କିନ୍ତୁ ବିନୟ କୁମାର ତାଙ୍କର ବଂଧୁତ୍ୱର ଅପବ୍ୟବହାର କରିନାହାନ୍ତି ।

କଲମ ପାକଳ ହେଲା । ତାଙ୍କ କଲମରୁ ପ୍ରାୟ ୧୧ ଖଣ୍ଡ ବହି ପ୍ରକାଶିତ ହେଲା ଏବଂ ଖୁବ୍ ଆଦୃତ ହେଲା । ପ୍ରଫୁଲ୍ଲ ସାମନ୍ତରା ବର୍ତ୍ତମାନ କେଉଁଠି କହିପାରିବି ନାହିଁ । ସେ ଥିଲେ ଅନେକ ବହିର ପ୍ରକାଶକ । କୃଷକମାନଙ୍କୁ ସାହାଯ୍ୟ କରିବା ସହିତ ଭାଇ ଭଉଣୀମାନଙ୍କର ପଢ଼ାଇବା ଖର୍ଚ୍ଚ ସେ ନିଜେ ରୋଜଗାର କରିପାରିଲେ ।

ରଂଗେଇଲୁଣ୍ଡା ସ୍କୁଲ । ସେଇଠାରେ ଏକ ନୂତନ ଧରଣର କ୍ୟାଣ୍ଟିନ ପ୍ରତିଷ୍ଠା କଲେ । ଖୁବ୍ ଭଲ ଖାଇବା ଏତେ ଶସ୍ତାରେ ମିଳିଲା ଯେ ସେଠାରେ କାମ କରୁଥିବା ସବୁ କର୍ମଚାରୀ ଓ ସେମାନଙ୍କର ପରିବାରବର୍ଗ ଆଉ ନିଜ ଘରେ ରାନ୍ଧିଲେ ନାହିଁ । ଅଥଚ

ଲାଭ ହେଲା । କାରଣ ବିନୟକୁମାର ହାଟକୁ ଯାଇ ନିଜେ ଜିନିଷ କିଣୁଥିଲେ, ସ୍କୁଲର ବିରାଟ ହତାରେ ଫସଲ ଉତ୍ପାଦନ କରୁଥିଲେ ।

ପରବର୍ତ୍ତୀ କାଳରେ ସେ ଥିଲେ ଆସ୍କା ଚିନି କାରଖାନାର କେନ୍ ଡେଭଲପ୍‌ମେଣ୍ଟ ଅଫିସର । ଆସ୍କା ଚିନି କାରାଖାନାକୁ ଯେପରି ପର୍ଯ୍ୟାପ୍ତ ପରିମାଣର ଆଖୁ ଯୋଗାଯାଇ ପାରିବ, ସେଥିପାଇଁ ସେ ଯେଉଁ ଯୋଜନା ପ୍ରସ୍ତୁତ କରିଥିଲେ ତାହା କାର୍ଯ୍ୟକାରୀ ହୋଇ ଆଖୁ କାରଖାନାକୁ ଲାଭଜନକ ସଂସ୍ଥାରେ ପରିଣତ କରିଥିଲା । ଚାଷୀମାନଙ୍କ ସହିତ ସମନ୍ୱୟ ଏବଂ ସଂପର୍କ ରକ୍ଷା ତା' ମଧ୍ୟରେ ଅନ୍ୟତମ ଥିଲା । ଆଖୁ କଟା ହେବାର ଚବିଶ ଘଣ୍ଟା ପୂରିବା ପୂର୍ବରୁ ଚିନି ଉତ୍ପାଦନ କରିପାରିଲେ ସବୁଠାରୁ ବେଶି ଚିନି ଉତ୍ପାଦନ କରାଯାଇପାରିବ— ଏହି ପରିକଳ୍ପନାକୁ କାର୍ଯ୍ୟକାରୀ କରିବାରେ ସେ ସକ୍ଷମ ହୋଇପାରିଥିଲେ ।

ବାଲେଶ୍ୱର ଜିଲ୍ଲାରେ ଅବସ୍ଥାପିତ ହେଲା ପରେ ସେ ଏକ କୃଷି ସ୍ମରଣିକା ପ୍ରକାଶ କରିଥିଲେ ଯାହା ତତ୍‌କାଳୀନ କୃଷି ସେକ୍ରେଟେରୀଙ୍କ ସୁପାରିଶ କ୍ରମେ କୃଷି ବିଭାଗୀୟ କର୍ମଚାରୀମାନଙ୍କ ପାଇଁ ଏକ ହାଣ୍ଡବୁକ୍‌ରେ ପରିଣତ ହୋଇଥିଲା ।

ସମ୍ବଲପୁର ଜିଲ୍ଲାରେ କାର୍ଯ୍ୟକରିବା ପରେ ସେ ଅବସର ଗ୍ରହଣ କରିଥିଲେ । ସେଇ ଅଂଚଳରେ ଏକ ଆଦର୍ଶ କୃଷି ଫାର୍ମ ପ୍ରତିଷ୍ଠା ତାଙ୍କର ପରିକଳ୍ପନା ଥିଲା କିନ୍ତୁ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ ନାନା କାରଣରୁ ।

ପାରିବାରିକ ଦୁଃସ୍ଥିତି ତାଙ୍କୁ ଧୀରେ ଧୀରେ ଦୁର୍ବଳ କରିଦେଲା ଉଭୟ ମାନସିକ ଏବଂ ଶାରିରିକ ଦୃଷ୍ଟିରୁ । କ୍ରମେ ସେ ଆପଣାର ସ୍ମରଣଶକ୍ତି ହରାଇ ବସିଲେ ।

ତା'ପରେ ସେଇଦିନ ଆସିଗଲା । ବଗିଚା ହସୁଥିଲା ତାଙ୍କର ପରଶରେ, କୁଣ୍ଡରେ ଫୁଟିଥିଲା ଅଗଣିତ ଫୁଲ । ତାଙ୍କର କିନ୍ତୁ ତାହା ଦେଖିବାର ସୁଯୋଗ ନଥିଲା । ସେ ଆଖି ବୁଜିଦେଲେ ଚିରଦିନ ପାଇଁ । ଗଛରୁ ଫୁଲ ଝଡ଼ି ପଡୁଥିଲା ତାଙ୍କର ବିୟୋଗରେ । ଆପଣାର ଲିଖିତ ବହିଗୁଡ଼ିକର ପୃଷ୍ଠା ଉଡ଼ିଯାଉଥିଲା ପବନରେ, ମହାକାଳର ପବନ ।



# ସଂଗ୍ରାମର ଦୁରନ୍ତ ସାରଥୀର ବିଦାୟ

''ଦୁଃଖକୁ କ୍ରୋଧ ଏବଂ ଶକ୍ତିରେ ପରିଣତ କର ।'' ସ୍ୱାମୀ ଏବଂ ସହଯୋଦ୍ଧା ବିନୋଦ ମିଶ୍ରଙ୍କ ଚିତାଗ୍ନି ପାଖରେ ଏଇ ହେଉଛି ସ୍ତ୍ରୀ ଏବଂ ସାଥୀ କୁମୁଦିନୀ ପତିଙ୍କ ଉଦାତ୍ତ ଆହ୍ୱାନ । ବିନୋଦ ମିଶ୍ର ଆପଣାର ମୃତ୍ୟୁରେ ଏହାହିଁ ପ୍ରମାଣିତ କରିଯାଇଛନ୍ତି ।

ଏବେ ଆସିଥିଲେ ଓଡ଼ିଶା । ଭାରତୀୟ ପିପୁଲ୍ସ ଫ୍ରଣ୍ଟର ସଭାପତି ନାଗଭୂଷଣଙ୍କର ଅନ୍ତିମ କ୍ରିୟାରେ ଯୋଗ ଦେଇଥିଲେ । ସଭାପତିଙ୍କ ପରଲୋକ ପରେ ପରେ ହଠାତ୍ ସାଧାରଣ ସଂପାଦକଙ୍କ ପରଲୋକ ଉଭୟ ସି.ପି.ଏମ୍.ଏଲ୍ ଏବଂ ଭାରତୀୟ ପିପୁଲ୍ସ ଫ୍ରଣ୍ଟ ପ୍ରତି ଏକ ଗୁରୁତର ଧକ୍କା । ମାତ୍ର ୫୨ ବର୍ଷ ବୟସରୁ ବିନୋଦ ନକ୍ସଲବାଡ଼ି ଆନ୍ଦୋଳନର ଆଭିମୁଖ୍ୟରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା ପାଇଁ ସକ୍ଷମ ହୋଇଥିଲେ ଏବଂ ଏହି ପରିବର୍ତ୍ତନ ଆଣିବା ହିଁ ଦୀର୍ଘ ଆତ୍ମଗୋପନର ପରିସମାପ୍ତି ଘଟାଇ ଆତ୍ମପ୍ରକାଶ କରିଥିଲେ । ଏହା ପୂର୍ବରୁ ନକ୍ସଲବାଡ଼ି ଆନ୍ଦୋଳନ ଏକ ଦୁଃସାହସୀ ଗୋଷ୍ଠୀର ସଶସ୍ତ୍ର ଆକ୍ରମଣରେ ସୀମିତ ଥିଲା । ଜନସାଧାରଣଙ୍କର ଏଥିପ୍ରତି ସହାନୁଭୂତି ଥିଲେ ହେଁ ସକ୍ରିୟ ସମର୍ଥନ ନଥିଲା । ସଂଗଠିତ ଗଣ ସଂଗଠନ ବିନା ନକ୍ସଲବାଡ଼ି ଆନ୍ଦୋଳନ ଏକ ଗୋଷ୍ଠୀର କାର୍ଯ୍ୟ ଭିତରେ ହିଁ ବଂଧା ପଡ଼ିଯାଇଥିଲା । ଏହା ଫଳରେ ଏହି ଆନ୍ଦୋଳନ ପରିବ୍ୟାପ୍ତ ହୋଇପାରୁ ନଥିଲା । ବିହାର ବଂଗଳାର କେତେକ ଗ୍ରାମ ଭିତରେ ଏହା ସୀମିତ ହୋଇ ରହିଯାଇଥିଲା । ଗଣ ସଂଗଠନ ଏବଂ ଗଣ ସଂଗ୍ରାମର ଚୂଡ଼ାନ୍ତ ପର୍ଯ୍ୟାୟରେ ଅସ୍ତ୍ରଧାରଣ ନହେଲେ ଅସାମାଜିକ ଶକ୍ତି ଅସ୍ତ୍ରର ଅପବ୍ୟବହାରର ଆଶଙ୍କା ରହିଥିଲା । ତେଣୁ ବିନୋଦ ମିଶ୍ର ଆସିଲେ ଏହି ଆନ୍ଦୋଳନକୁ ନୂତନ ରୂପ ଦେବାପାଇଁ, ସଶସ୍ତ୍ର ସଂଗ୍ରାମ ସହିତ ପାର୍ଲ୍ୟାମେଣ୍ଟାରୀ ଆନ୍ଦୋଳନର ସମନ୍ୱୟ ଘଟାଇବା ପାଇଁ । ଶତ୍ରୁକୁ ଚାରିପଟରୁ ଅବରୋଧ କର, ମାଓ-ସେ-ତୁଂକର ଏହି ଚିନ୍ତା ତାଙ୍କୁ ପ୍ରଭାବିତ କରିଥିଲା । ଏହି ମତବାଦ ସହିତ ନାଗଭୂଷଣ ଯୋଗ ଦେଇଥିଲେ । ଏହି ମତପାର୍ଥକ୍ୟ ଯୋଗୁଁ ଦକ୍ଷିଣରେ ପିପୁଲସ୍ ୱାର

ଗ୍ରୁପ ସହିତ ସେମାନେ ଯୋଗଦେଇ ନଥିଲେ ଏବଂ ନାଗଭୂଷଣ ପିପୁଲ୍ସ ୱାର ଗ୍ରୁପର ରୋଷାଗ୍ନିର ଲକ୍ଷ୍ୟ ହୋଇଥିଲେ ।

ଗଲା ୨୩ ବର୍ଷ ଧରି ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି (ମାର୍କସିଷ୍ଟ-ଲେନିନିଷ୍ଟ)ର ସାଧାରଣ ସଂପାଦକ ହୋଇ ରହିଥିଲେ । ପାର୍ଟିର ସର୍ବୋଚ୍ଚ କମିଟିର ଅଧିବେଶନରେ ଯୋଗଦେବା ପାଇଁ ସେ ଲକ୍ଷ୍ନୌ ଯାଇଥିଲେ । ସେଇଠି ହୃଦରୋଗରେ ଆକ୍ରାନ୍ତ ହୋଇ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

୧୯୪୭ ମସିହା । ଭାରତ ସ୍ୱାଧୀନତା ବର୍ଷରେ ତାଙ୍କର ଜନ୍ମ । ଦୁର୍ଗାପୁର ରିଜିଓନାଲ ଇଂଜିନିଅରିଂ କଲେଜରେ ପାଠ ପଢ଼ିବା ସମୟରେ ତାଙ୍କର ନକ୍ସଲବାଡ଼ି ଆନ୍ଦୋଳନ ପ୍ରତି ଅନୁରକ୍ତି ବୃଦ୍ଧିପାଏ । ଏହା ପୂର୍ବରୁ ସେ ପ୍ରଥମେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଏବଂ ପରେ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ । ନୂତନ ଗଣତାନ୍ତ୍ରିକ ଆନ୍ଦୋଳନ ଏବଂ ସର୍ବହରାର ଏକନାୟକତ୍ୱର ନୂତନ ବୟାନର ଡାକ ତାଙ୍କ ଇଂଜିନିଅରିଂ ପାଠର ପରିସମାପ୍ତି ଘଟାଇଥିଲା । ଜୀବନର ରାଜପଥରେ ହିଁ ଶିକ୍ଷାର ସଂଧାନ ସକାଶେ ସେ ପଳାତକ ସାଜିଥିଲେ ବହୁବର୍ଷ ଧରି ।

୧୯୭୩ ମସିହା ବେଳକୁ ନକ୍ସଲବାଡି ଆନ୍ଦୋଳନ ବିହାରକୁ ସଂପ୍ରସାରିତ ହୁଏ ଏବଂ ସୁବ୍ରତ ଦତ୍ତ (ଜହର)ଙ୍କ ସହିତ ମିଶି ସେ ଅତ୍ୟାଚାର ପ୍ରପୀଡ଼ିତ ବିହାରର ଗ୍ରାମାଞ୍ଚଳରେ ସଶସ୍ତ୍ର ପ୍ରତିରୋଧ ଗଢ଼ି ତୋଳନ୍ତି । ସାଥୀ ଜହର ପୁଲିସର ଗୁଳିମାଡ଼ରେ ନିହତ ହୁଅନ୍ତି ଏବଂ ପାର୍ଟିକୁ ପୁନର୍ଗଠିତ କରିବାର ଦାୟିତ୍ୱ ପଡ଼େ ବିନୋଦଙ୍କ ଉପରେ ୧୯୭୫ ମସିହାରେ । ୧୯୭୬ ମସିହାରେ ସେ ପାର୍ଟିର ସାଧାରଣ ସଂପାଦକ ନିର୍ବାଚିତ ହୁଅନ୍ତି ।

ଆପଣାର ପାର୍ଟିର ନେତୃତ୍ୱକୁ ଆସିବା ପରେ ବିନୋଦ ପାର୍ଟି କ୍ୟାଡ଼ରମାନଙ୍କୁ ସେଇ ତତ୍ତ୍ୱ ଏବଂ ଦର୍ଶନରେ ଐକ୍ୟବଦ୍ଧ କରିବା ସହିତ, ଗଣସଂଗଠନ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରନ୍ତି । ମାର୍କ୍ସବାଦ-ଲେନିନବାଦର ତତ୍ତ୍ୱକୁ ବାଦ ଦେବାର ପ୍ରଶ୍ନ ଉଠୁନାହିଁ । କିନ୍ତୁ ପାର୍ଟି କ୍ୟାଡ଼ରମାନଙ୍କୁ ଗଣସଂଗଠନ ଏବଂ ଗଣସଂଗ୍ରାମରେ ଶାଣିତ ହେବାକୁ ପଡ଼ିବ । ବିହାରରେ ଗଣଆନ୍ଦୋଳନ ମୁଣ୍ଡ ଟେକିଲା ଏବଂ ସଶସ୍ତ୍ର ପ୍ରତିରୋଧ ଚାଲିଲା, ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ମୁକାବିଲା ପାଇଁ । ବିହାରର ପ୍ରାୟ ପାଞ୍ଚଟି ଜିଲ୍ଲାରେ ଇଣ୍ଡିଆନ ପିପୁଲ୍ସ ଫ୍ରଣ୍ଟର 'ରାଜୁତି' ଚାଲିଲା । ନିର୍ବାଚନରେ ମଧ୍ୟ ବିଜୟ ହାସଲ କଲେ ସେମାନେ ଅନେକ ସ୍ଥାନରେ ।

କିନ୍ତୁ ପିପୁଲ୍ସ ୱାରଗ୍ରୁପ ବା ପି.ଡବ୍ଲୁ.ଜି (P.W.G) ଆଖିରେ ସେମାନେ ହେଲେ ରେନିଗେଡ଼ (renegade) ମାର୍କ୍ସବାଦୀ ଅଭିଧାନରେ ଏଇ ଶବ୍ଦ ସବୁଠାରୁ ଘୃଣ୍ୟ ଏବଂ

ଏଇ ପରିପ୍ରେକ୍ଷୀରେ ହିଁ ବିଚାର କରାଯାଇପାରେ ସେମାନଙ୍କ ଭିତରେ ଅନ୍ତର୍ବାଦର ସ୍ୱରୂପ । ଶ୍ରେଣୀଶତ୍ରୁ ବିରୁଦ୍ଧରେ ସଂଗ୍ରାମ ପରିବର୍ତ୍ତେ ଆପଣା ଆପଣା ଭିତରେ ଭ୍ରାତୃସଂଘର୍ଷ ଗୁରୁତର ଆକାର ଧାରଣକଲା ।

ବିନୋଦ ଆସିଥିଲେ ପଳାତକ ଜୀବନରୁ ବାହାରକୁ ବାମପନ୍ଥୀମାନଙ୍କ ଭିତରେ ଐକ୍ୟକୁ ଆଉରି ଶାଣିତ, ଦୃଢ଼ କରିବା ପାଇଁ । କିଛି ଭିତ୍ତିଭୂମି ଗଢ଼ିହେଲା ସତ୍ୟ କିନ୍ତୁ ତାହା ଦାନା ଧରିବା ପୂର୍ବରୁ ବିନୋଦ ଆଉ ନାହାନ୍ତି ।

ଭାରତବର୍ଷରେ ବିହାର ଏକ ପ୍ରାକୃତିକ ସମ୍ପଦଭରା ରାଜ୍ୟ, କିନ୍ତୁ ସବୁଠାରୁ ଦରିଦ୍ର ରାଜ୍ୟ ମଧ୍ୟରେ ଅନ୍ୟତମ । ଦାରିଦ୍ର୍ୟ ଯେପରି ବସା ବାନ୍ଧିଛି ଠିକ୍ ସେଇପରି ନଗ୍ନ ଅତ୍ୟାଚାର ମଧ୍ୟ ବସାବାନ୍ଧିଛି ସେଠାରେ । ସାମନ୍ତବାଦୀ ଗୋଷ୍ଠୀ- ଜମି ମାଲିକ ଗୋଷ୍ଠୀ ପୁଲିସର ସହାୟତା ଯେପରି ପାଇଛନ୍ତି, ଠିକ୍ ସେଇପରି ସଶସ୍ତ୍ର ସାମରିକ ବାହିନୀ 'ରଣବୀର ସେନା' ସେମାନେ ଗଢ଼ିଛନ୍ତି ଆଇନର ଊର୍ଦ୍ଧ୍ୱରେ । ତାକୁ ପ୍ରତିହତ କରିବାକୁ ପଡ଼ିବ । ଏବଂ ସି.ପି.ଆଇ. (ଏମ୍. ଏଲ୍.) ତଥା ଭାରତୀୟ ପିପୁଲସ୍ ଫ୍ରଣ୍ଟ ତାକୁ ପ୍ରତିରୋଧ କରିବା ପାଇଁ ସମର୍ଥ ହୋଇଛି ।

ବିନୋଦ ଆଉ ନାହାନ୍ତି
ତାଙ୍କର କାମ କିନ୍ତୁ ଅଧାରେ ରହିଯାଇଛି
ସେ ଦାୟିତ୍ୱକୁ ପୂର୍ଣ୍ଣ କରିବାର ଦାୟିତ୍ୱ ସେ ଦେଇଯାଇଛନ୍ତି ଉତ୍ତର ପୀଢ଼ି ହାତରେ ।



# କରିଅଛି ମରଣକୁ ଜୀବନର ଅମୃତ ସୋପାନ

ବୀଣା ଆଉ ନାହିଁ । ଶତାବ୍ଦୀ ସରିବା ପାଇଁ ମାତ୍ର ଆଉ କେଇଟା ଦିନ । କିନ୍ତୁ ତାହା ଦେଖିବାକୁ ସେ ଆଉ ରହିଲା ନାହିଁ । ଡିସେମ୍ବର ୯, ୧୯୯୯ । ଅଂଧାର କଟି ସୂର୍ଯ୍ୟୋଦୟ ହେବା ସହିତ ତା'ର ଜୀବନର ସୂର୍ଯ୍ୟ ବୁଡ଼ିଗଲା ଚିରକାଳ ପାଇଁ । ପୂର୍ବଦିନ ପୁଅ ଫୋନ କରିଥିଲା ଲଣ୍ଡନରୁ । ''ମାଆ, ମୁଁ ଆସୁଛି'' । ବୀଣା ଉତ୍ତର ଦେଇଥିଲା ''ମୁଁ ବି ଘରକୁ ଫେରୁଚି କାଲି'' । ପୁଅ ଫେରିଥିଲା, କିନ୍ତୁ ବୀଣା ଚାଲିଯାଇଥିଲା ସେତେବେଳକୁ । କୁଆଡ଼େ ? ମଦର ଟେରେସା କହୁଥିଲେ ''ମୃତ୍ୟୁ ସୁନ୍ଦର । ତାହା ଘର ବାହୁଡ଼ାଭଳି'' । ବୀଣା କ'ଣ ସେଇ ଘରକୁ ଫେରିଗଲା ? କିଛି ତ କହିଲା ନାହିଁ । ସେ ଫେରିଗଲା ସେଇ ଘରକୁ, ଯେଉଁଠୁ କେହି କେବେ ଫେରି ନାହାନ୍ତି !

ଜନ୍ମ ହୋଇଥିଲା ୧୮ ଜୁଲାଇ, ୧୯୩୯ରେ । ପାଠ ପଢ଼ିଥିଲା ରେଭେନ୍ସା କଲେଜରେ । ସେଇଦିନ ଠାରୁ ତା' ସହିତ ପରିଚୟ, ଆତ୍ମୀୟତା । ସମୟ ଅତିକ୍ରାନ୍ତ ହେବା ସହିତ ତାହା ବଢ଼ିଛି ସିନା, କମିନାହିଁ ।

ବୀଣା ମେଡ଼ିକାଲ ପଢ଼ିଛି । ଠିକ୍ ସମୟରେ କ୍ଲାସରେ ପହଞ୍ଚିଛି ଯେପରି ଛାତ୍ର ସମୟରେ, ସେଇପରି ଅଧ୍ୟାପିକା ଭାବରେ । ସମୟରେ କେବେ ହେଳା କରି ନାହିଁ । ସମସ୍ତେ ଆଜି ସେ କଥା ସ୍ମରଣ କରନ୍ତି । ଯାଜପୁରରେ କାର୍ଯ୍ୟ ଆରମ୍ଭ କରିଥିଲା, ଓଡ଼ିଶାର ତିନୋଟି ଯାକ ମେଡ଼ିକାଲ କଲେଜରେ ଅଧ୍ୟାପନା କରିଛି ଏବଂ ଆପଣାର ମମତାଭରା କଥା, ଛାତ୍ର ବତ୍ସଳତା ଏବଂ ସମୟାନୁବର୍ତ୍ତୀତା ପାଇଁ ସମସ୍ତଙ୍କର ଆଦର ଲାଭ କରିଛି ।

ମଣିଷ ମଣିଷକୁ କ'ଣ ସବୁବେଳେ ଠିକ୍ ବୁଝିପାରେ ? ବୁଝିପାରେ ନାହିଁ । ସେଇ ଯୋଗୁଁ ଅନେକ ଲୋକ ଅବୁଝା ରହିଯାନ୍ତି । ଭୁଲ୍ ବୁଝନ୍ତି । ମଣିଷର କେଉଁ ସୂକ୍ଷ୍ମ ତନ୍ତ୍ରୀରେ କି ପ୍ରକାର ଆଘାତ କଲେ ସେ କ'ଣ କରେ, ତାହା ତାକୁ ବୁଝିଲେ ହିଁ ସବୁ ବୁଝିହୁଏ । ବୀଣା ଆମର ସେଇଭଳି ଏକ ମଣିଷ, ଯାହାକୁ ମୁଁ ଅନ୍ତତଃ ସବୁବେଳେ ବୁଝିଛି ଠିକ୍ ମୋର ସାନ ଭଉଣୀ ପରି । ମୋତେ ସେ ଭାଇ ବୋଲି ଡାକେ, ଏବଂ ସେ ରହି ଆସିଛି

ମୋ ପାଖରେ ସେଇଭଳି ଗେହ୍ଲା ଭଉଣୀ ପରି । ବୟସ ବଢ଼ିବା ସହିତ ମୋର ଡାକ ନାମ ହଜି ଯାଇଛି ଧୀରେ ଧୀରେ । କିନ୍ତୁ ତାକ ନାମରେ ଯେଉଁ କୁହୁକ ଅଛି ତା' କ'ଣ ମିଳେ ଅନ୍ୟ ନାମରୁ ? ''ପାକୁ ଭାଇ, ତମେ ମୋତେ ଆଉ ଭଲ ପାଉନ ! ମୋତେ ତ କାଇଁ ବିଧାଟିଏ ମାରିନାହଁ ଏ ପର୍ଯ୍ୟନ୍ତ ?'' ଆଖି ଲୁହରେ ଟଳଟଳ ହୁଏ । ବୀଣା ଆଉ ନାହିଁ ।

ସମୟ ବଢ଼ିବା ସହିତ ସ୍ୱାମୀ ସ୍ତ୍ରୀ ଦୁଇଜଣ ଧାର୍ମିକ ପାଲଟି ଯାଇଥିଲେ । ଚିନ୍ମୟ ମିଶନର ସେ ଜଣେ ସକ୍ରିୟ ସଭ୍ୟ । ଗୀତା ମୁଖସ୍ଥ କରିଥିଲା । ସ୍ୱାମୀ ସାଂଗରେ ବିବାଦ । ତମେ ତ ଦିନଯାକ ଆଗ ଡାକ୍ତରଖାନରେ, ନଚେତ ବର୍ତ୍ତମାନ କଳିଙ୍ଗ ହସପିଟାଲରେ । ତମେ କେତେବେଳେ ଗୀତା ମୁଖସ୍ଥ କରୁଛ କହିଲ ଦେଖି ?

ସ୍ମୃତି ହାବୁକା ମାରେ । ଦିହ ହାତ ଅବଶ ଲାଗେ । ବୟସରେ ମୋ ଠାରୁ ଦଶବର୍ଷରୁ ବେଶି ସାନ । ସେ ଆଗରୁ ଚାଲିଗଲା କାହିଁକି ? ମୋର ତ ଆଗରୁ ଯିବାର କଥା । କିନ୍ତୁ ମହାକାଳ କ'ଣ କାହାରି ନିୟମ ମାନେ ?

ବୀଣା ଶୋଇ ଯାଇଚି । ମୁଣ୍ଡକୁ ଟିକିଏ ଆଉଁସି ଦେଲି । ବିଧା ମାରିବା ପାଇଁ ମନ ବଳିଲା ନାହିଁ । ହାତ ଅବଶ ହୋଇଗଲା, ଆଖି ମନ ସବୁ ରୁନ୍ଧି ହୋଇଗଲା । ବୀଣା, ଉଠୁନୁ ଥରେ !

ବୀଣା ଆଉ ଉଠିବ ନାହିଁ । ପୁଅ ଆସି ଦେଖିବ ଯେ ମାଆ ଚାଲି ଯାଇଛି ତା'ର ଘରକୁ । ସେଠାରୁ ଆଉ କେହି ଫେରି ନାହାନ୍ତି । କିନ୍ତୁ ତାକୁ ଝୁରିବେ ସମସ୍ତେ ସବୁଦିନେ । ସେ ସ୍ମୃତ ହୋଇ ରହିବ ଆମ ପାଖରେ ସବୁଦିନେ । ସେ ଡାକ କିନ୍ତୁ ଆଉ ଶୁଭିବ ନାହିଁ ।



# ନାରୀ ମୁକ୍ତିର ମହାନେତ୍ରୀ ବିମଳା

ଜାନୁଆରୀ ୨ ତାରିଖ, ୧୯୯୮ ମସିହାର ସକାଳ । ତାହା ଦେଖିବାକୁ ନାରୀ ଜାଗରଣର ମହାନେତ୍ରୀ ବିମଳା ଫାରୁକି ଆଉ ନାହାନ୍ତି । ହଠାତ୍ ତାଙ୍କର ହୃଦଯନ୍ତ୍ରକ୍ରିୟା ବନ୍ଦ ହୋଇଯାଇଛି ଚିରଦିନ ପାଇଁ । କିଛି ମାସ ପୂର୍ବରୁ ତାଙ୍କର ସ୍ୱାମୀ ପ୍ରଥିତଯଶା ସାମ୍ୟବାଦୀ ଏସ୍. ଫାରୁକିଙ୍କର ସେଇପରି ହଠାତ୍ ହୃଦଯନ୍ତ୍ରକ୍ରିୟା ବଂଦ ହୋଇ ପରଲୋକ ହୋଇଯାଇଥିଲା । ମୃତ୍ୟୁ ବେଳକୁ ବିମଳାଙ୍କ ବୟସ ୭୫ ବର୍ଷ ହୋଇଥିଲା । ସେ ଜନ୍ମ ହୋଇଥିଲେ ହିନ୍ଦୁ ବଂଗାଳୀ ପରିବାରରେ । ନାମ ଥିଲା ବିମଳା ଗାଙ୍ଗୁଲି । ଜନ୍ମ ହୋଇଥିଲେ ରାଓଲପିଣ୍ଡିରେ । ଦେଶ ବିଭାଜନ ପରେ ସେମାନେ ଲାହୋରରୁ ଚାଲି ଆସିଥିଲେ ଦିଲ୍ଲୀକୁ ଏବଂ ସେଇଠି ତାଙ୍କର ସାକ୍ଷାତ ହୁଏ ସହଯୋଦ୍ଧା ଏମ୍. ଫାରୁକିଙ୍କ ସହିତ । ସ୍ୱାଧୀନତା ଓ ସାମ୍ୟବାଦର ମହାମନ୍ତ୍ର ଜାତି, ଧର୍ମର ବିଭେଦର ପ୍ରାଚୀରକୁ ଭାଙ୍ଗି ଦେଇଥିଲା ବହୁକାଳରୁ । ଆଗରେ ଯେପରି ଥିଲା ବଳିଦାନର ଡାକରା, ସେଇପରି ଥିଲା ସହଯୋଦ୍ଧୃତ୍ୱର ଆହ୍ୱାନ । ଦୁହେଁ ବିବାହ କରନ୍ତି ଏବଂ କମ୍ୟୁନିଷ୍ଟ ପାର୍ଟି କମ୍ୟୁନରେ ସେମାନଙ୍କର ସଂସାର ଗଢ଼ିଉଠେ ।

ଆର୍ତ୍ତ ମଣିଷର ସେବା ହେଉଛି ଏକମାତ୍ର ଧର୍ମ— ବହୁ ମହାପୁରୁଷଙ୍କର ଏଇ ବାଣୀ ତାଙ୍କୁ ମୁଗ୍ଧ କରିଥିଲା ଏବଂ ଦଳିତ ମଣିଷ ବିଶେଷତଃ ଦଳିତ ନାରୀ ପ୍ରତି ତାଙ୍କର ସମ୍ବେଦନଶୀଳତା ତାଙ୍କୁ ଟାଣି ନେଇଥିଲା ନେତୃତ୍ୱକୁ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଭାବରେ ସେ ଦଳିତ, ଆର୍ତ୍ତ ନାରୀର ପ୍ରତିନିଧିରେ ପରିଣତ ହୋଇଥିଲେ । ସ୍ୱାମୀ ସ୍ତ୍ରୀ ଉଭୟେ ଥିଲେ ମେଥଡ଼ିକାଲ । ତେଣୁ କେନ୍ଦ୍ର ଅଫିସ ପରିଚାଳନାର ଦାୟିତ୍ୱ ପଡ଼ିଥିଲା ତାଙ୍କ ଉପରେ । ଆସଫ୍ ଅଲ୍ଲି ରୋଡ଼ର ସେଇ ବଖରାଏ ଘର ହିଁ ସେମାନଙ୍କର ରହିବା ସ୍ଥାନ ହୋଇ ରହିଯାଇଛି ମୃତ୍ୟୁ ପର୍ଯ୍ୟନ୍ତ । କେବେ ନିର୍ବାଚନରେ ଠିଆହୋଇ ନାହାନ୍ତି । ଆଗ୍ରହ ମଧ ପ୍ରକାଶ କରି ନାହାନ୍ତି । ଯଦିଓ ବହୁନେତା, ବହୁ ପ୍ରଧାନମନ୍ତ୍ରୀ ସେମାନଙ୍କର ପରିଚିତ ମଣିଷ । ବିଶେଷତଃ ଇନ୍ଦର ଗୁଜରାଲଙ୍କ ସହିତ ସେମାନଙ୍କର ବ୍ୟକ୍ତିଗତ ସମ୍ପର୍କ ନିବିଡ଼, ବହୁଦିନର ।

ଯେଉଁଠି ନାରୀ ନିର୍ଯ୍ୟାତନା ହୋଇଛି, ଯେଉଁଠି ନାରୀ ପାଶବିକ ଆକ୍ରମଣର ଶିକାର ହୋଇଛି, ଯେଉଁଠି ମଣିଷ-ପଶୁର ହ୍ରେସାରବରେ ସୁନ୍ଦର ରୁଦ୍ଧ ହୋଇଛି, ପ୍ରତିହତ ହୋଇଛି ସେଇଠି ବିମଳା ପହଞ୍ଚିଛନ୍ତି କାହାରିକୁ ଭ୍ରୂକ୍ଷେପ ନକରି । ସାମାଜିକ ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ସଂଘର୍ଷ ଯେଉଁଠି ସେଇଠି ବିମଳାଙ୍କୁ ଦେଖାଯାଏ ନିଶ୍ଚିତ ଭାବରେ ।

ସ୍ୱାଭାବିକ ଭାବରେ ଭାରତୀୟ ମହିଳା ଫେଡ଼େରେଶନର କେବଳ ସେ ପ୍ରତିଷ୍ଠାତାମାନଙ୍କ ମଧ୍ୟରେ ଅନ୍ୟତମ ନ ଥିଲେ, ମୃତ୍ୟୁ ପର୍ଯ୍ୟନ୍ତ ଥିଲେ ତା'ର ସଂଗଠକମାନଙ୍କ ମଧ୍ୟରେ ଅନ୍ୟତମ । ଆଗରେ ଜାନୁଆରୀ ୧୯୯୯ରେ ଆନ୍ଧ୍ର ରାଜ୍ୟରେ ନିଖିଳ ଭାରତ ମହିଳା ସମ୍ମିଳନୀ । ତା'ର ନିବେଦନ, ତାର ଆହ୍ୱାନ ପତ୍ରର ଚିଠାରେ କାଳି ଶୁଖିନାହିଁ, ବିମଳାଙ୍କ ହାତର ଅକ୍ଷର ତାହା ବହନ କରିଛି । କିନ୍ତୁ ବିମଳା, ଏହାର ଚିଠାକାର, ଲେଖିକା ଆଉ ନାହାନ୍ତି । ବିମଳା-ବିହୀନା ସମ୍ମିଳନୀର ଶ୍ରୀ ହଠାତ୍ ତୁଟି ଯାଇଛି । ନୂଆ ପୀଢ଼ିକୁ ସେଇ ଶ୍ରୀ ଫେରାଇ ଆଣିବାର ଦାୟିତ୍ୱ ସେ ଦେଇ ଯାଇଛନ୍ତି ଉତ୍ତର ପୀଢ଼ି ହାତରେ । ସ୍ୱାଧୀନତାର ୫୦ ବର୍ଷ ପରେ ନାରୀ ତଥାପି ଅବହେଳିତ, ନିର୍ଯ୍ୟାତିତ, ଅତ୍ୟାଚାରିତ । ସେମାନଙ୍କ ପାଇଁ ସାମ୍ୟର, ମୁକ୍ତିର ଲକ୍ଷ୍ୟ ତଥାପି ବହୁ ଦୂରରେ । ଏହି ସଂଗ୍ରାମର ମହାଯୋଦ୍ଧା ବିମଳା ଆଉ ନାହାନ୍ତି । ତାଙ୍କର ଅପୂର୍ଣ୍ଣ ସଂଗ୍ରାମକୁ ଚାଲୁ ରଖିବା ପାଇଁ ହଜାର ହଜାର ବିମଳାର ଆବଶ୍ୟକ ଏ ଜାତି ପାଇଁ । ଆପଣାର ତ୍ୟାଗପୂତ ଏବଂ ସାଲିସହୀନ ସଂଗ୍ରାମର ଜୀବନରେ ବିମଳା ସେଇ ମହାଦୀକ୍ଷା ଦେଇ ଯାଇଛନ୍ତି ସବୁ ନାରୀଙ୍କୁ, ସବୁ ସାମାଜିକ କର୍ମୀଙ୍କୁ, ସବୁ ସାମ୍ୟବାଦୀମାନଙ୍କୁ ।



# ଗୋଟାଏ ବର୍ଷ ପରେ

ସମୟ ବୋହି ଚାଲିଛି । କାହାକୁ ଅପେକ୍ଷା କରିନାହିଁ । ମୁଁ ବା କି ଛାର ତାର ପ୍ରବାହ ଆଗରେ । ସେ ଯିବାର ଗୋଟାଏ ବର୍ଷ ପରେ । ମଣ୍ଟୁଦା ଆଉ ନାହିଁ । ଡାକ୍ତର ବିମଳେନ୍ଦୁ ଦତ୍ତରାୟ ପେଶାରେ ଥିଲା ଡାକ୍ତର । କଟକ ମେଡ଼ିକାଲ କଲେଜରେ ପାଠ ପଢ଼ିଥିଲେ । ସେଇଠି ଚାକିରି ବି କରୁଥିଲା । ଅବସର ନେଇଥିଲା ସେଇଠାରୁ । ଗଲା ବର୍ଷ 'ଅଂଶୁଘାତ'ର କୁଆଡ଼େ ଶିକାର ହେଲା ସିଏ ଏବଂ ଚିକିତ୍ସା ଅଭାବରୁ ମରିଗଲା । ଡାକ୍ତରଖାନା, ନର୍ସିଂହୋମ କେଉଁଠି ତା'ର ଚିକିତ୍ସାର ବନ୍ଦୋବସ୍ତ ହୋଇପାରିଲା ନାହିଁ । ଇତିହାସର କି କ୍ରୁର ପରିହାସ !

ମଣ୍ଟୁଦା ଖାଲି ଡାକ୍ତର ନଥିଲା । ଡାକ୍ତରି ଥିଲା ପେଶା । କିନ୍ତୁ ନିଶା ଥିଲା ଅନେକ । ବେଶ୍ ନିଶାସକ୍ତ ଥିଲା । ରୋଗୀମାନଙ୍କର ଶୁଶ୍ରୁଷା କରିବା, କେଉଠି ସଂକ୍ରାମକ ବ୍ୟାଧି ହେଲେ ସେଠାରେ ପହଞ୍ଚିଯିବା, ବାତ୍ୟା, ବନ୍ୟାରେ ବିପର୍ଯ୍ୟସ୍ତ ଅଂଚଳର ଦୁସ୍ଥ ନରନାରୀଙ୍କ ପାଖରେ ପହଞ୍ଚିବା ତା'ର ଥିଲା ଗୋଟାଏ ପ୍ରଚଣ୍ଡ ନିଶା । ସେତେବେଳେ ସେ ଜୀବନକୁ ଭ୍ରୁକ୍ଷେପ କରୁ ନଥିଲା । ତାକୁ ମୁଁ ଦେଖିଛି ୧୯୫୫ ବନ୍ୟା, ୧୯୬୦ର ବନ୍ୟା ଓ ବାତ୍ୟା, ୧୯୮୨ ବନ୍ୟା ଓ ବାତ୍ୟା ସମୟରେ । ଦିନରାତିର ହିସାବ ରଖିନାହିଁ, ନିଜ ଖାଇବା ପିଇବାର ଖିଆଲ ରଖି ନାହିଁ । ହଜାର ହଜାର ଲୋକଙ୍କର ହେପାଜତ କରିଥିବା ମଣିଷଟା ମରିଗଲା ବିନା ହେପାଜତରେ । ବିଧିଥିଲେ ତା'ର ଏ କି ବିଡ଼ମ୍ବନା !

ମଣ୍ଟୁଦାର ନିଶା ଥିଲା ଅନେକ । ଜଣେ ଖେଳବାଡ଼ ଭାବରେ ସେ ବେଶ୍ ପ୍ରସିଦ୍ଧିଲାଭ କରିଥିଲା । କ୍ରୀଡ଼ା ତା' ପାଇଁ ଖାଲି ଆନନ୍ଦଦାୟକ ନୁହେଁ, ପ୍ରେରଣାଦାୟକ ବି ଥିଲା । କିନ୍ତୁ ଖେଳରେ ସେ ସଂକୀର୍ଣ୍ଣମନା ନଥିଲେ । 'play the game in the spirit of the game' ଥିଲା ତାର ମଟୋ । ସେଇ ଭାବରେ ସେ ଖେଳି ଆସିଛି ଜୀବନସାରା । ଜୀବନଟାକୁ ମଧ୍ୟ ସେଇପରି ଭାବରେ ଗ୍ରହଣ କରି ଆସିଥିଲା । ଜୀବନର ହାରଜିତ୍‌କୁ ମଧ୍ୟ ସେ ଖେଳବାଡ଼ ସ୍ପିରିଟରେ ହିଁ ଗ୍ରହଣ କରିଥିଲା । ଆଉ ମୃତ୍ୟୁକୁ ?

ସେ ଥିଲା ଜଣେ କଳାକାର । ଘରେ ବସି ରହିବା ମଣିଷ ନଥିଲା । ଜୀବନର ରାଜପଥରେ ତାର ପରିଚିତି ବହୁ ମଣିଷ ସହିତ । ସମ୍ଭ୍ରାନ୍ତ ପରିବାରରେ ଜନ୍ମ । କିନ୍ତୁ ସାଧାରଣ ମଣିଷ ସହିତ ଥିଲା ତା'ର ଅଙ୍ଗୀକାର, ତାର ଆତ୍ମୀୟତା । ସେମାନଙ୍କ ପାଇଁ ସେ ନାଟକରେ ଅଭିନୟ କରୁଥିଲା, ଗୀତ ଗାଉଥିଲା । ତାହା ଝଂକୃତ ହେଉଥିଲା କାରଖାନା, ଖଳାବାଡ଼ି, ଖାଦାନ ବାଗାନରେ ଠିକ୍ ଯେପରି ଝଂକୃତ ହେଉଥିଲା ସମ୍ମିଳନୀ କକ୍ଷ, ସଭାମଂଚମାନଙ୍କରେ । ଛାତ୍ର, ଯୁବକ, ସଂଗ୍ରାମୀ ମଣିଷ ପାଇଁ ସେ ଗାଉଥିଲା ଗୀତ । ବଂଧା ଆସର ନଥିଲା ତାହାର ପୀଠ । ରାଜରାସ୍ତା, ଝାଳବୁହା ମଣିଷ ତାକୁ କରୁଥିଲା ଉନ୍ମାଦ ।

''ଦୁର୍ଗମ ଗରିକାନ୍ତାର ମରୁ ଦୁସ୍ତର ପାରାବାର,
ଲଂଘିତେ ହବେ ରାତ୍ରି ନିଶିଥେ,
ଯାତ୍ରୀରା ହୁସିଆର''

ସେ ଗାଉଥିଲା ।

''କାରଖାନା ଖଳାବାଡ଼ି ଖଦାନ ବାଗାନରେ
ଏକ ହୁଅ ତୁ ଭାରତ ଜନତା
ସଂଗାମର ମଇଦାନରେ''

କଣ୍ଠରେ ତା'ର ଧ୍ୱନିତ ହେଉଥିଲା ।

''ଅମେ ଜାଣିଛୁ ଆମର ଶତ୍ରୁମିତ୍ର
ଜାଣିଛୁ ପଥରେ ଭୟ,
ମୃତ୍ୟୁର ଭୟ ନାହିଁ ଯେ ଆମର ମୃତ୍ୟୁ କରିଛୁ ଜୟ''

ମାନବ ଜାତି ପାଇଁ ମୃତ୍ୟୁକୁ ଜୟ କରିବା ପାଇଁ ବାଜି ରଖିଥିବା ମଣ୍ଟୁ, କିପରି ନିଜର ମୃତ୍ୟୁକୁ ଜୟକରି ପାରିଲା ନାହିଁ ସତରେ ? ନା, ସତରେ ତମେ ମରିନାହଁ ମଣ୍ଟୁ ଦା ?

ମଣ୍ଟୁ ଦତ୍ତ ରାୟ ବାମପନ୍ଥୀ ଥିଲେ ଆପଣାର ବିଶ୍ୱାସରେ । ଚରମ ବାମପନ୍ଥୀ । ସି.ପି.ଆଇ.କୁ ସେ ସାଲିସ୍‌କାରୀ ଦଳବୋଲି ବିଚାରୁଥିଲେ, ବରଂ ସି.ପି.ଏମ୍. ସହିତ ତା'ର ସଂପର୍କ ଥିଲା ବେଶୀ । ଦେଶର ବିଭାଜନକୁ ସେ ଗ୍ରହଣ କରିପାରି ନଥିଲା । ଭାରତବର୍ଷ ଯେ ବିଭାଜିତ ହୋଇଯାଇପାରେ ଏହା ତାହାର କଳ୍ପନାର ବାହାରେ ଥିଲା । ସେଇ ଯୋଗୁଁ ସେ ଗାଉଥିଲା–

''ତେଲେର ଶିଶି ଭାଂଗଲୋବେଲେ ଖୁକୁର
ପରେ ରାଗ କରୋ
ଆର, ତୋମରାଯେ ସବ ଧେଡ଼େ ଖୁକୋ ଭାରତ

ଭେଙ୍ଗେ ଭାଗ୍ କରୋ,
ତାରବେଲା, ତାରବେଲା ?''

କିନ୍ତୁ କଠୋର ବାମପନ୍ଥୀ ମନୋଭାବ ଭିତରେ ବି ତା'ର ଥିଲା ସୁଭାଷ ବୋଷଙ୍କ ପ୍ରତି ଅସୀମ ଦୁର୍ବଳତା ଏବଂ ସୁଭାଷ ବୋଷଙ୍କ ଉପରେ ତାତ୍ତ୍ୱିକ ସମାଲୋଚନାକୁ ମଧ୍ୟ ସେ ଗ୍ରହଣ କରିପାରୁ ନଥିଲା । ଏଇଟା ପାରାଡ଼କ୍ସ.... କିନ୍ତୁ ଇମିତି ପାରାଡ଼କ୍ସ କ'ଣ ମଣିଷ ଜୀବନରେ ଦେଖାଯାଏ ନା ?

ମଣ୍ଟୁଦା ଥିଲା ଦଙ୍ଗଲବାଜ୍ । ଏକୁଟିଆ ରହିବାକୁ ତାକୁ ସୁହାଏନା । ସେ ସବୁବେଳେ ସବୁ ସମୟ କଟାଏ ବଂଧୁ ଗହଣରେ । ବଂଧୁ ପୁଣି ତା'ର ବିଭିନ୍ନ କିସମର । ବିଭିନ୍ନ ଜୀବିକାର, ବିଭିନ୍ନ ରୁଚିର ।

''ପଥେ ଏବାର ନାମୋ ସାଥି,
ପଥେ ହବେ ପଥଚେନା''

ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କର ଏଇ ଗୀତ ଗାଉଥିଲା ସେ । ପଥକୁ ଓହ୍ଲାଉ, ଓହ୍ଲାଉ ସେ ଚାଲିଗଲା ବିଶାଳ ରାଜପଥକୁ, ଯାହା ଲମ୍ବି ଯାଇଛି ଦୂରକୁ, ଦୂରକୁ ବହୁ ଦୂରକୁ । ସେଇଠାକୁ ଯେଉଁଠାରୁ କେହି ଫେରି ନାହାନ୍ତି । ତାହାରି ସଂଧାନ କରୁ କରୁ ରାଜପୁତ୍ର ଗୌତମ ପାଲଟିଥିଲେ ବୁଦ୍ଧ ।

ମଣ୍ଟୁଦା ଘରବାଟ ଦେଇ ଏବେ ଫେରୁଥିଲି 'ମନମୋହନ ମିଶ୍ର' ସଂଧ୍ୟାରେ ଯୋଗଦେଇ । ସେଇଠି ଆବୃତ୍ତି ହେଉଥିଲା ମନମୋହନ ମିଶ୍ରଙ୍କ କବିତା, ଗାଉଥିଲେ ମନମୋହନ ମିଶ୍ରଙ୍କ ସଂଗୀତ । ଅଧିକାଂଶ ଗୀତର ପ୍ରାଣ ନଥିଲା, କାରଣ ଗାୟକମାନେ ଜାଣିନଥିଲେ ଗୀତଗୁଡ଼ିକର ବ୍ୟାକ୍‌ଗ୍ରାଉଣ୍ଡ (Background) । ମନଟା ଭଲ ନଥିଲା । ହଠାତ୍ ମଣ୍ଟୁ ଘର ପାଖରେ ମନେହେଉଥିଲା, ମଣ୍ଟୁଦାକୁ ଡାକିଦେଇଥିଲେ ତ ଜମିଥାଆନ୍ତା । ଭାଗ୍ୟ ଭଲ ଡାକିବାକୁ ଯାଇନାହିଁ ।

ଠିକ୍ ତା' ପରଦିନ ଖବର ପାଇଲି,ଯେ ମଣ୍ଟୁଦା ଆଉ ନାହିଁ । ମାତ୍ର ବର୍ଷକ ତଳେ ସେ ଚାଲିଯାଇଛି ଆମ ସମସ୍ତଙ୍କୁ ଛାଡ଼ି । ଚମକ ଲାଗିଲା ଦେହରେ ।

''ସୀମାହୀନ ମୁକତିର, ଜୀବନ ମରଣ ଦୁଇ ତୀର''

ମନମୋହନ ବାବୁଙ୍କ କବିତା ମନେପଡ଼ିଲା । ତା'ପରେ ମନ, ଆଖି ସବୁ ରୁନ୍ଧିହୋଇ ଆସିଲା ।



# ପଲ୍ଲୀବଧୂର ସେଇ ଚାହାଣୀ ଆଜି ବି ରହିଛି

ରାଜ୍ୟ ସଂଗ୍ରହାଳୟ ନା କେଉଁଠି ମୋର ମନେପଡୁ ନାହିଁ । ଅଛି ଚିତ୍ରପଟଟିଏ । ତା'ର ନାମକରଣ ଶିଳ୍ପୀ ଦେଇଛନ୍ତି ପଲ୍ଲୀବଧୂ ।

ଚିତ୍ରଟିର ଶିଳ୍ପୀ ହେଉଛନ୍ତି ବିଦ୍ୟାଧର ବର୍ମା । କିନ୍ତୁ ସେ ଥିଲେ ଅବିବାହିତ । ତାଙ୍କର ମୃତ୍ୟୁ ସଂବାଦ ଶୁଣି ମନ ପହଁରିଗଲା ଦୂର ଅତୀତକୁ । ଠିକ୍ ସେଇ ନାରୀଟିର ଚାହାଣୀ ପରି । ଯାହା କାଳ କାଳ ଦିଗନ୍ତ ମହାକାଳ ଭେଦକରି ଅନେଇଛି ଦୂରକୁ, ବହୁ ଦୂରକୁ ।

୧୯୪୭ ମସିହା ।

ରାଣୀହାଟ ତେଲି ସାହିର ଏକ କୋଠା । ଆମେ ଉପର ମହଲାକୁ ଯିବୁ । କବି ରାଧାମୋହନ ଗଡ଼ନାୟକଙ୍କ ସାଂଗରେ ମୁଁ । ତଳ ମହଲାରେ କ'ଣ ସବୁଥିଲା, କିଏ ରହୁଥିଲା ମୋର ମନେନାହିଁ । ଆମର ଲକ୍ଷ୍ୟ ଉପର ମହଲା । ସେଇଠି କାଳେ ରହୁଛନ୍ତି ଯଶସ୍ୱୀ କଳାକାର ବିଦ୍ୟାଧର ବର୍ମା । ସେ ରାଧାମୋହନ ଗଡ଼ନାୟକଙ୍କର ବଂଧୁ । ରାଧାମୋହନ ବାବୁ ଅନୁଗୋଳରୁ ଆସି ପହଞ୍ଚିଛନ୍ତି କାଲି ।

ଉପର ମହଲା । ସବୁ ଯେପରି ଏକ ଭଙ୍ଗାଭଙ୍ଗୀର ସଂସାର । ମନହେଉଛି ଯେପରି ମହାକାଳ ଏକ ଭୂମିକଂପ ସୃଷ୍ଟି କରିଯାଇଛି । ଆଉ ତାହାରି ଉତ୍‌ପାତରେ ସବୁ ଯେପରି ବିଧ୍ୱସ୍ତ ହୋଇଯାଇଛି । ସବୁ ଓଲଟପାଲଟ ।

ତାରି ଭିତରେ ବସି ରହିଛନ୍ତି ଜଣେ ମଣିଷ । ରୁଗ୍ଣ ଶରୀର । ଖିଅର ହୋଇନାହାନ୍ତି ବେଶ୍ କିଛିଦିନ ଧରି ବୋଲି ମନେହେଉଛନ୍ତି । ହାତରେ ତୂଳୀ । ଆଙ୍କି ଚାଲିଛନ୍ତି ଏକ ରମଣୀର ଚିତ୍ର । କିନ୍ତୁ କୌଣସି ମଡ଼େଲ ତ କାହିଁ ଆଗରେ ନାହିଁ । କାହାର ଚିତ୍ର ସେ ଆଙ୍କୁଛନ୍ତି ?

ରାଧାମୋହନ ବାବୁଙ୍କ ସହିତ ଅଭିବାଦନର ପର୍ବ ଶେଷହେଲା ପରେ, ସେ ମୋର ପରିଚୟ ପଚାରିଲେ । ମୁଁ ରେଭେନ୍ସା କଲେଜର ପ୍ରଥମ ବାର୍ଷିକ କଳାର ଛାତ୍ର

ଜାଣି ସେ ପାଖକୁ ଡାକିଲେ ଏବଂ ମୋର ପାପୁଲିର ରେଖା ଦେଖିବାକୁ ଆରମ୍ଭ କଲେ । ସେ ଥିଲେ ଜଣେ ହସ୍ତରେଖାବିଦ୍ ବା ପାମିଷ୍ଟ । ନିଜ ଜୀବନର ରେଖା ଦେଖି ଜାଣି ପାରିଥିଲେ ତ ? ମନରେ ଏଇ ପ୍ରଶ୍ନ ଉଠିଥିଲା ସେଦିନ ।

ସବୁ ହେବ ବାପା, କିନ୍ତୁ କଳାକାର ହେବ ନାହିଁ । ''କଳାକାର ଖାଲି ନୁହେଁ କବି ମଧ'' ରାଧାମୋହନ ଗଡ଼ନାୟକ ଯୋଡ଼ିଦେଲେ । କଳାକାର ହେବାଠାରୁ ଦୁଃଖ ଆଉ କିଛି ନାହିଁ ଚିତ୍ରଟିରେ ଥିବା ନାରୀର ଓଠରେ ହସର ରେଖା ସଦ୍ୟ ଦିଆହୋଇଛି ଶିଳ୍ପୀଙ୍କର ତୂଳୀରେ । ଓଦା ଓଦା ତଥାପି ଲାଗୁଛି । ଦୁଃଖରେ ଭରି ରହିଥିବା ଏଇ ତୂଳୀ କେମିତି ଆଙ୍କୁଛି ଏଇ ହସର ରେଖା, ଆନନ୍ଦ ଯାହା ଭିତରୁ ଉତୁରି ବୋହି ଯାଇଛି ? କିଶୋର ମନରେ ସେଦିନ ଏଇ ପ୍ରଶ୍ନ ଉଠିଥିଲା ।

ତା'ପରେ ଶିଳ୍ପୀଙ୍କ ସହିତ ବହୁବାର ଦେଖା ହୋଇଛି । କୁସୁପୁର ଗାଁରେ ଶିଳ୍ପୀ ବିଦ୍ୟାଧର ଜନ୍ମଗ୍ରହଣ କରିଥିଲେ ଅଗଷ୍ଟ ୨୧ ତାରିଖରେ । କଳା ତାଙ୍କୁ କେହି ଶିଖାଇ ନାହିଁ, କୌଣସି ଗୁରୁ ତାଙ୍କର ନଥିଲେ ।

ଗୋଟାଏ ଗପ ମନେପଡ଼େ । ଥରେ ପ୍ରସିଦ୍ଧ ସୁରକାର ମୋଜାର୍ଟଙ୍କ ପାଖକୁ ଗୋଟିଏ ଝିଅ ଶିଖିବାକୁ ଯାଇଥିଲା ବେହେଲା ବାଦନ । ଝିଅଟିର କଂଚା ବୟସ ଦେଖି ମୋଜାର୍ଟ ତାଙ୍କୁ ପ୍ରାରମ୍ଭିକ ଶିକ୍ଷା ଲାଭ କରିବାକୁ କହିଲେ । ଝିଅଟି ପ୍ରତିବାଦ ଜଣାଇଲା । ମୋଦାର୍ଟ ମହାଶୟ, ଆପଣ ଦଶବର୍ଷ ବୟସରେ ବିଥୋଭେନ୍‌ଙ୍କ ନାଇନ୍‌ଥ ସିମ୍ଫନି (Ninth Symphony) ବଜାଇ ପାରୁଥିଲେ କିନ୍ତୁ ମୋତେ ଆପଣ ଶିଖିବାକୁ କହୁଛନ୍ତି ପ୍ରାରମ୍ଭିକ ବିଦ୍ୟା ! ମୋଜାର୍ଟ ହସି ଉତ୍ତର ଦେଲେ କିନ୍ତୁ ମାଡ଼ାମ୍, ମୋତେ କୌଣସି ମୋଜାର୍ଟ ପାଖକୁ ଶିଖିବା ପାଇଁ ଯିବାକୁ ପଡ଼ି ନଥିଲା ଏବଂ କିମିତି ଶିଖିବାକୁ ହେବ ତା' ମଧ ମୋ ପାଇଁ ନଥିଲା ।

ଠିକ୍ ସେଇପରି ବିଦ୍ୟାଧର ବର୍ମା । କୌଣସି ଗୁରୁ ପାଖକୁ ସେ ଶିଖିବାକୁ ଯାଇନାହାନ୍ତି ।

ବାଲ୍ୟକାଳରେ ବିଦ୍ୟାଧର ଶିକ୍ଷାଲାଭ କରିଥିଲେ ଢେଙ୍କାନାଳରେ । ତାଙ୍କର ବାପା ସେଇଠି ରାଜକର୍ମଚାରୀ ଥିଲେ । ସେତେବେଳରୁ ସେ କାଦୁଅ ଚକଟି ମୂର୍ତ୍ତି ନିର୍ମାଣ ଏବଂ ରଂଗତୂଳୀ ଧରି ଚିତ୍ର ଆଙ୍କି ପାରୁଥିଲେ । ପିତାଙ୍କର ସେଇଠି ପରଲୋକ ହୋଇଯାଏ । ମା' ପିଲାମାନଙ୍କୁ ଧରି ଗାଁକୁ ଫେରନ୍ତି । ଗାଁରେ ମୂର୍ତ୍ତି ନିର୍ମାଣ କରୁଥିବା ରାଖାଲବାବୁଙ୍କ ସଂସ୍ପର୍ଶରେ ଆସନ୍ତି ଏବଂ ବିଦ୍ୟାଧର ମୃଣ୍ମୟ ମୂର୍ତ୍ତି ନିର୍ମାଣ କରନ୍ତି । ଏହାଛଡ଼ା ଯାତ୍ରା, ଅଭିନୟ, ଗୀତ, ନୃତ୍ୟ ପ୍ରଭୃତି ସଂଗଠିତ କରନ୍ତି ଯୁବକମାନଙ୍କୁ ଧରି ।

କୁନ୍ତଳ କୁମାରୀ ସାବତଙ୍କ ସହିତ ତାଙ୍କର ଭେଟହୁଏ ଗାଁରେ । ସେ ଶିଳ୍ପୀଙ୍କୁ କଟକ ଆସିବାକୁ ଅନୁରୋଧ କରନ୍ତି । କିନ୍ତୁ ପଲ୍ଲୀବଧୂର ଶିଳ୍ପୀ ପଲ୍ଲୀ ଛାଡ଼ି ଆସିବାକୁ ଚାହାନ୍ତି ନାହିଁ । କିନ୍ତୁ ପରେ ଆସନ୍ତି କଟକ ।

ପ୍ଲାଷ୍ଟର ଅଫ ପ୍ୟାରୀର ଯୁଗ ଆରମ୍ଭ ହୋଇଛି । ଶିଳ୍ପୀ ଗଲେ କଲିକତା । ସେଇଠି ଭେଟହେଲା ଅନ୍ୟତମ ବିଶିଷ୍ଟ ଶିଳ୍ପୀ ଉପେନ୍ଦ୍ର ମହାରଥୀ ଓ ପୂର୍ଣ୍ଣଚନ୍ଦ୍ର ସିଂହଙ୍କ ସହିତ । ସେ ପ୍ଲାଷ୍ଟର ଅଫ ପ୍ୟାରୀର ଛାଞ୍ଚ ଦେଖି ଫେରିଲେ କିନ୍ତୁ କ୍ରମଶଃ ମନୋନିବେଶ କଲେ ଚିତ୍ର ଉପରେ ।

ତାଙ୍କର ଚିତ୍ର ସଂପୂର୍ଣ୍ଣ ଉତ୍କଳୀୟ । ଏହା ହେଉଛି ତାଙ୍କର ସ୍ୱାତନ୍ତ୍ର୍ୟ । ତାଙ୍କର ଚିତ୍ରଗୁଡ଼ିକ ପ୍ରାୟ ଦୁଇଟି ବିଭାଗରେ ବିଭକ୍ତ । ଗୋଟିଏ ହେଉଛି ବାସ୍ତବଧର୍ମୀ । ଯେଉଁଥିରେ ପଲ୍ଲୀବଧୂ, ଗୋଧୂଳି ରାଗିଣୀ, ଶୂନ୍ୟ ଓ ପୂର୍ଣ୍ଣ, ଦ୍ୱିପାନ୍ୱିତା ପ୍ରଭୃତି ଅନ୍ତର୍ଭୁକ୍ତ । ଦ୍ୱିତୀୟଟି ହେଉଛି କଳ୍ପନାବିଳାସୀର ଚିତ୍ର । ଏଥିରେ ଧରା ସୂର୍ଯ୍ୟର ବିଦାୟ, ଛାୟା ଚନ୍ଦ୍ରିକା, ମେଘଦୂତ ପ୍ରମୁଖ ଅନ୍ତର୍ଭୁକ୍ତ ।

କବିଙ୍କର ପ୍ରତିଷ୍ଠା ବଢ଼ିଲା କିନ୍ତୁ ଆର୍ଥିକ ଅନାଟନ ବଢ଼ିଲା । ଦାରିଦ୍ର୍ୟ ତାଙ୍କର ସହଚର ହୋଇଗଲା । ତାରି ଭିତରେ ତାଙ୍କର ଚିତ୍ରଗୁଡ଼ିକୁ ଦେଖିଲେ ମନେହୁଏ ଯେପରି ଶିଳ୍ପୀ ଆପଣାର ପରିସରକୁ ଭୁଲି ଯାଇଛନ୍ତି ।

ତାଙ୍କୁ ମୁଁ ଦେଖିଚି ପ୍ରାୟ ଚାରିବର୍ଷ ଧରି ଚିତ୍ର ଆଙ୍କିବାରେ । ସେତେବେଳେ ସେ ଭୁଲି ଯାଆନ୍ତି ଆପଣାକୁ । ସେ ଯେପରି ସ୍ୱପ୍ନ ବିଭୋର ହୋଇଉଠନ୍ତି ।

ତା'ପରେ ମୋର ଜୀବନର ଗତିପଥ ବଦଳିଗଲା । ମୁଁ ସ୍ୱାଭାବିକ ଜୀବନକୁ ଫେରିବା ବେଳକୁ ଶିଳ୍ପୀ ଅସ୍ତମିତ ।

ପ୍ରକୃତି କୋଳରେ ଗୋଧୂଳି ନାହିଁ କି ରାଗିଣୀ ନାହିଁ ।

ଓଡ଼ିଶା ମାଟି ଦରିଦ୍ର ହୋଇଯାଇଛି ।



# ମ୍ୟାନେଜରଙ୍କ ଶେଷ ମ୍ୟାନେଜିଙ୍ଗ

ବିଶ୍ୱମ୍ଭର ପରିଡ଼ା ଆଉ ନାହାନ୍ତି । ତାଙ୍କର ନୟାଗୌଚ ବାସଭବନରେ ପରଲୋକ ହୋଇଯାଇଛି ନଭେମ୍ବର ୨୫, ୧୯୯୯ରେ । ନୂତନ ଶତାବ୍ଦୀ ଦେଖିବା ପାଇଁ ସେ ଆଉ ନାହାନ୍ତି । ୧୯୨୧ ମସିହା ଫେବୃଆରୀ ୮ ତାରିଖରେ ଜଗତସିଂହପୁର ଜିଲ୍ଲା ପାଟଣା ବନମାଳୀପୁରରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ଯେତେବେଳେ ଦେଖୁଛି 'ସମାଜ' ପ୍ରେସର ଏକଦା ପରିଚାଳକ ଫକୀର ଦାସଙ୍କ କଥା ମନେପଡ଼ୁଛି । ଦୁହେଁ ସ୍ୱାଧୀନତା ସଂଗ୍ରାମୀ । ଉଭୟେ କାରାବରଣ କରିଛନ୍ତି ମାତୃଭୂମିର ମୁକ୍ତି ପାଇଁ । କିନ୍ତୁ ପରବର୍ତ୍ତୀ କାଳରେ ବିଧାନସଭା, ଲୋକସଭା, ରାଜ୍ୟସଭା ପାଇଁ ପ୍ରାର୍ଥୀ ହେବାକୁ ମନବଳାଇ ନାହାନ୍ତି । କର୍ମୀର ଜୀବନ କଟିଯାଇଛି କର୍ମରେ, ବିନା ପବ୍ଲିସିଟି ବା ପ୍ରଚାରରେ । ସେ ସବୁ ଆଡ଼ମ୍ବରରୁ ଦୂରରେ ରହିବାକୁ ଶ୍ରେୟ ମନେକରିଛନ୍ତି ଏବଂ ଯେଉଁ କାମଟିକୁ ହାତକୁ ନେଇଛନ୍ତି ସେଇଟିକୁ ଆବୋରି ନେଇଛନ୍ତି ପୂରାପୂରି । ଫକୀର ଦାସ ଯେପରି ମ୍ୟାନେଜର 'ସମାଜ'ର, ବିଶ୍ୱମ୍ଭର ପରିଡ଼ା ସେଇପରି ମ୍ୟାନେଜର 'ପ୍ରଜାତନ୍ତ୍ର'ର ।

ଫକୀର ଦାସ ଯେପରି ଅନୁଗତ ରାଧାନାଥ ବାବୁଙ୍କର, ବିଶ୍ୱମ୍ଭର ପରିଡ଼ା ସେଇପରି ଅନୁଗତ ହରେକୃଷ୍ଣ ମହତାବଙ୍କର । ଫକୀରବାବୁଙ୍କ ଟେମ୍ପରାମେଣ୍ଟ ଯେପରି ରାଧାନାଥ ବାବୁଙ୍କ ଟେମ୍ପରାମେଣ୍ଟରୁ ସଂପୂର୍ଣ୍ଣ ଭିନ୍ନ, ବିଶ୍ୱମ୍ଭର ବାବୁଙ୍କ ଟେମ୍ପରାମେଣ୍ଟ ମହତାବବାବୁଙ୍କ ଟେମ୍ପରାମେଣ୍ଟରୁ ସେଇପରି ସଂପୂର୍ଣ୍ଣ ଭିନ୍ନ । କିନ୍ତୁ ଆନୁଗତ୍ୟ ସଂପୂର୍ଣ୍ଣ ।

ବିଶ୍ୱମ୍ଭର ପରିଡ଼ା ପିଲାଦିନରୁ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ । ନିଜର ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ମାତୃଭୂମିର ମୁକ୍ତି ତାଙ୍କ ପାଇଁ ବେଶି ବରଣୀୟ ହୋଇଥିଲା । ମାତୃଭୂମିର ବିକାଶ ଭିତରେ ହିଁ ସେ ନିଜର ବିକାଶ ଖୋଜିଥିଲେ । ବିନୟୀ, ଭଦ୍ର, ବନ୍ଧୁବତ୍ସଳ ବିଶ୍ୱମ୍ଭର କୌଣସି କଥାରେ କମ୍ପ୍ରମାଇଜ (compromise) କରି ନାହାନ୍ତି । ଏପରିକି ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖରେ ମଧ । ନିଜର ଶାରିରିକ ଶକ୍ତି ହ୍ରାସ ପାଇଲାମାତ୍ରେ ସେ ପ୍ରଜାତନ୍ତ୍ର ପ୍ରଚାର ସମିତିର ମ୍ୟାନେଜମେଣ୍ଟତ୍ୱରୁ ବିଦାୟ

ନେଇଯାଇଛନ୍ତି, ଆପେ ଆପେ । କେହି ତାଙ୍କୁ ବାହାର କରିଦେଇ ନାହାନ୍ତି । ସଂସାରର କୌଣସି ଜିନିଷକୁ ସେ ଜାବୋଡ଼ି ଧରିରହୁ ନଥିଲେ । ଯାହା ସମ୍ଭବ ତାହା ହିଁ କରିଯିବି, କିନ୍ତୁ ବୋଝ ହେବିନାହିଁ କି ଜାବୋଡ଼ି ଧରିରହିବି ନାହିଁ ।

ଦେଖାହୁଏ ମଝିରେ ମଝିରେ, ସଭା ସମିତିରେ, ବିବାହ ବ୍ରତରେ । କାଳକ୍ରମେ ତାହାର ପରିମାଣ କମିକମି ଆସିଲା । ପଚାରିଲେ କହନ୍ତି, ଆଉ କ'ଣ ଯାଇ ହେଉଛି, ସମୟ ପରା ହେଲାଣି ।

ଜନ୍ମ ହୋଇଥିଲେ ଜଗତସିଂହପୁର ଜିଲ୍ଲା ବନମାଳୀପୁର ଗ୍ରାମରେ । ପାଠ ପଢ଼ିଲା ବେଳରୁ ହିଁ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ୧୯୪୦ ମସିହାରେ ସେ ଯୁବ ସମ୍ମିଳନୀ ପାଇଁ ଜିଲ୍ଲା ସଂଗଠନର ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ କାରାବରଣ କରିଥିଲେ । ତ୍ୟାଗରେ ଅଂଶଗ୍ରହଣ କରିଛନ୍ତି, ଭୋଗରେ ନାହିଁ । ଜୀବନଟା ସେଇପରି କଟିଗଲା । ନିରଳସ, ନିସ୍ୱାର୍ଥପର ଭାବରେ । ନିଜପାଇଁ ପ୍ରଚାର ଲୋଡ଼ି ନାହାନ୍ତି, ଫଟୋ ଉଠାଇନାହାନ୍ତି, ଫୁଲମାଳ ବରାଦ କରି ନାହାନ୍ତି । କିନ୍ତୁ ଏହା ସତ୍ତ୍ୱେ ସେ ବାରିହୋଇ ପଡ଼ନ୍ତି ଆପଣା କାମର ସୁରଭିରେ ।

'ପ୍ରଜାତନ୍ତ୍ର' ପରିବାରର ସଭ୍ୟ, ଟ୍ରଷ୍ଟ ବୋର୍ଡ଼ର ସଭ୍ୟ ଭାବରେ ସେ କାର୍ଯ୍ୟ କରିଯାଇଛନ୍ତି ଅବିରତ, ଅବିଚଳ । ମହତାବ ବାବୁଙ୍କ ଉତ୍ଥାନ ପତନ ତାଙ୍କୁ ଘାରିନାହିଁ । ଘାରିଛି କାମ-ପ୍ରଜାତନ୍ତ୍ର ପ୍ରଚାର ସମିତି– ସେଇଥିରେ ସେ ଘାରି ହୋଇଛନ୍ତି ମୃତ୍ୟୁ ପର୍ଯ୍ୟନ୍ତ ।

ସେ ଆଉ ନାହାନ୍ତି । କେହି ରହିବେ ନାହିଁ ସତ୍ୟ । କିନ୍ତୁ ଯେଉଁମାନେ ରହିଯିବେ ଆଲୋକ ସ୍ତମ୍ଭ ପରି ଗଭୀର ଅଂଧକାର ଭିତରେ ସେଇମାନଙ୍କ ଜୀବନ ସାର୍ଥକ । ବିଶ୍ୱମ୍ଭର ବାବୁ ତା' ମଧରେ ଅନ୍ୟତମ, ସେଇ କିଛି ଲୋକଙ୍କ ଭିତରେ ।



# ଅଂଧକାରର ଦିହୁଡ଼ି ନିର୍ବାପିତ

ସେଦିନର ରାତି ଥିଲା ତିକ୍ତ, ଆଇଁସିଆ ରାତି । କଳାଘୁଗ ଅଜଗର ରାତି ।

ରାଜାଙ୍କର ହୁକୁମରେ ଗର୍ଭିଣୀ ଗାଈ ବାଟଛାଡ଼ି ଦେଉଥିଲା । ବିଲବାଡ଼ ହିଡ଼ କିଛି ଜାଣି ହେଉ ନଥିଲା । ଚାରିଆଡ଼େ ଅଂଧକାରର ରାଜୁତି ।

ରାଜ୍ୟରେ ରାଜାଙ୍କର, ଦେଶରେ ରାଜସାହୀର ରକ୍ଷାକର୍ତ୍ତା ବ୍ରିଟିଶ ସରକାର, ବହୁ ବ୍ୟକ୍ତି, ବହୁ ବୁଦ୍ଧିଜୀବୀ ଆପଣାର ଚମଡ଼ାକୁ ରକ୍ଷାକରିବା ପାଇଁ ଶାସନର ସ୍ତାବକ ପାଲଟିଥିଲେ । ସେମାନେ ଆପଣାର ଚମଡ଼ାକୁ ରକ୍ଷା କରିଥିଲେ କିନ୍ତୁ ପ୍ରାଣକୁ ବଳି ଦେଇଥିଲେ ।

କିନ୍ତୁ ସମସ୍ତେ ନୁହନ୍ତି ।

ଏଭଳି ଅନେକ ମଣିଷ ଥିଲେ ଯେଉଁମାନେ ସେଇ ଅଂଧକାର ଭିତରେ କୁହାଟ ଛାଡ଼ିଥିଲେ– ମା ଭୈଃ ! ମା ଭୈଃ ! ଭୟ ନାହିଁ, ଆରେ ଭୟ ନାହିଁ । କପିଳାସ ବଣ ଥରାଇ ଏଇ ରଡ଼ି, ଏଇ କୁହାଟ ଶୁଭିଥିଲା ସେଦିନ ।

ସେମାନେ ।

ସେମାନଙ୍କ ଭିତରେ ଦଳେ ଥିଲେ ଯେଉଁମାନେ ରାଜଶାହୀକୁ ପିଲାଦିନରୁ ସ୍ୱୀକାର କରି ନଥିଲେ ।

ସେମାନଙ୍କ ଭିତରେ ଥିଲେ ଦଳେ ଯେଉଁମାନେ ରାଜସାହୀର ନିବିଡ଼ ବନ୍ଧନ କାଟି, ମରଣକୁ ତୁଚ୍ଛକରି ଯୋଗଦେଇଥିଲେ ମୁକ୍ତି ସଂଗ୍ରାମରେ ।

ଏଇପରି ଜଣେ ମଣିଷ ଥିଲେ ବ୍ରଜକିଶୋର ଧଳ ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଅନ୍ୟତମ ଦିହୁଡ଼ି । ସେ ଆଉ ନାହାନ୍ତି ।

ପ୍ରାୟ ନବେ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି ତାଙ୍କର ଭାପୁର (ଗଂଜେଇଡିହ) ବାସଭବନରେ । ଗଲା ବେଶ୍ କିଛିବର୍ଷ ହେଲା ସେ କର୍ମମୟ ଜୀବନରୁ

ଆପଣାକୁ ନିଷ୍କ୍ରାନ୍ତ କରିନେଇଥିଲେ ବାର୍ଦ୍ଧକ୍ୟ ଯୋଗୁଁ । 'ଭୁଲିବୁ ନାହିଁ'ର ଲେଖକଙ୍କୁ ଅନେକ ଭୁଲିବାକୁ ଆରମ୍ଭ କରିଥିଲେ । ସେ କିନ୍ତୁ ଜନ୍ମମାଟିକୁ ଆଦୌ ଭୁଲି ନଥିଲେ । ସ୍ୱପ୍ନ ଦେଖୁଥିଲେ ତଥାପି । ଏଇ ମାଟି ଉନ୍ନତ ହେବ, ସାମ୍ୟର କ୍ରନ୍ଦସୀ ଜନ୍ମ ହେବ ।

ଉଦାର ରାଜସାହୀର ଯୁଗ ସରିଯାଇଥିଲା । ସଂସ୍କୃତି, କଳାର ଆଧାର ଆଉ ନୁହନ୍ତି ରାଜା । ନୁହନ୍ତି ଉଦାରର ମଧ । ରାଜସାହୀ ବର୍ତ୍ତମାନ ଅତ୍ୟାଚାରୀ, ନୃଶଂସ । ଆଉ ଏହିପ୍ରକାର ଶାସନରେ ରହି ତା'ର ସ୍ତାବକ ହେବା, ତାର ଅସ୍ତ୍ର ହେବା ସମ୍ଭବ ନୁହେଁ । ଜାଗ, ଉଠ । ବଂଧନ କାଟିବାକୁ ହେବ । ରାଜସାହୀର ରକ୍ଷାକର୍ତ୍ତା ହେବା ପରିବର୍ତ୍ତରେ ତାକୁ ଭାଙ୍ଗିବା ପାଇଁ ଅଗ୍ରସର ହେବାକୁ ପଡ଼ିବ ।

ଢେଙ୍କାନାଳ ରାଜାଙ୍କର ପୁଲିସ ବ୍ରଜକିଶୋର ପାଲଟିଲେ ବିପ୍ଳବୀ, ରାଜସାହୀକୁ ଧ୍ୱଂସ କରିବା ପାଇଁ । ୧୯୧୨ ମସିହା ଏପ୍ରିଲ ୧୩ ତାରିଖରେ ଜନ୍ମ ବ୍ରଜକିଶୋର ପୁଲିସ ଚାକିରି ଛାଡ଼ି ଯୋଗଦେଲେ ୧୯୩୫-୩୬ ମସିହାରେ ।

''ମାର ତୁ ଯେତେ ଗୁଳି
ମରିବୁ ପଛେ ଡରିବୁ ନାହିଁ
ଯାଆନା ଏହା ଭୁଲି ।''

ଗୁଳି ସେ ଆଉ ମାରିବ ନାହିଁ, ଗୁଳି ଖାଇବାକୁ ସେ ପ୍ରସ୍ତୁତ ହେଇ ଆସିଛି ।

ବାଜି ରାଉତର ଡାକ ଶୁଭୁଛି ନୀଳକଣ୍ଠପୁର ଗାଁରେ । ବ୍ରାହ୍ମଣୀ ଉଲୁସୁଛି । ୧୯୩୮ ମସିହାରେ ବ୍ରଜକିଶୋର ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗଦେଲେ ।

ସାରଙ୍ଗଧର ଦାସ, ବୀର ବୈଷ୍ଣବ, ମୃଷା ମଳିକ, ମହେଶ୍ୱର ସୁବାହୁ ସିଂହ, ହରମୋହନ ପଟ୍ଟନାୟକ, ଲକ୍ଷ୍ମୀଧର, ଶ୍ରୀକାନ୍ତ ରାଉତ ପ୍ରଭୃତିଙ୍କର ଦୁର୍ବାର ଆବାଜରେ ମିଳିତ ହେଲା ବ୍ରଜକିଶୋରଙ୍କ କଣ୍ଠ । ୧୯୪୨ ମସିହା ତାଙ୍କୁ ଦେଖିଲା ଢେଙ୍କାନାଳ ପ୍ରଜାମଣ୍ଡଳର ସଭାପତି ଭାବରେ ।

ବହୁ କଷ୍ଟ, ବହୁ ଦୁଃଖ ଯାତନା ଭିତରେ ଦିନ କଟିଛି । ପରିଶେଷରେ ସୂର୍ଯ୍ୟ ଉଇଁଛି । ଭାରତବର୍ଷ ସ୍ୱାଧୀନ ହୋଇଛି, ରାଜସାହୀର ବିଲୋପ ହୋଇଛି । ନୂତନ ଭାରତବର୍ଷ ଗଠନ ପାଇଁ ବ୍ରଜକିଶୋର ଯୋଗଦିଅନ୍ତି ଭାରତୀୟ ଜାତୀୟ କଂଗ୍ରେସରେ ।

ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ପରେ ସଭାପତି, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ପରିଚାଳନା ବୋର୍ଡ଼ର ସଭ୍ୟ, ୧୯୬୧ ମସିହାରେ ଜିଲ୍ଲା ବୋର୍ଡ଼ର ସଭାପତି ପଦବୀ ତାଙ୍କୁ ଦେଖିଛି ଜଣେ ସଫଳ ଅଧିନାୟକ ଭାବେ । ଷ୍ଟେଟ କାଉନସିଲର ସଭ୍ୟ ଭାବରେ ତାଙ୍କର କାର୍ଯ୍ୟ ପ୍ରଶଂସାଲାଭ କରିଛି ।

ସମୟ ଅତିକ୍ରାନ୍ତ ହୋଇ ଚାଲିଛି, ବୟସ ବଢ଼ିବା ସହିତ । ସମୟ ବଦଳି ଯାଉଛି । ଅନେକ ସାଥୀ ହଜି ଗଲେଣି । ମୂଲ୍ୟବୋଧର ପରିବର୍ତ୍ତନ ସହିତ ଅନେକ ଜନସେବାକୁ ନିଜ ସେବାରେ ପରିଣତ କଲେଣି ।

ସେ ଆପଣାକୁ ନିଷ୍ତ୍ରାନ୍ତ କରି ଫେରି ଯାଇଛନ୍ତି ଆପଣାର ଗ୍ରାମକୁ, ଭିଟାମାଟିକୁ, ଯେଉଁଥିରୁ ଦିନେ ସେ ଆପଣାର ଶକ୍ତି ସଂଗ୍ରହ କରିଥିଲେ, ମଣିଷର ସେବା ପାଇଁ ।

ପରିଶେଷରେ ସେହି ଦିନ ଆଜି ପହଞ୍ଚିଯାଇଛି । ୧୨ ଜୁନ୍, ୨୦୦୧ ମସିହା । ମଧ୍ୟାହ୍ନ । ହଠାତ୍ ସବୁ ଅଂଧାର ହୋଇଗଲା । ବ୍ରଜବାବୁ ଆଖିବୁଜି ଦେଇଛନ୍ତି । ପାଲଟି ଯାଇଛନ୍ତି ଇତିହାସ ।

ସେଦିନର ଦିହୁଡ଼ି ଆଜି ଅସ୍ତମିତ । କେବଳ ସାଥୀ ବୈଷ୍ଣବ ପଟ୍ଟନାୟକ ରହିଯାଇଛନ୍ତି ଶେଷ ଦିହୁଡ଼ି ହେବା ପାଇଁ ।

ଶ୍ମଶାନରେ ଚିତା ଜଳୁଛି । ମୁକ୍ତିର ଅନ୍ୟତମ ବଳିତା । ପୁତ୍ର ରମେଶଚନ୍ଦ୍ରଙ୍କ ହାତରେ ମୁଖାଗ୍ନିର ଶିଖା ।



# ଉଷ୍ଣ ବଂଧୁତାର ଶେଷପର୍ବ

ଶ୍ରୀ ବ୍ରଜମୋହନ ମହାନ୍ତିଙ୍କର ନୂଆଦିଲ୍ଲୀରେ ପରଲୋକ ହୋଇଯାଇଛି ସମ୍ବାଦ ଶୁଣି ଚମକ ଲାଗିଲା । ମନ ପହଁରିଗଲା ଅତୀତକୁ ଦୀର୍ଘ ଅତୀତକୁ । ଆଇନ କଲେଜରେ ପାଠ ପଢ଼ିବା ବେଳର କଥା । ବ୍ରଜବାବୁ ସେତେବେଳରୁ ଭାରତୀୟ ଜାତୀୟ କଂଗ୍ରେସର ଭାବଧାରାରେ ଅନୁପ୍ରାଣିତ ହୋଇ ସାରିଥିଲେ । ଆମମାନଙ୍କ ସାଂଗରେ ତାତ୍ତ୍ୱିକ, ସାଂଗଠନିକ ସଂଘର୍ଷ ଥିଲା ତୀବ୍ର, କିନ୍ତୁ ବ୍ୟକ୍ତିଗତ ସଂପର୍କ ଥିଲା ନିବିଡ଼ ଓ ମଧୁର । ସବୁ ସଂଘର୍ଷ ସତ୍ତ୍ୱେ କଲେଜ ଛକର ଶାନ୍ତିଭାଇ ବା ବଟୁଭାଇ ଦୋକାନରେ 'ହାପ୍‌କପ ଚା' ସହିତ ଜମୁଥିଲା ଆଡ୍ଡା ବହୁ ସମୟଧରି । ଗାନ୍ଧିକ ଅଖିଳମୋହନ ଏବଂ ୰ ବ୍ରଜବଂଧୁ ମିଶ୍ରଙ୍କ ସହିତ ତାଙ୍କର ଆତ୍ମୀୟତା ଥିଲା ଖୁବ୍ ପ୍ରଗାଢ଼ ।

ବ୍ରଜବାବୁ ୧୯୨୩ ମସିହା ଡିସେମ୍ବରରେ ନିମାପଡ଼ା ପାଖ ବରିମୁଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ଏବଂ ପାଠପଢ଼ା ସାରିଲାପରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ୰ ରାମଜିଲାଲ ପଟଓ୍ୱାରୀଙ୍କ ପରିବାର ସହିତ ସେ ସଂପୃକ୍ତ ଥିଲେ ପଢ଼ିବା ସମୟରେ ଏବଂ ରାମଜୀ ପରବର୍ତ୍ତୀ କାଳରେ ବାମପନ୍ଥୀ ହୋଇଯାଇଥିଲେ ବି ବ୍ରଜବାବୁଙ୍କ ସହିତ ନିବିଡ଼ତା କମି ନଥିଲା । ବ୍ରଜବାବୁ କୃତଜ୍ଞତାର ସହିତ ସେ ଦିନଗୁଡ଼ିକ ସ୍ମରଣ କରନ୍ତି ।

ବ୍ରଜମୋହନ ଜଣେ ଦକ୍ଷ ସଂଗଠକ ଥିଲେ । ଆପଣାର ସାଂଗଠନିକ ଦକ୍ଷତାର ସେ ପରିଚୟ ଦେଇଥିଲେ, ଯେତେବେଳେ ସେ ବିଜୁପଟ୍ଟନାୟକଙ୍କ ପ୍ରାର୍ଥୀକୁ ହରାଇ ଦେଇଥିଲେ କଂଗ୍ରେସ କମିଟି ନିର୍ବାଚନରେ । ସେତେବେଳେ ବିଜୁ ପଟ୍ଟନାୟକ ଜଳୁଥାନ୍ତି ମାର୍ତ୍ତଣ୍ଡ ଭଳି । ୧୯୬୭, ୧୯୭୧ ଏବଂ ୧୯୭୪ ମସିହାରେ ସେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୁଅନ୍ତି । ସେ ଓଡ଼ିଶାର ରାଜସ୍ୱ ବିଭାଗର ମନ୍ତ୍ରୀ, ଓଡ଼ିଶା ବିଧାନସଭାର ବାଚସ୍ପତି ଥିଲେ ଏବଂ ଉଭୟ ମନ୍ତ୍ରୀ ଓ ବାଚସ୍ପତି ଭାବରେ ଆପଣାର ଦକ୍ଷତା ପ୍ରମାଣିତ କରିଥିଲେ ।

ବ୍ରଜମୋହନ ମହାନ୍ତି ପାର୍ଲ୍ୟାମେଣ୍ଟକୁ ନିର୍ବାଚିତ ହୋଇ କେନ୍ଦ୍ରରେ ଉପମନ୍ତ୍ରୀ ହୋଇଥିଲେ । ଜରୋରୀ ଶାସନ ଜାରି ହେବା ସମୟରେ ସେ ଇନ୍ଦିରା ଗାନ୍ଧୀଙ୍କ ପଟରେ ରହିବାକୁ ସ୍ଥିର କରିଥିଲେ, ଯଦିଓ ଜରୋରୀ ଶାସନ ଜାରିହେବା ସମୟ ଆଦ୍ୟ ଦିନରେ ତାଙ୍କ ଭିତରେ କିଛି ପରିମାଣରେ ବିଦ୍ରୋହ ଦେଖା ଦେଇଥିଲା । ଜରୋରୀ ପରିସ୍ଥିତି ଜାରିହେବା ଦିନ ତାଙ୍କ ଘରେ ବିଭିନ୍ନ ବ୍ୟକ୍ତିଙ୍କର ଏକ ବୈଠକ ବସିଥିଲା । ସେମାନଙ୍କ ମଧ୍ୟରେ ଜରୋରୀ ଅବସ୍ଥାକୁ ବିରୋଧ କରୁଥିବା କେତେ ବ୍ୟକ୍ତିଥିଲେ । ୰ ବନମାଳୀ ପଟ୍ଟନାୟକ ଏବଂ ବ୍ରଜମୋହନ ମହାନ୍ତି ମଧ୍ୟ ଆପଣାର ଅସନ୍ତୋଷ ପ୍ରକାଶ କରିଥିଲେ । କିନ୍ତୁ ଆପଣାର ପ୍ରଚାର ତଥା ଆତଙ୍କଜନକ ପରିସ୍ଥିତି ସମ୍ମୁଖରେ ଏଷ୍ଟାବ୍ଲିଶମେଣ୍ଟ ପଟରେ ରହିବା ପାଇଁ ସ୍ଥିର କରିଥିଲେ ।

ବ୍ରଜମୋହନବାବୁ ପାର୍ଲ୍ୟାମେଣ୍ଟ, ତାହାର ଲନ, ତାହାର ରେଷ୍ଟୋରାଁ, ତାହାର ଲାଇବ୍ରେରୀ ସହିତ ବେଶ୍ ଜଡ଼ିତ ହୋଇଯାଇଥିଲେ । ପିଲାପିଲି ମଧ୍ୟ ଦିଲ୍ଲୀରେ ପ୍ରାୟତଃ ରହୁଥିଲେ । ସ୍ତ୍ରୀ ପ୍ରମିଳାଦେବୀ ଏକଦା କଂଗ୍ରେସ ଦଳର ସକ୍ରିୟ କର୍ମୀ ଥିଲେ କିନ୍ତୁ ପରବର୍ତ୍ତୀ କାଳରେ ସେ ନିଷ୍କ୍ରାନ୍ତ ହୋଇଯାଇଥିଲେ ସକ୍ରିୟ କର୍ମରୁ ।

ବ୍ରଜବାବୁଙ୍କ କ୍ରମାଗତ ଦିଲ୍ଲୀ ରହଣୀ ତଥା ନୂତନ ପୀଢ଼ି ସହିତ ପରିଚିତିର ଅଭାବ ଯୋଗୁଁ ସଂଗଠନ ଉପରୁ ତାଙ୍କର ମୁଠା ଶିଥିଳ, ହୋଇଯାଇଥିଲା ଏବଂ କିଛି ଲୋକ ତାଙ୍କୁ କଂଗ୍ରେସର 'କନସିଏନ୍ସ କିପର' (Concience keeper) ବୋଲି କହୁଥିଲେ ।

ବ୍ରଜବାବୁ କ୍ରମାଗତ ବ୍ରକାଂଇଟିସ ଏବଂ ଶ୍ୱାସ ରୋଗରେ ପୀଡ଼ିତ ଥିଲେ । କିନ୍ତୁ ପାନ ଛାଡ଼ିପାରି ନଥିଲେ । ଗୁଆ ଓ ଗୁଣ୍ଡି ତାଙ୍କର ରୋଗକୁ ବଢ଼ାଇ ଦେଇଥିଲା ଏବଂ ଫୁସ୍‌ଫୁସକୁ ଦୁର୍ବଳ କରିଦେଇଥିଲା ।

ବ୍ରଜମୋହନ ମହାନ୍ତି ବଂଧୁବତ୍ସଳ ଥିଲେ ଏବଂ ଡଗ୍‌ମାଟିକ (dogmatic) ନଥିଲେ । ସେଇ ଯୋଗୁଁ ବିରୋଧୀମତ ପୋଷଣ କରୁଥିବା ବ୍ୟକ୍ତିମାନଙ୍କ ସହିତ ତାଙ୍କର ଆତ୍ମୀୟତା ଥିଲା । ମଝିରେ ମଝିରେ ଦେଖାହୁଏ । ଫର୍ମାଲି ନୁହେଁ, ଆତ୍ମୀୟତାର ସହିତ ସେ ସ୍ୱାଗତ କରନ୍ତି ଏବଂ ଆଳାପ ଆଲୋଚନା କରନ୍ତି ।

ବ୍ରଜବାବୁ ପଢ଼ନ୍ତି ବହୁତ । ଖୁବ୍ କମ ନେତାଙ୍କ ପାଖରେ ଏହା ଦେଖାଦେଇଥାଏ ଆଜିକାଲି । ଜଣେ ଦୁଇଜଣ ମନ୍ତ୍ରୀଙ୍କୁ ଛାଡ଼ିଦେଲେ କାହାରି ଏକ ବିଧିବଦ୍ଧ ଲାଇବ୍ରେରୀ ଥିଲାପରି ମନେହୁଏନା । ବ୍ରଜାବାବୁଙ୍କୁ ବିଧାନସଭା ଲାଇବ୍ରେରୀରେ ଯେପରି ଦେଖିବାକୁ ମିଳୁଥିଲା, ଠିକ୍ ସେଇପରି ପାର୍ଲ୍ୟାମେଣ୍ଟ ଲାଇବ୍ରେରୀରେ ମଧ୍ୟ । ରାଜସ୍ୱମନ୍ତ୍ରୀ ଭାବରେ ଭୂସଂସ୍କାର ଆଇନ ତାଙ୍କର କାର୍ଯ୍ୟକ୍ଷେତ୍ରରେ ଏକ ଉଜ୍ଜ୍ୱଳ ମାଇଲଖୁଣ୍ଟ । ବ୍ରଜବାବୁ ଖାଲି ପଢ଼ନ୍ତି ନାହିଁ, ପରଖନ୍ତି ମଧ୍ୟ । ବିଭିନ୍ନ ପତ୍ର ପତ୍ରିକାରେ, ସମ୍ବାଦପତ୍ରରେ ତାଙ୍କର ଲେଖା ପ୍ରକାଶ ପାଇଆସିଛି ବହୁବର୍ଷ ଧରି । ସେ ପଢ଼ିବା ଲେଖିବା ସହିତ ଅନ୍ୟମାନଙ୍କୁ,

କନିଷ୍ଠମାନଙ୍କୁ ତାଲିମ ଦେଇଆସିଛନ୍ତି । ଏଭଳି ଗୁଣ ଖୁବ୍ ବିରଳ । କନିଷ୍ଠମାନଙ୍କୁ ହୁକୁମଦେବା, ବଢ଼ିବାକୁ ନଦେବା ଏକ ଜାତୀୟ ଦୁର୍ଗୁଣ । ତାରି ଭିତରେ ବ୍ରଜବାବୁ ଏକ ବ୍ୟତିକ୍ରମ ।

କିଛି ମାସ ତଳେ କୌଣସି ଏକ ବିବାହ ଉତ୍ସବରେ ତାଙ୍କ ସହିତ ଦେଖା ହୋଇଥିଲା ଏବଂ ସେଦିନ ଦେଖିଥିଲି ଯେ ଦୁର୍ବଳ ହୋଇ ଯାଉଛନ୍ତି, ପାଦର ଗତି ସ୍ୱଚ୍ଛ, ସାବଲୀଳ ନଥିଲା ।

ସେ ଚାଲିଯିବେ ଏକଥା ଭାବିବା କଠିନ । କିନ୍ତୁ 'ଜନ୍ମିଲେ ମରଣ ସତ୍ୟ ନୁହେଁ ଖଣ୍ଡିବାର' । ବ୍ରଜବାବୁ ନାହାନ୍ତି । ବୟସରେ ସେ ମୋ ଠାରୁ ୭/୮ ବର୍ଷ ବଡ଼ କିନ୍ତୁ ବୟସର ତାରତମ୍ୟ ତାଙ୍କ ପାଖରେ ହାର ମାନିଥିଲା । ଗପ ଜମିଲାବେଳେ ସେ ଭୁଲିଯାଉଥିଲେ ସାନବଡ଼ର ଭେଦଭାବ ।

ସେ ଆଉ ନାହାନ୍ତି । ଜୁଲାଇ ୨୪, ୧୯୯୯ରେ ସେ ଆମକୁ ଛାଡ଼ି ଚାଲିଯାଇଛନ୍ତି ।



# ଶବ୍ଦ ନୃତ୍ୟଗୁରୁର ଶେଷ ଶବ୍ଦ

ଜୀବନରେ ଦୁଇଜଣ ଭଗବାନ ସାହୁଙ୍କ ସହିତ ପରିଚିତ ହେବାର ସୌଭାଗ୍ୟ ମୋର ହୋଇଛି– ଜଣେ ଗଂଜାମର ରଣପା ନୃତ୍ୟଶିଳ୍ପୀ ଭଗବାନ ସାହୁ ଏବଂ ଆଉ ଜଣେ ସମ୍ବଲପୁରର ଶବ୍ଦ ନୃତ୍ୟଶିଳ୍ପୀ ଭଗବାନ ସାହୁ । ଶବ୍ଦ ନୃତ୍ୟଶିଳ୍ପୀ ଭଗବାନ ସାହୁଙ୍କର ପରଲୋକ ହୋଇଗଲା ଗଲା କାଲି ନଭେମ୍ବର ୧୯ ତାରିଖ, ୨୦୦୦ ମସିହାରେ ତାଙ୍କର କୁମ୍ଭାରୀ ବାସଭବନରେ । ମୃତ୍ୟୁ ବେଳକୁ ତାଙ୍କୁ ୭୦ ବର୍ଷ ହୋଇଥିଲା ଏବଂ ଦୁରାରୋଗ୍ଧ ଶ୍ୱାସରୋଗରେ ସେ ପୀଡ଼ିତ ଥିଲେ । ଦୁଇମାସ ହେବ ତାଙ୍କୁ ଅକ୍ସିଜେନ ସାହାଯ୍ୟରେ ବଞ୍ଚାଇ ରଖାଯାଇଥିଲା ।

ରାତି ଗୋଟାଏ ବାଜି ତିରିଶ ମିନିଟ । ବେଶ୍ ଥଣ୍ଡା ପଡ଼ିଛି । ହଠାତ୍ ତାଙ୍କର ଜୀବନ ନିଷ୍ପନ୍ଦ ହୋଇଗଲା । ଶବ୍ଦ ନୃତ୍ୟଗୁରୁଙ୍କର ସେଇଥିଲା ଶେଷ ଶବ୍ଦ ।

ସେ ଭଗବାନ ମାଷ୍ଟ୍ରେ ନାମରେ ପରିଚିତ ଥିଲେ । ୧୯୩୧ ମସିହା ଦେବ ସ୍ନାନ ପୂର୍ଣ୍ଣିମା ଦିନ ସେ ବରପାଲିର କୁମ୍ଭାରୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପଶ୍ଚିମ ଓଡ଼ିଶାର କଳା, ସଂସ୍କୃତି, ଲୋକଗୀତ ଓ ନାଚକୁ ବଞ୍ଚାଇ ରଖିବାପାଇଁ ଓ ବିକାଶ କରିବା ପାଇଁ ଆଜୀବନ ଉଦ୍ୟମ ତାଙ୍କୁ ସ୍ମୃତିକରି ରଖିବ ଜନମାନସରେ । ସେଥିପାଇଁ ୧.୯୫୦ ମସିହାରେ ସେ ଆପଣା ଉଦ୍ୟମରେ ଆପଣା ଗ୍ରାମରେ ବ୍ରଜେଶ୍ୱରୀ ନୃତ୍ୟକଳା ପରିଷଦ ପ୍ରତିଷ୍ଠା କରିଥିଲେ । ସେ ନିଜେ ମଧ୍ୟ ଅନେକ ନାଟକ ରଚନା କରିଯାଇଛନ୍ତି । 'ବୀର ସୁରେନ୍ଦ୍ରସାଏ ଚୌହ୍ୱାନ' ସେମାନଙ୍କ ମଧ୍ୟରେ ଅନ୍ୟତମ । ହରିଶ୍ଚନ୍ଦ୍ର, ସୀତାଚୋରୀ, ଶାନ୍ତିଦୂତ, ରାମରାଜ୍ୟ, ଯୋଗଜନ୍ମା ରାବଣ, ପ୍ରଣୟ ବଲ୍ଲରୀ, ତ୍ରିରଙ୍ଗା ପତାକାର ରଙ୍ଗ ନାହିଁ, ଗାଁ ମଜଲିସ ପ୍ରଭୃତି ବହି ତାଙ୍କ ପାଇଁ ଆଣି ଦେଇଥିଲା ପ୍ରତିଷ୍ଠା ।

ନାଟକ ପ୍ରଦର୍ଶନ ସହ ଶବ୍ଦନୃତ୍ୟର ପ୍ରଚାର, ପ୍ରସାର ପାଇଁ ସେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସାଧନାରତ ଥିଲେ । ଶବ୍ଦ ନୃତ୍ୟକୁ ଏକ ସ୍ୱତନ୍ତ୍ର ଶାସ୍ତ୍ରୀୟ ନୃତ୍ୟରୂପେ ସ୍ୱୀକୃତି ପାଇବା ତାଙ୍କର ସ୍ୱପ୍ନ ଥିଲା । ପରିଣତ ବୟସରେ ମଧ୍ୟ ଶବ୍ଦନୃତ୍ୟର ବ୍ୟାକରଣ ପ୍ରସ୍ତୁତ କରିବାରେ ସେ ଅକ୍ଳାନ୍ତ ପରିଶ୍ରମକରି ଯାଇଛନ୍ତି । ଏହାର ପାଣ୍ଡୁଲିପି ମଧ୍ୟ ସେ ପ୍ରସ୍ତୁତ କରିଯାଇଛନ୍ତି । ପଶ୍ଚିମ ଓଡ଼ିଶାର କଳା ଓ ସଂସ୍କୃତିର ବିକାଶ ପାଇଁ ସେ ଚିରଦିନ ସ୍ମୃତହୋଇ ରହିବେ ।

ଏଭଳି ଜଣେ ଅସାଧାରଣ ନୃତ୍ୟଶିଳ୍ପୀର ପରଲୋକରେ ସାରା ଓଡ଼ିଶାର ନୃତ୍ୟ ଜଗତରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟିହୋଇଛି । ଶବ୍ଦ ନୃତ୍ୟକୁ ବଂଚାଇ ରଖିବା ଓ ’ର ବିକାଶ କରିବା ପାଇଁ ସେ ଉତ୍ତର ପୀଢ଼ି ଉପରେ ଦାୟିତ୍ୱ ଦେଇଯାଇଛନ୍ତି ।



# ଜୀବନ ନାଟକର ଶେଷ ଜବନିକା

ନାଟ୍ୟକାର ଭଂଜକିଶୋରଙ୍କର ପରଲୋକ ସଂବାଦ ଦେହ ଓ ମନରେ ଚମକ ସୃଷ୍ଟିକଲା । ଏଇ ମାତ୍ର କିଛି ଦିନ ତଳେ ସେ ଫୋନ କରିଥିଲେ ଜାଣିବା ପାଇଁ ଯେ ରାଜା ରାମମୋହନ ଟ୍ରଷ୍ଟର ପୁସ୍ତକ ନିର୍ବାଚନ ପ୍ରକାଶ ପାଇଲାଣି ନା ନାହିଁ । ତାଙ୍କର ଆତ୍ମଜୀବନୀକୁ ସେ ଦେଇଥିଲେ ବିଚାର ପାଇଁ । ନିର୍ବାଚିତ ହେଲେ ତାହା ତାଙ୍କର ଆର୍ଥିକ ଦୁର୍ଗତି ମୋଚନ ପାଇଁ ସାହାଯ୍ୟକାରୀ ହୁଅନ୍ତା । କିନ୍ତୁ ଦୁର୍ଗତି ସତ୍ତ୍ୱେ ସେ ସୁପାରିଶ ପାଇଁ କାହାରି ଦ୍ୱାରସ୍ଥ ହୋଇ ପାରିବେ ନାହିଁ ବୋଲି ସ୍ପଷ୍ଟ ଜଣାଇ ଦେଇଥିଲେ । ଏହା ଥିଲା ନାଟ୍ୟକାରର ସ୍ୱାଭିମାନ, ଦରିଦ୍ରର ସ୍ୱାଭିମାନ । ''ମୁଁ ଦରିଦ୍ର ହୋଇପାରେ କିନ୍ତୁ ଭିକ୍ଷୁକ ନୁହେଁ ।'' ଏଇଥିଲା ତାଙ୍କର ଉଦାତ୍ତ କଣ୍ଠର ଆହ୍ୱାନ ଗଲା ବର୍ଷ ଆୟୋଜିତ ଏଭ ସଭାରେ । ଏହା ହିଁ ରୂପାୟିତ ହୋଇଛି ତାଙ୍କର ଅନେକ ନାଟକରେ ।

୧୯୨୨ ନଭେମ୍ବର ୧୩ ତାରିଖ ଦିନ କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ ଛାଣିପୁର ଗ୍ରାମରେ ତାଙ୍କର ଜନ୍ମ, କିନ୍ତୁ ଅନେକ କାଳରୁ ସେ ରହିଯାଇଛନ୍ତି କଟକ ସହରର ମଂଗଳା ସାହିରେ ଏବଂ ସେଇଠାରେ ହିଁ ତାଙ୍କର ପରଲୋକ ହୋଇଯାଇଛି ନଭେମ୍ବର ୨୬ ତାରିଖ ପ୍ରତ୍ୟୁଷରୁ । ଦୁର୍ବଳ ହୋଇ ଯାଉଥିଲେ ସେ କ୍ରମଶଃ, କଣ୍ଠସ୍ୱର ମଧ ଧୀର ହୋଇ ଆସୁଥିଲା । ଏଇ ବୟସରେ କାମଳ ଏବଂ ନିମୋନିଆରେ ଆକ୍ରାନ୍ତ ହେଲେ ସେ ଏବଂ ସେଥିରୁ ଉଧୁରି ପାରିଲେ ନାହିଁ ।

ନାଟକ ଲେଖିବା ତାଙ୍କର ଏକ ନିଶା । ମନୋରଞ୍ଜନ ଦାସ, ଗୋପାଳ ଛୋଟରାୟ ଏବଂ ଭଂଜ କିଶୋର ପଟ୍ଟନାୟକ ମନେପଡ଼ନ୍ତି ଏକା ସାଙ୍ଗରେ । ଅନେକ ନାଟକ ଲେଖିଛନ୍ତି ସେ । ସେଥି ଭିତରୁ ୨୯ରୁ ଉର୍ଦ୍ଧ୍ୱ ନାଟକ ପ୍ରକାଶିତ ହୋଇଛି । ବାକିସବୁ ରହିଛି ପାଣ୍ଡୁଲିପି ଆକାରରେ । ବର୍ତ୍ତମାନ ସେ ସବୁକୁ ଏକାଠି କରି ଭଂଜକିଶୋର ଗ୍ରନ୍ଥାବଳୀ ପ୍ରକାଶନ କରିବାର ଦାୟିତ୍ୱ ଓଡ଼ିଶା ସାହିତ୍ୟ ଏକାଡେମୀର । ସେମାନେ ନ କଲେ ଓଡ଼ିଶାର କୌଣସି ପ୍ରକାଶନ ସଂସ୍ଥା ଏହାର ଦାୟିତ୍ୱ ନେବା ଉଚିତ । ଏଗୁଡ଼ିକ ନଷ୍ଟ ହୋଇଯାଇ ପାରେ । ବିଶେଷତଃ ପରିବାରବର୍ଗର ଆର୍ଥିକ ସ୍ୱଚ୍ଛଳତା ନଥିଲେ ଏହାର ଆଶଙ୍କା ବେଶି । ଭଂଜକିଶୋରଙ୍କ ନାଟକ, ଉପନ୍ୟାସ ଓଡ଼ିଆ ଜାତିର ଗୌରବ ।

ଭଂଜକିଶୋର କେବଳ ନାଟ୍ୟକାର ନଥିଲେ, ସେ ମଧ୍ୟ ଥିଲେ ଔପନ୍ୟାସିକ । ତାଙ୍କର ଉପନ୍ୟାସ କୋଣାର୍କ କେନ୍ଦ୍ରୀୟ ସଂଗୀତ ନାଟକ ଏକାଡେମୀ ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି । ତାଙ୍କର ଉପନ୍ୟାସ ମାଣିକଯୋଡ଼ି, ଜୀବନ ସାଥୀ, ନବଜନ୍ମ, ରାଜା ହରିଶ୍ଚନ୍ଦ୍ର ଚଳଚିତ୍ର ହୋଇଛି । ଭଂଜକିଶୋର ହେଉଛନ୍ତି କଟକ ରେଡ଼ିଓ କେନ୍ଦ୍ରର ପ୍ରଥମ ସ୍ୱୀକୃତିପ୍ରାପ୍ତ ନାଟ୍ୟକାର ଏବଂ ଗୋପାଳ-ମନୋରଂଜନ-ଭଂଜକିଶୋରଙ୍କ ନାଟକ ଶୁଣିବା ପାଇଁ ରେଡ଼ିଓ ପାଖରେ ଭିଡ଼ ଏଇ ଲେଖକ ଦେଖିଛି । ଏଇ ନାଟକଗୁଡ଼ିକୁ ସମଗ୍ର ପରିବାର ଏକାଠି ବସି ଶୁଣି ପାରିବେ, ଦେଖିପାରିବେ ଏବଂ ଏହା ସତ୍ତ୍ୱେ କଟୁଲାଗିବ ନାହିଁ । ଉପଭୋଗ କରିହେବ ମୂଳରୁ ଶେଷ ପର୍ଯ୍ୟନ୍ତ, ଏହା ହିଁ ଥିଲା ଏଗୁଡ଼ିକର ବିଶେଷତ୍ୱ । ନାଟକ, ନାଟକ ପାଇଁ ନୁହେଁ, ଏହା ହେବ ଜୀବନ ପାଇଁ । ଏହିପରି ଜୀବନଧର୍ମୀ ନାଟକ ରଚନା କରି ଭଂଜକିଶୋର ଓଡ଼ିଆ ସାହିତ୍ୟରେ ଆପଣାକୁ ଅମର କରି ଯାଇଛନ୍ତି ।

ତାଙ୍କ ସାଙ୍ଗରେ ଦେଖା ହୋଇଛି ଅନେକ ଥର ବିଭିନ୍ନ ବିଚିତ୍ର ସ୍ଥାନରେ । ଯେ କୌଣସି ଗୁରୁତ୍ୱପୂର୍ଣ୍ଣ କ୍ରିକେଟ ମ୍ୟାଚରେ ନାଟ୍ୟକାର ଭଂଜକିଶୋରଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଛି । ପଚାରିଛି, ଆପଣ ଜଣେ କ୍ରିକେଟ ଖେଳ ପ୍ରେମୀ, କିନ୍ତୁ ଆପଣଙ୍କ ନାଟକରେ ତ କ୍ରିକେଟ ଖେଳାଳୀ ସ୍ଥାନ ପାଇଲା ଭଳି ମନେହେଉ ନାହିଁ ? ହସିଦେଇ କହନ୍ତି, ସେମାଙ୍କର ଖେଳ ଦେଖିଚି କିନ୍ତୁ ଜୀବନ ଦେଖି ନାହିଁ । ଜୀବନକୁ ଭଲଭାବେ ନ ଦେଖିଲେ ବା ଜାଣି ନ ପାରିଲେ କ'ଣ ନାଟକର ଚରିତ୍ର ଚିତ୍ରଣ କରାଯାଇ ପାରେ ? ହଠାତ୍ ମନେହେଲା ଯେପରି ଜୀବନସାଥୀ ବା ମାଣିକଯୋଡ଼ିର ଚରିତ୍ର ସବୁ ଚାରିପଟରେ କଥା କହୁଛନ୍ତି ।

ନାଟ୍ୟକାର, ଆପଣ ବଂଚି ରହିବେ ଚିରକାଳ । ଆପଣଙ୍କର ନାଟକରେ ଚରିତ୍ରସବୁ ଆମକୁ କଥା କହିଚାଲିବେ ଚିରକାଳ । ଆପଣ ପାଲଟିବେ ପରମ୍ପରା, ଇତିହାସ । ଆପଣଙ୍କୁ ଉତ୍ତର ପୀଢ଼ି ହେଜିବ, ହେରିବ ଯୁଗ ଯୁଗଧରି । ମହାକାଳ ଆପଣଙ୍କ ଉପରେ ଧୂଳି ପକାଇ ପାରିବ ନାହିଁ ।

ଆପଣ ଆମର ଚିରସ୍ମରଣୀୟ । ସବୁ ନାଟକର ଯବନିକା ପଡ଼ିବା ପରି ଜୀବନ ନାଟକର ବି ଶେଷ ଜବନିକା ପଡ଼େ । ସତୀଚଉରାରେ ଆପଣଙ୍କର ଚିତା ଜଳୁଛି । ନାଟକମାନଙ୍କରେ ବହୁ ଚିତା ଆପଣ ଜାଳିଛନ୍ତି । ଆମକୁ ତା'ର ଉତ୍ତାପ, ତା'ର ସ୍ମରଣ ଦେଇଛନ୍ତି । ଆଜି ଉଠି ଆସିବାକୁ ମନେ ହେଉନି ଏଇ ଜୀବନଚିତାରୁ ? ଅନେକ ଘେରି ଠିଆ ହୋଇଛନ୍ତି ଆପଣଙ୍କ ଚାରିପଟରେ, ଆଖିରେ ଲୁହ ଭରି ।

କେତେ ପୁରସ୍କାର, କେତେ ଆୱାର୍ଡ଼, କେତେ ସାର୍ଟିଫିକେଟ ରଖାହୋଇଛି । କିନ୍ତୁ ଆପଣ ନାହାନ୍ତି ।



## ଏ ମାଟିର ସ୍ତନ୍ୟପିଇ
## ଗାଇଲା ସେ ଏ ମାଟିର ଜୟ

ଭୁବନେଶ୍ୱର ବେହେରା ଚାଲିଗଲେ । ବୟସ ୮୫ ହୋଇଥିଲା, ଜନ୍ମ ୧୯୧୬ ମସିହା ଜାନୁଆରୀ ପହିଲାରେ, ମୃତ୍ୟୁ ଆସିଲା ଏପ୍ରିଲ ୧୭, ୨୦୦୧ ମସିହାରେ । ମୃତ୍ୟୁ ଅନିବାର୍ଯ୍ୟ, ଅଲଂଘନୀୟ । କିନ୍ତୁ ଏଇ ଯେଉଁ ମଣିଷଟିର ମୃତ୍ୟୁ ହୋଇଗଲା, ତାହା ପାଇଁ ହଠାତ୍ ଯେମିତି ହୀରାକୁଦ ବନ୍ଧ ତଳେ ପାଣି ଥରିଗଲା, ଠିକ୍ ସେଇପରି ସମ୍ବଲପୁର ବିଶ୍ୱବିଦ୍ୟାଳୟ 'ଜ୍ୟୋତି ବିହାର'ର ଜ୍ୟୋତି ମୁହୂର୍ତ୍ତକ ପାଇଁ ସ୍ତିମିତ ହୋଇଗଲା, ରାଉରକେଲା ରିଜିଅନାଲ ଇଞ୍ଜିନିଅରିଂ କଲେଜର ଗଛଗୁଡ଼ିକ ଶିହରି ଉଠିଲେ ।

ଏଇ ପରିବାର ସହିତ ମୋର ପରିଚିତି ଅନେକ ଦିନରୁ ଉମଦେବୀଙ୍କ (ଭୁବନେଶ୍ୱର ବେହେରାଙ୍କ ସହଧର୍ମିଣୀ) ବାପା ଭାରତଚନ୍ଦ୍ର ନାୟକ ଥିଲେ ମୋର ବାପାଙ୍କର ବଂଧୁ ଏବଂ ଆମେ ଅନେକ ଦିନରୁ ଥିଲୁ ପଡ଼ୋଶୀ । ଭାରତଚନ୍ଦ୍ର ନାୟକ ମଧ୍ୟ ଥିଲେ ଏକ ଦୁରନ୍ତ ମଣିଷ ।

ଭୁବନେଶ୍ୱର ବେହେରା କିଏ ? ଉତ୍ତର ପୀଢ଼ି ପଚାରୁଛି ପୂର୍ବ ପୀଢ଼ିକୁ, କାହିଁକି ତମେ ସମସ୍ତେ ଏପରି ମୁହ୍ୟମାନ ?

ଫେରିବାକୁ ପଡ଼ିବ ୮୫ ବର୍ଷ ତଳକୁ । କଳାହାଣ୍ଡି ଏକ ଗଡ଼ଜାତ ରାଜ୍ୟ । ସେଇଠି କାଶୀବାହାଲରେ ଜନ୍ମ ହୋଇଥିଲା ଏଇ ପୁତ୍ର, ଯିଏ ଦିନେ ଆପଣାର ସୁରଭିରେ ଭରିଦେଲା ନିଜ ଜନ୍ମମାଟିକୁ ଏବଂ ତାହା ମଧ୍ୟ ବିଚ୍ଛୁରିତ ହେଲା ଅନ୍ୟ ଦେଶମାନଙ୍କୁ ।

ତତ୍‌କାଳୀନ ମାଷ୍ଟ୍ରମାନଙ୍କର ପଦ୍ଧତି ଅନୁଯାୟୀ ଭୁବନେଶ୍ୱର ବହୁତ ମାଡ଼ଖାଇ ପାଠ ପଢ଼ିଛନ୍ତି ସ୍କୁଲରେ । ଲୁହା ଇସ୍ପାତରେ ପରିଣତ ହୋଇଛି । କକେଇ ସୋମେଶ୍ୱରଙ୍କ ପ୍ରେରଣା ତାଙ୍କୁ ଭଲ ଛାତ୍ର, ଭଲ ମଣିଷ ହେବାପାଇଁ ପ୍ରେରଣା ଦେଇଥିଲା । ବାଳକର

ଦେଶପ୍ରେମ ଥିଲା ପ୍ରଗାଢ଼ । ସେତିକିବେଳରୁ ହିଁ ନିଜେ ସୂତା କାଟୁଥିଲେ ଏବଂ ଖଦଡ଼ ପିନ୍ଧୁଥିଲେ ।

ଭୁବନେଶ୍ୱର ମାଟ୍ରିକ ପାଶକରି ଆସିଥିଲେ ଉଚ୍ଚଶିକ୍ଷା ପାଇଁ କଟକ ରେଭେନ୍ସା କଲେଜକୁ । କଳାହାଣ୍ଡିର ତତ୍‌କାଳୀନ ରାଜା ଥିଲେ ବ୍ରଜମୋହନ ଦେଓ, ବେନିଭୋଲେଣ୍ଟ ଡିକ୍ଟେଟର । ଭୁବନେଶ୍ୱର ତାଙ୍କ ଆଖିରୁ ବାଦଯାଇ ନଥିଲେ । କାଳେ ଭୁବନେଶ୍ୱର 'ପଥଦ୍ରୂଡ଼ି' ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଦେବ, ଏଇ ବିପଦକୁ ଏଡ଼ାଇ ଦେବାପାଇଁ ସେ ଭୁବନେଶ୍ୱରଙ୍କୁ ଇଂଜିନିୟରିଂ ପଢ଼ାଇବା ପାଇଁ ସାହାଯ୍ୟ କରନ୍ତି ।

ରେଭେନ୍ସା କଲେଜରେ ତାଙ୍କର ସହପାଠୀମାନଙ୍କ ମଧ୍ୟରେ ଥିଲେ ପଦ୍ମନାଭ ମିଶ୍ର, ନୀଳମଣି ରାଉତରାୟ, ପ୍ୟାରୀମୋହନ ସାମନ୍ତରାୟ, ଦାଶରଥି ମିଶ୍ର ପ୍ରମୁଖ ।

ଭୁବନେଶ୍ୱର ଗଲେ ପାଟନା ଇଂଜିନିଅରିଙ୍ଗ ପଢ଼ିବା ପାଇଁ, ରେଭେନ୍ସା କଲେଜରୁ ପଦାର୍ଥ ବିଜ୍ଞାନ ଅନର୍ସରେ ପ୍ରଥମ ଶ୍ରେଣୀ ପାଇ ।

ସେଠାରେ ଜଣେ ଭଲ ଛାତ୍ର ଭାବରେ ଯେପରି ପରିଚିତ ଥିଲେ ସେଇପରି ପରିଚିତ ଥିଲେ ଇଂଜିନିଅରିଂ କଲେଜ ଛାତ୍ର ୟୁନିଅନର ସାଧାରଣ ସଂପାଦକ ଭାବରେ । ସେ ରାମଗଡ଼ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ ଏବଂ ୧୯୪୨ ମସିହା ଭାରତଛାଡ଼ ଅନ୍ଦୋଳନ ସମୟରେ ତାଙ୍କୁ ଧରିବା ପାଇଁ ଧରପଗଡ଼ ହୋଇଥିଲା । ପ୍ରିନ୍ସିପାଲଙ୍କ ଯୋଗୁଁ ସେ ରକ୍ଷା ପାଇଗଲେ । ସେ ଆଉ ରାଜନୀତି ଆଡ଼କୁ ମୁହାଁଇ ନାହାନ୍ତି ।

୧୯୪୩ ମସିହାରେ ସେ ଇଂଜିନିଅରିଙ୍ଗ ପାସ କରନ୍ତି ପ୍ରଥମ ଶ୍ରେଣୀରେ ଅନର୍ସ ସହ ଦ୍ୱିତୀୟ ହୋଇ । କିଛିକାଳ ଓଡ଼ିଶା ପ୍ରଦେଶର ପୂର୍ତ୍ତ ଓ ଜଳସେଚନ ବିଭାଗରେ ଟ୍ରେନିଂ, ମହୀଶୂର ରାଜ୍ୟର ଜଳସେଚନ ବିଭାଗରେ ଟ୍ରେନିଂ ଏବଂ ତା'ପରେ ସେ ତତ୍‌କାଳୀନ କଳାହାଣ୍ଡି ଷ୍ଟେଟରେ ଜଳସେଚନ ବିଭାଗର ଆସିଷ୍ଟାଣ୍ଟ ଇଂଜିନିଅର ଭାବରେ ଯୋଗ ଦିଅନ୍ତି ୧୯୪୫ ମସିହାରେ ।

ଆରମ୍ଭ ହୁଏ ସାଧନା, ପ୍ରତିଷ୍ଠା ଓ ସାଫଲ୍ୟର ଦୀର୍ଘ ପଥ । ଭୁବନେଶ୍ୱର ଆଉ ପଛକୁ ଫେରି ଚାହିଁ ନାହାନ୍ତି ।

ସେ ସ୍ୱପ୍ନ ଦେଖିଲେ ।

ପ୍ରଥମ ପରିକଳ୍ପନା ହେଉଛି ଇନ୍ଦ୍ରାବତୀ ଯୋଜନା । ଇନ୍ଦ୍ରାବତୀକୁ ରାମପୁର ଥୁଆମୂଳ ରାମପୁର ପର୍ବତମାଳା ଭିତରେ ଯଦି ଅଟକା ଯାଇପାରେ ତା ହେଲେ ଜଳ ବିଦ୍ୟୁତରେ ସାରା ଦେଶ ଝଲମଲ କରି ଉଠିବ ଏବଂ ପାଣି ବୋହିଯିବ ଶୁଷ୍କ ଜମି ଉପରେ ତାକୁ ଉର୍ବରା କରିବା ପାଇଁ ।

ଉଚ୍ଚଶିକ୍ଷା ପାଇଁ ଚାଲିଲେ ଭୁବନେଶ୍ୱର ଆମେରିକାକୁ । ଆମେରିକା ଷ୍ଟେଟ

ୟୁନିଭର୍ସିଟି ଆଇଓଆରେ ପଢ଼ିଲେ ପାଠ ଉପାଧିତର ଡିଗ୍ରୀ ପାଇଁ । ଏହା ସହିତ ପ୍ରସିଦ୍ଧ ଟେନ୍‌ସିଭାଲି ଜଳସେଚନ ପ୍ରକଳ୍ପ ଏବଂ ଡ୍ୟାମ ତିଆରି ପ୍ରକଳ୍ପ ମାନଙ୍କରେ କାମ କରି ଭାରତ ଫେରିଲା ବେଳକୁ ଭାରତ ରାଜନୈତିକ ମାନଚିତ୍ର ବଦଳି ଯାଇଛି । ରାଜା ନାହାନ୍ତି ଖାଲି ରାଜ୍ୟ ରହିଛି ।

୧୯୪୮ ମସିହା ଅଗଷ୍ଟ ମାସରେ ସେ ଅଯୋଧ୍ୟାନାଥ ଖୋସଲାଙ୍କ ନେତୃତ୍ୱରେ ହୀରାକୁଦ ବନ୍ଧ ନିର୍ମାଣ କାର୍ଯ୍ୟରେ ଯୋଗଦିଅନ୍ତି ।

''ମାଟି ଅନନ୍ତକାଳ ଧରି ପାଣିକୁ ଆବୋରି ରଖିଛି, ଆଟକ କରୁଛି, ବାଟ ବତାଇ ଦେଉଛି.... ମାଟିର ବଳୟ ଶକ୍ତି ଅପାର ଅଥଚ ବୋଲକରା, ଠିକ୍ ମାଆର କୋଳପରି ।''

ଭୁବନେଶ୍ୱର ବେହେରାଙ୍କ ଏଇ ସାହିତ୍ୟିକ ସ୍ଫୁରଣ ପରବର୍ତ୍ତୀ ସମୟରେ ବିକଶିତ ହେଲା । ସେ ସାହିତ୍ୟିକ ପାଲଟିଗଲେ । ତାଙ୍କ କଲମରୁ ଝରିଲା ନିବନ୍ଧ ପରେ ନିବନ୍ଧ, ଶୁଣ ପରୀକ୍ଷ, କଥା ଓ ଲଥା, ସହାବସ୍ଥାନ, ଫରଫର ଉଡ଼େ, ଆନ୍‌ସାରୀ ବାବା, ହେ ମନ୍ତ୍ରୀବର, ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଢେଙ୍କି ପ୍ରଭୃତି ବହି ସବୁ ନିବନ୍ଧର ସମାହାର । ତାହା ଆଣିଦେଇଛି ତାଙ୍କ ପାଇଁ ସାହିତ୍ୟିକର ସ୍ୱୀକୃତି, ପ୍ରତିଷ୍ଠା ଏବଂ ସମ୍ମାନ ।

''ଭୁବନେଶ୍ୱର ବେହେରା କହନ୍ତି ମାଟି ଓ ମେଟାଲକୁ ବିଶ୍ରାମ ଲୋଡ଼ା । ସେମାନଙ୍କୁ ମଧୁଚନ୍ଦ୍ରିକା ଯାପନ କରିବାକୁ ଛାଡ଼ିଦିଅ ।'' କଂକ୍ରିଟ କିପରି ହୁଏ ତା'ର ଉଦାହରଣ ଦେବାକୁ ଯାଇ ଏଇପରି ମତ ଦିଅନ୍ତି ଭୁବନେଶ୍ୱର ବେହେରା ।

ସେଇଯୋଗୁଁ ରାଉରକେଲା ଇଂଜିନିଅରିଙ୍ଗ କଲେଜର ପ୍ରିନ୍ସିପାଲ ଥିଲାବେଳେ ଯେତିକି କଳାକାର ଇଂଜିନିଅର ବାହାରିଛନ୍ତି ସେତିକି ଇଂଜିନିଅର କଳାକାର ବାହାରିଛନ୍ତି ବୋଲି ତାଙ୍କ ନାମରେ ପ୍ରବାଦ ଅଛି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍‌ର ନାମକରଣ ଜ୍ୟୋତିବିହାର ହୋଇଛି ତାଙ୍କରି ନେତୃତ୍ୱରେ । ସେ ଶିକ୍ଷା ପ୍ରତି ଯେପରି ନଜର ଦେଇଛନ୍ତି ସେଇପରି ନଜର ଦେଇଛନ୍ତି ବ୍ୟକ୍ତିତ୍ୱ ଗଠନ କରିବାପାଇଁ । ଖେଳ ପଡ଼ିଆ ଓ ରଂଗମଂଚ ଥିଲା ତାଙ୍କର ଅତ୍ୟନ୍ତ ପ୍ରିୟ । ଛତା ହାତରେ ଧରି ଘୋର ବର୍ଷା ଭିତରେ ସେ ଫୁଟବଲ ଖେଳରେ ଛାତ୍ରମାନଙ୍କୁ ଯେପରି ଉତ୍ସାହିତ କରିବା ଦେଖାଯାଉଥିଲା ଠିକ୍ ସେଇପରି ଦେଖାଯାଉଥିଲା ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ପିଲାମାନଙ୍କର ନାଟକ ଦେଖିବାରେ ।

ଅନେକ ସହକର୍ମୀ, ସହକାରୀମାନଙ୍କର ଖାଲି ସେ ନାମ ଜାଣି ନଥିଲେ, ସେମାନଙ୍କର ପରିବାର ଚାଲିଚଳଣ, ଆର୍ଥିକ ଅବସ୍ଥା ସଂପର୍କରେ ମଧ ଖବର ରଖିଥିଲେ । ସେମାନଙ୍କର ହାନିଲାଭରେ ଯାଇ ପାଖରେ ଠିଆ ହେଉଥିଲେ । ତାଙ୍କୁ ଦେଖାକରିବା ପାଇଁ କୌଣସି କଟକଣା ନଥିଲା । ଯେ କୌଣସି ବ୍ୟକ୍ତି ତାଙ୍କୁ ଯେକୌଣସି ସମୟରେ ସାକ୍ଷାତ କରିପାରୁଥିଲା ଏବଂସେ ସବୁବେଳେ ଧୈର୍ଯ୍ୟର ସହିତ ସେମାନଙ୍କୁ ଶୁଣୁଥିଲେ ।

ଆମେ ଓଡ଼ିଆ । ଆମେ ମୁଣ୍ଡଟେକି ଠିଆ ହେବା । କାହାରି ଦୟା, ଅନୁଗ୍ରହ ଉପରେ ନୁହେଁ । ଆପଣାର ଶକ୍ତି ହିଁ ଆମର ଉତ୍ସ । ଏଇଥିଲା ତାଙ୍କର ଜୀବନର ମଟୋ ।

ଏବଂ ତାହା ହିଁ ସେ କାର୍ଯ୍ୟକାରୀ କରିଛନ୍ତି ଜୀବନସାରା ।

ତାଙ୍କର ଲେଖା ତାଙ୍କର ସେଇ ମନୋଭାବ ବହନ କରେ କିନ୍ତୁ ସେ କିଞ୍ଚିତ ନିରାଶ ହୋଇଛନ୍ତି ତାଙ୍କର ପ୍ରଚେଷ୍ଟାରେ । ତେଣୁ କିଛି ବିଷାଦରେ ଭରା ତାଙ୍କର ଲେଖା । କିନ୍ତୁ ତାହା ପରାଜୟ ନୁହେଁ, ପ୍ରତିକୂଳ ପରିସ୍ଥିତିରେ ସଂଗ୍ରାମର କାହାଣୀ ।

ବୁର୍ଲା ଇଂଜିନିଅରିଙ୍ଗ କଲେଜ, ରାଉରକେଲା ଆଞ୍ଚଳିକ ଇଂଜିନିଅରିଙ୍ଗ କଲେଜ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କର ଜୀବନର ସେଇ ଆଲେଖ୍ୟ ବହନ କରିଛି । ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଥିଲାବେଳେ ସେ 'ସପ୍ତର୍ଷି' ନାମକ ପତ୍ରିକାରେ ସଂପାଦନା କରୁଥିଲେ ଏବଂ ପତ୍ରିକାଟି ତାଙ୍କର ସଂପାଦକୀୟ ଦକ୍ଷତାର ପରିଚୟ ପ୍ରଦାନ କରେ ।

୧୯୭୮ ମସିହାରେ ସେ କେନ୍ଦ୍ର ପବ୍ଲିକ ସର୍ଭିସ କମିଶନର ସଭ୍ୟ ହୁଅନ୍ତି । ଚାରିବର୍ଷର ରହଣୀ କାଳରେ ସେ ଓଡ଼ିଶାର ଛାତ୍ରମାନଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲେ ।

୧୯୭୭ ମସିହାରେ ସେ କିଛିକାଳ ପାଇଁ ପଶ୍ଚିମ ଆଫ୍ରିକାର ଲାଇବେରିଆକୁ ଯାଆନ୍ତି ବୈଷୟିକ ପରାମର୍ଶଦାତା ରୂପେ ।

ସେ ଚାକିରିରୁ ଅବସର ନେଲେ । କିନ୍ତୁ ସେ retired ବୋଲି ନିଜକୁ ଭାବିଲେ ନାହିଁ, ବରଂ ସେ retried ଭାବରେ ନିଜକୁ ଗଣନାକଲେ । ଅବସର ନେବା ପରେ ହାତରେ ବାଡ଼ିଟିଏ ଧରି ଚାଲିବା, ମଙ୍କିକ୍ୟାପ ପିନ୍ଧି ସକାଳୁ ବୁଲିବା ତାଙ୍କୁ ପୋଷାଇଲା ନାହିଁ । ତାଙ୍କର ଲେଖକ ଜୀବନ ପ୍ରତିଭାତ ହେଲା ଏବଂ କଲମରୁ ଝରିଲା ବହି ପରେ ବହି ।

ଗାଁରୁ ସେ ଆସନ୍ତି ଭବାନୀପାଟନା ସହରକୁ ବଳଦ ଗାଡ଼ିରେ । କିଏ ବିଶ୍ୱାସ କରିବ ? ଦିନେ ମୁଁ ତାଙ୍କୁ ସେ କଥା ପଚାରିଥିଲି । ମୋର ସମୟ ବଳୁଛି । ବଳଦ ଗାଡ଼ିରେ ଗଲେ ଗାଁ ଗଣ୍ଡା ସବୁ ଦେଖିହୁଏ । ବାଟରେ ବିଭିନ୍ନ ଲୋକଙ୍କ ସହିତ କଥାବାର୍ତ୍ତା ହୋଇ ହୁଏ । ମୋଟରରେ ସେ ସବୁ ହୁଏନା ।' ଏହାଛଡ଼ା ଚିନ୍ତାକୁ ବେଶି ଖୋରାକ ଦିଏ ବଳଦଗାଡ଼ି ! ଏଇଥିଲା ତାଙ୍କର ଉତ୍ତର ।

ସମୟ ଅତିକ୍ରାନ୍ତ ହୋଇଛି । ପୁଅଝିଅ ଜୋଇଁ ସମସ୍ତେ ଅବସ୍ଥାପିତ । ସ୍ତ୍ରୀ ବାହୁଡ଼ି ଗଲେଣି । ସେ ଧୀରେ ଧୀରେ ଏକୁଟିଆ ହୋଇଗଲେ କି ଆଉ ?

ତା'ପରେ ସେଇଦିନ ଆସିଗଲା । ସେ ବାହୁଡ଼ିବେ ମାଟିକୁ । ବିଶ୍ୱର ଦୁରନ୍ତ ଶିଶୁ, ମୃତ୍ତିକା ଚିର ସ୍ତନନ୍ଧୟ ବାହୁଡ଼ିଯିବ ପୁଣି ମାଟିକୁ । ଯେଉଁଠୁ ସେ ଆସିଥିଲା ଏବଂ ଯାହାର ଜୟ ଗାଇ ଗାଇ ସେ ସାରାଜୀବନ କଟାଇଦେଲା ।

ତା'ପରେ ?

ତା'ପର ହେଉଛି ଇତିହାସ ।



# ମାର୍ଜିନାଲ ୟୁଟିଲିଟି ନଥିବା ମଣିଷର ପରଲୋକ

ମଦନ ବେହେରା ହଠାତ୍ ଚାଲିଗଲେ । ମଦନ ତ ଏକ ବ୍ୟକ୍ତି ନୁହେଁ, ସେ ଏକ ଇତିହାସ, ଏକ ପରମ୍ପରା । କଲେଜ ଛକ ସହିତ ମଦନା ଜଡ଼ିତ ଓତଃପ୍ରୋତ ଭାବରେ । ମଦନାର ରସଗୋଲା ଯିଏ ଖାଇଛି, ସେ ତାକୁ ମନେରଖିବ ନିଶ୍ଚୟ ।

ଅର୍ଥନୀତି ଅଧ୍ୟାପକ ୰ ଭୈରବନାଥ ରୋହାତ୍‌ଗୀ କ୍ଲାସରେ ଅର୍ଥନୀତି ପଢ଼ାନ୍ତି । ପଢ଼ାନ୍ତି ମାର୍ଜିନାଲ ୟୁଟିଲିଟି । ମାର୍ଜିନାଲ ୟୁଟିଲିଟି ଲାଗୁହୁଏ ସବୁଥିରେ । ଯାହା କନ୍‌ଜ୍ୟୁମ (ଖାଅ ବା ପିଅ) ସବୁ କ୍ଷେତ୍ରରେ ୟୁଟିଲିଟି ପ୍ରତ୍ୟେକ ଅଧିକା ୟୁନିଟ୍ ସହ କମି କମି ଯିବ । ଧୀରେ ଏହା ଶୂନରେ ପହଞ୍ଚିବ ଏବଂ ତା'ପରେ ଏହା ମାଇନସ୍ ବା କ୍ଷତି ଆଡ଼କୁ ଗତି କରିବ । ଶୋଷ କରୁଚି, ପ୍ରଥମେ ଗ୍ଲାସ ପାଣି ପିଇଲେ ଯେତିକି ତୃପ୍ତି ଲାଗିବ, ଦ୍ୱିତୀୟ ଗ୍ଲାସରେ ତା' ଠାରୁ କମ ତୃପ୍ତି ମିଳିବ । ଇମିତି ପିଇ ଚାଲିଲେ ଗୋଟାଏ ସ୍ତରରେ ଆଉ ପିଇହେବ ନାହିଁ । ତା'ପରେ ଆଉ ବେଶି ପିଇଲେ ବାନ୍ତି ହୋଇଯିବ ।

ମାର୍ଜିନାଲ ୟୁଟିଲିଟି ଅପରେଟସ୍ ଇନ୍ ଅନ୍ ଅଲ୍ କେସେସ୍..... ଏକସେପ୍ଟ.... ତାଙ୍କର ଗମ୍ଭୀର କଣ୍ଠରୁ ଶୁଣାଯାଏ, ଏକ୍‌ସେପଟ୍ ଇନ୍ ଦି କେଶ୍ ଅଫ ଗୋଲ୍ଡ ଅର୍ ମନି ଏଣ୍ଡ.... ମଦନାଜ୍ ରସଗୋଲା । ସାମାନ୍ୟ ସ୍ମିତହାସ୍ୟ ସହ କହନ୍ତି ସେ । ମାର୍ଜିନାଲ ୟୁଟିଲିଟି ସବୁ କ୍ଷେତ୍ରରେ ପ୍ରଯୁଜ୍ୟ କେବଳ ସୁନା ବା ଅର୍ଥ ଏବଂ ମଦନାର ରସଗୋଲା କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ । ଅର୍ଥାତ ସୁନା ବା ଟଂକା ଯେତେ ପାଇଲେ ମଧ୍ୟ ତା'ର ବ୍ୟବହାର ବା ଉପଯୋଗ କମେ ନାହିଁ ଠିକ୍ ସେଇପରି ମଦନାର ରସଗୋଲା ଯେତେ ଖାଇଲେ ମଧ୍ୟ ତୃପ୍ତି କମେ ନାହିଁ । କ୍ଲାସ ହସରେ ଫାଟିପଡ଼େ । ମଦନାର ରସଗୋଲା ଖାଇ ନଥିବା ଲୋକ ଦୌଡ଼ନ୍ତି ମଦନା ଦୋକାନକୁ । କଲେଜ କ୍ୟାବିନ, ଠିକ୍ କଲେଜ ଛକ ଉପରେ ।

ମଦନାର ସ୍ମୃତି ଶକ୍ତି ପ୍ରବଳ । କାହାର ବାପା, ଦାଦା, ମାମୁଁ, ମଉସା କେବେ ରେଭେନ୍ସା କଲେଜରେ ପଢୁଥିଲେ ଏବଂ ତା' ଦୋକାନରୁ ରସଗୋଲା ଖାଇଥିଲେ, ତାକୁ ସେ ଗଣି ରଖିଛି ଆଙ୍ଗୁଠି ଅଗରେ । ''କଣ ଆଜି ଇମିତି ଖାଇବାକୁ କରିଛ, ମଦନା ?''

ବିରକ୍ତ ହୋଇ କେହି କହିଲେ ମଦନା ହସି ହସି କହିବ ଯେ ଆଜ୍ଞା, ଆପଣଙ୍କର ମାମୁଁ ପରା ଏଇଠି ଖାଇକି ବଡ଼ ମଣିଷ ହୋଇଛନ୍ତି । ମଦନା କଥାରେ କୌଣସି ଉତ୍ତର ଦେଇ ହୁଏନା । କାରଣ ଯେତେ ରାଗିକରି କହିଲେ ମଧ୍ୟ ସେ ହସି ହସି ଉତ୍ତର ଦିଏ ।

କିନ୍ତୁ ମଦନା ବେଳେ ବେଳେ ରାଗେ । ରାଗେ ରେଭେନ୍ସା କଲେଜ ଫୁଟବଲ ବା ହକି (ବିଶେଷତଃ ହକି) ଖେଳରେ ହାରିଗଲେ । ମଦନା ରେଭେନ୍ସା କଲେଜର କିଛି ନୁହେଁ କିନ୍ତୁ ରେଭେନ୍ସା କଲେଜ ପରା ତା'ର ! ସେ ଟିମ୍‌ର ଖେଳାଳୀମାନଙ୍କୁ ଚାପୁଡ଼ା ମାରିବାର ମୁଁ ଦେଖିଚି । ଖେଳରେ ହାରିଥିବା ଟିମ୍‌ପିଲାମାନେ ଚୁପ୍ ହୋଇ ଠିଆ ହୋଇଥାନ୍ତି, କିନ୍ତୁ ଯେଉଁ ଦିନ ରେଭେନ୍ସା କଲେଜ ଜିତେ, ସେଦିନ ? ସେଦିନ ମଦନାର ପ୍ରସିଦ୍ଧ ରସଗୋଲା କଡ଼େଇ ଖାଲି । ସମସ୍ତଙ୍କୁ ଖାଇବାକୁ ଦେବ, ଖୁଆଇ ଦେବ ଏବଂ ଗେଲ ବି କରିବ । ଏଭଳି ମଣିଷ ଆଗରେ କ'ଣ କରାଯିବ ?

ମଦନା ଏବଂ ରେଭେନ୍ସା କଲେଜ ଓତଃପ୍ରୋତ ଭାବରେ ଜଡ଼ିତ । ଏଇଭଳି ମଣିଷଟାଏ ହଜିଗଲା ସେଦିନ । ଆଖି ଛକେଇ ଆସିଲା ଲୁହରେ । ବୁକୁ ଫଟାଇ ଏକ ଦୀର୍ଘଶ୍ୱାସ ବାହାରି ଆସିଲା ତା' ମନକୁ । ରେଭେନ୍ସା କଲେଜରେ ସେ ପାଠପଢ଼ି ନାହିଁ, ଚାକିରି କରିନାହିଁ । ଏହା ସତ୍ତ୍ୱେ ରେଭେନ୍ସା କଲେଜ ପ୍ରତି ତା'ର ଦରଦ ଭଳି ଦରଦ କାହାର ଥିଲା ?

ରେଭେନ୍ସା କଲେଜ ଛକରେ ମଦନା ପରି ଅନେକ ଥିଲେ ଯେଉଁମାନେ ଏହି କଲେଜକୁ ପ୍ରାଣଭରି ଭଲପାଉଥିଲେ । କିନ୍ତୁ ମଦନା ପରି ଥିଲା କିଏ ? ରେଭେନ୍ସା କଲେଜ ସେମାନଙ୍କୁ ହରାଇ ଦରିଦ୍ର ହୋଇଯାଇଛି । ଆଜି କଲେଜ ଛକକୁ ଗଲେ ମନେପଡ଼େ ମଦନା, କୁଂଜ, ଶାନ୍ତିଭାଇ, ବଟୁଭାଇ । ବଟୁଭାଇ ଅଛି, ଅନ୍ୟମାନେ ଗଲେଣି । ରେଭେନ୍ସା କଲେଜର ସେଇ ପରିଚିତ ମୁହଁସବୁ ହଜିଯାଇଛି ଧରା ପୃଷ୍ଠରୁ, କିନ୍ତୁ ଜୀବନ୍ତ ରହିଛି ସ୍ମୃତିପଟରେ ।



# ଶିକ୍ଷକତାର ପ୍ରବାଦ ପୁରୁଷ

ମନମୋହନ ପଟ୍ଟନାୟକ ଆଉ ନାହାନ୍ତି । ୮୩ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି ସମ୍ବଲପୁର ଝାଡ଼ୁଆପଡ଼ା ବାସଭବନରେ । ତାଙ୍କର ବିୟୋଗ ସଂବାଦ ଯେଉଳି ପ୍ରସାରିତ ହେବାର କଥା ତା' ହୋଇନାହିଁ । ତା'ର ଅନ୍ୟତମ କାରଣ ହୁଏତ ହେଉଛି ଯେ ୨୦ ବର୍ଷରୁ ଉର୍ଦ୍ଧ୍ୱ କାଳ ହେବ ଆପଣାର କର୍ମରୁ ଅବସର ନେଇ ସାରିଥିଲେ । ସେ ଗଂଜାମ ଜିଲ୍ଲାର ଲୋକ । ସେ ଓ ତାଙ୍କର ଭଉଣୀ ମନୋରମା ପଟ୍ଟନାୟକ ଉଭୟେ କେବଳ ଶିକ୍ଷକ ନଥିଲେ, ଉଭୟେ ଅବିବାହିତ ମଧ୍ୟ ଥିଲେ । ମନମୋହନ ବାବୁ ଅବସର ନେଲେ ସମ୍ବଲପୁରରୁ ଏବଂ ତାଙ୍କର ଶେଷ ଏବଂ ଦୀର୍ଘ କର୍ମକ୍ଷେତ୍ର ସମ୍ବଲପୁରରେ ହିଁ ହୋଇଗଲା ଶେଷ ଜୀବନ କଟାଇବା ପାଇଁ ।

ମନେପଡୁଚି କିଛି ବର୍ଷ ତଳେ ମନମୋହନ ବାବୁଙ୍କୁ ତାଙ୍କ ଘରେ 'ଦୂରଦର୍ଶନ' ଭେଟିଥିଲା । ମନମୋହନ ବାବୁଙ୍କର ଦୁଇଜଣ କୃତୀ ଛାତ୍ର 'ସାର୍'ଙ୍କ ପାଇଁ ଘର ଦେଇଥିଲେ ଏବଂ ଯଥାସମ୍ଭବ ଯତ୍ନ ବି ନେଉଥିଲେ । 'ସାର୍'ଙ୍କର ଖାଇବା, ରହିବା, ଚିକିତ୍ସାର କୌଣସି ଅସୁବିଧା କେବେ ହୋଇନାହିଁ । ଶୁଣିଛି ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ବ୍ୟବସାୟୀ ଏବଂ ଆଉ ଜଣେ ଆମେରିକାରେ କାମ କରନ୍ତି । ଗୁରୁ ଋଣ ପରିଶୋଧ କରିବାର ଏହା ଏକ ବିରଳ ଉଦାହରଣ । 'ଦୂରଦର୍ଶନ' ପଚାରିଥିଲା, ଆପଣ ବିବାହ କରିନାହାନ୍ତି । ଅବଶୋଷ ହେଉ ନାହିଁ ? ସାର୍ ଉତ୍ତର ଦେଇଥିଲେ, ନା । ପୁଅଝିଅ ଥିଲେ ଏହାଠାରୁ ଅଧିକା କ'ଣ କରିଥାନ୍ତେ ?

ଟି.ଭି. କ୍ୟାମେରା ଫେରିଥିଲା ପ୍ରଥିତଯଶା ଶିକ୍ଷକ ଅଧ୍ୟାପକ ପ୍ରଫୁଲ୍ଲ କୁମାର ପତିଙ୍କ ପାଖକୁ । ସେ ସେଇ ସହରର ବାସିନ୍ଦା । ପ୍ରଫୁଲ୍ଲ ବାବୁଙ୍କ କହିବାର ଭଂଗୀ ସ୍ୱତନ୍ତ୍ର । ସେ କହିଲେ ଯେ ଠିକ୍ ସେ ବି ଶିକ୍ଷକ, ଆମେ ବି ଶିକ୍ଷକ । କିନ୍ତୁ ଆମକୁ ପିଲାଏ ଭକ୍ତି କରନ୍ତି, ତାଙ୍କୁ ପୂଜା କରନ୍ତି ।

ମନମୋହନ ବାବୁଙ୍କ ଚାଲିଯିବା ଖବର ପାଇ ସ୍ମୃତି ପହଁରିଗଲା ଅନେକ ଦିନ ତଳକୁ । ସାର୍‌ଙ୍କର ଅଗଣିତ ଛାତ୍ରମାନଙ୍କ ମଧ୍ୟରେ ମୁଁ ବି ଜଣେ । ସାର୍ ଯେପରି ବହୁ

ସ୍ୱନାମଧନ୍ୟ, କୃତବିଦ୍ ଛାତ୍ରଙ୍କୁ ପଢ଼ାଇଛନ୍ତି, ତା'ଠାରୁ ବେଶି ମୋ ଭଳି ସାଧାରଣ ଛାତ୍ରଙ୍କ ଜୀବନରେ ଗଭୀର ରେଖାପାତ କରିଯାଇଛନ୍ତି । ପିଲାଦିନର କଥା । ମୋର କ୍ଷୁଦ୍ର ଅଭିଜ୍ଞତାରୁ କହିବି ଯେଉଁ ଶିକ୍ଷକ ଭଲ ପଢ଼ାନ୍ତି, ସେ ପଢ଼ାଇଥିବା ବିଷୟଗୁଡ଼ିକ ପ୍ରତି ଆଗ୍ରହ ଆଜି ବି ଅତୁଟ ରହିଛି ।

ସାର୍ ପିନ୍ଧନ୍ତି ଫୁଲ୍ ପ୍ୟାଣ୍ଟ, କୋଟ କିନ୍ତୁ ଟାଇ ନଥାଏ । ଏ ହେଉଛି ଟିପିକାଲ ଗଂଜାମ ଡ୍ରେସ । ମୁଁ ଯାଇଥାଏ ଗଂଜାମରୁ, ତେଣୁ ଏ ଡ୍ରେସ ମୋତେ ଅଖାଡୁଆ ଲାଗେ ନାହିଁ କିନ୍ତୁ ଅନ୍ୟମାନଙ୍କୁ ଲାଗେ । ସାର୍ ପଢ଼ାନ୍ତି ଇଂରାଜୀ ସାହିତ୍ୟ, ସେକ୍ସପିଅରଙ୍କର ମର୍ଚାଣ୍ଟ ଅଫ୍ ଭେନିସ୍ ଡ୍ରାମାର ଆଣ୍ଟୋନିଓଙ୍କୁ ବିଚାର ହେବାର ଦୃଶ୍ୟ, ପୋର୍ସିଆଙ୍କ ଯୁକ୍ତି ଏବଂ ସେଥିରେ ସାଇଲକ୍‌ର ପରାଜୟ ।

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଛି । ହଜାର ହଜାର ଇହୁଦୀ ବଳି ପଡ଼ିଛନ୍ତି ଫାସିବାଦୀମାନଙ୍କ ହାତରେ । ସାର୍ ଆରମ୍ଭ କରନ୍ତି ଯେ କାହିଁକି ଅନେକ ଦେଶରେ ଇହୁଦୀମାନଙ୍କ ଉପରେ ଆକ୍ରମଣ ହେଉଛି । ତା'ପରେ କହିଚାଲନ୍ତି ଇତିହାସ । ଇହୁଦୀମାନଙ୍କର ସବୁ କ୍ଷେତ୍ରରେ ପ୍ରତିଭା ପ୍ରଦର୍ଶନ ଏହାର ଅନ୍ୟତମ କାରଣ । ସେଇଯୋଗୁଁ ସେକ୍ସପିଅର ମଧ୍ୟ ସେଇ ୟୁହୁଦୀବିରୋଧୀ ଅଭିଯୋଗରୁ ମୁକ୍ତ ନୁହନ୍ତି । କହନ୍ତି ଜର୍ମାନୀରେ ଇହୁଦୀମାନଙ୍କ ଉପରେ ଅତ୍ୟାଚାର । ପଚାଶ ବର୍ଷରୁ ଉର୍ଦ୍ଧ୍ୱ ସମୟ ଅତିକ୍ରାନ୍ତ । ତଥାପି ଅଦ୍ୟାପି ଧ୍ୱନିତ ହୁଏ ତାଙ୍କର ବାଣୀ । ସାହିତ୍ୟ ସହିତ ଇତିହାସକୁ ସ୍ୱତନ୍ତ୍ର ଆଖିରେ ଦେଖିବା ପାଇଁ ତାଙ୍କର ସେଇକଥା ଜୀବନରେ ପାଥେୟ ପାଲଟିଛି ।

କେବେ ତାଙ୍କୁ ରାଗିବା ଦେଖିନାହିଁ । କି ହାତରେ ବେତ ଧରିବା ଦେଖିନାହିଁ । ତାଙ୍କର ଜ୍ୱାଳାମୟୀ ବିଶ୍ଳେଷଣ ଛାତ୍ରକୁ ମୁଗ୍ଧକରେ, ଚକିତ କରେ ଏବଂ ସତେ ଯେପରି ତା'ର ତୃତୀୟ ନୟନ ଖୋଲିଯାଏ ।

ଏଭଳି ଶିକ୍ଷକ ବିରଳ । ଏଭଳି ପ୍ରଗତିଶୀଳ ଚିନ୍ତାଧାରାର ମଣିଷ ମଧ୍ୟ ବିରଳ । କଟକିଆମାନେ କୁଆଡ଼େ ସମ୍ବଲପୁରରେ ରହିବା ସମ୍ଭବ ନୁହେଁ— ଏଇ ଅପପ୍ରଚାରକୁ ସେ ଭୁଲ୍ ବୋଲି ପ୍ରମାଣିତ କରିଯାଇଛନ୍ତି । କଟକିଆମାନଙ୍କ ପ୍ରତି ପଶ୍ଚିମ ଓଡ଼ିଶାରେ କୁଆଡ଼େ ବୈରଭାବ ରହିଛି— ଏହାକୁ ମଧ୍ୟ ସେ ମିଥ୍ୟା ବୋଲି ପ୍ରମାଣିତ କରିଯାଇଛନ୍ତି । ମୋର ବହୁଦିନର ରହଣୀ ଭିତରେ ମଧ୍ୟ ତାହା ଦେଖିବାକୁ ପାଇନାହିଁ ।

ସାର୍‌ଙ୍କୁ ପ୍ରଣାମ, ଭୂମିଷ୍ଠ ପ୍ରଣାମ । ଆପଣାର କର୍ତ୍ତବ୍ୟରେ ସେ ଯେପରି ବହୁ ଛାତ୍ରଛାତ୍ରୀଙ୍କ ପାଇଁ ପ୍ରେରଣାର ଉତ୍ସ, ଆପଣାର ଜୀବନ ମଧ୍ୟ ଠିକ୍ ସେଇପରି ।

ସେ ଥିଲେ ଯଥାର୍ଥରେ ମଡ଼ର୍ଣ୍ଣ, ପ୍ରଗତିଶୀଳ ଏବଂ ଆଦର୍ଶବାନ । ତାଙ୍କର ସ୍ମୃତିରେ ପ୍ରଣାମ । ଜୀବନରେ ଯେମିତି ଆଜି ମରଣରେ ବି ସେଇପରି ତାଙ୍କର ସ୍ନେହର ଅମୀୟଧାରା ଝରିପଡୁ ଆମ ଉପରେ ।



# ପ୍ରଥିତଯଶା ପ୍ରତିଭାର ଅବସାନ

ଶ୍ରୀ ମନମୋହନ ମିଶ୍ର ଆଉ ନାହାନ୍ତି । ଅନନ୍ୟ ପ୍ରତିଭାର ଅବସାନ ହୋଇଛି ନଭେମ୍ବର ୧୯ ତାରିଖ ସଂଧ୍ୟାରେ । ୧୯୧୯ ମସିହାରେ ତାଙ୍କର ଜନ୍ମ ହୋଇଥିଲା ବୌଦ ସହରରେ । ବାପା ନୀଳକଂଠ ମିଶ୍ର ଥିଲେ ପୁଲିସ ଇନ୍ସପେକ୍ଟର । ପୁଲିସ ଅଫିସରର ପୁତ୍ର ପୁଲିସ ଶାସନ ବିରୁଦ୍ଧରେ ବିଦ୍ରୋହ କରିବାର ଯେଉଁ କେତେକ ସ୍ୱଳ୍ପ ଉଦାହରଣ ରହିଛି ସେମାନଙ୍କ ଭିତରେ ମନମୋହନ ମିଶ୍ର ଅନ୍ୟତମ । ପରବର୍ତ୍ତୀ କାଳରେ ସୋସଲିଷ୍ଟ ନେତା କୁଳମଣି ମହାପାତ୍ରଙ୍କୁ ଦେଖାଯାଏ ସେଇପରି

''ଏ ମାଟିର ମୁକ୍ତି ପାଇଁ, ତମେ ସବୁ
ହୋଇଯାଅ ସାର,
ଏ ଜାତିର ମୁକ୍ତିଦ୍ୱାର ଯେଣୁ ସ୍ୱର୍ଗଦ୍ୱାର''

କାଳଚକ୍ରର ବିଡ଼ମ୍ବନାରେ ତାଙ୍କର ମରଦେହ ଭସ୍ମୀଭୂତ ହୋଇଯାଇଛି ସେଇ ସ୍ୱର୍ଗଦ୍ୱାରରେ । କିନ୍ତୁ ତାହା ଦେଖିବାକୁ ସେ ନାହାନ୍ତି, ଭଲ ହୋଇଛି ।

ଆଜି ୧୯ ନଭେମ୍ବର, ୨୦୦୦ ମସିହା ଓଡ଼ିଶା ପାଇଁ ଅତ୍ୟନ୍ତ ଅଶୁଭ । କଟକ ସହରର ପଶ୍ଚିମ ପଟରେ ପ୍ରସିଦ୍ଧ ଅଭିନେତା ସାମୁଏଲ ସାହୁ (ବାବି) ଯେପରି ଚାଲିଗଲେ ସହରର ପୂର୍ବପଟରେ ଚାଲିଗଲେ ମନମୋହନ ମିଶ୍ର । ମନମୋହନ ଜୀବନର ରଂଗମଂଚରେ ଯେପରି ଛଅ ଦଶନ୍ଧି ଧରି ଆପଣାର ପ୍ରଭାବ ବିସ୍ତାର କରିଥିଲେ ଠିକ୍ ସେଇପରି ନାଟକର ରଂଗମଂଚରେ ବାବି ଆପଣାର ଦୀର୍ଘ ପକ୍ଷ ବିସ୍ତାର କରିଯାଇଛନ୍ତି ଦୀର୍ଘ ଛଅ ଦଶନ୍ଧି ଧରି । ଦୁଇଜଣଯାକ ଏକା ବର୍ଷ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶା ମାଟି ହଠାତ୍ ଦରିଦ୍ର ହୋଇଗଲା ।

ମନମୋହନ ମିଶ୍ରଙ୍କର ପୈତୃକ ଘର ହେଉଛି ବୀରପ୍ରତାପପୁର, ଶାସନୀ ବ୍ରାହ୍ମଣ । କିନ୍ତୁ ସମାଜ ସଂସ୍କାର ତାଙ୍କ ପରିବାରରେ ଥିଲା । ମନମୋହନ ମିଶ୍ର ରେଭେନ୍ସା କଲେଜିଏଟ ସ୍କୁଲରେ ମାଟ୍ରିକୁଲେଶନ ପାଶ କରିଥିଲେ, ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରଥମ

ବା ଦ୍ୱିତୀୟ ହୋଇ । ତା' ପରେ ରେଭେନ୍ସା କଲେଜ । ରେଭେନ୍ସା କଲେଜରୁ ଇଂରାଜୀ ଅନର୍ସରେ ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ ।

ସେତେବେଳକୁ ନରସିଂହ ତ୍ରିପାଠୀ ପୁରୀ ମାହାର ୟୁନିଅନର ନେତା । ବୋଧହୁଏ ଏଇ ୟୁନିଅନ ଓଡ଼ିଶାର ପ୍ରଥମ ଶ୍ରମିକ ୟୁନିଅନ ଏବଂ ଏହାର ଧର୍ମଘଟ ପ୍ରଥମ ଶ୍ରମିକ ଧର୍ମଘଟ । ମନମୋହନ ମିଶ୍ର ସେଇ ଧର୍ମଘଟରେ ନେତୃତ୍ୱ ନେଇ ଗିରଫ ହୁଅନ୍ତି । ସହଯୋଦ୍ଧା ଗୋପୀ ବ୍ରହ୍ମଚାରୀ ଓ ଗୌରହରି ବି ଆଉ ନାହାନ୍ତି ।

ରାଜଦ୍ରୋହ ଅପରାଧରେ ଗିରଫ ହୋଇ ମନମୋହନ ବାବୁ ବର୍ଷାଧିକ କାଳ କାରାବାସ ଭୋଗ କରନ୍ତି । ସେଠାରୁ ଫେରି ସେ ରେଭେନ୍ସା କଲେଜ ୟୁନିଅନର ପ୍ରଥମ ସଭାପତି ନିର୍ବାଚିତ ହୁଅନ୍ତି । ସେ ହେଉଛନ୍ତି ରେଭେନ୍ସା କଲେଜ ୟୁନିଅନ ସଂବିଧାନର ପ୍ରଣେତା । ତାଙ୍କର। ଉପସଭାପତି ହେଲେ ଶ୍ରୀ ନୀଳମଣି ରାଉତରାୟ ।

୧୯୩୯ ମସିହା ଇତିହାସ ପ୍ରସିଦ୍ଧ ମେଡ଼ିକାଲ ସ୍କୁଲ ଧର୍ମଘଟର ସେ ଅନ୍ୟତମ ନେତା । ସାଥୀ ୰ ଡାକ୍ତର ରବି ଘୋଷ, ଡାକ୍ତର ନବକିଶୋର ପଟ୍ଟନାୟକ (ଆଠଗଡ଼, ଖୁଣ୍ଟକଟା) ଜେଲଖାନାରେ ଦେଖାହୁଏ ୰ ପନୀପାଳଙ୍କ ସହିତ । ସେ ତାଙ୍କୁ ଛାତ୍ରମାନଙ୍କର ପଲିଟିକାଲ କ୍ଲାସ ନେବାକୁ ଉପଦେଶ ଦିଅନ୍ତି । ମନମୋହନ ମିଶ୍ର ରାଜନୈତିକ ଶିକ୍ଷକ ପାଲଟନ୍ତି ।

ବାଗ୍ମୀ, ଲେଖକ, କବି, ବକ୍ତା, ଗାୟକ ମନମୋହନ ଅସାଧାରଣ ପ୍ରତିଭାର ଅଧିକାରୀ ଥିଲେ ।

ଜେଲରୁ ଖଲାସ ହୋଇ ସେ ରେଭେନ୍ସା କଲେଜର ଐତିହାସିକ ପରୀକ୍ଷା ବୟକଟ ଆନ୍ଦୋଳନରେ ଯୋଗଦେଇ ଗିରଫ ହୁଅନ୍ତି । ନୀଳମଣି ରାଉତରାୟ କଲେଜରୁ ବହିଷ୍କୃତ ହୋଇ ଯାଆନ୍ତି ପଢ଼ିବା ପାଇଁ କଲିକତା ।

ଏଇ ସମୟରେ ଗଂଜାମ ଜିଲ୍ଲାର ଆସିକା ସହରରେ ଏକ ବ୍ୟାଙ୍କ ମର୍ଡ଼ରରେ ତାଙ୍କୁ ଓ ୰ ଶ୍ରୀ ବିଜୟଚନ୍ଦ୍ର ଦାସଙ୍କୁ ଜଡ଼ିତ କରାଯାଏ । ୰ ବିଜୟ ଦାସ ଆପଣାକୁ ନିର୍ଦ୍ଦୋଷ ବୋଲି ପ୍ରମାଣ କରି ମୁକ୍ତ ହୋଇଯାଆନ୍ତି କିନ୍ତୁ ମନମୋହନ ବାବୁଙ୍କ ପଛରେ ସେଇ ମର୍ଡ଼ର କେଶର ଅଭିଯୋଗ ବହୁତ ଦିନ ପର୍ଯ୍ୟନ୍ତ ଚାଲେ । ବିଧାନସଭାରେ ତାଙ୍କର ଏହି ମର୍ଡ଼ର ସହିତ ସଂପୃକ୍ତ ଅଭିଯୋଗ ସେତେବେଳେ ଚାଞ୍ଚଲ୍ୟ ସୃଷ୍ଟିକରେ । କିନ୍ତୁ ପ୍ରମାଣ କିଛି ମିଳିଲା ନାହିଁ ।

ମନମୋହନ ମିଶ୍ର ଜେଲଖାନାରୁ ଖଲାସ ହୋଇ ଶ୍ରମିକ ଏବଂ ଚାଷୀ ଆନ୍ଦୋଳନରେ ନେତୃତ୍ୱ ନେଲେ । ପ୍ରସିଦ୍ଧ ବାରଙ୍ଗ କାଚକାରଖାନା ଧର୍ମଘଟରେ ତାଙ୍କର କବିତା ଯେପରି ଝଂକୃତ ହେଲା ଠିକ୍ ସେଇପରି ଉଦାତ୍ତ କଣ୍ଠରୁ ଶୁଭିଲା ଭାଷଣ ।

''ଆମେ ପଟିଆ ପୁଏ ଭୋକିଲା,
ଘରେ ଘରେ ତୁମ ହାରକିନି କାଚ
ଆମ ଲହୁରେ ଭିଜିଲା''

ସେତିକିବେଳେ, ବ୍ରିଟିଶ ସରକାରଙ୍କର ଶେଷ ସେନାପତି ସାର୍ କ୍ଲାଉଚ ଆଚିକେଲଙ୍କ ଆସନ୍ତି ସମାବର୍ତ୍ତନ ଉତ୍ସବରେ ଭାଷଣ ଦେବାପାଇଁ । ତାଙ୍କୁ ବଏକଟ କରିବା ଡାକରା ଦିଆଯାଏ । ମାତ୍ର ଜଣେ ଛାତ୍ର କୌଣସି ମତେ ଡିଗ୍ରୀ ନେଇ ପାରିଥିଲେ । ଲାଠିଚାର୍ଯ ଗିରଫଦାରୀ ଭିତରେ । ମନମୋହନ ମିଶ୍ର ତା'ର ଅନ୍ୟତମ ନେତା ।

ତା'ପରେ ବ୍ରଜରାଜନଗର କାଗଜକଳ ଧର୍ମଘଟ ଏବଂ ୧୯୪୬ ମସିହାର ନିର୍ବାଚନ । ଶ୍ରମିକ ଶ୍ରେଣୀର ପ୍ରାର୍ଥୀ ଭାବରେ ପ୍ରାର୍ଥୀ ଶ୍ରୀ ବୈଦ୍ୟନାଥ ରଥ କମ୍ୟୁନିଷ୍ଟ ପାର୍ଟିରୁ ଏବଂ କଂଗ୍ରେସ ଦଳରୁ ପ୍ରାର୍ଥୀ ୰ ମହମ୍ମଦ ହନିଫ । ପ୍ରବଳ ସଂଗ୍ରାମ । ନିର୍ବାଚନ ତଥା ଧର୍ମଘଟର ନେତା ମନମୋହନ ମିଶ୍ର, ସାଥୀ ଦୁର୍ଗାଚରଣ କର, ହରମୋହନ ପଟ୍ଟନାୟକ ।

ତା'ପରେ କ୍ୟାବିନେଟ ମିଶନର ଭାରତ ଆଗମନ । ରେଭେନ୍ସା କଲେଜରେ ନାଟକ ହୁଏ ମନମୋହନ ମିଶ୍ରଙ୍କର ଲିଖିତ 'କ୍ୟାବିନେଟ ମିଶନ', ଭବନ୍ତୀ ମହାନ୍ତି, ନନ୍ଦିନୀ ଶତପଥୀ ପ୍ରଭୃତି ଝିଅମାନେ ଅଭିନୟ କରନ୍ତି । ପ୍ରଥମଥର ପାଇଁ ଝିଅମାନେ ଅଭିନୟ କଲେ ରେଭେନ୍ସା କଲେଜର ଇତିହାସରେ । ସହଯୋଗୀ ବର୍ତ୍ତମାନର ପ୍ରସିଦ୍ଧ ନାଟ୍ୟକାର ମନୋରଂଜନ ଦାସ ।

''ବାଦଶାକାଟର ଲୋକ ସିନା ଦିଲ୍ଲୀ
ପାଇଁ ଝୁରେ,
x x x x
ନଈ ସେପାରି ନାଉରୀ ଡାକେ ............
ତୋର କି ଯାଏ ?''

ଆଜି ବି ଧ୍ୱନିତ ହୁଏ ରେଭେନ୍ସା କଲେଜର କରିଡ଼ରରେ ସେ କାଳର ଛାତ୍ରମାନଙ୍କ କଣ୍ଠରେ ।

ମନମୋହନ ମିଶ୍ର ଯାଆନ୍ତି ପଶ୍ଚିମବଂଗ, ଆସାମ ଗସ୍ତକଲେ ନିର୍ବାଚନରେ ପ୍ରଚାର ପାଇଁ ।

''ବଡ଼ ଦେଉଳରେ କାନ୍ଦେ ତୋ ଠାକୁର,
କାନ୍ଦେ ଲକ୍ଷ୍ମୀ ଠାକୁରାଣୀ,
ଏବେ ମିଳେ ଟିକି ଓଡ଼ିଆ ଭାଇରେ,
ପେଜ କି ବାସି ତୋରାଣୀ''

ମନମୋହନ ମିଶ୍ରଙ୍କ କଣ୍ଠରେ ଝଂକୃତ ଏଇ ଗୀତ ଆଖିରେ ଲୁହ ଭରି ଦେଇଥିଲା ସେଦିନ ସହସ୍ର ସହସ୍ର ଲୋକଙ୍କ ଆଖିରେ ।

ତା'ପରେ ଡୁଡୁମା ଚୁକ୍ତି ବିରୋଧୀ ଆନ୍ଦୋଳନ, ଆଇ.ଏନ୍.ଏ. ବନ୍ଦୀମୁକ୍ତି ଅନ୍ଦୋଳନ, ମ୍ୟାକାଲେ ଶିକ୍ଷା ପଦ୍ଧତି ଅନୁଯାୟୀ ଟେଷ୍ଟ ପରୀକ୍ଷାରେ ଅଟକ ରଖିବା ଆନ୍ଦୋଳନ, ମନମୋହନ ବାବୁଙ୍କୁ ନେଇଗଲା ଜନପ୍ରିୟତାର ଶିଖରକୁ ।

ଏଇ ସମୟରେ ଐତିହାସିକ ପଟିଆ ବନ୍ଧର ନିର୍ମାଣ ହୁଏ, ଜନତା ଦ୍ୱାରା, ଜନତା ପାଇଁ । ୰ କାଳିନ୍ଦୀ ଚରଣ ପାଣିଗ୍ରାହୀ ଶୁଭଦେଲେ ବଂଧର । ମନମୋହନ ବାବୁଙ୍କ କଣ୍ଠରୁ ଧ୍ୱନିତ ହେଲା

''ଚଳା କୋଦାଳ, ଚଳା କୋଦାଳ
ପଟିଆ ବନ୍ଧେ, ଛନ୍ଦେ ଛନ୍ଦେ ଭରିଦେ
ମାଟି ଲାଲ ।''

ଇତିହାସର ପୃଷ୍ଠାରେ କୌଣସି ସାହାଯ୍ୟ ବିନା କେବେ ମଣିଷର ଆପଣା ହାତରେ ଏଭଳି ବନ୍ଧ ନିର୍ମାଣ ହୋଇ ନାହିଁ, ଭବିଷ୍ୟତରେ ହୋଇପାରିବ କି ନାହିଁ ତାହା ଇତିହାସ କହିବ ।

୧୯୪୮ ମସିହାରେ ମନମୋହନ ବାବୁ ଗିରଫ ହେଲେ ଜାତୀୟ ନିରାପତ୍ତା ଆଇନରେ ଏବଂ ଜେଲଖାନା ଭିତରେ ଦୀର୍ଘ ୨୦ ଦିନ ଏବଂ ପରେ ଦୀର୍ଘ ୪୮ ଦିନ ଅନଶନ ଚାଲିଲା । ଏଇ ଲେଖାର ସୌଭାଗ୍ୟ ଥିଲା ତାଙ୍କ ସହଯୋଦ୍ଧୃତ୍ୱ ପାଇବା । ସେ ମୋତେ ଶିଖାଇଲେ ବକ୍ତୃତା ଦେବା ପାଇଁ, ଅନୁବାଦ କରିବା ପାଇଁ ଏବଂ ବକ୍ତୃତାର ଅନୁବାଦ କରିବା ପାଇଁ ।

୧୯୫୦ ମସିହାରେ ସେ ପଳାତକ ହେଲେ । ମୁଁ ବି ତାଙ୍କ ସହିତ ପଳାତକ ଥିଲି । ଆମେ ଏକାଠି ବର୍ଷାଧିକ କାଳ ରହିଛୁ ବନ୍ଦୀଭାବରେ, ପଳାତକ ଭାବରେ । କାଳିଆବୋଦା ପାଗଳାବାବା ମଠ ଭିତରେ ଆମେ କିଛି ମାସ ଥିଲୁ । ଲୋକେ ସଂଦେହ କରି ଦିନେ ଆମକୁ ଘେରଉ କଲେ । ଶହଶହ ଲୋକ । ସେ ବଳୟ ଭେଦ କରି ଯିବା ସମ୍ଭବ ହେଲା ନାହିଁ । ପରିଶେଷରେ ମନମୋହନ ମିଶ୍ରଙ୍କୁ ପଠାଗଲା । ଲୋକଙ୍କୁ ମନ୍ତ୍ର ମୁଗ୍ଧ କରିବାରେ ତାଙ୍କର ଦକ୍ଷତାଥିଲା । ଏଭଳି ବ୍ୟକ୍ତି ଓଡ଼ିଶାରେ ନାହାନ୍ତି । ଲୋକମାନେ କେବଳ ତରଳି ଗଲେ ନୁହେଁ, ଆମକୁ ଛାଡ଼ିଦେଲେ ନିରାପଦରେ, ପୁଲିସ ଆସିବା ପୂର୍ବରୁ ।

ସେଇ ସମୟରେ ଜେଲଖାନା ଭିତରେ ଆଉ ଏକ ଅନଶନ ହୁଏ । ବନମାଳୀ ଦାସ, ବୀର ବୈଷ୍ଣବ, ୰ ବ୍ରଜ ପଟ୍ଟନାୟକଙ୍କ ସମେତ ବହୁ କମ୍ୟୁନିଷ୍ଟ ସେଥିରେ ଯୋଗଦିଅନ୍ତି । ସେମାନଙ୍କ ଭିତରେ ନନ୍ଦିନୀ ଶତପଥୀ ଅନ୍ୟତମ ।

ମନମୋହନ ବାବୁଙ୍କ କବିତାରୁ ଝଂକୃତ ହୁଏ ।

''ବଇଷ୍ଣବ ବ୍ରଜ ବନମାଳୀ ଦାସ
ତୁମେ ନାମ ନୁହଁ, ତୁମେ ଇତିହାସ

x x x x

ଏକ ପରିବାର ନନ୍ଦିନୀ ଦୁଲୋଳୀ,
ଆଜି ଲକ୍ଷମାତା ପିତାର ଶଂଖାଳି''

୧୯୫୫ ଦଳେଇଘାଇ ବିପର୍ଯ୍ୟୟ । ମନମୋହନ ମିଶ୍ର ଝାସ ଦେଲେ ରିଲିଫ କାର୍ଯ୍ୟରେ ଏବଂ ଲେଖିଲେ,

''ନୁହେଁ କାନ୍ଦଣାବେଳ,
ଲୁହକୁ ତୋର ସମ୍ଭାଳ,
କନ୍ଦରପୁରର ବନ୍ଦର ସେପାରି
କାନ୍ଦିଛି ଫେନିଳ ଲହରୀମାଳ''

ତା'ପରେ ୧୯୫୬ ମସିହା । ଐତିହାସିକ ସୀମା ଆନ୍ଦୋଳନ । ଗିରଫ ହୋଇଥିବା ନେତାମାନଙ୍କ ବିରୁଦ୍ଧରେ 'ଦେଖିଲା ମାତ୍ରେ ଗୁଳିକର' ନିର୍ଦ୍ଦେଶ । ଶରତ ପଟ୍ଟନାୟକ, ହରିଶ୍ଚନ୍ଦ୍ର ବକ୍ସିପାତ୍ର ଆଉ ନାହାନ୍ତି । ବିଶ୍ୱନାଥ ପଣ୍ଡିତ ଏବଂ ମୁଁ ବଂଚିଛୁ, ଜୀବନ୍ମୃତ ଭାବରେ । ସେଦିନର ସେ ଅଭୂତପୂର୍ବ ଶୋଭାଯାତ୍ରା । ସହୀଦ ସୁନୀଲ ଦେଙ୍କ ମରଦେହକୁ ନେଇ ଶୋଭାଯାତ୍ରା । ମଂଗଳାବାଗ ଠାରୁ ଖାନନଗର ପର୍ଯ୍ୟନ୍ତ ତିଳଧାରଣର ସ୍ଥାନ ନାହିଁ । ଲୋକାରଣ୍ୟ। ଆଗରେ ଗୁର୍ଖା ଏବଂ ଘାରଓ୍ୱାଲି ସୈନ୍ୟବାହିନୀ । ଗୁଳିକରି ମାରିବାପାଇଁ ନିର୍ଦ୍ଦେଶ । ମଂଗଳାବାଗ ଛକରେ ରାସ୍ତା ଅବରୋଧ କରି ସେମାନେ ଦଣ୍ଡାୟମାନ । ସବୁ ନେତା ପଳାୟିତ । ସେମାନଙ୍କର ନାମ କହି ଲାଭନାହିଁ । ମନମୋହନ ମିଶ୍ର ଠିଆହେଲେ ମେଡ଼ିକାଲ ପାଚେରୀ ଉପରେ । ତାଙ୍କର କଣ୍ଠରୁ ସତେଯେପରି ଅଗ୍ନି ଉଦ୍‌ଗୀରଣ ହେଉଛି ।

''ଆସ ଯେ ଯେଉଁଠି ଅଛ ବୀର ସେନାନୀ । ଆଜି ଅଗ୍ନି ପରୀକ୍ଷା ଜାତିର । ବଂଚିଲେ ବିଜୟ ତମର, ମଲେ ସହୀଦତ୍ୱ ବି ତମର । ଆସ କିଏ ପ୍ରସ୍ତୁତ ଅଛ । ଚାଲ, ଚାଲ, ଚରୈବତି, ଚରୈବତି''

ସବୁ ନେତା ପଳାଇ ସାରିଛନ୍ତି କାଠଗୋଲା ଦେଇ । ଆମେ ତିନିଜଣ ଠିଆ ହୋଇଛୁ । ବିଶ୍ୱନାଥ ପଣ୍ଡିତ, ହରିଶ୍ଚନ୍ଦ୍ର ବକ୍ସିପାତ୍ର ଏବଂ ମୁଁ ।

ବିଶ୍ୱନାଥ ପଣ୍ଡିତ ଉତ୍ତର ଦେଲେ । ମୁଁ ଅଛି ମନମୋହନ । ବକ୍ସିପାତ୍ର ଅଛି । ଗିରିଜା ଅଛି । ଚାଲ, ତମ ସାଂଗରେ ଆମେ ଚାଲିବୁ । ମୃତ୍ୟୁକୁ ଭୟ ନାହିଁ । ମୃତ୍ୟୁ ଥରେ ଆସିବ । ଭୟ କାହିଁକି ? ମାଭୈ, ମାଭୈ''

ମିଲିଟାରୀ ପୁଲିସକୁ ତତ୍‌କାଳୀନ ଜିଲ୍ଲାପାଳଙ୍କ ହୁକୁମରେ ବାଟ ଛାଡ଼ିଦେବାକୁ ହେଲା ।

ଇତିହାସରେ ତା'ର ପଟାନ୍ତର ନାହିଁ । ମନମୋହନ ବାବୁ ଗିରଫ ହେଲେ । ଆମକୁ ପୋଲିସ ପାଇଲା ନାହିଁ ।

ମନମୋହନ ବାବୁଙ୍କର କମ୍ୟୁନିଷ୍ଟ ପାର୍ଟି ସହିତ ମତଭେଦ ହେଲା । ସେ କଂଗ୍ରେସ ଦଳରେ ଯୋଗଦେଲେ । କଟକ ମ୍ୟୁନିସିପାଲିଟିର ଚେୟାରମାନ୍ ହେଲେ । 'କଳିଙ୍ଗ' ପତ୍ରିକାର ସଂପାଦକ ହେଲେ ।

କିନ୍ତୁ ବେଶିଦିନ ରହିପାରିଲେ ନାହିଁ । ସେ ଫେରିଲେ ସି.ପି.ଏମ୍ ଏବଂ ନକ୍ସଲବାଦୀମାନଙ୍କର ନିକଟବର୍ତ୍ତୀ ହୋଇ । ଟ୍ରେଡ଼ ୟୁନିଅନ ଅନ୍ଦୋଳନରେ ପୁଣି ତାଙ୍କୁ ଗିରଫ କରାଯାଏ ଏବଂ ମର୍ଡ଼ର କେଶରେ ମଧ ତାଙ୍କୁ ଅଭିଯୁକ୍ତ କରାଯାଏ । କିନ୍ତୁ ଅନେକ ଦିନ ଜେଲଖାନାରେ ରହିବାପରେ ସେ ନିର୍ଦ୍ଦୋଷ ପ୍ରମାଣିତ ହୋଇ ଖଲାସ ହୁଅନ୍ତି ।

ଓଡ଼ିଶାର ଶାନ୍ତି ଆନ୍ଦୋଳନର ସେ ପ୍ରଥମ ସଂପାଦକ । ସଭାପତି ପଣ୍ଡିତ ଗୋଦାବରୀଶ ମିଶ୍ର ।

''ଶୁଣ ମୁର୍ଦ୍ଧାର, ଶାଗୁଣା ଚିଲ,
ଚାଷୀ ଲେଖୁଛି ଶାନ୍ତି ଦଲିଲ''

ତାଙ୍କର ଗୀତ ଶାନ୍ତି ଅନ୍ଦୋଳନର ନୂତନ ଦିଗନ୍ତ ଉନ୍ମୋଚିତ କରେ ।

ମନମୋହନ ମିଶ୍ର ଦାରିଦ୍ର୍ୟ, କାରାଗାର, କଷାଘାତ ଭିତରେ ଜୀବନର ବହୁବର୍ଷ କଟାଇଛନ୍ତି ।

ସେ ଲେଖିଥିଲେ :

''ଝଡ଼ର ସାମନାରେ,
ଯିଏ ନିର୍ବିକାରେ ଛିଡ଼ାହୁଏ
ସାଥୀ ଦୁର୍ବଳତା, ଦୁଃଖର ଆବୃତି ଏଡ଼ିଦିଏ ଯିଏ,
ଟାଣିନିଏ ହର୍ଷେ ଶତ ଭଗ୍ନ ମହାରଥୀ,
ଯାରେ ଦେଖି ଜାଗେ ସ୍ନେହ ମମତା ପୀରତି
ଗମ୍ଭୀର ମୃତ୍ୟୁର ଚୁଳେ, ସେଇହୁଏ
ଅମୃତର ସାଥୀ ।''

କିନ୍ତୁ ଜୀବନର ଦୁର୍ବିପାକ, ବିଶେଷତଃ ପାରିବାରିକ ଦୁର୍ବିପାକ ତାଙ୍କର ଜୀବନକୁ ଅତିଷ୍ଠ ବିପର୍ଯ୍ୟସ୍ତ କରିଦେଲା । ସେ କାଳକ୍ରମେ ଆଲ୍‌ଜେମିର ବା ସ୍ମରଣଶକ୍ତି ବିଲୋପ ରୋଗରେ ଆକ୍ରାନ୍ତ ହେଲେ । ଯାହା ଘଟିଥିଲା ସର୍ବପଲ୍ଲୀ ରାଧାକ୍ରିଷ୍ଣନ, ଡାକ୍ତର ରଘୁନାଥ ସାହୁ, ସ୍ତରଣକାରୀ ମିହିର ସେନଙ୍କ କ୍ଷେତ୍ରରେ ।

ନଭେମ୍ବର ୧୯, ୨୦୦୦ ମସିହା ସଂଧ୍ୟା ଦେଖିବାକୁ ସେ ରହିଲେ ନାହିଁ । ସେ ପାଲଟିଗଲେ ଇତିହାସ । ଏ ଦେଶର ମାଟିରେ ଜନ୍ମ ହେଇଥିବା ଏଇ ଅସାଧାରଣ ପ୍ରତିଭା ଆଉ ନାହାନ୍ତି ।

ଏ ମାଟି ଦରିଦ୍ର ହୋଇ ଯାଇଛି ।



# ବଣମଲ୍ଲୀର ବିଦାୟ

ମାଗୁଣି ଦାସ ଆଉ ନାହାନ୍ତି । ୨୩. ୬. ୨୦୦୧ ମସିହା, ମଧ୍ୟରାତ୍ରି ଅତିକ୍ରାନ୍ତ ହୋଇଛି । ମାଗୁଣିବାବୁ ଆଖିବୁଜିଦେଲେ ଚିରଦିନ ପାଇଁ ।

ବହୁମୁଖୀ ପ୍ରତିଭାର ଅଧିକାରୀ ମାଗୁଣି ଦାସ କିନ୍ତୁ ଥିଲେ ଆତ୍ମପ୍ରଚାରବିମୁଖ, ଯଦିଓ ଜୀବନର କିଛି କାଳ ସେ ସରକାରଙ୍କର ପ୍ରଚାର ବିଭାଗରେ କାର୍ଯ୍ୟ କରିଥିଲେ । ନିଜର ପ୍ରଚାର ସେ କରିଯାଇ ନାହାନ୍ତି । ତାହା ହିଁ ଥିଲା ତାଙ୍କର ବିଶେଷତ୍ୱ ।

ସେ ସ୍ୱାଧୀନତା ସଂଗ୍ରାମୀ । ପାଠ ଛାଡ଼ି ସେ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରିଥିଲେ । ସେ ଥିଲେ ସାମ୍ବାଦିକ । ବହୁ କାଗଜରେ ସେ ପ୍ରତିନିଧି ଥିଲେ ଭଂଜନଗରରେ । ସେ ଥିଲେ ପ୍ରାବନ୍ଧିକ । ବହୁ ରଚନା ତାଙ୍କର ସ୍ଥାନ ପାଇଛି ବିଭିନ୍ନ ଖବରକାଗଜରେ । ଅନେକ ପୁସ୍ତକ ସେ ରଚନା କରିଯାଇଛନ୍ତି । ସେ ଥିଲେ ଐତିହାସିକ । ଘୁମୁସର, ଘୁମୁସର ମେଳି, ଆଦିବାସୀମାନଙ୍କର ଜୀବନ ଓ ସେମାନଙ୍କର ସାହିତ୍ୟ ଉପରେ ତାଙ୍କର ବହୁ ଲେଖା ପ୍ରକାଶିତ ହୋଇଛି ।

ଗଂଜାମ ଜିଲ୍ଲା ଘୁମୁସର ଅନ୍ତର୍ଗତ ଜଗନ୍ନାଥପ୍ରସାଦରେ ସେ ଜନ୍ମଗ୍ରହଣ କରିଥିଲେ ୧୯୨୦ ମସିହା ଜାନୁଆରୀ ପହିଲାରେ । ପାଠ ପଢ଼ିଥିଲେ ଜଗନ୍ନାଥ ପ୍ରସାଦ ଏବଂ ପରେ ଭଂଜନଗର ସ୍କୁଲରେ ।

୧୯୩୬ ମସିହାରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦାନ କଲେ । ବିଶ୍ୱନାଥ ଦାସ, କ୍ଷେତ୍ରମଣି ପଣ୍ଡା, ଦିବାକର ପଟ୍ଟନାୟକ ପ୍ରଭୃତି ତାଙ୍କୁ ଅନୁପ୍ରାଣିତ କରିଥିଲେ ଏବଂ ପ୍ରେରଣା ଯୋଗାଇଥିଲେ ।

କିଛିକାଳ ଶିକ୍ଷକତା କଲାପରେ ସେ ଦରିଦ୍ରମାନଙ୍କର ସେବାପାଇଁ ଆୟୁର୍ବେଦ ଶିକ୍ଷା ଓ ଚିକିତ୍ସା ପଢ଼ିଲେ ଏବଂ ଭଂଜନଗରରେ ଏକ ଚିକିତ୍ସାଳୟ ଖୋଲିଥିଲେ । ଭଂଜନଗର ଛାଡ଼ିବା ପର୍ଯ୍ୟନ୍ତ ସେ ଏହା ଚଳାଇ ରଖିଥିଲେ ।

ବିଶ୍ୱନାଥ ସେବା ସମିତି ସେ ଗଠନ କରିଥିଲେ ଲୋକଙ୍କର ଦୁଃଖ ସମୟରେ ସାହାଯ୍ୟ କରିବାପାଇଁ । ଘରପୋଡ଼ି ଠାରୁ ହଇଜା ପର୍ଯ୍ୟନ୍ତ ଲୋକଙ୍କର ସବୁ ଦୁଃଖ ସମୟରେ ସେ ଠିଆ ହେଉଥିଲେ ଲୋକଙ୍କ ପାଖରେ ।

ପାଠାଗାର ପ୍ରତିଷ୍ଠା ଥିଲା ତାଙ୍କର ନିଶା । ପାଠାଗାର ଗଢ଼ିଛନ୍ତି, ନିଜ ହାତରୁ ଖର୍ଚ୍ଚ କରି ମୂଲ୍ୟବାନ ବହି କିଣି ପାଠାଗାରମାନଙ୍କୁ ଦାନ କରିଛନ୍ତି । ପାଠାଗାର ଭାଜି ଯାଇଛି, ବହିସବୁ ଚୋରି, ବିକ୍ରୀ ହୋଇଯାଇଛି । ସେ ଲୁହ ଢାଳିଛନ୍ତି । ପୁଣି ତିଆରି କରିଛନ୍ତି ପାଠାଗାର ନୂତନ ସ୍ଥାନରେ ।

ସମବାୟ ସମିତି ଗଠନ ମଧ୍ୟ ଥିଲା ତାଙ୍କର ଅନ୍ୟତମ ଆଗ୍ରହ । ସମବାୟ ଜରିଆରେ ହିଁ ଲୋକଙ୍କ ସମସ୍ୟାର ସମାଧାନ ହୋଇପାରିବ, ଏହାଥିଲା ତାଙ୍କର ସ୍ୱପ୍ନ । ଜଗନ୍ନାଥ ପ୍ରସାଦ ଖାଉଟି ସମବାୟ ସମିତି ତାର ଆଲେଖ୍ୟ ବହନକରେ । ଠିକ୍ ସେଇପରି ଟନରଡ଼ାର ପ୍ରସିଦ୍ଧ ଆର୍ଯ୍ୟକନ୍ୟା ଗୁରୁକୁଳ ଆଶ୍ରମର ପରିଚାଳନା ସମିତିର ସଭ୍ୟ ଭାବରେ ତାଙ୍କର ଦାନ ବିପୁଳ ।

ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ କରିଥିବାରୁ ସେ ଗ୍ରାମରେ ଜାତିବାଛନ୍ଦ ହୋଇଛନ୍ତି । ଦାରିଦ୍ର୍ୟର କଷାଘାତ ସହ୍ୟ କରିଛନ୍ତି; କିନ୍ତୁ ଭାଜିଯାଇ ନାହାନ୍ତି ।

ଘୁମୁସର ଭଂଜ ସାହିତ୍ୟ ପରିଷଦର ସେ ପ୍ରତିଷ୍ଠାତା ସଂପାଦକ ଏବଂ ଏହି ଅନୁଷ୍ଠାନର ବିକାଶ ସହିତ ଜଡ଼ିତ ସେ ନିବିଡ଼ ଭାବରେ ।

ପରବର୍ତ୍ତୀ କାଳରେ ସେ ଲୋକ ସଂପର୍କ ବିଭାଗରେ ଚାକିରି କରିଥିଲେ କିନ୍ତୁ ଅବ୍ୟାହତ ରଖିଥିଲେ ଆପଣାର କଳା, ସାହିତ୍ୟ ସୃଷ୍ଟି । ସେଥିପାଇଁ ସେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଛନ୍ତି । କିନ୍ତୁ ସେ ମାଟି, ମଣିଷ, ସାହିତ୍ୟକୁ ଭୁଲିଯାଇ ନାହାନ୍ତି ।

ଏଇଭଳି ଜଣେ ମଣିଷ ଆମ ଭିତରେ ଆଉ ନାହାନ୍ତି ।



# ପ୍ରତିଭାଶାଳୀ ମଣିଷର ବିଦାୟରେ

ମାର୍ଚ୍ଚ ୩୧ ତାରିଖ, ୨୦୦୧ ମସିହା । ସକାଳୁ ଫୋନ ବାଜୁଛି ତୁହାକୁ ତୁହା । କେହି ଉଠି ନାହାନ୍ତି ନିଦରୁ । ନିଜର ଉଠିବାର ଶକ୍ତି ନାହିଁ । ତଥାପି ହାତ ବଢ଼ାଇ ଫୋନ ଧରିଲି । ଯାହା ଶୁଣିଲି ତାହା ବିଶ୍ୱାସଯୋଗ୍ୟ ନଥିଲା ।

ମୁକୁଲ ଦେଙ୍କର କାଲି ରାତିରେ ପରଲୋକ ହୋଇଯାଇଛି । କ'ଣ ହୋଇଥିଲା ତାଙ୍କର ? କିଛି ନାହିଁ, ପେଟ ଟିକିଏ ଫାମ୍ପିଲା ବୋଲି କହିଥିଲେ । ତା ପରେ ଯନ୍ତ୍ରଣା । ଘରୁ ଡାକ୍ତରଖାନା । ଡାକ୍ତରଖାନାରୁ ଛୁଟି । କିନ୍ତୁ ଘରକୁ ନୁହେଁ । ସେ ଆଡ଼କୁ, ଯାହା କୁଆଡ଼େ କେହି ଜାଣନ୍ତି ନାହିଁ । କିନ୍ତୁ ଯେଉଁଠାରୁ ଆଉ କେହି କେବେ ଫେରି ନାହାନ୍ତି ।

ମୁକୁଲକୁ ପଚାରିଥିଲେ ସେ ନିଶ୍ଚିତ ଭାବରେ ଏଇ ବିତର୍କରେ ଭାଗ ନେଇଥାଆନ୍ତା । ସେ ଆଉ ନାହିଁ ! ମୁକୁଲ ପେଶାରେ ଥିଲା ଇଂଜିନିୟର । ବେଶ୍ ଦକ୍ଷ ଏବଂ ସଚ୍ଚୋଟ ଇଂଜିନିଅର । ସ୍ପଷ୍ଟବାଦୀ, ରୋକ୍‌ଠୋକ୍ କହିପାରେ । ମୁକୁଲ ଅବସର ନେଇଥିଲା ଚିଫ୍ ଇଂଜିନିଅର ହୋଇ । ଅବସର ନେଲା ପରେ ଲୁନାଟିଏ ଚଢ଼ି ସବୁଆଡ଼େ ବୁଲେ । ଘର କରିଛି ତୁଳସୀପୁରରେ । ତା' ଅଧୀନରେ କାମ କରୁଥିବା ବହୁ ଓଭରସିଅରଙ୍କ ଘର ଠାରୁ ହୀନ । ଇଂଜିନିଅରିଂ ଥିଲା ପେଷା । କିନ୍ତୁ ନିଶାଥିଲା ବହୁତ । ଫୁଟବଲ, କ୍ରିକେଟ ଖେଳଠାରୁ ଆରମ୍ଭକରି ଜ୍ୟୋତିଷ, ବିଜ୍ଞାନ, ଇତିହାସ ସବୁ ପର୍ଯ୍ୟନ୍ତ । ମୁକୁଲ ଥିଲା ସବୁ ବିଷୟରେ ଜାଣିଥିବା ଜଣେ ବ୍ୟକ୍ତି । ଜ୍ଞାନ ତା'ର ନଥିଲା ହାଲୁକା । ପ୍ରତିଦିନ ବହୁ ସମୟଧରି ପଢ଼ାପଢ଼ି କରି ସେ ଆପଣାର ଜ୍ଞାନକୁ ଅପ୍-ଟୁ-ଡେଟ୍ କରି ରଖିଥିଲା । କ'ଣ ମୁକୁଲ, ତୁ ଗୋଟାଏ ରିଟାୟାର୍ଡ଼ ଚିଫ୍ ଇଂଜିନିଅର । ଲୁନାଟାଏ ଚଢ଼ି ବୁଲୁଛୁ ? ଦାଦା, ପଇସା କେଉଁଠୁ ପାଇବି ? ପରିବାରର ବହୁ ଲୋକଙ୍କୁ ମଣିଷ କରୁ କରୁ ଦରମା ଶେଷ, ଚାକିରି ବି ଶେଷ । ଲୁନା ଛଡ଼ା ଆଉ ଉପରକୁ ଯିବା ତ ମୋ ପାଇଁ ସମ୍ଭବ ନୁହେଁ ।

ମୁକୁଳ ଆସିଥିଲା ସେଇ ସପ୍ତାହର ଶୁକ୍ରବାର ଦିନ । ୟୁନିଭର୍ସର ସାପ୍ତାହିକ ବୈଠକରେ ଯୋଗଦେଇ ଶୁଣିଲା ଯେ ମୋର ଦେହ ପୁଣି ଖରାପ ହୋଇଛି । କ'ଣ ପୁଣି ଦାଦାର ଦେହ ଖରାପ ? କ'ଣ ଏତେ ଦେହ ଖରାପ ହେଉଛି ? ଆମର ତ କାହିଁ କିଛି ହେଉନି ! ସିଗାରେଟ ଟାଣି ଟାଣି କହିଥିଲା ମୁକୁଳ ! ସତରେ ତା'ର ଦିହ ଖରାପର କୌଣସି ଲକ୍ଷଣ ମଧ ନଥିଲା । ସେ ଥିଲା ଜଣେ ବେଶ୍ ଜଣାଶୁଣା ହୋମିଓପାଥ୍ ।

ଶୁକ୍ରବାର ଦିନ ଏଇ ଘଟଣା, କିନ୍ତୁ ସୋମବାରକୁ ମୁକୁଳ ଆଉ ନାହିଁ ! ମନଟା ହଠାତ୍ ଦବିଗଲା । ମୁକୁଳକୁ ମୁଁ ଜାଣିଥିଲି କଲେଜ କ୍ୟାରିଅରରୁ । ମୋଠାରୁ ସାତ ଆଠ ବର୍ଷ ସାନ । ତା'ଆଗରୁ ମୋର ଯିବାର କଥା । ସେ ଏତେ ଜଲଦି ଚାଲିଗଲା କିମିତି ? ଅନେକ କାମ ବାକି ଅଛି ।

ୟୁନିଭର୍ସର ପ୍ରତିଷ୍ଠା ସମୟରେ ସେ ଥିଲା କଟକ ଡିଭିଜନରେ ଏସ୍.ଡି.ଓ. । ଖୁବ୍ ସାହାଯ୍ୟ କରିଥିଲା ଏବଂ ନିଜେ କାମ ତଦାରଖ କରୁଥିଲା । ସେଇଯୋଗୁଁ ୟୁନିଭର୍ସ ପ୍ରତି ତା'ର ଥିଲା ସ୍ୱତନ୍ତ୍ର ଦରଦ !

ମୁକୁଳ ଥିଲା ଖେଳବାଡ଼ । ଫୁଟବଲରେ ସେ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲା । ହକିରେ ଆନ୍ତଃ ବିଶ୍ୱବିଦ୍ୟାଳୟ ଟୁର୍ଣ୍ଣାମେଣ୍ଟରେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ପ୍ରତିନିଧିତ୍ୱ କରିଥିଲା । ମୃତ୍ୟୁ ବେଳକୁ ସେ ଭେଟେରାନ୍ ଫୁଟବଲ ପ୍ଲେୟାର୍ସ ଆସୋସିଏସନର ଉପସଭାପତି ଥିଲା ।

ମୁକୁଳ ଥିଲା ଖଟିର ମଣିଷ । କଟକ ସହରରେ ତାର ତିନି ଚାରୋଟି ଖଟି ଥିଲ । ସେଇ ଖଟିମାନଙ୍କରେ ସେ ପ୍ରତିଦିନ କିଛି ସମୟ ତା'ର ପୁରୁଣା ସାଥୀମାନଙ୍କ ସହ ଗପ କରୁଥିଲା କିଛି ସମୟ ଆଡ୍ଡା ମାରୁଥିଲା । ଆଡ୍ଡା ନ ମାରିଲେ ଯେପରି ତାର ଜୀର୍ଣ୍ଣ ହେଉ ନଥିଲା ଭାତ !

ଏଇଭଳି ଏକ ମଣିଷ ଆମ ଭିତରୁ ହଠାତ୍ ହଜିଗଲା ଏହା ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଦେଇଛି । ଲୁହ ବି ଗଡୁନାହିଁ । ଆଖି ପଥର ହୋଇଯାଇଛି । ସେ ଥିଲା କାଲି, ଆଜି ସେ ନାହିଁ । ମଣିଷ କେବଳ ଅନାଉଚି ଦୂରକୁ ବହୁ ଦୂରକୁ ଅସହାୟ ଭାବରେ ।



# ସେଇ ପାହାଡ଼ର ତୀଖ ଭଳି

ଅରଣ୍ୟର ବୁକୁ ଚିରି ଠିଆ ହୋଇଛି ପର୍ବତମାଳା । ଆକାଶକୁ ଠେଲି ଉପରକୁ ଉଠିଚି ପାହାଡ଼ର ଚୂଡ଼ା । ଗର୍ବିତ, କାହାରି ପାଖରେ ମଥାନତ କରିନାହିଁ ଦିନେ ।

ଏଇପରି ଏକ ପାହାଡ଼ର ଚୂଡ଼ା ଥିଲେ ମୁରାରୀ ପ୍ରସାଦ ଦାସ । ୨୩.୩.୨୦୦୧ ମସିହାରେ ତାଙ୍କର ପରଲୋକ ହୋଇଗଲା ରାଉରକେଲାରେ । ପୁଅ ପାଖରେ ସେ ରହୁଥିଲେ । କିଛିଦିନ ହେଲା ତାଙ୍କର ଦିହ ଭଲ ରହୁନଥିଲା ।

ଅବସର ନେବା ପରେ ଅନେକେ ଚାକିରି ଖୋଜନ୍ତି । କେତେକ ବାଧବାଧକତାରେ ଏବଂ ଅନ୍ୟ କେତେକ ଅଧିକ ଉପାର୍ଜନ ପାଇଁ । ମୁରାରୀ ବାବୁ ସେଭଳି ମଣିଷ ନଥିଲେ । ''ଚାକିରି କରୁଥିଲି, ଅବସର ନେଲି, ପୁଣି ଚାକିରି କାହିଁକି ?'' ଥରେ ସେ ମୋର ପ୍ରଶ୍ନର ଉତ୍ତରରେ ଏହା କହିଥିଲେ ।

ଓଡ଼ିଶା ବନ୍ୟ ବିଭାଗରେ ଚାକିରି କରୁଥିଲେ । ଡି.ଏଫ୍.ଓ., କନଜରଭେଟର ହୋଇଥିଲେ । କିନ୍ତୁ ଚିଫ୍ କନଜର୍‌ଭେଟର ହୋଇପାରିଲେ ନାହିଁ । ସେ ଚାଲିଗଲେ ଡେରାଡୁନ, ଓଡ଼ିଶା ଛାଡ଼ି । ସେଇଠି ଶିକ୍ଷା ଦେଲେ ଏବଂ ଅବସର ନେଲେ ।

ସେଇଦିନ ଓଡ଼ିଶା ଛାଡ଼ିବା ପୂର୍ବରୁ ମୋତେ ଭେଟିଥିଲେ । ମୁହଁରେ ସେଇ ହସ ଥିଲା । କିନ୍ତୁ ସେଦିନ ସେ ହସର ଅର୍ଥ ଥିଲା ସ୍ୱତନ୍ତ୍ର ।

''ମୁଁ ପାରିଲି ନାହିଁ । ସେଥିପାଇଁ ମୁଁ ଦାୟୀ । କାହାରି ପାଖରେ ମୁଣ୍ଡ ନୁଆଁଇ ନାହିଁ, ଖିଜମତ କରିନାହିଁ, ଅନ୍ୟାୟ କାମ କରିନାହିଁ । ସେଥିପାଇଁ ଏଇ ଯେଉଁ ରାୟ ମୋ ପାଇଁ ଦିଆଗଲା ସେଥିପାଇଁ ଅନ୍ୟମାନେ କାହିଁକି ଦାୟୀ ହେବେ ?'' ସେକଥା ମୋର ଏପର୍ଯ୍ୟନ୍ତ ସ୍ମରଣ ଅଛି ।

''କଣ କହୁଛନ୍ତି, ଆପଣ ?'' ମୋର କିଛି କହିବାର ନଥିଲା । କାରଣ ମୁଁ ଜାଣିଥିଲି ସେ କାହାଣୀ ।

ଭାରତୀୟ ବନ୍ୟ ବିଭାଗରେ ସେ ଆଠ ଏପ୍ରିଲ, ୧୯୪୮ରେ ଯୋଗ ଦିଅନ୍ତି ଡେରାଡୁନ ଫରେଷ୍ଟ କଲେଜରୁ ସ୍ନାତକ ହୋଇ । ୧୯୨୪ ମସିହା ପାଞ୍ଚ ଏପ୍ରିଲରେ ସେ

ଜନ୍ମ ହୋଇଥିଲେ, ମୋର ମନେହୁଏ ସମ୍ବଲପୁରରେ ।

ସେ ଥାଆନ୍ତି ଅନୁଗୋଳରେ । ସେଠାରେ ବନ୍ୟ ବିଭାଗ ଅଫିସରମାନଙ୍କର ଏକ ସମ୍ମିଳନୀ ହେଉଥାଏ । ନୂଆକରି ଗଢ଼ାଯାଇଥାଏ ଟିକରପଡ଼ା ଅଭୟାରଣ୍ୟ । ସେଇ ବଣରେ ବୁଲୁଥିଲା ଏକ ବିଶାଳକାୟ ଗୟଳ । କିନ୍ତୁ କାହାକୁ ସେ ଆକ୍ରମଣ କରେନାହିଁ, ଯଦିଓ ଗୟଳକୁ ଅରଣ୍ୟର ଏକ ଭୀତିପ୍ରଦ ଜନ୍ତୁ ଭାବରେ ଗଣନା କରାଯାଏ । ଏଇ ଗୟଳଟି ଥିଲା ଦେଖିବାକୁ ମାଜେଷ୍ଟିକ । ଅନେକ ଲୋକ ତାକୁ ଦେଖିବାକୁ ଯାଆନ୍ତି ଟିକରପଡ଼ା । ରାସ୍ତା କଡ଼ରେ ସେ ଠିଆହୁଏ କାହାକୁ କିଛି କରେନା ।

ବନ୍ୟ ବିଭାଗର ମନ୍ତ୍ରୀ ଥାଆନ୍ତି ଜଣେ ପୂର୍ବତନ ରାଜା । ରାଜୁତି ଯାଇଛି କିନ୍ତୁ ରାଜାର ପୌଢ଼ି ଯାଇନାହିଁ । ସେ ଏଇ ଗୟଳକୁ ଦେଖି ଲୋଭକଲେ ଏବଂ ସମ୍ମିଳନୀରେ ଘୋଷଣା କରିବା ଭଳି କହିଲେ ଯେ ମୁଁ ଏଇ ଗୟଳଟିକୁ ମାରି ତାର ମୁଣ୍ଡଟିକୁ ଉଆସରେ ରଖିବି ।

ଏହାର ପ୍ରତିବାଦ କରି ଜଣେ ଅଫିସର ଠିଆହେଲେ । ଆପଣ ତାହା କରିପାରିବେ ନାହିଁ । ଏହା ହେଉଛି ଏକ ଅଭୟାରଣ୍ୟ । ସରକାରଙ୍କର ନିଷ୍ପତ୍ତି ହେଉଛି ଯେ ଏହା ଭିତରେ ଶିକାର ନିଷିଦ୍ଧ । ଏହାଛଡ଼ା ଏହି ଗୟଳ ହେଉଛି ଅଭୟାରଣ୍ୟର ଗୌରବ ।

ସମଗ୍ର ସମ୍ମିଳନୀରେ ନିସ୍ତବ୍ଧତା ଖେଳିଗଲା ।

ରାଜକୀୟ ଗର୍ଜନରେ ମନ୍ତ୍ରୀ କହିଲେ–

ଆପଣ ଜାଣନ୍ତି ଯେ କାହା ସାଙ୍ଗରେ ଆପଣ ଏଇ କଥାବାର୍ତ୍ତା କରୁଛନ୍ତି ?

ଉତ୍ତର ଆସିଲା–

ଆପଣ ଜାଣନ୍ତି ଯେ କିଏ ଏହାର ପ୍ରତିବାଦ କରୁଛି ।

ପୁଣି ରାଜନ୍ ଗର୍ଜିଲେ ।

ମୁଁ ମନ୍ତ୍ରୀ

ଏପଟରୁ ଉତ୍ତର ଶୁଭିଲା– ମୁଁ ଅଭୟାରଣ୍ୟର ରକ୍ଷକ । ମୁଁ ଥିବା ପର୍ଯ୍ୟନ୍ତ ଏହା ହୋଇପାରିବ ନାହିଁ ।

ସବୁ ବନ୍ୟବିଭାଗ ହାକିମମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ । ଅନେକଙ୍କର ପ୍ରଶଂସା କିନ୍ତୁ କେତେଜଣଙ୍କର ସାକୁଲେଇବା କଥା– ମନ୍ତ୍ରୀ ଯେତେବେଳେ, ସେ ଯାହା ଚାହିଁବେ କରିପାରିବେ । ତମର କ'ଣ ଗଲା ?

ମୁରାରୀ ବାବୁ ବଦଳି ହୋଇ ଯାଇଥିଲେ । ଗୟଳଟିକୁ ହତ୍ୟା କରାଯାଇଥିଲା । ମୁଣ୍ଡଟି ଶୋଭାବର୍ଦ୍ଧନ କରିଥିଲା ରାଜା-ମନ୍ତ୍ରୀଙ୍କର ଉଆସର । କିନ୍ତୁ ଖୁବ୍ ଶୀଘ୍ର ମହାକାଳ ଠେଲି ଦେଇଥିଲା ରାଜନ୍‌ଙ୍କୁ ତା'ର ଗର୍ବକୁ । ସେ ଆଉ ଗୋଟାଏ କଥା ।

ମୁରାରୀ ବାବୁ ଏଇପ୍ରକାର ମଣିଷ ଥିଲେ ।

ହଠାତ୍ ଦେଖାହୁଏ ବ୍ରହ୍ମପୁର ସହରର ରାସ୍ତାରେ । ବ୍ରହ୍ମପୁରରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ । ପ୍ରାଚୁର୍ଯ୍ୟର ସୁଅ ଛୁଟୁଛି । ପ୍ରସ୍ତାବ ଗୋଟାଏ ପ୍ରକାରର, କାର୍ଯ୍ୟ ଠିକ୍ ବିପରୀତ । ମୁରାରୀବାବୁ କହିଲେ– କ'ଣ ଦେଖୁଚନ୍ତି ଆପଣ ? ପ୍ରସ୍ତାବ ନା କାର୍ଯ୍ୟ ?

ମୁରାରୀବାବୁ ଯାହା କହନ୍ତି ତାହା କରନ୍ତି । ସେଥିରେ ଏପଟ ସେପଟ ହେବେ ନାହିଁ । ବନ୍ୟ ସଂପର୍କରେ ପାଠ ଯେମିତି, କାମ ବି ସେମିତି ଦୋରସ୍ତ । ସେଇଯୋଗୁଁ ସେ ସ୍ମୃତହୋଇ ରହିବେ ବହୁକାଳ ଏକ ପ୍ରବାଦ ପୁରୁଷ ଭାବରେ । କାଠଚୋରମାନଙ୍କ ପାଇଁ, ସେ କଣ୍ଟ୍ରାକ୍ଟର ହୋଇଥାଉ କି ଅଫିସର ହୋଇଥାଉ, ମୁରାରୀବାବୁ ସେମାନଙ୍କ ପାଇଁ ଏକ ଆତଙ୍କ ।

ସରଳ ମଣିଷ । ଚାକଚକ୍ୟ ନାହିଁ । ବେଶଭୂଷା ନାହିଁ କିନ୍ତୁ ବେଶ୍ ତୀକ୍ଷ୍ଣ କଥା ଓ କାର୍ଯ୍ୟରେ ।

ଜଂଗଲରେ ଗଛ କଟିଗଲେ ଯେଉଁ ବନ୍ୟବିଭାଗ ଅଫିସରର ଆଖିରୁ ଲୁହ ଖସିପଡ଼େ ନାହିଁ ସେ କି ବନ୍ୟ ବିଭାଗ ଅଫିସର ?

ମୁରାରୀବାବୁ ସେଇଭଳି ଜଣେ ଅଫିସର ଥିଲେ ଯିଏ ଅରଣ୍ୟକୁ ଭଲ ପାଉଥିଲେ, ଭଲପାଉଥିଲେ ମାଟିକୁ ଏବଂ ମଣିଷକୁ ।

ଅରଣ୍ୟ ଛଡ଼ା ତାଙ୍କର ଆଗ୍ରହ ଥିଲା ବହୁ ବିଷୟରେ । ସମାଜ, ରାଜନୀତି ପ୍ରଭୃତିରେ ମଧ୍ୟ ଥିଲା ତାଙ୍କର ଆଗ୍ରହ ଏବଂ ଜ୍ଞାନ । ଅନେକ ସମୟରେ ରାଜନୀତି ବିଜ୍ଞାନର ଏଭଳି ଏକ ପ୍ରଶ୍ନ ସେ ପଚାରିବେ ଯେ ତାଙ୍କୁ ଅନେଇବାକୁ ପଡ଼ିବ ବିସ୍ମୟରେ, ଏ କ'ଣ ବନ୍ୟବିଭାଗ ଅଫିସର ନା ରାଜନୀତି ବିଜ୍ଞାନର ଛାତ୍ର ?

ମୁରାରୀବାବୁ ନାହାନ୍ତି । ତାଙ୍କ ସହିତ ବ୍ୟକ୍ତିଗତ ଆତ୍ମୀୟତା ଥିଲା ନିବିଡ଼ । ଅନେକ ଦିନର । ତାଙ୍କର ପରଲୋକରେ ପାହାଡ଼ର ସେଇ ଉନ୍ନତ ଟାଖ ଭିତରୁ ଗୋଟିଏ ଯେପରି ହଠାତ୍ ଖସି ପଡ଼ିଲା ।

କେହି ରହିବେ ନାହିଁ । ମୁରାରୀ ବାବୁ ମଧ୍ୟ ନାହାନ୍ତି । କାଳର ସେଇ କରାଳ ନିୟମକୁ ଏଡ଼ିଦେବ କିଏ ?

କିନ୍ତୁ ମୁରାରୀବାବୁଙ୍କ ପରଲୋକରେ ସାରା ଓଡ଼ିଶାର ଅରଣ୍ୟର ଆଖିରୁ ଲୁହ ଝରିବ । ଝରିବ ବୃକ୍ଷଲତାମାନଙ୍କର ଟୋପାଟୋପା ଲୁହ, ହୁଏତ କାକର ବା ଶିଶିର ବୁନ୍ଦା ଆକାରରେ । ଅରଣ୍ୟର ମୃଗ ସ୍ଥିରହୋଇ ଠିଆହେବେ ମୁହୂର୍ତ୍ତକ ପାଇଁ । ବାଘର ହେଣ୍ଟାଳ ଶୁଭିବ ଅରଣ୍ୟର ଗର୍ଭରୁ, ମୁରାରୀବାବୁଙ୍କ ଉଦ୍ଦେଶ୍ୟରେ ।

ମୁରାରୀବାବୁ ଆଉ ନାହାନ୍ତି ।



# ଶିଖା ନିର୍ବାପିତ

ରଂଗରାଜନ କୁମାର ମଙ୍ଗଲମ ଆଉ ନାହାନ୍ତି । ବଂଧୁ ମହଲରେ ତାଙ୍କୁ ସମସ୍ତେ ଡାକନ୍ତି ରଂଗା ନାମରେ ଏବଂ ସେଇ ନାମରେ ହିଁ ସେ ପରିଚିତ ହେବାକୁ ସୁଖ ପାଆନ୍ତି । କିନ୍ତୁ ଆମମାନଙ୍କ ପାଖରେ, ଯେଉଁମାନେ ତାଙ୍କର ପାରିବାରିକ ବଂଧୁ ସେମାନଙ୍କ ପାଖରେ, ସେ ପରିଚିତ ଥାମ୍ବି ନାମରେ । ମାତ୍ର ୪୮ ବର୍ଷ ବୟସରେ ତା'ର ପରଲୋକ ହୋଇଗଲା । ପ୍ରସିଦ୍ଧ ଆପୋଲୋ ହସପିଟାଲରେ ସେ ପ୍ରଥମେ ଚିକିତ୍ସା ପାଇଁ ଭର୍ତ୍ତି ହୋଇଥିଲେ । ସେଠାରୁ ଭଲ ହୋଇ ଫେରିଲେ କିନ୍ତୁ ତାହା ମିଥ୍ୟାବୋଲି ଜଣାପଡ଼ିଲା ଯେତେବେଳେ ତାଙ୍କୁ ଭର୍ତ୍ତି କରାଗଲା ଏ.ଆଇ.ଏମ୍.ଏସ୍.ରେ । ତାଙ୍କର ମୃତ୍ୟୁ ତଦନ୍ତର ପରିସରଭୁକ୍ତ । ତଦନ୍ତର ଫଳ କ'ଣ ହେବ ସେ ସ୍ୱତନ୍ତ୍ର କଥା, କିନ୍ତୁ ସେ ତ ଆଉ ଫେରିବେ ନାହିଁ । ଏହା ହେଉଛି ସବୁ ସତ୍ୟଠାରୁ କ୍ରୁରତମ ସତ୍ୟ ।

ଏକ ପ୍ରସିଦ୍ଧ ପରିବାରରେ ତାଙ୍କର ଜନ୍ମ । ବାପା ମୋହନ କୁମାର ମଙ୍ଗଲମ ଜଣେ ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ଥିଲେ ଏବଂ ତେଲେଙ୍ଗାନାର ସଶସ୍ତ୍ର ବିପ୍ଳବ ପରେ ପରେ କମ୍ୟୁନିଷ୍ଟ ପାର୍ଟି ସହିତ ତାଙ୍କର ମତଭେଦ ହୁଏ ଏବଂ ସେ ପରବର୍ତ୍ତୀ କାଳରେ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳରେ ଏକ ଟାଣୁଆ ସଭ୍ୟ ଭାବରେ ଯୋଗଦିଅନ୍ତି । ସେ ଇସ୍ପାତ ବିଭାଗର ମନ୍ତ୍ରୀ ଥିଲେ ଏବଂ ସ୍ୱଳ୍ପ ସମୟ ଭିତରେ ଆପଣାର ଅଭିଲେଖ ରଖିଯାଇଛନ୍ତି ସେ । ଥରେ ଇସ୍ପାତ ବିଭାଗର ମନ୍ତ୍ରୀ ଥିଲାବେଳେ ତାଙ୍କର ରାକ୍ସ ଫୋନରେ ଏକ ରିଙ୍ଗ ହେଲା ଏବଂ ସେ ଫୋନ ଉଠାଇଲେ । ଉତ୍ତର ଦେଲେ ଯେ ଏଇଟା ତମ ଲାଇନ ନୁହେଁ, ସାଧାରଣ ଲାଇନରେ ଆସ । ଏବଂ ତା'ପରେ ଇନ୍ଦିରାଗାନ୍ଧୀ, ପ୍ରଧାନମନ୍ତ୍ରୀଙ୍କୁ ଫୋନକରି କହିଲେ Tell your brat not to misuse RAX.

ପିତାମହ ଡକ୍ଟର ସୋବରାୟନ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ । ଥିଲେ କ୍ରିକେଟ କଣ୍ଟ୍ରୋଲ ବୋର୍ଡ଼ର ସଭାପତି, ଯୋଗାଯୋଗ ବିଭାଗର କେନ୍ଦ୍ରମନ୍ତ୍ରୀ ଏବଂ ପରବର୍ତ୍ତୀ କାଳରେ ଇନ୍ଦୋନେସିଆରେ ଆମର ରାଷ୍ଟ୍ରଦୂତ । କ୍ରିକେଟ କଣ୍ଟ୍ରୋଲ ବୋର୍ଡ଼ର ସଭାପତି ଭାବରେ ସେ କହିଥିଲେ ଯେ A country's sports cannot be free from the politics of the country. A healthy politics leads to healthy sports and unhealthy politics leads to unhealthy sports.

ବଡ଼ବାପା ପି.ପି. କୁମାରମଙ୍ଗଲମ୍ ଭାରତୀୟ ସେନା ବାହିନୀର ସର୍ବୋଚ୍ଚ ସେନାପତି ଥିଲେ ଏବଂ ନିକଟରେ ତାଙ୍କର ପରଲୋକ ହୋଇଯାଇଛି ଏବଂ ଅନ୍ୟତମ ବଡ଼ବାପା ଗୋପାଲ କୁମାରମଙ୍ଗଲମ୍ ଜଣେ ପ୍ରଖ୍ୟାତ ମାଇନିଂ ଇଂଜିନିଅର ଏବଂ କୋଲ୍ ଇଣ୍ଡିଆର ମୁଖ୍ୟ ଥିଲେ ଅନେକ କାଳଧରି । ପିଉସୀ ପାର୍ବତୀ କ୍ରିଷ୍ଣନ ଜଣେ ଟ୍ରେଡ଼ ୟୁନିଅନ ନେତ୍ରୀ ଏବଂ ବହୁକାଳ ଧରି ପାର୍ଲ୍ୟାମେଣ୍ଟରେ କମ୍ୟୁନିଷ୍ଟ ଦଳର ସଦସ୍ୟ । ପିଇସା ଏନ୍.କେ. କ୍ରିଷ୍ଣନ୍ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟିର ସଭ୍ୟ ।

ଠିକ୍ ସେଇପରି ମାଆ ମଧ୍ୟ ଥିଲେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଏବଂ ଛାତ୍ର ଆନ୍ଦୋଳନର ନେତ୍ରୀ । ବଂଗଳାର ପୂର୍ବତନ ମୁଖ୍ୟମନ୍ତ୍ରୀ ଏବଂ ୧୯୪୨ ଆନ୍ଦୋଳନର ନେତା ୰ ଅଜୟ ମୁଖର୍ଜୀ, ତଥା ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ୰ ବିଶ୍ୱନାଥ ମୁଖର୍ଜୀ ହେଉଛନ୍ତି ତାଙ୍କ ମାଆଙ୍କର ଭାଇ । ପ୍ରସିଦ୍ଧ ନାରୀନେତ୍ରୀ ୰ ଗୀତା ମୁଖର୍ଜୀ ହେଉଛନ୍ତି ତାଙ୍କର ଖୁଡ଼ୀ ।

ଏଇପରି ଏକ ବିରାଟ ପରମ୍ପରାର ଦାୟାଦ ହେଉଛନ୍ତି ଥାମି । ୧୯୯୧ ମସିହା ଜୁନ୍ ୨୩ ତାରିଖରେ ସେ ଯେତେବେଳେ ମନ୍ତ୍ରୀ ଭାବରେ ଶପଥ ନେଲେ ସେତେବେଳେ ଭାରତର ରାଷ୍ଟ୍ରପତି ଆର୍. ଭେଙ୍କଟରମନ୍ ପରମ୍ପରା ଭାଙ୍ଗି ତାଙ୍କୁ ବଧାଇ ଜଣାଇଲେ ଯେ ସେ ହେଉଛନ୍ତି ''ତୃତୀୟ ପୀଢ଼ିର ମନ୍ତ୍ରୀ । ଆଗରୁ ତାଙ୍କର ଜେଜେବାପା ଏବଂ ବାପା ଏଇ ମନ୍ତ୍ରୀପଦ ଅଳଙ୍କୃତ କରି ସାରିଛନ୍ତି ।''

ଡକ୍ଟର ପି. ସୋବରାୟନ୍ କଂଗ୍ରେସ ପାର୍ଟିର ସଭ୍ୟ ଥିଲେ ଏବଂ ସେଇ ପାର୍ଟିର ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ କିନ୍ତୁ ପରବର୍ତ୍ତୀ କାଳରେ ସେ କଂଗ୍ରେସ ଦଳରେ ଯୋଗଦେଇ ମନ୍ତ୍ରୀ ହୋଇଥିଲେ । ବାପା ମୋହନ କୁମାର ମଙ୍ଗଲମ୍ ମଧ୍ୟ ସେଇପରି ଲଣ୍ଡନରେ ପଢୁଥିବା ବେଳେ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ ଭାବରେ ସେ ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ, ସ୍ୱାଧୀନତା ପରେ ସାମ୍ୟବାଦ ପ୍ରତିଷ୍ଠା

ପାଇଁ 'ତେଲେଙ୍ଗାନା ସଶସ୍ତ୍ର ବିଦ୍ରୋହ'ରେ ଯୋଗଦେଇଥିଲେ । ପରବର୍ତ୍ତୀ କାଳରେ ସେ ମାଡ୍ରାଜର ଆଡ୍‌ଭୋକେଟ ଜେନେରାଲ ହୋଇଥିଲେ ଏବଂ ପରେ ସେ କଂଗ୍ରେସ ଦଳରେ ଯୋଗଦେଇ କେନ୍ଦ୍ରରେ ମନ୍ତ୍ରୀ ହୋଇଥିଲେ ଏବଂ ଏକ ଉଡ଼ାଜାହାଜ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ ।

ରଂଗରାଜନଙ୍କ ଜନ୍ମ ବାମପନ୍ଥୀ ପରିବେଶରେ, କିନ୍ତୁ ବର୍ଦ୍ଧିତ କେନ୍ଦ୍ରପନ୍ଥୀ ଭାରତୀୟ ଜାତୀୟ କଂଗ୍ରେସରେ । ସମସ୍ତଙ୍କୁ, ଏପରିକି ତାଙ୍କର ବଂଧୁମାନଙ୍କୁ ବିସ୍ମୟାଭିଭୂତ କରି ସେ ଯୋଗଦିଅନ୍ତି ଦକ୍ଷିଣ ପନ୍ଥୀ ଭାରତୀୟ ଜନତା ପାର୍ଟିରେ ଏବଂ କେନ୍ଦ୍ରମନ୍ତ୍ରୀ ବି ହୁଅନ୍ତି ।

ଚରମ ବାମପନ୍ଥୀରୁ ଚରମ ଦକ୍ଷିଣପନ୍ଥୀ, ଏଇ ଲମ୍ବା ବାଟକୁ ସେ ସଫଳତାର ସହିତ ଲଂଘି ଯାଇଛନ୍ତି ।

ରଂଗା ଏକ ଛାତ୍ର ଓ ଯୁବନେତା ଭାବରେ ଆପଣାକୁ ଗଢ଼ନ୍ତି । କିନ୍ତୁ ବାପାଙ୍କ ପରି ମେହନତୀ ମଣିଷ ପ୍ରତି ତାଙ୍କର ଥିଲା ଏକ ଆବେଗମୟ ଅନୁରାଗ । ସୁତରାଂ ସେ ଟ୍ରେଡ୍ ୟୁନିଅନ ଆନ୍ଦୋଳନ ସହିତ ଆପଣାକୁ ଜଡ଼ିତ କରନ୍ତି । ଅମ୍ବିକାସୋନୀ, ପି.ସି. ଚାକୋ ଏବଂ ପ୍ରିୟରଂଜନ ଦାସ ମୁନସୀଙ୍କ ସହିତ ମିଶି ସେ ନାସନାଲ ଷ୍ଟୁଡେଣ୍ଟସ ୟୁନିଅନ ଅଫ ଇଣ୍ଡିଆ ଗଠନ କରନ୍ତି । ସେ କାଳର ସେଇ ଯୁବଗୋଷ୍ଠୀ ବର୍ତ୍ତମାନ ବିଭିନ୍ନ ରାଜନୈତିକ ପଦବୀରେ ଆପଣାକୁ ପ୍ରତିଷ୍ଠା କରି ପାରିଛନ୍ତି ।

ପରମ୍ପରାର ଦାୟାଦ ଭାବରେ ସେ ସୋସଲିଷ୍ଟ ମାନଙ୍କର ବିରୋଧୀ । ସେମାନଙ୍କର ସୁଧାରବାଦ ସହିତ ସେ ମେଳ ଖୁଆଇପାରି ନାହାନ୍ତି । ଜର୍ଜ ଫର୍ଣ୍ଣାଡିସ ଭଳି ନେତାଙ୍କୁ ହରାଇ ସେ ଦକ୍ଷିଣ ରେଲବାଇ ୟୁନିଅନର ସଭାପତି ହୁଅନ୍ତି ଏବଂ ପରବର୍ତ୍ତୀ କାଳରେ ଅଲ୍ ଇଣ୍ଡିଆ ରେଲଓ୍ୱେ ଫେଡରେସନର ସଭାପତି ପଦବୀ ପାଇଁ ପ୍ରତିଯୋଗିତାରେ ମଧ୍ୟ ଜର୍ଜଙ୍କୁ ହରାଇ ସେ ସଭାପତି ହୁଅନ୍ତି । ଏଇପରି ଏକ ଯୁବକ ପରବର୍ତ୍ତୀ କାଳରେ କେବଳ ସେମାନଙ୍କ ସହିତ ନୁହେଁ କଠୋର ଦକ୍ଷିଣପନ୍ଥୀ ଏବଂ ସାମ୍ପ୍ରଦାୟିକତାବାଦୀମାନଙ୍କ ସହିତ ମଧ୍ୟ ଆପଣକୁ ସହଜରେ ମିଳାଇନେଇ ପାରିଲେ । କିପରି, ତାହା ପ୍ରମାଣିତ କରେ ରଙ୍ଗାର ପରିସ୍ଥିତିକୁ ଖାପଖୁଆଇ ନେବାର ଦକ୍ଷତାର ତଥା ସୁବିଧାବାଦୀ ଚରିତ୍ରର ।

ମୋହନକୁମାର ମଙ୍ଗଳମ୍‌ଙ୍କ ମୃତ୍ୟୁ ବେଳକୁ ଥାମ୍ବିର ବୟସ ହୋଇଥିଲା ମାତ୍ର ୨୧ ବର୍ଷ ବୟସ ଆଉ ତାଙ୍କର ମୃତ୍ୟୁ ବେଳକୁ ତାଙ୍କ ପୁଅ ମନୁର ବୟସ ମାତ୍ର ୨୨ ବର୍ଷ । ଡାକ୍ତରଖାନାରେ ରଂଗା ତା'ର ପୁଅକୁ ସେଇକଥା ମନେ ପକେଇଦେଇ କହିଥିଲେ,

''ମୋ ବାପାଙ୍କର ପରଲୋକ ବେଳକୁ ମୋତେ ମାତ୍ର ୨୧ ବର୍ଷ ବୟସ, ତୋର ବୟସ ବର୍ତ୍ତମାନ ୨୨ ବର୍ଷ ବୟସ । ମୋ ବିନା କ'ଣ ତୁ ଚଳିପାରିବୁ ନି ?'' ରଂଗା କହନ୍ତି ତାଙ୍କର ପୁଅକୁ ଏଇ ଅସୁସ୍ଥତା ଭିତରେ । ଏହା ଥିଲା କ'ଣ ପ୍ରିମୋନିସନ୍ ନା ପ୍ରଳାପ ?

ରଂଗରାଜନ ଖୁବ୍ ଅଳ୍ପ ଦିନ ଭିତରେ ରାଜନୀତିରେ ଅନେକ ଲମ୍ବା ବାଟ ବୁଲି ଆସିଛନ୍ତି । ବାମପନ୍ଥୀ ଜଳବାୟୁରୁ ମଧ୍ୟମପନ୍ଥୀ ଭାରତୀୟ ଜାତୀୟକଂଗ୍ରେସ ଏବଂ ସେଠାରୁ କଠୋର ଦକ୍ଷିଣପନ୍ଥୀ ଭାରତୀୟ ଜନତାପାର୍ଟି । ବାଟ ଦୀର୍ଘ କିନ୍ତୁ ସେ ଆପଣାକୁ ଖାପ ଖୁଆଇ ନେଇ ପାରିଛନ୍ତି ପରିବର୍ତ୍ତନ ସହ । ଆପଣାର ନିଷ୍ଠା ଏବଂ ଦୃଷ୍ଟିଭଂଗୀର ତୀକ୍ଷ୍ଣତା ତାଙ୍କୁ ଜଣେ ଦକ୍ଷ ମନ୍ତ୍ରୀ ଭାବରେ ପ୍ରମାଣିତ କରିଛି । ତାଙ୍କର ଶ୍ରମିକ ବା ମେହନତୀ ମଣିଷ ପ୍ରତି ଦରଦ ଥିଲା ପ୍ରଚୁର କିନ୍ତୁ ସେ ଥିଲେ ଠିକ୍ ସେଇପରି କଠୋର ଆପଣାର ନିଷ୍ପତ୍ତିରେ । ତାହାର ପ୍ରମାଣ ତାଙ୍କର ମନ୍ତ୍ରୀତ୍ୱ ପ୍ରମାଣ କରେ । ଶକ୍ତି ମନ୍ତ୍ରୀ ଭାବରେ ତାଙ୍କର କଠୋରତା ଅନେକ ସମୟରେ ଆଶ୍ଚର୍ଯ୍ୟ କରିଛି ।

ଆମେ ଯେଉଁମାନେ ତାଙ୍କର ପରିବାର ସହିତ ସଂପୃକ୍ତ ସେମାନଙ୍କ ପାଇଁ ଏହା ଏକ ବ୍ୟକ୍ତିଗତ ଦାରୁଣ ଧକ୍କା । ଆଜି ଶୋକାର୍ତ୍ତ ଅନେକଙ୍କର ତାଙ୍କର ପରିବର୍ତ୍ତିତ ରାଜନୀତି ସହିତ ବିରୋଧ ଥିଲା ଏବଂ ତାଙ୍କର ଏପ୍ରକାର ପରିବର୍ତ୍ତନକୁ ଅନେକ ବଂଧୁ ଗ୍ରହଣ କରିପାରି ନାହାନ୍ତି । କିନ୍ତୁ ଏହା ସେମାନଙ୍କ ପାଇଁ ଗଭୀର ଦୁଃଖର ବିଷୟ । ମୃତ୍ୟୁ ସବୁପ୍ରକାର ମତଭେଦ, ମତାନ୍ତରକୁ ପୋଛିଦିଏ ଏବଂ ତାହା ହିଁ ହୋଇଛି ରଂଗରାଜନ କୁମାରମଙ୍ଗଲମ୍ଙ୍କ ମୃତ୍ୟୁରେ ।



# ଧନ୍ୱନ୍ତରୀର ପରଲୋକ

ବିଗତ ବେଶ୍ କିଛିଦିନ ହେଲା ସେ ଅସୁସ୍ଥ ଥିଲେ । ଆଲ୍‌ଜେମିର ବା ସ୍ମରଣଶକ୍ତିର ବିଲୋପ ରୋଗ ତାଙ୍କୁ ଗ୍ରାସ କରିଥିଲା । ସେ କ'ଣ କରୁଛନ୍ତି ତାହା ସେ ଜାଣିପାରୁ ନଥିଲେ । ପୁତ୍ରର ମୃତ୍ୟୁ ଏବଂ ଆନୁସଂଗିକ ସମସ୍ୟା ତାଙ୍କୁ ରୋଗଗ୍ରସ୍ତ କରି ଦେଇଥିଲା । ଜୀବନରେ ଯେଉଁ ବ୍ୟକ୍ତି ଅଗଣିତ ରୁଗ୍ଣ ମଣିଷକୁ ଜୀବନ୍ୟାସ ଦେଇ ପାରିଥିଲା, ସେଇ ମଣିଷ ଆପଣାର ରୋଗରୁ ମୁକ୍ତିପାଇ ପାରିଲା ନାହିଁ । ଘଟଣାର ଏହା ଏକ କ୍ରୁର ପରିହାସ !

କଟକ ଜିଲ୍ଲାରେ ପଦ୍ମପୁର ବୋଲି ଗ୍ରାମଟିଏ ଅଛି । ବାଣ ପାଇଁ ଏହି ଗ୍ରାମ ପ୍ରସିଦ୍ଧ । ସେଇଁ ଗାଁରେ ଜନ୍ମଗ୍ରହଣ କରିଥିଲେ ୧୯୧୨ ମସିହା ଡିସେମ୍ବରରେ ଡାକ୍ତର ରଘୁନାଥ ସାହୁ । ପ୍ୟାରୀମୋହନ ଏକାଡେମୀରୁ ମାଟ୍ରିକ, ରେଭେନ୍ସା କଲେଜରୁ ଆଇ.ଏସ୍‌ସି., ଶ୍ରୀରାମଚନ୍ଦ୍ର ଭଂଜ ମେଡ଼ିକାଲ ଜଲେଜରୁ ଏମ.ବି.ବି.ଏସ., ଆୟରଲାଣ୍ଡରୁ ଏମ.ଆର.ସି.ପି. ଡିଗ୍ରୀ ପାଇଥିଲେ । ଏମ.ବି.ବି.ଏସ୍. ପରୀକ୍ଷାରେ ପ୍ରାୟ ସବୁ ବିଷୟରେ ଅନର୍ସ ଲାଭ କରିଥିଲେ । ଏହା ଏକ ବିରଳ କୃତିତ୍ୱ ।

ଡାକ୍ତର ସାହୁ ଏମ୍.ବି.ବି.ଏସ୍. ପାସ କରିବା ପରେ ସେ ଓଡ଼ିଶା ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗରେ ଚାକିରି କରି ବିଭିନ୍ନ ଡାକ୍ତରଖାନାରେ କାର୍ଯ୍ୟ କରିଥିଲେ । ସ୍ୱଳ୍ପଭାଷୀ ଡାକ୍ତର ରଘୁନାଥ ସାହୁ ଅନେକ ସମୟରେ 'ଭୁଲ୍‌ବୁଝା'ର ଶିକାର ହୋଇଛନ୍ତି । ତାଙ୍କର ବଂଧୁ ଗୋଷ୍ଠୀ କ୍ଷୁଦ୍ର କିନ୍ତୁ ସେମାନଙ୍କ ସହିତ ସେ ଥିଲେ ବେଶ୍ ଉଷ୍ମ । ନିଜେ ହସନ୍ତି ନାହିଁ କିନ୍ତୁ ବେଶ୍ ମଉଜିଆ ଏବଂ ଅନେକ ସମୟରେ ବେଶ୍ ସାଟାୟାର୍ କଥା କହିପାରନ୍ତି । ତାଙ୍କର ବଂଧୁଗୋଷ୍ଠୀ କିନ୍ତୁ ବିଚିତ୍ର । ଉଦାହରଣ ସ୍ୱରୂପ ବାରବାଟୀ ଷ୍ଟାଡ଼ିୟମରେ କାମ କରୁଥିବା ଓଭରସିଅର ଶ୍ରୀ ଗଦାଧର ପାତ୍ର, ସେଇ ବଂଧୁଗୋଷ୍ଠୀ ଭିତରୁ ଜଣେ । ସେଇ ବାରବାଟୀ ଷ୍ଟାଡ଼ିୟମରେ କାମ କରୁଥିବା ୰ ବୈଷ୍ଣବ ଚରଣ ଦାସ ତାଙ୍କର ସହପାଠୀ ।

ସେମାନଙ୍କ ସହିତ ଡାକ୍ତର ସାହୁଙ୍କ ଘଣ୍ଟା ଘଣ୍ଟା ଧରି ରାସ୍ତାକଡ଼ରେ କଥାବାର୍ତ୍ତା କରୁଥିବା ମୁଁ ଦେଖିଛି । ଠିକ୍ ସେଇପରି ସ୍ୱାଧୀନତା ସଂଗ୍ରାମୀ ୰ ଶରତ ପଟ୍ଟନାୟକ ବା ଶ୍ରୀ ବନମାଳୀ ଦାସ ମଧ୍ୟ ସେଇ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

ଡାକ୍ତର ରଘୁନାଥ ସାହୁ ଥିଲେ ଜଣେ ପ୍ରବାଦ ପୁରୁଷ । ରୋଗକୁ ଚିହ୍ନଟ କରିବା ଏବଂ ରୋଗର ଉପଶମ ପାଇଁ ଶସ୍ତା ଔଷଧ ଦେବାରେ-ସେ ଥିଲେ କିମ୍ବଦନ୍ତୀ ପୁରୁଷ । ସେ ସଂପର୍କରେ ବହୁ ଗଳ୍ପ, କାହାଣୀ ରହିଛି । ତାଙ୍କର ବିରୋଧୀମାନେ ମଧ୍ୟ ତାଙ୍କର ଏଇ ଦକ୍ଷତାକୁ ସ୍ୱୀକାର କରନ୍ତି ।

ତାଙ୍କର ସ୍ମରଣଶକ୍ତି କେବଳ ସେତିକିରେ ସୀମିତ ନଥିଲା । ଫାଇଲ ଠାରୁ ଆରମ୍ଭକରି ରୋଗର ସଂଜ୍ଞା ପର୍ଯ୍ୟନ୍ତ ସବୁ ଯେପରି ତାଙ୍କର ସ୍ମୃତିଭୁକ୍ତ ହୋଇ ଯାଇଥିଲା । ଆବ୍‌ସେସିସ୍ ବା ଘାଆର ସଂଜ୍ଞା କହିବାରେ ସେ ଯେପରି ନିର୍ଭୁଲ ଠିକ୍ ସେହିପରି ନିର୍ଭୁଲ ପାଞ୍ଚବର୍ଷ ତଳର ଫାଇଲ କଥା ମନେରଖିବାରେ ।

ସେ ରୋଗୀର ଚିକିତ୍ସା କରନ୍ତି କିନ୍ତୁ ଡାକ୍ତରଖାନାରେ ଭର୍ତ୍ତି ହୋଇଥିବା ରୋଗୀଠାରୁ ଅନ୍ୟାନ୍ୟ ଅନେକ ଡାକ୍ତରଙ୍କ ପରି ଫିସ ନିଅନ୍ତି ନାହିଁ । ତାଙ୍କର ରୋଗଚିହ୍ନଟ କରିବାରେ ଦକ୍ଷତା ସଂପର୍କରେ ଯେପରି ପ୍ରବାଦ ଅଛି, ଠିକ୍ ସେଇପରି ଅଛି ଫିସ୍ ନେବା ବିଷୟରେ । ସେ ଯେ ସମସ୍ତଙ୍କ ଠାରୁ ଫିସ୍ ନିଅନ୍ତି, କାହାକୁ ଛାଡ଼ନ୍ତି ନାହିଁ, ପୁଅକୁ ବି ନୁହେଁ ଏଇପରି କାହାଣୀ ତାଙ୍କ ନାମରେ ରହିଛି । ମୁଁ ନିଜେ ତାଙ୍କୁ କେବେ ଦିନେହେଲେ ଫିସ୍ ଦେଇ ନାହିଁ କି ସେ ମାଗି ବି ନାହାନ୍ତି । ଅବଶ୍ୟ ମୁଁ ଖୁବ୍ କମ ଯାଇଛି ତାଙ୍କ ପାଖକୁ । କିନ୍ତୁ ତାଙ୍କର ଫିସ୍‌ର ପରିମାଣ ମଧ୍ୟ ଷ୍ଟାଣ୍ଡାର୍ଡ଼ ପରିମାଣ, ପ୍ରାୟ ସମସ୍ତଙ୍କୁ ସେ ଫିସ୍ ଦେବାକୁ ପଡ଼େ । ସେ ଫିସ୍ ନିଅନ୍ତି କିନ୍ତୁ ଔଷଧ ଏଭଳି ଦେବେ ଯେ ଯାହାର ମୂଲ୍ୟ ଖୁବ୍ କମ । ସେଇଯୋଗୁଁ ତାଙ୍କ ପାଖରେ ଭିଡ଼ ଜମେ ।

ସେ କ୍ଲାସ ନିଅନ୍ତି । ପଢ଼ଉ ପଢ଼ଉ କହିବେ ଯେ ଏଇପରି ଲକ୍ଷଣ ଦେଖାଗଲେ ରୋଗୀର ମୃତ୍ୟୁ ସୁନିଶ୍ଚିତ । ସୁତରାଂ ହଠାତ୍ ଯଦି ତୁମକୁ କେହି ରୋଗୀ ଦେଖିବାକୁ ଡାକିବାକୁ ଆସେ ଏବଂ ଏଇ ସବୁ ଲକ୍ଷଣ ରୋଗୀର ଦେଖାଦେଇଛି ବୋଲି କହେ, ତା'ହେଲେ ତମେ ଯିବା ପୂର୍ବରୁ ଫିସ୍‌ଟା ନେଇଯିବା ଭଲ କାରଣ ରୋଗୀ ମରିଗଲା ପରେ ତା'ର ପରିବାର ଠାରୁ ଫିସ୍ ଆଦାୟ କରିବା କଠିନ ! ଓଠରେ ଏକ ଛୋଟିଆ ସ୍ମିତ ରେଖା ଉକୁଟି ମିଳେଇଯାଏ, ସେଇ ବିଷୟକୁ ନେଇ ତାଙ୍କ ଉପରେ ଗଳ୍ପ ସୃଷ୍ଟିହୁଏ ।

ରଘୁବାବୁ ମେଡ଼ିକାଲ କଲେଜରେ ପ୍ରିନ୍ସିପାଲ ଥିଲେ ଏବଂ ପ୍ରଫେସର ଥିଲାବେଳେ ତାଙ୍କ ଓ୍ୱାର୍ଡ଼ ଯେପରି ସଫା ସୁତୁରା, ଡିଉଟି ଯେପରି ନିୟମିତ ପ୍ରିନ୍ସିପାଲ ଥିଲାବେଳେ

ଡାକ୍ତରଖାନା ବି ସେମିତି । ସରକାରୀ ହସ୍ତକ୍ଷେପ ସେ ଆଦୌ ସହ୍ୟ କରିପାରୁ ନଥିଲେ । ତାଙ୍କର ବିନା ନିର୍ଦ୍ଦେଶରେ ମିଲିଟାରୀ ପୁଲିସର ଗାଡ଼ି ଡାକ୍ତରଖାନା ଭିତରେ ପ୍ରବେଶ କରିଥିବା ହେତୁ ସେ ଗାଡ଼ି ଆଗରେ ଠିଆହୋଇ ସାମରିକ ଗାଡ଼ିକୁ ପଛେଇ ପଛେଇ ଗେଟ୍ ବାହାରକୁ ବାହରାକରି ଦେଇଥିଲେ, ଛାତ୍ର ଧର୍ମଘଟ ସମୟରେ ।

ଫିସ୍ ଛଡ଼ା ପଇସାଟିଏ ସେ କାହାକୁ ମାଗିନାହାନ୍ତି । ଯାହା ମନ୍ଦିର ବା ଧର୍ମ କାମ କରିବାର କଥା ବା କାହାକୁ ସାହାଯ୍ୟ କରିବାର କଥା ସେ ନିଜ ହାତରୁ କରୁଥିଲେ ଏବଂ ତା'ର କୌଣସି ପବ୍ଲିସିଟି ବି କରୁ ନଥିଲେ । ପବ୍ଲିସିଟିର ସୁଯୋଗ ହେତୁ ରୋଗ ଚିହ୍ନଟ କରିବାରେ ଡାକ୍ତର ବିଧାନଚନ୍ଦ୍ର ରାୟଙ୍କର ଖ୍ୟାତି ସର୍ବ ଭାରତୀୟ କିନ୍ତୁ ସେଇ ଗୋଟିଏ କଥା ଅଭାବରୁ ଡାକ୍ତର ରଘୁନାଥ ସାହୁ 'ବଣମଲ୍ଲୀ' ପରି ଝଡ଼ିପଡ଼ିଛନ୍ତି ।

ପଦ୍ମପୁର ଗାଁ'ର ବାଣ ପରି ସେ ଆକାଶକୁ ଉଠିଛନ୍ତି ସତ୍ୟ କିନ୍ତୁ ଖସି ପଡ଼ିଛନ୍ତି ମାତ୍ର କିଛି ସମୟ ପାଇଁ ଆଲୋକିତ କରି । ମେଡ଼ିକାଲ କଲେଜ ଏବଂ ଡାକ୍ତରଖାନାରେ ରୋଗୀମାନଙ୍କର ରେକର୍ଡ଼ ସାଇତି ରଖିବାପାଇଁ ତାଙ୍କର ଉଦ୍ୟମ ରହିପାରିଥିଲେ ଅନେକ କଥା ହୋଇପାରିଥାନ୍ତା ।

ଡାକ୍ତର ରଘୁନାଥ ସାହୁ ମଣିଷ ଥିଲେ । ମଣିଷ ଜନ୍ମୋଚିତ ଦୁର୍ବଳତା ତାଙ୍କର ଥିଲା କିନ୍ତୁ ଥିଲା ଖୁବ କମ । ପ୍ରତିଭା ଥିଲା ବିଶାଳ, ସିକ୍ସଥ୍ ସେନସ୍ (sixth sense) ଏବଂ ଇଣ୍ଟୁଇସନ୍ (intuition) ଥିଲା ଶାଣିତ ।

ଏଇଭଳି ଏକ କିମ୍ବଦନ୍ତୀ ପୁରୁଷ ଆମକୁ ଛାଡ଼ି ଚାଲିଯାଇଛନ୍ତି ଜୁନ୍ ୧୬ ତାରିଖ, ୧୯୯୯ ମସିହା ରାତିରେ ।



# ମନେରଖିବା ଭଳି ମଣିଷଟିଏ

୧୯୧୮ ମସିହା ଦୀପାବଳୀ । ପ୍ରଥମ ମହାଯୁଦ୍ଧର ବିଭୀଷିକାରୁ ରକ୍ତସ୍ନାତ ପୃଥିବୀ ନିସ୍ତାର ପାଇଛି । ତେଣୁ ସେ ବର୍ଷର ଦୀପାବଳୀର ଥିଲା ଏକ ସ୍ୱାତନ୍ତ୍ର୍ୟ । ବିହାର ପ୍ରଦେଶର ଭୂମିହରା ବ୍ରାହ୍ମଣ ବିନ୍ଦେଶ୍ୱରୀ ପ୍ରସାଦ ଶର୍ମାର କନ୍ୟାଟିଏ ଜନ୍ମ ହେଲା । ସେ ରାତିର ଅଂଧକାରକୁ ଆଲୋକିତ କରି । ଏଇ କନ୍ୟାଟି ବହୁ ଅନାଥ, ଦରିଦ୍ରମାନଙ୍କ ପାଇଁ ଦୀପାବଳୀ ଭଳି ଆଲୋକ ଦେଇଯିବ ଏକଥା ସେଦିନ କିଏ ଜାଣିଥିଲା ?

ପିଲାଟି ବଢ଼ିଥିଲା ସମ୍ଭ୍ରାନ୍ତ ଧନାଢ଼୍ୟ ପରିବାରରେ । ବାଲ୍ୟ ଜୀବନ କଟିଥିଲା କଲିକତା ସହରରେ । ପରେ ମାନ୍ଦ୍ରାଜର ପ୍ରେସିଡେନ୍ସି କଲେଜରୁ ସେ ବି.ଏ. ପାଶ କରିଥିଲେ । ମାତ୍ର ୧୬ ବର୍ଷ ବୟସରେ ଗୁଜରାଟର ବିଶିଷ୍ଟ ଶିଳ୍ପପତି ପି.ଡି. ଦୁତିଆଙ୍କ ସହିତ ତାଙ୍କର ବିବାହ ହୋଇଥିଲା ।

କିନ୍ତୁ ତାଙ୍କର ଜୀବନ ଗଢ଼ାହେବାକୁ ଥିଲା ଅନ୍ୟ ଉପାଦାନରେ । ମାତ୍ର ୨୨ ବର୍ଷ ବୟସରେ, ଯେତେବେଳେ ସାଧାରଣତଃ ଯୌବନର ଲହଡ଼ି ଭାଙ୍ଗୁଥିବା କଥା ଦିହରେ ଓ ମନରେ, ସେତିକିବେଳେ ତାଙ୍କର ସାକ୍ଷାତ ହୁଏ ଗାନ୍ଧିଜୀଙ୍କ ସାଂଗରେ ଏବଂ ନିଜର ସମସ୍ତ ସଂପତ୍ତି ସହିତ ଆପଣାକୁ ସ୍ୱାଧୀନତା ସଂଗ୍ରାମର ପୂଜାବେଦୀରେ ଅର୍ପଣ କରିବାକୁ ସେ ଇଚ୍ଛା ପ୍ରକାଶ କରନ୍ତି ଗାନ୍ଧିଜୀଙ୍କ ପାଖରେ ।

ରଚନାତ୍ମକ କାର୍ଯ୍ୟପ୍ରତି ତାଙ୍କର ଆଗ୍ରହ ଦେଖି ଗାନ୍ଧିଜୀ ତାଙ୍କୁ ଓଡ଼ିଶାରେ କାମ କରିବା ପାଇଁ ପଠାଇଥିଲେ ରମାଦେବୀଙ୍କ ପାଖକୁ । ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । ଜୀବନର ସବୁ ସମ୍ଭୋଗ, ବିଳାସକୁ ତ୍ୟାଗ କରି ସେ ପହଞ୍ଚିଲେ ଓଡ଼ିଶାର ଗ୍ରାମାଞ୍ଚଳରେ କାର୍ଯ୍ୟ କରିବା ପାଇଁ । ତାହା ଘଟିଥିଲା ଆଜିଠାରୁ ଛଅ ଦଶନ୍ଧି ତଳେ ।

ସେଇ ରମ୍ଭାଦେବୀ ଆଉ ନାହାନ୍ତି । ୨୩ ସେପ୍ଟେମ୍ବର, ୨୦୦୦ ମସିହା ରାତିରେ ସେଇ ଦୀପାଳିଟି ଲିଭିଯାଇଛି, ଆଲୁଅ ଦେଇ ଦେଇ । ତା'ପରେ ସେ ପାଲଟି ଯାଇଛନ୍ତି ଇତିହାସ, ଆଗାମୀ ପୀଢ଼ି ପାଇଁ । କାଳର ମହାବାତ୍ୟାରେ ଦୀପାଳିର ଶିଖା ଲିଭିଯାଇଛି ।

ତାଙ୍କ ସାଂଗରେ ଦେଖାହୁଏ ମଝିରେ ମଝିରେ । ଚୌଧୁରୀ ପରିବାରର ସେ ଥିଲେ ଅଂଶବିଶେଷ । ତାଙ୍କୁ ଏବଂ ମୋତେ କିଛିବର୍ଷ ତଳେ କଟକ ରୋଟାରୀ କ୍ଲବ ସମ୍ମାନିତ

ସଭ୍ୟ ଭାବରେ ଗ୍ରହଣ କରିଥିଲା । ମୁଁ ଗର୍ବିତ ହୋଇଥିଲି ରମ୍ଭା ଦେବୀଙ୍କ ନାମ ସହିତ ଯୋଡ଼ିହୋଇ । ସେଦିନ ସେ ପାହାଚ ଉଠିପାରୁ ନଥିଲେ । କହୁଥିଲେ ଆଉ ବୋଧହୁଏ ପାହାଚ ଉଠିବାର ଶକ୍ତି ଏ ଜୀବନରେ ମିଳିବ ନାହିଁ ।

ତା'ପରେ ମନେପଡୁଛି ତାଙ୍କୁ ଥରେ ଅଚାନକ ଭେଟିଥିଲି କଳିଙ୍ଗ ହସ୍‌ପିଟାଲରେ । ସେ ଚିକିତ୍ସା ପାଇଁ ଆସିଥିଲେ । ନିଜ ସଂପର୍କରେ ସେ ତ କିଛି କରନ୍ତି ନାହିଁ । କ'ଣ ହୋଇଚି ପଚାରିଲାରୁ ସେ କହିଲେ, ବୟସ ହୋଇଛି । ମୁହଁ ଉପରେ ତାଙ୍କର ସେଇ ପରିଚିତ ହସର ଝଲକ । ଆଉ ପଚାରିବାକୁ ସାହସ ହେଲାନାହିଁ ।

ଗାନ୍ଧିଜୀଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ ମାନ୍ଦ୍ରାଜରେ ଏବଂ ପରେ ରମାଦେବୀଙ୍କ ସହ କଲିକତାରେ ସାକ୍ଷାତ ହୁଏ । ଓଡ଼ିଶା ଆସି ସେ ପ୍ରଥମେ ବରୀର ରାମଚନ୍ଦ୍ରପୁର ଆଶ୍ରମରେ କାମ ଆରମ୍ଭ କରନ୍ତି । ପରେ ସେ ବଡ଼ଚଣା ଥାନା ଅନ୍ତର୍ଗତ ହରିଦାସପୁର ଠାରେ ଏକ ସେବା ସମିତି ପ୍ରତିଷ୍ଠା କରନ୍ତି । ଏକ ଡାକ୍ତରଖାନା ଏବଂ ଆବାସିକ ବିଦ୍ୟାଳୟ ଗଠନ କରନ୍ତି । ନିଜେ ଯେତିକି ପାରୁଛ କରିଯାଅ, ଅନ୍ୟମାନଙ୍କୁ ତାହା ଅନୁପ୍ରାଣିତ କରିବ— ଏଇଥିଲା ତାଙ୍କର ମଟୋ ବା ଲକ୍ଷ୍ୟ ।

ଏହାଛଡ଼ା ସର୍ବୋଦୟ ଆନ୍ଦୋଳନ, ସମାଜସେବା, ଶିଶୁ ବିକାଶ କ୍ଷେତ୍ରରେ ତାଙ୍କର ବିପୁଳ ଅବଦାନ ରହିଛି । ଜୀବନର ଅପରାହ୍ଣରେ ସ୍ୱୀକୃତି ମିଳିଛି, ସରକାରୀ ଓ ବେସରକାରୀ ଉଭୟ । ସେ କିନ୍ତୁ ରହିଯାଇଛନ୍ତି ସେଇପରି ସରଳ ଓ ନିରଳସ । ମୃତ୍ୟୁର ପଦଧ୍ୱନି ଶୁଣି ପାରିଛନ୍ତି ସେ । ନିଜ ଦ୍ୱାରା ଗଠିତ ଡାକ୍ତରଖାନା ଆଉ ସେ ଚଳାଇ ପାରିବେ ନାହିଁ । ତେଣୁ ନିବେଦନ କରିଛନ୍ତି ସରକାରଙ୍କୁ ସେଇଟିକୁ ନେଇଯିବା ପାଇଁ । ସବୁ ସ୍ୱୀକୃତି ସମ୍ମାନ ସତ୍ତ୍ୱେ ସରକାରୀ ନାଲିଫିତା ଭିତରେ ତାଙ୍କର ସେ ନିବେଦନ ବନ୍ଧା ପଡ଼ିଛି ଡୋରରେ । ସେ ବ୍ୟଥିତ ହୋଇଛନ୍ତି । ସମୟ ବଦଳି ଯାଉଛି । ତ୍ୟାଗର ମୂଲ୍ୟ ଭୋଗର ଯୂପକାଠରେ ବଳି ପଡ଼ିଛି ।

ମଧୁମେହ ରୋଗରେ ଆକ୍ରାନ୍ତ ହୋଇ ସେ ଅସୁସ୍ଥ ହୋଇ ପଡ଼ିଛନ୍ତି । ମୃତ୍ୟୁର ନିଶ୍ଚିତ ପଦଧ୍ୱନି, ତଥାପି କାମରୁ ବିରତ ହୋଇ ନାହାନ୍ତି । ଆପଣାର କର୍ମସ୍ଥଳୀ ହରିଦାଶପୁରରେ ବେଶୀ ସମୟ ନରହି କେ-୮, କଳ୍ପନା ଏରିଆ, ଭୁବନେଶ୍ୱରରେ ରହୁଥିଲେ । ଦେହ ଅଚଳ ହୋଇ ଆସୁଥିଲା ।

୧୯୪୦ ମସିହାରେ ଯେଉଁ ଜୀବନ ଉତ୍ସର୍ଗୀକୃତ ହୋଇଥିଲା ମଣିଷର ସେବାପାଇଁ ସେଇ ମହାନ ଜୀବନର ଦୀପ ନିର୍ବାପିତ ହୋଇଯାଇଛି । ସବୁଦିନେ ଭୋଗର ଯୁଗ ରହିବ ନାହିଁ, ମଣିଷ ପୁଣି ହେଜିବ ତ୍ୟାଗକୁ । ସେଦିନ ରମ୍ଭା ଦେବୀ ପୁଣି ସ୍ମୃତହେବେ ସବୁ ମଣିଷଙ୍କ ଦ୍ୱାରା ।



# ହେ ବନ୍ଧୁ ବିଦାୟ !

ରବୀନ୍ଦ୍ର ପ୍ରସାଦ ପାଢ଼ୀ ଆଉ ନାହାନ୍ତି । ଜୁଲାଇ ୨୦, ୧୯୯୯ରେ ଶ୍ରୀ ଅରବିନ୍ଦ ଆଶ୍ରମରେ ତାଙ୍କର ପରଲୋକ ହୋଇଯାଇଛି, ମସ୍ତିଷ୍କରେ ରକ୍ତସ୍ରାବ ଯୋଗୁଁ । ଏତେ ଧୀର, ଶାନ୍ତ ମଣିଷର ମସ୍ତିଷ୍କରେ ବି ରକ୍ତସ୍ରାବ ହୋଇପାରେ ?

ତାଙ୍କ ସହିତ ପରିଚିତି କଲିକତାରୁ । ସେ ଆମେରିକା ସମ୍ବାଦ ସରବରାହ ସଂସ୍ଥାରେ କାମ କରନ୍ତି ଏବଂ ତାଙ୍କର ଘନିଷ୍ଠ ବଂଧୁ ଶ୍ରୀ ବିଷ୍ଣୁ ଚରଣ ପଣ୍ଡା କାମ କରନ୍ତି ପ୍ରାକ୍ତନ ସୋଭିଏଟ ସଂବାଦ ସରବରାହ ସଂସ୍ଥାରେ । ଦୁହେଁ ନିବିଡ଼ ବନ୍ଧୁ । ଚାକିରୀ ହେଉଛି ପେଶା । କିନ୍ତୁ ଜୀବନର ସୁଦୂର ପ୍ରସାରୀ ଲକ୍ଷ୍ୟରେ ତାହା ମାତ୍ର କେତୋଟି ଖୁଣ୍ଟ । ସେ ଆପଣାକୁ ସଚେତନ କରିବ ଯେ ସବୁ କାର୍ଯ୍ୟପରି ଏଇ ଚାକିରିର ମଧ ଏକ ସମାପ୍ତି ଅଛି । ଏବଂ ତା' ପରେ ?

ଅତି-ମାନସ ଶକ୍ତିର ଅବତରଣ କରିବାକୁ ଅପେକ୍ଷା, ସେଥିପାଇଁ ପୂର୍ଣ୍ଣଯୋଗ ସାଧନା ହିଁ ଏକମାତ୍ର ଅଭିପ୍‌ସା ।

ଦୁଇ ବନ୍ଧୁଙ୍କ କ୍ଷେତ୍ରରେ ସେଇଆ ଘଟିଛି । ବଂଧୁ ବିଷ୍ଣୁଚରଣ ପଣ୍ଡା ସୋଭିଏଟ ଦେଶ ଛାଡ଼ି ଏବଂ ବଂଧୁ ରବୀନ୍ଦ୍ର ପ୍ରସାଦ ପାଢ଼ୀ ଆମେରିକା ସମ୍ବାଦ ସରବରାହ ସଂସ୍ଥା ଛାଡ଼ି ଯାଇଛନ୍ତି ଶ୍ରୀ ଅରବିନ୍ଦ ଆଶ୍ରମକୁ ସ୍ଥାୟୀ ଭାବରେ ରହିବା ପାଇଁ ଏବଂ ଅପେକ୍ଷା କରିବା ପାଇଁ ଅତି-ମାନସ ଶକ୍ତିର ଅବତରଣକୁ ।

ରବୀନ୍ଦ୍ର ପ୍ରସାଦ ପାଢ଼ୀ ଲେଖକ ଥିଲେ । ମୃତ୍ୟୁର ପୂର୍ବ ରାତ୍ରିରେ ସେ ଲେଖିଥିଲେ 'ଜାତୀୟତାବୋଧର ସ୍ୱଧର୍ମନ' ଶୀର୍ଷକ ଏକ ନିବନ୍ଧ ।

ତାହା ସମାପ୍ତ ନା ଅସମାପ୍ତ କିଏ କହିବ ? କାରଣ ନିବନ୍ଧଟି ପଢ଼ିଲେ ହୁଏତ ମନହେବ ଯେ ତାହା ଅସମାପ୍ତ, କିନ୍ତୁ ପୁଣି ମନେହେବ ଯେପରି ତାହା ସମାପ୍ତ । କାରଣ ତା'ପରେ କ'ଣ ତାହା ସେ ଲେଖିନାହାନ୍ତି ବା ଲେଖିବା ଆବଶ୍ୟକ ମନେହୋଇ ନାହିଁ । ସମାପ୍ତ-ଅସମାପ୍ତର ସୀମାଟପି ସେ ଚାଲିଯାଇଛନ୍ତି, ଲେଖା ସେମିତି ରହିଛି ।

ତାଙ୍କର ଜୀବନ ସଂକ୍ଷିପ୍ତ । ସେଇ ଜୀବନକାଳ ଭିତରେ ସେ ଯେଉଁ ସାଧନା, ସଂଯମ ଏବଂ ସାରଲ୍ୟର, ସତ୍ୟନିଷ୍ଠା ଓ ଆନ୍ତରିକତାର ଆଦର୍ଶ ଛାଡ଼ି ଯାଇଛନ୍ତି ତାହା ତାଙ୍କୁ ଅମଳିନ କରି ରଖିବ ତାଙ୍କର ଅଗଣିତ ବଂଧୁମାନଙ୍କ ପାଖରେ । ଯଶ, ଖ୍ୟାତି, ପ୍ରତିଷ୍ଠା ପ୍ରତି ସେ ଥିଲେ ଉଦାସୀନ । ପ୍ରତିଭାର ଅଧିକାରୀ କିନ୍ତୁ ପ୍ରତିଷ୍ଠା ପାଇଁ ବିମୁଖ । ଏଭଳି ମଣିଷଟିଏ ମିଳିବା କଷ୍ଟକର । ସବୁବେଳେ ହସ ହସ ମୁହଁ । ନମ୍ର, ବିନୟୀ, ଧୀର, ଶାନ୍ତ ଏବଂ ଭଦ୍ର ରବୀନ୍ଦ୍ରଙ୍କର ହୃଦୟ ଥିଲା ସଂବେଦନଶୀଳ ଓ କୋମଳ ।

ଅବସର ନେବା ପରେ ସେ ପରିବାର ସହ ପଣ୍ଡିଚେରୀରେ ରହୁଥିଲେ । ଶ୍ରୀ ଅରବିନ୍ଦ ଏବଂ ଶ୍ରୀମାଙ୍କ ଆଦର୍ଶ ଏବଂ ଦର୍ଶନରେ ସେ ଥିଲେ ସଂପୂର୍ଣ୍ଣ ନିବେଦିତ ।

ଶ୍ରୀ ଅରବିନ୍ଦ ଆଶ୍ରମର ତଥ୍ୟ ସଂଗ୍ରହ ଓ ଗବେଷଣା କେନ୍ଦ୍ରରେ ସେ କାର୍ଯ୍ୟ କରୁଥିଲେ ଏବଂ ଆଶ୍ରମରୁ ପ୍ରକାଶ ପାଉଥିବା ମେଗାଜିନ୍‌ମାନଙ୍କରେ ଲେଖୁଥିଲେ । ଇଂରାଜୀ କବିତାକୁ ଓଡ଼ିଆରେ ଅନୁବାଦ କରିବାରେ ତାଙ୍କର ଦକ୍ଷତା ଥିଲା ବିପୁଳ ।

ଏଇଭଳି ଏକ ନିବେଦିତ ମଣିଷ ଆଉ ନାହାନ୍ତି । ସେ ଆଉ ଫେରିବେ ନାହିଁ, କିନ୍ତୁ ଅମଳିନ ରହିବ ତାଙ୍କ ସ୍ମୃତି ଅସଂଖ୍ୟ ଜନମାନସରେ ଚିରକାଳ ।



# ସର୍ବେ ଚଳିବେ କାଳବଳେ

ସେ ଚାଲିଗଲେ । ଯିବେ ତ ସମସ୍ତେ, ଦିନେ ନା ଦିନେ । କିନ୍ତୁ ଏଇ ଯେଉଁ ମଣିଷଟି ଚାଲିଗଲା, ତାହା ପଛରେ ରହିଗଲା କିଛି ଶୂନ୍ୟତା, କିଛି ହାହାକାର । ତୁଳସୀପୁର ବିଜୁ ପଟ୍ଟନାୟକ ରାସ୍ତା ଉପରେ ତାଙ୍କର ଘର । କର୍ମକ୍ଷେତ୍ରରୁ ଅବସର ନେଲାପରେ ସେ କଟକରେ ହିଁ ରହିଯାଇଥିଲେ । ଜନ୍ମ କିନ୍ତୁ ହୋଇଥିଲା ତାଙ୍କର ପୈତୃକ ବାସଭବନ ପୁରୀ ସହରର ପଥୁରିଆ ସାହିରେ, ୧୯୨୫ ମସିହା ଜାନୁଆରୀ ୨୫ ତାରିଖରେ ।

ରମେଶ ଚନ୍ଦ୍ର ମହାନ୍ତି ପୁରୀ ସହରର ଲୋକ । ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ ପାଶ କରି ସେ ଆସନ୍ତି ରେଭେନ୍ସା କଲେଜକୁ । ଉଦ୍ଭିଦ ବିଜ୍ଞାନ ପ୍ରତି ତାଙ୍କର ଦରଦ ସେତିକିବେଳୁ ଜଣାପଡ଼ିଥିଲା । ସେ ଉଦ୍‌ଭିଦ ବିଜ୍ଞାନରେ ଅନର୍ସ ସହିତ ବି.ଏସ୍‌ସି. ପାଶ କରନ୍ତି ୧୯୪୫ ମସିହାରେ । ଉତ୍କଳ ବିଶ୍ୱବିଦ୍ୟାଳୟର ସେ ହେଉଛନ୍ତି ପ୍ରଥମ ବ୍ୟାଚ୍‌ର ଗ୍ରାଜୁଏଟ୍ । ଉଦ୍‌ଭିଦ ବିଜ୍ଞାନ ପଢ଼ିବା ସହିତ ଉଦ୍ଭିଦ, ବଣ, ଅରଣ୍ୟ, ବୃକ୍ଷଲତା ସହିତ ତାଙ୍କର ମମତା ଜନ୍ମି ଯାଇଥିଲା । ଅନ୍ୟ ଚାକିରି ଛାଡ଼ି ସେ ବନ୍ୟ ବିଭାଗରେ ଚାକିରି କରିବାକୁ ସ୍ଥିରକଲେ ଏବଂ ୧୯୪୫ ମସିହାରେ ବନ୍ୟ ବିଭାଗରେ ଯୋଗଦେଲେ ।

ଆଉ ପଛକୁ ଫେରି ଅନେଇ ନାହାନ୍ତି । ଅନେଇବାର ଆବଶ୍ୟକତା ପଡ଼ିନାହିଁ । ଅରଣ୍ୟ ତାଙ୍କୁ ଆଉରେଇ ଯାଇଛି । ଓଡ଼ିଶାର ବିଭିନ୍ନ ଅଂଚଳରେ ସେ କାମ କରିଛନ୍ତି । ନିଷ୍ଠା, ସାଧୁତା ଏବଂ କର୍ମଦକ୍ଷତା ତାଙ୍କୁ ନେଇଯାଇଛି ସାଫଲ୍ୟର ଶିଖରକୁ । ତାଙ୍କୁ ଦେଖିଲେ ମନେପଡ଼େ ଚିଲ୍ଲୀର ବିଶିଷ୍ଟ କବି ନୋବେଲ ପୁରସ୍କାର ବିଜେତା ପାବଲୋ ନେରୁଦାଙ୍କର କଥା । ଯିଏ ଚିଲ୍ଲୀର ଅରଣ୍ୟକୁ ଭଲପାଇ ନାହିଁ, ସେ ଚିଲ୍ଲୀକୁ ଜାଣିନାହିଁ, ଭଲପାଇବା ତ ଦୂରର କଥା । ରମେଶ ଚନ୍ଦ୍ର ମହାନ୍ତି କବି ନଥିଲେ କିନ୍ତୁ ଓଡ଼ିଶାର ଅରଣ୍ୟ ବୃକ୍ଷଲତା ତାଙ୍କର ରକ୍ତରେ ବସାବାନ୍ଧି ଯାଇଥିଲା ।

ଯାହା କରନ୍ତି ପ୍ରାଣଦେଇ କରନ୍ତି । ଓଡ଼ିଶାର ଉପକୂଳରେ ଅରଣ୍ୟର ଆବଶ୍ୟକତା ପ୍ରଭୂତ । ରମେଶବାବୁ ସେ ଦାୟିତ୍ୱ ଗ୍ରହଣ କଲେ ଏବଂ ଆଜି ଯେ ଓଡ଼ିଶାର ଉପକୂଳରେ ବିରାଟ ଝାଉଁବଣ ଗଢ଼ି ଉଠିଛି ତାହା ଆଲେଖ୍ୟ ବହନକରେ ରମେଶ ଚନ୍ଦ୍ର ମହାନ୍ତିଙ୍କର ।

ରମେଶ ଚନ୍ଦ୍ର ମହାନ୍ତି କିଛିକାଳ ଭାରତ ସରକାରଙ୍କ ଅଧୀନକୁ ଯାଆନ୍ତି । ଲାଖ ବିଷୟରେ ତାଙ୍କର ଉନ୍ନତ ଗବେଷଣା ତାଙ୍କୁ ଲାଖ ଗବେଷଣା କେନ୍ଦ୍ରର ଅଧ୍ୟକ୍ଷ ପଦରେ ଅଭିଷିକ୍ତ କରେ । କିଛିକାଳ ପାଇଁ ମଧ ସେ ଯାଆନ୍ତି ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବାକୁ ମନୋନୀତ ହୋଇ ଏବଂ ସେଠାରେ ମଧ ଆପଣାର କୃତିତ୍ୱର ଆଲେଁଖ୍ୟ ରଖିଯାଆନ୍ତି । ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଇମ୍ପରିଆଲ କଲେଜରେ ଗବେଷଣା ପରେ ତାଙ୍କର ନେତୃତ୍ୱରେ ଭାରତ ସରକାରଙ୍କର ଏକ ପ୍ରତିନିଧି ଦଳ ଯାଏ ସିଂହଳକୁ କେନ୍ଦୁପତ୍ର ରପ୍ତାନି ସଂପର୍କରେ ଆଲୋଚନା ପାଇଁ । କେନ୍ଦୁପତ୍ର ରପ୍ତାନିର ସିଂହଦ୍ୱାର ଉନ୍ମୁକ୍ତ ହୋଇଯାଏ, ଯାହା ଆଜି ଓଡ଼ିଶା ପାଇଁ ବିଶାଳ ଆୟ ସୃଷ୍ଟିକରେ ।

ରମେଶ ଚନ୍ଦ୍ର ମହାନ୍ତି ବନ୍ଧୁବତ୍ସଳ । ତାଙ୍କର କେହି ଶତ୍ରୁ ଥିଲାପରି ମନେହୁଏନା । କିନ୍ତୁ ସେ ଥିଲେ କର୍ତ୍ତବ୍ୟନିଷ୍ଠ । କର୍ତ୍ତବ୍ୟରେ ହେଳା ତାଙ୍କ ପାଇଁ ଥିଲା ଅସହ୍ୟ । ଅରଣ୍ୟର ବୃକ୍ଷଲତା, ଜନ୍ତୁ ସବୁ ଯେପରି ତାଙ୍କର ଆଉ ଏକ ପରିବାର ଏବଂ ବିଶାଳ ଅରଣ୍ୟ, ନଭଶ୍ଚୁମ୍ବୀ ଗିରି ଯେପରି ତାଙ୍କର ଅନ୍ୟତମ ପ୍ରେୟସୀ ।

ଏଇଭଳି ଜଣେ ମଣିଷ ଆଉ ନାହାନ୍ତି । ମୋ ବାପାଙ୍କର ସେ ଥିଲେ ସହକର୍ମୀ । ତାଙ୍କ ସହିତ ସଂପର୍କ ଥିଲା ପାରିବାରିକ । ଖବର ପାଇଲା ବେଳକୁ ତାଙ୍କର ମରଦେହ ପୋଡ଼ି ପାଉଁଶ ହୋଇଯାଇଛି । ସେ ଆଉ ଫେରିବେ ନାହିଁ ।



# ଛନ୍ଦ ସାହିତ୍ୟର ସମ୍ରାଟ ରାଧାମୋହନ

ଓଡ଼ିଆ ସାହିତ୍ୟର ଛନ୍ଦସମ୍ରାଟ ରାଧାମୋହନ ଗଡ଼ନାୟକ ଆଉ ନାହାନ୍ତି । ଅନେକ ଦିନ ହେଲା ସେ ଶଯ୍ୟାଶାୟୀ ଥିଲେ ଏବଂ ଜୀବନଦୀପର ତୈଳ ଧୀରେ ଧୀରେ ସରି ଆସୁଥିଲା । ପରିଶେଷରେ ସେଇଦିନ ଆସିଗଲା । କବି ରାଧାମୋହନ ଗଡ଼ନାୟକ ଆଖିବୁଜିଦେଲେ ଫେବୃଆରୀ ୨୧, ୨୦୦୦ ମସିହାରେ ଆପଣାର ଅନୁଗୋଳ ଟାଉନ ଘର 'ବାଣୀ ବିଞ୍ଜନ'ରେ । ସେ ୧୯୧୧ ମସିହା ଅଗଷ୍ଟ ୨୫ ତାରିଖରେ ଜନ୍ମ ହୋଇଥିଲେ ଅନୁଗୋଳର କରଣ୍ଡାପାଳ ଗାଁରେ । ଲିଙ୍ଗରା ନଈ କୂଳରେ । ଲିଙ୍ଗରା ନଈ ମଧ ତାଙ୍କର କାବ୍ୟିକ ସ୍ଫୁରଣର ଅନ୍ୟତମ ଆଧାର । କିନ୍ତୁ ଲିଙ୍ଗରା ନଈ ଖାଇ ଗଲାଣି ସେ ଗାଁକୁ । ସେମାନେ ଉଠିଆସିଲେଣି ଅନ୍ୟତ୍ର ।

''କବି ହେବାପାଇଁ ବାସନା ମୋର
ପ୍ରବଳ ଭାରିରେ ପ୍ରବଳ ଭାରି
ଉଡ଼ି ବୁଲୁଥାଏ ଏ ମୋର ମନ ଦରିଆପାରିରେ
ଦରିଆପାରି''

ରାଧାମୋହନ ଗଡ଼ନାୟକଙ୍କର ଶିକ୍ଷାଗତ ଯୋଗ୍ୟତା ହୋଇଛି ବହୁ ପରେ, କାବ୍ୟିକ ପ୍ରତିଭାର ସ୍ଫୁରଣ ହୋଇଛି ପିଲାଦିନରୁ । ତାଙ୍କର ବଂଧୁ ମାୟାଧର ମାନସିଂହଙ୍କ ପରି ।

ସବୁପ୍ରକାର ଗଣିତରେ ରାଧାମୋହନ ବାବୁ ଦୁର୍ବଳ ଥିଲେ, ପାଠ ଗଣିତରେ ଯେପରି ଜୀବନ ଗଣିତରେ ସେଇପରି । ପାଠ ଗଣିତରେ ଦୁର୍ବଳ ଥିବାରୁ ତାଙ୍କ ପକ୍ଷରେ ମାଟ୍ରିକ ପାଶ କରିବା ସମ୍ଭବପର ହୋଇ ନଥିଲା ୧୯୪୬-୪୭ ମସିହା ପର୍ଯ୍ୟନ୍ତ । ସେତେବେଳେ 'କପି' କରିବା 'ମୌଳିକ ଅଧିକାରଭୁକ୍ତ' ହୋଇ ନଥିଲା, କିମ୍ବା ବଡ଼ଲୋକର ପୁଅ ଝିଅମାନଙ୍କ ପାଇଁ ପାଶ କରିବାର ବା 'ପ୍ରଥମ' ହେବାର କାଇଦା ଜନ୍ମ ହୋଇ ନଥିଲା । ତେଣୁ ସେ ରହିଗଲେ 'ଅଣ୍ଡର-ମାଟ୍ରିକ' ହୋଇ ୧୯୪୭ ମସିହା

ପର୍ଯ୍ୟନ୍ତ । କିନ୍ତୁ ତାଙ୍କ ବହି କାବ୍ୟ ନାୟିକା, ମେଘଦୂତ ତେଣେ ପଢ଼ା ହେଲାଣି ବି.ଏ., ଏମ୍.ଏ. କ୍ଲାସରେ ।

ଜୀବନ ଗଣିତରେ ମଧ୍ୟ ରାଧାମୋହନ ସେଇପରି ସବୁବେଳେ ଭୁଲ୍ କରି ଆସିଛନ୍ତି । କ'ଣ କରିବେ, କେତେବେଳେ କରିବେ, କାହିଁକି କରିବେ ତା'ର ହିସାବ ସେ କରି ନାହାନ୍ତି ଏବଂ ଯଦି କରିଛନ୍ତି ସବୁ ଭୁଲ୍ କରିଛନ୍ତି । ଏବଂ ସେଇଥିପାଇଁ ଅନେକ ସମୟରେ ସେ ଶରବ୍ୟ ହୋଇଛନ୍ତି, ନିନ୍ଦିତ ହୋଇଛନ୍ତି । ତଥାପି ଗଣିତ ଠିକ୍ ହୋଇନାହିଁ । ପ୍ୟାଣ୍ଟ କେଉଁଠି ରହିଲାଣି ତ କୋଟ ଆଉ କେଉଁଠି, ପାଣ୍ଡୁଲିପି ଆଉ କେଉଁଠି । ଟିପିକାଲ ବୋହେମିଆନ । ଓଡ଼ିଆ ସାହିତ୍ୟର ଅଲିଭର ଗୋଲ୍ଡସ୍ମିଥ୍ ବୋଲି ଆମ ସମୟରେ ଲୋକେ ତାଙ୍କୁ କହୁଥିଲେ ।

କୌଣସି ମତେ ୧୯୪୭ ମସିହାରେ ମାଟ୍ରିକ ପାଶ କରିଗଲେ ସେ । ନିଜ ଉଦ୍ୟମରେ କି କାହାରି ଉଦ୍ୟମରେ ହେଉ । ସେତେବେଳକୁ ତାଙ୍କର ପ୍ରତିଷ୍ଠା କାବ୍ୟିକ ଜଗତରେ ଏତେ ବେଶି ଯେ ସେ ପ୍ରଶ୍ନ କେହି ଉଠାଇ ନାହାନ୍ତି । ମାଟ୍ରିକ ପାଶ କରିବାଟା ତାଙ୍କ ପାଇଁ କ'ଣ କି? ବହି ପରା ବି.ଏ. କ୍ଲାସରେ କୋର୍ସ !

ଗଡ଼ନାୟକ ଆମର ପାରିବାରିକ ବଂଧୁ । ଆମ ଗାଁଠାରୁ କିଛି ଦୂରରେ ତାଙ୍କର ଗାଁ । ଗଡ଼ନାୟକ କୌଣସି ଗଡ଼ ଜିଣିପାରି ନାହାନ୍ତି ଜୀବନରେ, କିନ୍ତୁ ତାଙ୍କର କବିତା ବହୁ ରାଧାଙ୍କର ମନ ମୋହି ପାରିଛି । ସେ ଖେଦ କରିଛନ୍ତି : ''ମୁଁ କି ହେବି ଖାଲି ରାଧାମୋହନ, ହେବି ନାହିଁ ଗଡ଼ନାୟକ'' । ଗଡ଼ ଜିଣିବା ପାଇଁ ଯେଉଁ ଧୈର୍ଯ୍ୟ, ଗଣନା, ଶକ୍ତି ଦରକାର ତାହା ତାଙ୍କର ନଥିଲା । ଯେପରି ତାଙ୍କର କଲମ ତାଙ୍କର କବିତାଗୁଡ଼ିକୁ ପୋଷା ମନାଇଛି ଛନ୍ଦରେ, କିନ୍ତୁ ଏହା ଫଳରେ ଶକ୍ତି ହରାଇବସିଛି ଅନେକ କ୍ଷେତ୍ରରେ, ଠିକ୍ ସେଇପରି ତାଙ୍କର ଜୀବନ ରାଧାକୁ ମୋହିତ କରିଛି ହୁଏତ କିନ୍ତୁ ଗଡ଼ ଜିଣିପାରି ନାହିଁ ।

ପାଠକୁ ଅଧାରେ ରଖି ରାଧାମୋହନ, ପବିତ୍ର ମୋହନ ପ୍ରଧାନ, ଗିରିଜା ଭୂଷଣ ଦତ୍ତ, ଡାକ୍ତର କୃପାସିନ୍ଧୁ ଭୁକ୍ତାଙ୍କ ସହିତ 'ପ୍ରଜାମଣ୍ଡଳ' ଆନ୍ଦୋଳନରେ ଯୋଗଦେଲେ । ସେ କାହାଣୀ ଆଜିର ପିଲାଏ ବିଶ୍ୱାସ କରିବେ ନାହିଁ । ରାଜ ଅତ୍ୟାଚାରରେ ଅତିଷ୍ଠ ହଜାର ହଜାର ତାଳଚେରବାସୀ ନିଜର ଭିଟାମାଟି ଛାଡ଼ି ପାଖ ମୋଗଲବନ୍ଦୀ ଅନୁଗୋଳରେ ଆଶ୍ରୟ ନିଅନ୍ତି । ଠିକ୍ ସେଇପରି ନହେଲେ ବି ଢେଙ୍କାନାଳରେ ସେଇପରି ଅବସ୍ଥା । ସେମାନଙ୍କୁ ସମ୍ଭାଳିବା, ଥଇଥାନ କରିବା ଏବଂ ସେ ପ୍ରଜାମଣ୍ଡଳର ଆନ୍ଦୋଳନକୁ ପରିଚାଳନା କରିବାର ଦାୟିତ୍ୱ ନେବା ଭାରି କଠିନ କାର୍ଯ୍ୟ । ଏଇ କାର୍ଯ୍ୟ ପାଇଁ ମାଳତୀ ଦେବୀ, ନବକୃଷ୍ଣ ଚୌଧୁରୀ କଟକ ଛାଡ଼ି ଅନୁଗୋଳରେ ସ୍ଥାୟୀ ଭାବରେ ବସତି କଲେ । ରାଧାମୋହନ ଗଡ଼ନାୟକ ସେଇ କାର୍ଯ୍ୟରେ ସହାୟକ ହେଲେ ଏବଂ ସେଇଦିନରୁ ଖଦଡ଼

ପିନ୍ଧିବା ଆରମ୍ଭ କଲେ । ମୋର ଟିକିଏ ଟିକିଏ ମନେପଡୁଚି । ସେ ଗାନ୍ଧିଜୀଙ୍କ ଅନୁଗୋଳ ଦେଇ ପଦଯାତ୍ରାର ଅନ୍ୟତମ ଆୟୋଜକ ଥିଲେ । ସେତେବେଳେ ଅନୁଗୋଳରେ କମିଶନର ପ୍ରବଳ ପ୍ରତାପୀ ଦୁର୍ଗା ଦାସ । ହୁକୁମ ଦେଇଥାନ୍ତି ଯେ, ଗାନ୍ଧୀକୁ ଯିଏ ଅନୁଗୋଳରେ ରହିବାକୁ ଘର ଦବ, ତା' ଘର ଭାଙ୍ଗିଦିଆଯିବ । ଅନୁଗୋଳ ସୀମାଟପି ଏକ ଗାଁର ଆମ୍ବତୋଟାରେ ଗାନ୍ଧିଜୀଙ୍କ ରହିବାର ଆୟୋଜନ ହେଲା । ତାଙ୍କର ପୁରୁଣା ସହକର୍ମୀ ଏବଂ ବଂଧୁମାନଙ୍କ ଭିତରେ ସାମ୍ବାଦିକ ଦୀନବଂଧୁ ତ୍ରିପାଠୀ ବର୍ତ୍ତମାନ ଜୀବିତ । (ବହି ଛପା ହେଲାବେଳକୁ ସେ ବି ଚାଲିଯାଇଛନ୍ତି) ।

ରାଧାମୋହନ ବାବୁ ଏହା ଭିତରେ ବିବାହ କରିଥିଲେ ଏବଂ ସେ ବିବାହ ତାଙ୍କର ନିଜସ୍ୱ ନିଷ୍ପତ୍ତି । କବିବଧୂର ଗୌରବ କବିତା ଲେଖନ୍ତି ।

''ଦେଖୁଚି ପ୍ରିୟ ତୁମରି କବିତାରେ,
ନାଗରିକାର ବସନ ଯାଏ ଉଡ଼ି
ଅଦୂରେ ତୁମେ ହେଉଛ ଚଞ୍ଚଳ,
ଧରିବା ପାଇଁ ତାହାର ଅଂଚଳ,
ତହିଁ ତ ମୋର ଈର୍ଷା ନାହିଁ ଲବ
ତୁମେ ଯେ କବି ସେଇ ମୋ ଗଉରବ''

କବିବଧୂଙ୍କର ଜୀବନରେ ଏହା ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରମାଣିତ ହୋଇଛି । କବିବଧୂ ଅମାନିଆ ରାଧା ମୋହନଙ୍କର ପଥ କଦାପି ଅବରୋଧ କରି ନାହାନ୍ତି । ସେ କବି ଏବଂ ସେଇପରି ଭାବରେ ହିଁ ସେ ତାଙ୍କୁ ଗ୍ରହଣ କରି ନେଇଛନ୍ତି ।

ରାଧାମୋହନ ଗଡ଼ନାୟକ ମାଟ୍ରିକ ପାଶ କଲାବେଳକୁ କାବ୍ୟିକ ଜଗତରେ ବେଶ୍ ପ୍ରତିଷ୍ଠିତ ହୋଇଯାଇଥିଲେ । ଠିକ୍ ସେଇପରି ଜାତୀୟ ଆନ୍ଦୋଳନର ଅନେକ ନେତାଙ୍କ ସହିତ ତାଙ୍କର ପରିଚିତି, ସଖ୍ୟ ପ୍ରତିଷ୍ଠା ହୋଇପାରିଥିଲା । ବିଶେଷତଃ ପବିତ୍ର ମୋହନ ପ୍ରଧାନଙ୍କ ସହିତ । ସେଇଥିପାଇଁ ପବିତ୍ରବାବୁ ରାଧାମୋହନ ଗଡ଼ନାୟକଙ୍କୁ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ସଂଗ୍ରହ କରିବା ସକାଶେ ନିଯୁକ୍ତି ଦେଇଥିଲେ । କିନ୍ତୁ ବେସୁରା ବାଜିବାକୁ ଆରମ୍ଭ କରିଥିବା ରାଧାମୋହନ କ'ଣ କୌଣସି କାର୍ଯ୍ୟ ଏକାଦିକ୍ରମେ କରିପାରିବେ ? ସେ କାମ ଅଧାରେ ରହିଗଲା ।

ରାଧାମୋହନବାବୁ ଆସିଲେ କଟକକୁ ପାଠ ପଢ଼ିବା ପାଇଁ । କଟକ ହିଁ ହୋଇଗଲା ତାଙ୍କର ବହୁକାଳ ଧରି କର୍ମପୀଠ । ସେ ଆସିଲେ ଖ୍ରୀଷ୍ଟ କଲେଜରେ ପାଠପଢ଼ିବା ପାଇଁ । ଅଧିକାଂଶ ଶିକ୍ଷକ ଥିଲେ ତାଙ୍କର ବଂଧୁ । ସୁତରାଂ ଉପସ୍ଥାନର ପ୍ରତିବଂଧକ ନଥିଲା ତାଙ୍କ ପାଇଁ । ତାଙ୍କୁ କ୍ଲାସରେ ବସିବା ଦେଖିଲେ ଅନେକ ଅପ୍ରତିଭ ହୋଇଯାଆନ୍ତି । ତେଣୁ କ୍ଲାସରେ ବସିବା ଦରକାର ପଡ଼େ ନାହିଁ । ସେ ରହୁଥିଲେ ବାଙ୍କାବଜାର ନବଭାରତ ପ୍ରେସର

ଉପର ମହଲାର ଏକ କୋଠରୀରେ । ପଣ୍ଡିତ ନୀଳକଂଠଙ୍କ ସହିତ ତାଙ୍କର ସୌହାର୍ଦ୍ଦ୍ୟ ବହୁତ । ସେଇଠି ମୁଁ ଶୁଣିଚି, ଦିନେ ପଣ୍ଡିତଜୀ କହିବା ରାଧାମୋହନ ଗଡ଼ନାୟକଙ୍କୁ । ସେଇଟାକୁ (ଅର୍ଥାତ୍ ଜୟଦେବଙ୍କୁ) ବଂଗାଳୀଏ ମାଗୁଛନ୍ତି, ଦେଇଦିଅ ତାଙ୍କୁ । ସେଉଟା ସଖା, କୂଟନୀତିଜ୍ଞ ଶ୍ରୀକୃଷ୍ଣଙ୍କୁ ନାରୀର ପଦକିଙ୍କର କରିଦେଇଛି । ସେଇଟାକୁ ବଂଗାଳୀଙ୍କୁ ଦେଇଦିଅ ।

ମୋର ମନେପଡୁଚି । ମାୟାଧର ମାନସିଂହଙ୍କର 'ପୂଜାରିଣୀ' ବହି ପ୍ରକାଶିତ ହୋଇଥାଏ । ପୂଜାରିଣୀ ଗଳ୍ପଟି ସତ୍ୟବାଦୀରେ ପ୍ରଚଳିତ ଲୋକକଥା ମାତ୍ର । ଏହାର କୌଣସି ଐତିହାସିକ ସତ୍ୟତା ନାହିଁ । ଏଇ ରୋମାଣ୍ଟିକ ଗଳ୍ପଟିକୁ କଟକର ସଦାଶିବ ମିଶ୍ର ଆପଣାର ସହପାଠୀ ବଂଧୁ ମାୟାଧରଙ୍କୁ କହିଥିଲେ ଏବଂ ମାୟାଧର ମାନସିଂହଙ୍କର ରୋମାଣ୍ଟିକ କଲମରେ ରୂପ ପାଇଲା 'ପୂଜାରିଣୀ' । ଦିନେ କ୍ଷୁବ୍ଧ ନୀଳକଂଠ ରାଧାମୋହନ ଗଡ଼ନାୟକ ଏବଂ ସେଠାରେ ଥିବା ଅନ୍ୟମାନଙ୍କୁ କହିଲେ, ଦେଖ, ସଦାଶିବ ଏଇ ନିଛକ ମନଗଢ଼ା ଗଳ୍ପକୁ କହିଦେଲା ମାୟାଧରକୁ ଆଉ ମାୟାଧର ଲେଖିଦେଲା ନାଟିକା 'ପୂଜାରିଣୀ' । ସେ ପଣ୍ଡା ବ୍ରାହ୍ମଣ ଝିଅର ପାପଗର୍ଭରୁ ପେଟ ଫୁଲିଲା ଆଉ ତାକୁ ସେ ଚଳାଇଦେଲା ଶ୍ରୀକୃଷ୍ଣଙ୍କ ନାଁରେ । ଶ୍ରୀକୃଷ୍ଣଙ୍କର ଯେପରି ଆଉ କିଛି କାମ ନଥିଲା, ତା'ପରେ ଗାଳି ସଦାଶିବ ମିଶ୍ର ଓ ମାୟାଧର ମାନସିଂହଙ୍କୁ ।

ପଣ୍ଡିତଜୀ ଦୁର୍ବାସା । ତାଙ୍କୁ କିଏ ଭରସି କରି କ'ଣ କହିବ ?

ରାଧାମୋହନ ଗଡ଼ନାୟକ ଭବଘୁରା ମଣିଷ । କେତେବେଳେ ଅଶୋକ ଭବନ, କେତେବେଳେ ଅଥର୍ସ ଏକାଡେମୀ ମେସ୍, କେତେବେଳେ ଅନୁଗୋଳ ମେସ୍‌ରେ ଘୁରି ବୁଲନ୍ତି । କେଉଁଠି ଖାଆନ୍ତି, କେଉଁଠି ଶୁଅନ୍ତି ତା'ର କୌଣସି ବାଗ ବାଇଶ ନଥାଏ । କିନ୍ତୁ ଓଡ଼ିଶାର ଯେତେ ପ୍ରତିଷ୍ଠିତ ବ୍ୟକ୍ତି, ଯେତେ ସାହିତ୍ୟିକ ସମସ୍ତଙ୍କ ସହିତ ତାଙ୍କର ସଖ୍ୟ, ସୌହାର୍ଦ୍ଦ୍ୟ ।

ପ୍ରାୟ ସେତିକିବେଳେ ବୋଲି ମୋର ମନେପଡୁଛି । ରାଧାମୋହନ ଗଡ଼ନାୟକଙ୍କର 'ବିପ୍ଳବୀ ରାଧାନାଥ' ନାମକ କବିତା ବହି ପ୍ରକାଶିତ ହୋଇଥାଏ । ସେତେବେଳେ ୰ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ପ୍ରଭୃତି ରାଧାନାଥ ରାୟଙ୍କୁ ଓଡ଼ିଆ ଜୀବନକୁ କଳଙ୍କିତ କରିଛନ୍ତି ବୋଲି ଅଭିଯୋଗ କରୁଥାନ୍ତି ଖୁବ୍ ଜୋରରେ । 'ପାର୍ବତୀ', 'ନନ୍ଦିକେଶ୍ୱରୀ', 'ଉଷା' ପ୍ରଭୃତିରେ ସେ ଓଡ଼ିଶାର ଜାତୀୟ ଜୀବନକୁ କଳଙ୍କିତ କରିଛନ୍ତି ବୋଲି ସେମାନଙ୍କର ଅଭିଯୋଗ । ଅନ୍ୟ ଦିଗରେ ଓଡ଼ିଶାର ତରୁଣକୁଳ ଜାତୀୟ ଜୀବନର ଏହି ପ୍ରକାର ସଜ୍ଞାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନଙ୍କ ମତରେ ରାଧାନାଥ ରାୟ ବର୍ଣ୍ଣନା କରିଥିବା ଚରିତ୍ର ହେଉଛି ରାଜପରିବାରର ଚରିତ୍ର, ଏହା ଜାତୀୟ ଚରିତ୍ର ନୁହେଁ । ପ୍ରବଳ ରାଜତନ୍ତ୍ର ବିରୋଧୀ ସଂଗ୍ରାମର ସମୟ । ରାଧାମୋହନ ଗଡ଼ନାୟକ ଗଡ଼ଜାତ ରାଜ୍ୟ ବୁଲି ଦେଖିଲେ 'ରାଜ ପରିବାରର କାହାଣୀ' ଏବଂ ଲେଖିଲେ–

''ବିପ୍ଳବୀ ରାଧାନାଥ
ଘେନ ଏ ମୁଗ୍ଧ ରାଧାମୋହନର ଶ୍ରଦ୍ଧାର ପ୍ରଣିପାତ''

ରାଧାମୋହନ ଗଡ଼ନାୟକ ସିଗାରେଟ ଖାଉଥିଲେ ପ୍ରଚୁର । ଚେନ୍ ସ୍ମୋକର । ଦିନେ ଆମେ ଚାଲିଚାଲି ଆସୁଛୁ । ବାଟରେ ଦେଖାହେଲା ବାବାଜୀ ରାମକୃଷ୍ଣ ଦାସଙ୍କ ସହିତ । ସେ ଘରଦ୍ୱାର ଛାଡ଼ି ଯାଉଥାନ୍ତି ପଣ୍ଡିଚେରୀ ଆଶ୍ରମକୁ । ଆମେ ତାଙ୍କୁ ପ୍ରଣାମ କରନ୍ତେ, ସେ ହାତପାତି ଭିକ୍ଷା ମାଗିଲେ । ମୋତେ ଭିକ୍ଷା ଦେବେ ! ହଁ ଭରିବା ଛଡ଼ା ଉପାୟ ନଥିଲା । ସେ କହିଲେ ରାଧାମୋହନ ବାବୁଙ୍କୁ ''ଆପଣଙ୍କ ସିଗାରେଟ ଦିଅନ୍ତୁ ମୋତେ ଭିକ୍ଷା ! ଆଉ ସିଗାରେଟ ପିଇବେ ନାହିଁ'' ରାଧାମୋହନ ବାବୁ ସାଂଗେ ସାଂଗେ ସିଗାରେଟ ଦେଇଦେଲେ । କିଛିଦିନ ସିଗାରେଟ ପିଇଲେ ନାହିଁ । ପୁଣି ଯେଉଁ ଅବସ୍ଥାକୁ ସେଇ ଅବସ୍ଥା । ରାଧାମୋହନ ବାବୁ କୌଣସି ଶୃଙ୍ଖଳା, ନିୟମ ମାନିବାକୁ ପ୍ରସ୍ତୁତ ନୁହନ୍ତି ।

ଏତିକିବେଳେ ତାଙ୍କର ଜଣେ ବଂଧୁ ଶଶିବାବୁ । ଶଶିବାବୁ ଏକ ସଂକଟରେ ପଡ଼ି ରାଧାମୋହନବାବୁଙ୍କୁ ଉପଦେଶ ମାଗିଲେ ଏବଂ ରାଧାମୋହନବାବୁ ତାଙ୍କୁ ସଂକଟରୁ ଉଦ୍ଧାର କଲେ ସତ୍ୟ କିନ୍ତୁ ନିଜେ ପଡ଼ିଗଲେ ସଂକଟରେ । ସେ ଭିତରେ ପଡ଼ି ତାଙ୍କର ଜୀବନ ବିପର୍ଯ୍ୟସ୍ତ ହୋଇଗଲା । ଉଦ୍ଧାର ପାଇବାକୁ ଲାଗିଗଲା ବହୁବର୍ଷ । ସେ ଲେଖିଲେ 'ନୂତନ ଦ୍ରୌପଦୀ' ।

''ଯଉବନ ଝଡ଼େ ତରଳ ତୁମ ସେ ବୁକୁତଳେ
ମରମର ଯେଉଁ ସରମର ଢେଉ କୁତୂହଳେ,
ଜାଗି ଉଠିଥିଲା ଥରି ଥରି,
ସମତଳ ବୁକୁ ବଂଧୁର କରି ରହିଯାଇଛି ତା
ସେଇପରି''

ଏକ ଆଦିବାସୀ ଯୁବତୀର ଉନ୍ମୁକ୍ତ ବକ୍ଷ ତଳେ କବିତାର ଏଇ ଅଂଶଟି ପ୍ରକାଶିତ ହେଲା 'ସହକାର'ରେ ଏବଂ ଆରମ୍ଭ ହେଲା ମାନହାନୀ ମୋକଦ୍ଦମା । ଗଡ଼ନାୟକଙ୍କୁ ତାହା ଟାଣି ଆଣିଲା ଲୋକଲୋଚନକୁ ଆଉଥରେ ।

କବି ବେଳେବେଳେ ବେଶ ବାସ୍ତବବାଦୀ ।

''ସୁରା ଭୀରୁ ସୁରା ମୁଁ ତ ଚାହେଁନା
ସର୍ବହରା କବି ମୁଁ ସପନର ସୁଏ ଅବଗାହେନା,
ଆଇନ ତ ଆମ ପାଇଁ ବକ୍ର
ରାହୁ ପାଇଁ ଯେଉଁଭଳି ଚକ୍ର,
ସଖୀ ମୋର କରନାହିଁ ଡେରି ଗୋ,
ପାନପାତ୍ରରେ ମୋର ଟିକିଏ ଗରମ ଗରମ ଚା' ଦିଅ ଭରିଗୋ ।

ଦେଶର ଶାସକ ବୋଲି ପୂଜା ପାଉଛନ୍ତି ଯିଏ,
ସେ ଦଳର ପାତ୍ରେ,
ପୁଲକିତ ଗାତ୍ରେ,
ଅମୃତ ପରଷଇ ଭଗବାନ ଆପେ ସାଜି ମୋହିନୀ
ଆଇନ ହୋଇଛି ଜାରୀ,
ଅମୃତ ଆମ ପାଇଁ ହୋଇ
କିମ୍ବା
ଉପରେ ଉପରେ ଆଘାତ ହାଣୁଛି
ଝଡ଼ଝଂଜାରସେନା,
ମାର୍କ୍ସପ୍ରଏଡ୍ ଦୁଇଟି ତାହାର ଡେଣା'' ।

କିନ୍ତୁ 'ଉତ୍କଳିକା'ରେ ତାଙ୍କର ଗୀତିକଥା ବେଶ୍ ଜନପ୍ରିୟ ଏବଂ ତାହା ଅନେକ କବିଙ୍କୁ ଓଡ଼ିଶାର କାହାଣୀ, ପ୍ରବାଦ, ଉପଖ୍ୟାନ ଉପରେ ଲେଖିବା ପାଇଁ ଉତ୍ସାହିତ କରିଛି ।

''ତରଙ୍ଗିଣୀ ପାରଇ ବି ବୁଝି
ଅମ୍ବୁଧିର କିବା ଗଭୀରତା
ତଟିନୀର ମଧୁରତା ହାୟ
ପାରାବାର ପାରେ ନାହିଁ ରଖି
ବା
ଗୋଟିଏ ପୁତ୍ର ଦେଇ, ହୃଦୟେ ମୋହର
ଶତ ପୁତ୍ର ମୁଁ କୁଢ଼ାଇ ଆଣିଚି ଏଇ
ବା
କଜ୍ଜଳନିଭ ଉଷାର ନିକଷ ତଳେ ନହେଉଣୁ
ଲେଖା,
ସୁରନନ୍ଦିନୀ ଉଷା ରୂପସୀର ଉଜ୍ଜ୍ୱଳ ହିମରେଖା
ଉଦ୍‌ବେଗଭରା ବୁକେ
ସୈନିକବର ଘୋଟକ ବାହନେ
ଛୁଟିଲେ କଟକ ମୁଖେ
ବା
ପତି ବିନା ମୁହିଁ କି ହେଉଛି ଆଜି
ଖୋରଧା ରାଣୀ ତ ଏପରି ହେବେ
ପ୍ରତିଶୋଧ ମୋର ପୂର୍ଣ୍ଣ ହେଲାଣି
ଆହେ ରାଜା ତୁମେ ମୁକ୍ତ ଏବେ

କାହାଣୀ ମାନଙ୍କର ଐତିହାସିକ ସତ୍ୟତା କେତେ ତା' କେହି ଖୋଜି ନାହାନ୍ତି ଏଇସବୁ କବିତା ପଢ଼ିଲାବେଳେ । ଲୋକଗୀତିର ଉଦ୍ଦାମତା, ପ୍ରାଣସ୍ପର୍ଶୀ ଛନ୍ଦ, ଅନୁପମ ତୁଳନା ମୁଗ୍ଧ କରିଛି ପାଠକକୁ ।

ଯେପରି 'ମାଟି' ପଢ଼ିଲାବେଳେ କ'ଣ କେହି ଖୋଜିଛି ଏହାର ବୈଜ୍ଞାନିକ ସତ୍ୟତା ? ସୌରଜଗତର କେନ୍ଦ୍ର ପୃଥିବୀ ନୁହେଁ, ସୂର୍ଯ୍ୟ । ଏହି ସତ୍ୟତା ଜାଣି ମଧ୍ୟ 'ମାଟି' ମଣିଷର ମନକୁ ଛୁଇଁଛି । ଅୟିମାଟି କ୍ଷଣକ ପାଇଁ ମଣିଷର ରଚନାକୁ ଆଚ୍ଛନ୍ନ କରିଛି ।

ରାଧାମୋହନ ଗଡ଼ନାୟକ ସାହିତ୍ୟ ଏକାଡେମୀର କର୍ତ୍ତା ହୋଇଛନ୍ତି । 'କୋଣାର୍କ' ପତ୍ରିକା ସଂପାଦନ କରିଛନ୍ତି । କିନ୍ତୁ ସେ ସ୍ୱୀକୃତି ବା କାର୍ଯ୍ୟ ତାଙ୍କର ପ୍ରତିଭା ତୁଳନାରେ କିଛି ନୁହେଁ ।

ବିଳମ୍ବିତ ପ୍ରହରରେ ତାଙ୍କୁ ପଦ୍ମଶ୍ରୀ ଉପାଧି ମିଳିଛି । ପଦ୍ମଶ୍ରୀ ଉପାଧି ଅତୀତରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଗ୍ରହଣ କରିବା ପାଇଁ ମନା କରିଦେଇଥିଲେ । ମୋ ଭଳି ଅନେକ ବଂଧୁ ରାଧାମୋହନ ବାବୁଙ୍କୁ ଏ ଉପାଧି ଗ୍ରହଣ ନକରିବା ପାଇଁ କହିଥିଲୁ । ଅନେକ କିନ୍ତୁ କହିଥିଲେ ଯାହା ମିଳୁଛି ନେଇଯାଅ, ଅଭିମାନ କରି ଲାଭ କ'ଣ ? ଯୋଗ୍ୟ ଲୋକ ଉପରେ ସିନା ଅଭିମାନ କରାଯାଏ ! ରାଧାମୋହନ ଗଡ଼ନାୟକ ପଦ୍ମଶ୍ରୀ ଉପାଧି ଗ୍ରହଣ କରିଥିଲେ ।

ତାଙ୍କ ପାଇଁ ସୁଯୋଗ ଥିଲା ଅନେକ । କିନ୍ତୁ ରାଧାମୋହନ ଗଡ଼ନାୟକ ବୋହେମିଆନ୍ । ସେ ତାହାର ସଦୁପଯୋଗ କରିପାରି ନାହାନ୍ତି । ଏବଂ ସେଇ ବୋହେମିଆନିଜମ୍ ତ ତାଙ୍କୁ ମଣ୍ଡିତ କରିଥିଲା, ମାନୁଥିଲା ।

ଏଇପରି ଏକ ପ୍ରତିଭା ହଜିଯାଇଛି ଆମ ଆକାଶରୁ । ଓଡ଼ିଶା ମାଟି ଦରିଦ୍ର ହୋଇଛି, ଅନୁଗୋଳ ମାଟି ତ ନିଶ୍ଚିତ ଭାବରେ ଅତ୍ୟନ୍ତ ଦରିଦ୍ର ହୋଇଛି ।

ତାଙ୍କୁ ଯେତେବେଳେ ଭେଟିଛି ମନ ଦୁଃଖରେ ଭରି ଯାଇଛି । ପ୍ରାଣବନ୍ତ, ଉତ୍‌ଫୁଲ୍ଲ, ଉଦ୍ଦାମ ରାଧାମୋହନଙ୍କ ସବୁ ଗଡ଼ ହଜିଯାଇଛି । ସେ ଶଯ୍ୟାଶାୟୀ ହୋଇ ପଡ଼ିଥିବେ କାହିଁକି ? ଏଇ ପ୍ରଶ୍ନ ମନରେ ଉଠିଛି ।

ରୁବାୟତ-ଇ-ଓମରଖାୟାମ୍ ମନେପଡ଼ିଛି । ସୁରା ନାହିଁ, ସାକୀ ନାହିଁ, କବିତାର ପୁସ୍ତକ ନାହିଁ, ମଣିଷ ବଂଚିବ କ'ଣ ଜୀବନର ତଟ ଦେଶରେ ?

ତାଙ୍କର ପରଲୋକରେ ମୁଁ ଏକ ଆତ୍ମୀୟ, ବ୍ୟକ୍ତିଗତ ଶଭେଚ୍ଛୁ ହରାଇ ଜୀବନ୍ମୃତ ହେଲାଭଳି ମନେ ହୋଇଛି ।



# ହୀରାଖଣ୍ଡର ହୀରା

ଶ୍ରଦ୍ଧାଞ୍ଜଳି ବହି ପାଇଁ ଯେଉଁ ଲୋକର ସବୁଠାରୁ ବେଶୀ ଆଗ୍ରହ ଥିଲା ସେଇ ବଂଧୁ ରାଧାବଲ୍ଲଭ ମିଶ୍ର ଆଉ ନାହାନ୍ତି । ମସ୍ତିଷ୍କରେ ଟ୍ୟୁମର ହୋଇଥିଲା ଏବଂ ତାହା କ୍ୟାନସର ବୋଲି ଜଣାପଡ଼ିଲା ଅସ୍ତ୍ରୋପଚାର ପରେ । ଜୀବନ ଦୀପ ଲିଭିବାକୁ ଆରମ୍ଭ କଲା । ଦିଲ୍ଲୀ ଯିବା ବାଟରେ ଦେଖା ହୋଇଥିଲା । ସେ ଯାଉଥିଲେ ଅପରେଶନ ପାଇଁ । ତାଙ୍କ ସହିତ ବ୍ୟକ୍ତିଗତ ସଂପର୍କ ପାରିବାରିକ ସଂପର୍କରେ ରୂପାନ୍ତରିତ ହୋଇଥିଲା । ତାଙ୍କର ପୁଅ ଏବଂ ମୋ ପୁଅ ଏକାଠି ପାଠ ପଢୁଥିଲେ ଏବଂ ପରସ୍ପରର ନିବିଡ଼ ବଂଧୁ । ପ୍ରତିଦିନ ସକାଳୁ ସେଇଯୋଗୁଁ ଫୋନରେ ଖବର ମିଳୁଥିଲା ତାଙ୍କର ଅପରେଶନ ସଂପର୍କରେ । ପରେ ସମସ୍ତେ ଜାଣିଯାଇଥିଲେ ତାଙ୍କ ରୋଗର ଭୟାନକତା ସଂପର୍କରେ । ଗଲାବେଳେ ସେ ମ୍ଳାନ ଦେଖା ଯାଉଥିଲେ କିନ୍ତୁ ରୋଗ ସଂପର୍କରେ ବିଶେଷ କିଛି ନକହି ସାମ୍ପ୍ରତିକ ସାମାଜିକ, ରାଜନୈତିକ ପରିସ୍ଥିତି ସଂପର୍କରେ ବେଶି ଆଲୋଚନା କରୁଥିଲେ, ଅନ୍ୟମାନଙ୍କ ବାରଣ ନମାନି । ମନେ ହେଉଥିଲା ଯେପରି ସେ ସ୍ଥିତପ୍ରଜ୍ଞ ହୋଇଯାଇଥିଲେ ଏବଂ ମୃତ୍ୟୁ ବା ରୋଗର ଭୟ ତାଙ୍କୁ ଗ୍ରାସକରି ନଥିଲା ।

ରାଧାବଲ୍ଲଭଙ୍କ ଘର ବରଗଡ଼ରେ । ଛାତ୍ର ଜୀବନରୁ ସେ ସାମାଜିକ, ରାଜନୈତିକ କାର୍ଯ୍ୟରେ ଜଡ଼ିତ ହୋଇଥିଲେ । ମଧୁସୂଦନ ଆଇନ କଲେଜରେ ପାଠ ପଢ଼ିବା ସମୟରେ ନିଖିଳ ଉତ୍କଳ ଛାତ୍ର ସଂଘର କର୍ମକର୍ତ୍ତା ଥିଲେ ଏବଂ ସେଇ ସମୟରେ ସେ ବାମପନ୍ଥୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ହେଲେ । ମାର୍କ୍ସବାଦୀ-ଲେନିନ୍‌ବାଦୀ ଚିନ୍ତାଧାରାରେ ସେ ଦୀକ୍ଷିତ ହେଲେ । ତାଙ୍କର ଚରିତ୍ର ଥିଲା ନିର୍ମଳ ଏବଂ ସିରିଅସ୍ । କୌଣସି କଥାକୁ ସେ ହାଲୁକା ଭାବରେ ଗ୍ରହଣ କରୁ ନଥିଲେ । ରାଜନୈତିକ କ୍ଲାସ ହେଉ ବା ଛାତ୍ର ଆନ୍ଦୋଳନ ହେଉ, ସବୁଥିରେ ତାଙ୍କୁ ଏକ ସିରିଅସ୍ ସହକର୍ମୀ ଭାବରେ ଆମେ ପାଇଥିଲୁ ଏବଂ ମୋର ବ୍ୟକ୍ତିଗତ ଗୌରବ ଯେ ମୁଁ ତାଙ୍କୁ ମୁଖ୍ୟତଃ ବାମପନ୍ଥୀ ଚିନ୍ତାଧାରାକୁ ଆଣିବା ପାଇଁ ଦାୟୀ । ଆଜି ତାହା ମନେପଡ଼ିଲେ ଛାତି ଯେପରି ଫୁଲିଉଠେ, ଆଖି ସେମିତି ଭରିଯାଏ ଲୁହରେ ।

ରାଧାବଲ୍ଲଭ ଆଇନ ପାଶ କରି ଫେରନ୍ତି ବରଗଡ଼କୁ ଏବଂ ସେଇଠାରେ ଓକିଲାତି କରନ୍ତି । ଓକିଲାତି ଜୀବିକା ପାଇଁ, ପେଶା ପାଇଁ କିନ୍ତୁ ନିଶା ହେଉଛି କୃଷକ ଆନ୍ଦୋଳନ, ଯୁବ ସଂଗଠନ ଗଠନ, ଜନସାଧାରଣଙ୍କର ହିତକର କାର୍ଯ୍ୟ । ରାଧାବଲ୍ଲଭଙ୍କ ଦୃଷ୍ଟିକୋଣ ଥିଲା ବୈଜ୍ଞାନିକ, ସେଇଯୋଗୁଁ ସେ ଡଗ୍‌ମାଟିକ ନଥିଲେ । ଅନ୍ୟର ଚିନ୍ତା ଏପରିକି ବିରୋଧୀ ଚିନ୍ତା ପ୍ରତି ତାଙ୍କର ସମ୍ମାନ ଥିଲା ପ୍ରଚୁର, ଯଦିଓ ସେ ନିଜସ୍ୱ ଚିନ୍ତାଧାରା ଏବଂ କାର୍ଯ୍ୟରେ ଥିଲେ ଅଟଳ । ସ୍ୱାଭାବିକ ଭାବରେ ସେଇଯେଗୁଁ ତାଙ୍କ ପ୍ରତି ସବୁ ମତ, ଗୋଷ୍ଠୀର ଥିଲା ସମ୍ମାନ ଏବଂ ଶ୍ରଦ୍ଧା ।

ଜଣେ ଆଇନଜୀବୀ ଭାବରେ ତାଙ୍କର ଖ୍ୟାତି ଥିଲା ବେଶ୍ । ସେ ନୀତିବାନ ଆଇନଜୀବୀ ଥିଲେ ଏବଂ ଥିଲେ ଦରିଦ୍ର ଜନସାଧାରଣଙ୍କର ଓକିଲ । ତାଙ୍କର ପରଲୋକରେ ଓଡ଼ିଶାର ଦଳିତ ଜନସାଧାରଣ ଏକ ବଳିଷ୍ଠ ସହଯୋଦ୍ଧାଙ୍କୁ ହରାଇ ବସିଛି । ସମ୍ବଲପୁର ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର କର୍ମକର୍ତ୍ତା ଭାବରେ ସେ ନିଷ୍ଠାର ସହିତ କାମ କରି ଆସିଛନ୍ତି ଏବଂ ଉତ୍ଥାନପତନ ତାଙ୍କୁ ବିଭ୍ରାନ୍ତ କରିପାରି ନାହିଁ । ସେ ଅଟଳ ରହିଛନ୍ତି ଆପଣାର ବିଶ୍ୱାସରେ ।

ତାଙ୍କର ଘନିଷ୍ଠ ସହକର୍ମୀ, ସହଯୋଦ୍ଧା ଲେଙ୍ଗୁ ମିଶ୍ର ଛାଡ଼ି ଚାଲି ଯାଇଛନ୍ତି କିଛି ବର୍ଷ ତଳେ । ପ୍ରେରଣାଦାତା ସେନାପତି ଦୟାନନ୍ଦ ଶତପଥୀ, ପ୍ରସନ୍ନ କୁମାର ପଣ୍ଡା ମଧ୍ୟ ବିଦାୟ ନେଇଛନ୍ତି ସଂସାରରୁ । ରାଧାବଲ୍ଲଭ ରହିଥିଲେ ଅଟଳ ହୋଇ । ଲୁହା ଇସ୍ପାତରେ ପରିଣତ ହୋଇଛି ।

୧୧ ଏପ୍ରିଲ, ୨୦୦୦ ମସିହା । ଦିନ ଏଗାରଟା । ୬୫ ବର୍ଷ ବୟସ୍କ ରାଧାବଲ୍ଲଭ, ଲେଖକ, ସମାଜବାଦୀ ଚିନ୍ତକ, ସମାଜସେବୀ ଆଖି ବୁଜି ଦେଇଛନ୍ତି ଚିରଦିନ ପାଇଁ । ଏକ କର୍ମମୟ ନିଷ୍କଳଙ୍କ ଜୀବନର ଅବସାନ ଘଟିଛି, ଚିରଦିନ ପାଇଁ । ସେ ଇତିହାସ ପାଲଟି ଯାଇଛନ୍ତି ଏବଂ ତାଙ୍କ ପାଇଁ ମହାନଦୀର ପାଣି କାନ୍ଦୁଛି, ଦୂର ପାହାଡ଼ରେ ଶୁଭୁଛି ସେଇ ମଣିଷର ପ୍ରତିଧ୍ୱନି । ହୀରାଖଣ୍ଡର ଏକ ହୀରା ଆଉ ନାହିଁ, ଏ ମର ଜଗତରେ ।

୮୧ ବର୍ଷର ବୃଦ୍ଧା ମାତା ଜୀବିତ । ସାନ୍ତ୍ୱନା ଦେବାପାଇଁ ଭାଷା ନାହିଁ । କାହିଁକି ମାଆ ଆଗରେ ପୁତ୍ରର ମୃତ୍ୟୁ ହୁଏ ? ଏ ପ୍ରଶ୍ନର ଉତ୍ତର କେହି ଦେଇପାରି ନାହାନ୍ତି ।

ଉଜ୍ଜ୍ୱଳ, ଗୌରବର୍ଣ୍ଣ, ଦୀର୍ଘ ରାଧାବଲ୍ଲଭ ଜୀବନର ସବୁ ବିଭାବରେ ଉଜ୍ଜ୍ୱଳ, ଗୌର ଏବଂ ଦୀର୍ଘ । ତାଙ୍କର ପରଲୋକରେ ମୁଁ ମୋର ଏକ କନିଷ୍ଠ ଭ୍ରାତାକୁ ହରାଇଛି । ମୋର ଆୟୁଷ ନେଇ ହେଲେ ସେ ବଂଚିଥାଆନ୍ତା !



# ସାଧକର ଶେଷ ସାଧନା

ରାମକୃଷ୍ଣ ଦାସଙ୍କ ନିଜ ନାମ ହଜିଯାଇଥିଲା । ସମସ୍ତେ ତାଙ୍କୁ ବାବାଜୀ ମହାରାଜ ବୋଲି ଡାକୁଥିଲେ ଏବଂ ସେଇ ଥିଲା ତାଙ୍କର ପରିଚିତି ।

'ଅତି-ମାନସ ଶକ୍ତି'ର ଅବତରଣ କେବେ ହେବ ? ବାବାଜୀ ମହାରାଜଙ୍କୁ ମୋର ପ୍ରଶ୍ନ ।

ଏଇ ନିକଟରେ..... ତାଙ୍କର ସଂକ୍ଷିପ୍ତ ଉତ୍ତର ।

ନିକଟରେ ମାନେ ? ଆପଣଙ୍କର ଜୀବଦ୍ଦଶା ଭିତରେ ଆପଣ ସେଇ ଅବତରଣର ସ୍ୱାଦ ପାଇପାରିବେ ତ !

ବାବାଜୀ ମହାରାଜଙ୍କ ମୁହଁ ଉପରେ ଏକ ସ୍ମିତରେଖା ।

ସେଇ ଅତି-ମାନସ ଶକ୍ତିର ଅବତରଣକୁ ଅପେକ୍ଷା କରି କରି, ଜୀବନବ୍ୟାପୀ ତାହାର ଅବତରଣ ପାଇଁ ସାଧନା କରିକରି ବାବାଜୀ ମହାରାଜ ଆଖିବୁଜି ଦେଇଛନ୍ତି ସେଇ ଅତି-ମାନସ ଶକ୍ତିର ଅବତରଣ ପୂର୍ବରୁ । ୮.୧୧.୯୮ । ବାବାଜୀ ମହାରାଜ ଆଉ ନାହାନ୍ତି । ସେ ଆଖିବୁଜି ଦେଇଛନ୍ତି ୯୦ ବର୍ଷ ବୟସରେ । ଏକ ବିରାଟ ଜୀବନ ନାଟକର ଶେଷ ଯବନିକାର ପତନ ହୋଇଛି । ଏହି ଅବତରଣ କଣ ଏକ ଏଲ୍‌ଡ଼ୋରାଡ଼ୋ ? ନା ଏହା ଏକ ବାସ୍ତବତା ? ଅରବିନ୍ଦ-ଦର୍ଶନର ବିରୋଧୀମାନେ କହନ୍ତି ଏହା ପ୍ରହେଳିକା । ଅରବିନ୍ଦ-ଦର୍ଶନ ବିଶ୍ୱାସୀମାନେ କହନ୍ତି ଏହା ବିବର୍ତ୍ତନ ପ୍ରକ୍ରିୟାର ନିଶ୍ଚିତ ପରିଣତି । ମାଙ୍କଡ଼ ଏହି ବିବର୍ତ୍ତନର ଧାରାରେ ମଣିଷ ହୋଇଛି, ତାହାର ଗୁଣାତ୍ମକ ପରିବର୍ତ୍ତନ ହୋଇଛି । ଠିକ୍ ସେଇପରି ମଣିଷ ଦିନେ ଅତି-ମାନବରେ ପରିଣତ ହେବ ବିବର୍ତ୍ତନର ପ୍ରକ୍ରିୟାରେ ।

ଅପେକ୍ଷାକର !

ମୋର ମନେହୁଏ ଯେ ଦିନେ ଯୌବନରେ ଆମର କଳ୍ପିତ ଲକ୍ଷ୍ୟ ଥିଲା କମ୍ୟୁନିଜମ୍ From each according to his abilities to each according to his needs.

ଠିକ୍ ଯେପରି ଏହା କେତେଦୂର ସମ୍ଭବ ତା'ର କଳନା କରାଯାଇ ପାରିବ ନାହିଁ, କିନ୍ତୁ ଏହି ସୁଦୂର ପ୍ରସାରୀ ଲକ୍ଷ୍ୟ ମଣିଷକୁ ପ୍ରେରଣା ଦେବ, ଠିକ୍ ସେଇପରି ଅତିମାନସ ଶକ୍ତିର ଅବତରଣର କଳ୍ପନା ମଣିଷକୁ ଜୀବନର ଲକ୍ଷ୍ୟ ପଥରେ ଅବିଚଳ ରଖିବାକୁ ସାହାଯ୍ୟ କରିବ ବୋଲି ମୋର ମନେ ହୋଇଛି । ଅଭିପ୍ସିତ ଏଇ ଲକ୍ଷ୍ୟ ମଣିଷକୁ ଉନ୍ନତ ମଣିଷ ହେବା ପାଇଁ ସାହାଯ୍ୟ କରିବ ।

ବାବାଜୀ ମହାରାଜଙ୍କ ଜୀବନ କାହାଣୀ ତାହାରି ଅଭିଲେଖ ବହନ କରେ ।

ତାଙ୍କର ଜନ୍ମ ଜଗତସିଂହପୁର ଜିଲ୍ଲା ରାୟରପୁର ଗ୍ରାମରେ, ୧୪ ଅଗଷ୍ଟ ୧୯୦୮ ମସିହାରେ ହୋଇଥିଲା । ନିଜ ଗ୍ରାମର ଚାଟଶାଳୀରେ ପାଠପଢ଼ା ସାରି ସେ ପିତାମାତାଙ୍କୁ ଆର୍ଥିକ ସହାୟତା ଦେବା ସକାଶେ ଏକ ଚାଟଶାଳୀରେ ଶିକ୍ଷକତା କରିଥିଲେ କିଛିକାଳ ପାଇଁ । ପରେ ସେ ବନ୍ଦୋବସ୍ତ ବିଭାଗରେ ମଧ୍ୟ ଚାକିରି କରିଥିଲେ ପରିବାରର ପ୍ରତିପୋଷଣ ପାଇଁ । ରାଞ୍ଚିରେ କାମ କରୁଥିବାବେଳେ ସେ ସାଂସାରିକ ବନ୍ଧନରୁ ମୁକ୍ତି ନେଇ ଭକ୍ତିମାର୍ଗର ସାଧନାରେ ବ୍ରତୀ ହେଲେ ଅଯୋଧାରେ । ସେଇଠି କଟିଗଲା ଜୀବନର ବେଶ୍ କିଛି ବର୍ଷ । ଅଯୋଧାରେ ସେବା ସମୟରେ ସେ ଶ୍ରୀ ଅରବିନ୍ଦଙ୍କ ପୂର୍ଣ୍ଣଯୋଗ ସମ୍ବନ୍ଧୀୟ କେତେକ ପୁସ୍ତକ ଅଧ୍ୟୟନ କରିଥିଲେ ଏବଂ ତାଙ୍କ ସାଧନାର ଗତିପଥ ସଂପୂର୍ଣ୍ଣ ବଦଳି ଯାଇଥିଲା ।

ମୋର ମନେପଡୁଛି ।

ସେ ଅଯୋଧାରୁ ଆସିଥାନ୍ତି । କଟକର ରାଜରାସ୍ତା ଉପରେ ହଠାତ୍ ଦେଖାହେଲା । କବି ରାଧାମୋହନ ଗଡ଼ନାୟକ ଏବଂ ମୋ ସହିତ । ଦୁହେଁ ତାଙ୍କୁ ନମସ୍କାର କରି ଠିଆ ହେଲୁ । କୁଶଳ ଜିଜ୍ଞାସା ପରେ ସେ ହଠାତ୍ କହିଲେ ଯେ ମୋର ଆପଣମାନଙ୍କ ପାଖରେ ଏକ ଭିକ୍ଷା ଅଛି । ଆପଣମାନେ ଯଦି ଦେବେ ତା' ହେଲେ ମାଗିବି । ଆମେ ଦୁହେଁ ସ୍ୱୀକୃତି ଦେଲୁ । ଆମ ଦୁହିଁଙ୍କ ହାତରେ ଥିଲା ଜଳନ୍ତା ସିଗାରେଟ । ଦୁହେଁ ପ୍ରଚଣ୍ଡ ଧୂମପାନ କରୁ । ସେ ହାତପାତି ମାଗିଲେ ସେଇ ଦୁଇଟିକୁ ଏବଂ କହିଲେ ଆଉ ଧୂମପାନ କରିବେ ନାହିଁ ବୋଲି ମୁଁ ଆପଣମାନଙ୍କଠାରୁ ପ୍ରତିଶ୍ରୁତି ଭିକ୍ଷା କରୁଛି ।

ଆମେ ହଁ ଭରିଥିଲୁ ଏବଂ ମୁଁ ନିଜେ ବେଶ୍ କିଛିକାଳ ସିଗାରେଟ ପିଇବା ଛାଡ଼ି ଦେଇଥିଲି । ପୁଣି ଆରମ୍ଭ ହୋଇଛି, ସାଂଗରେ ପଡ଼ି । କିନ୍ତୁ ସିଗାରେଟ ପିଇବା ଆଉ ବେଶିଦିନ ରହିପାରିଲା ନାହିଁ । ସିଗାରେଟ ଖାଇଲା ବେଳେ ତାଙ୍କର ତାଗିଦ୍ (ଭିକ୍ଷା) ମନେପଡୁଥିଲା ଏବଂ ଛାଡ଼ିଲାବେଳେ ମଧ୍ୟ ମନେପଡୁଥିଲା ସେଇ ଭିକ୍ଷାର କଥା ।

ସେ ପଣ୍ଡିଚେରୀରେ ଆସି ପହଞ୍ଚିଲେ ୧୯୪୫ ମସିହା ଫେବୃଆରୀ ୨ ତାରିଖରେ । ବାବାଜୀ ମହାରାଜଙ୍କୁ କୁଆଡ଼େ ଶ୍ରୀମା କିଛି କାମ ବରାଦ କରି ନଥିଲେ, କୌଣସି ଧାରାବାହିକ କାର୍ଯ୍ୟ ତାଙ୍କର ନଥିଲା । ସେଥିପାଇଁ ତାଙ୍କ ମନରେ ଦୁଃଖ ଥିଲା ।

ହଠାତ୍ ସେ ଦିନେ ଦେଖିଲେ ଯେ ମାଆ ତାଙ୍କ ଆଗରେ ଠିଆ ହୋଇଛନ୍ତି ଏବଂ ଜ୍ୱଳନ୍ତ ସୁନା ପରି ସେ ମୂର୍ତ୍ତି । ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । ଶ୍ରୀମା ତାଙ୍କୁ ବାସନ ମାଜିବା କାମ ଦେଲେ । ଶ୍ରୀମାଙ୍କ ଆଶ୍ରମରେ ଶ୍ରମର ମୂଲ୍ୟ ଓ ସମ୍ମାନ ବହୁତ । ତେଣୁ ବାସନ ମାଜିବା ସ୍ଥାନରେ ଦେଖିବାକୁ ମିଳେ ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କୁ । ସେଇ ଭିତରେ ସବୁଠାରୁ ସମ୍ମାନଜନକ ବ୍ୟକ୍ତି ହେଉଛନ୍ତି ବାବାଜୀ ମହାରାଜ ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ସେ ବହୁ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଅରବିନ୍ଦ ପାଠଚକ୍ର, ଏବଂ ସାଧନା କେନ୍ଦ୍ର ପ୍ରତିଷ୍ଠା କରି ଯାଇଉଛନ୍ତି । ପୂର୍ଣ୍ଣାଙ୍ଗ, ସମନ୍ୱିତ ଶିକ୍ଷାକେନ୍ଦ୍ରମାନଙ୍କର ପ୍ରତିଷ୍ଠା ଏବଂ ସଂଯୋଗକାରୀ ହେଉଛନ୍ତି ବାବାଜୀ ମହାରାଜ ଏବଂ ଅଧ୍ୟାପକ କାଙ୍ଗାଳି ଚରଣ ପତି, ଯେ ପ୍ରପତ୍ତି ନାମରେ ପରିଚିତ ଥିଲେ । ପଣ୍ଡିଚେରୀର ଶ୍ରୀ ଅରବିନ୍ଦ ଆଶ୍ରମରେ ନବଜ୍ୟୋତି କାର୍ଯ୍ୟାଳୟର ମଧ୍ୟ ସେ ଅନ୍ୟତମ ଉଦ୍ୟୋକ୍ତା । ତାଙ୍କରି ପ୍ରଭାବ ଏବଂ ତାଙ୍କର ପ୍ରେରଣାରେ ଅନେକ ବ୍ୟକ୍ତି ଶ୍ରୀ ଅରବିନ୍ଦ ଆଶ୍ରମର ସ୍ଥାୟୀ ବାସିନ୍ଦା ହୋଇଛନ୍ତି ଏବଂ ଅନେକ ତାକୁ ଆପଣାର ସାଧନାକ୍ଷେତ୍ର ଭାବରେ ଗ୍ରହଣ କରିଛନ୍ତି ।

ବାବାଜୀ ମହାରାଜ ଜଣେ ଉନ୍ମୁକ୍ତ ପୁରୁଷ ଥିଲେ । ଦୀର୍ଘ ୫୩ ବର୍ଷ କାଳ ସେ ପଣ୍ଡିଚେରୀରେ ଜୀବନ ବିତାଇଛନ୍ତି । ସମଗ୍ର ଜୀବନ କଟି ଯାଇଛି ପୂର୍ଣ୍ଣାଙ୍ଗ ପୂର୍ଣ୍ଣଯୋଗର ସାଧନାରେ । ପୂର୍ଣ୍ଣଯୋଗ ସାଧନାର ପ୍ରଣାଳୀ ସାମାଜିକ ଜୀବନ ପାଇଁ ଏକାନ୍ତ ଅନୁସରଣୀୟ ମାର୍ଗ, ଏ ବିଶ୍ୱାସ ତାଙ୍କର ଥିଲା ଅତୁଟ ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ।

ତାଙ୍କର ପାରମ୍ପରିକ ଶିକ୍ଷା ଥିଲା ଖୁବ୍ କମ୍ । କିନ୍ତୁ ବ୍ୟକ୍ତିଗତ ଉଦ୍ୟମ ଫଳରେ ସେ ଓଡ଼ିଆ, ବଂଗଳା, ହିନ୍ଦୀ, ଇଂରାଜୀ ଭାଷାରେ କଥାବାର୍ତ୍ତା ଓ ପଢ଼ାପଢ଼ି କରିପାରୁଥିଲେ । କିଛିକାଳ ସେ ଫରାସୀ ଭାଷା ମଧ୍ୟ ଶିକ୍ଷା କରିଥିଲେ । ତାଙ୍କର ସ୍ମରଣଶକ୍ତି ଥିଲା ପ୍ରଗାଢ଼ । 'ରାମଚରିତ ମାନସ'ର ବହୁଭାଗ ତାଙ୍କର ମୁଖସ୍ଥ ଥିଲା, ଯେପରି ଥିଲା ଶ୍ରୀ ଅରବିନ୍ଦଙ୍କ ପୂର୍ଣ୍ଣ-ଯୋଗ ଦର୍ଶନ ।

ଦେହ ଆଉ ବୋଲ ମାନୁନି । ଯାହା ଖାଇଲେ ବାନ୍ତି ହୋଇଯାଉଚି । ବୟସ ହେଲାଣି ୯୦ ବର୍ଷ । କୃଶକାୟ କିନ୍ତୁ ତେଜସ୍ୱୀ ଚେହେରା । ସେ ଡାଇନିଂ ହଲରୁ ବାହାରି ଆପଣାର ରହିବା ସ୍ଥାନକୁ ଗଲାବେଳେ ତାଙ୍କ ପଛରେ ବହୁ ଅନୁରକ୍ତ ଯୁବକ, ଯୁବତୀଙ୍କୁ ଧାଇଁବାର ଦେଖିଛି, ତାଙ୍କଠାରୁ ବାଣୀ ଶୁଣିବା ପାଇଁ, ତାଙ୍କର ଜୀବନ କାହାଣୀ ଶୁଣିବା ପାଇଁ । ଶିକ୍ଷା ନୁହେଁ ଦୀକ୍ଷା ହିଁ ତାଙ୍କୁ ମହାନ କରିଥିଲା । ଖାଇବା ବନ୍ଦ କରିଦେଇଛନ୍ତି ସେ । ସେ ସଚେତନ ଯେ ଯିବାର ସମୟ ହୋଇଛି । ସେ ଯିବେ କିନ୍ତୁ ଛାଡ଼ିଯିବେ ଏକ ବିରାଟ ପରମ୍ପରା, ଐତିହ୍ୟ । ଯାହା ଉଜଳି ରହିବ ବହୁକାଳ ଧରି ।



# ଲାଲଦୁର୍ଗର ଶେଷ ସ୍ତମ୍ଭ

ଶମ୍ଭୁ ବିଶ୍ୱାଳ ଆଉ ନାହାନ୍ତି । ଶଙ୍କରପୁର ଏକଦା କମ୍ୟୁନିଷ୍ଟ ପାର୍ଟିର ଦୁର୍ଗ ଭାବରେ ପରିଚିତ ଥିଲା । ତାର ଶେଷ ସ୍ତମ୍ଭ ହେଉଛନ୍ତି ମହାଯୋଦ୍ଧା ଶମ୍ଭୁ ବିଶ୍ୱାଳ । ଏକଦା ସାମରିକ ପୁଲିସ ବିଶାଳ ବାହିନୀ ବିନା ଶଙ୍କରପୁର ଭିତରକୁ ପ୍ରବେଶ କରିବା ପାଇଁ ସାହାସ କରୁ ନଥିଲେ । କିଆବୁଦା, ଗୋଖୁର ସାପ ଏବଂ ଶଙ୍କରପୁରର ସାଧାରଣ ଯୁଯୁସୁ ମଣିଷ ଏହାକୁ ଦୁରାରୋଧ କରି ଗଢ଼ି ତୋଳିଥିଲେ । ତାର ଅନ୍ୟତମ ସେନାପତି ହେଉଛନ୍ତି ଶମ୍ଭୁ ବିଶ୍ୱାଳ । ୮୮ ବର୍ଷ ବୟସରେ ତା'ର ଦୀର୍ଘ କର୍ମମୟ ଜୀବନର ଅବସାନ ଘଟିଛି । ଗଲା କେତେଦିନ ଧରି ସେ ବହୁମୂତ୍ର ଓ ଅନ୍ୟାନ୍ୟ ଉପସର୍ଗରେ ପୀଡ଼ିତ ଥିଲେ ।

ସେ ଥିଲେ କଟକ ବସ୍ତିବାଲା । ଖୋଦ୍ କଟକୀ ।

''ଆମେ କଟକ ବସ୍ତିବାଲା,
ନଇନି ଯୋଡ଼ି ପାଣି କଲୁ ତୋରାଣୀ ସଡ଼କ ଧୂଳି ମସଲା''

ଏଇ କବିତା ସେଇମାନଙ୍କ ପାଇଁ ପ୍ରଯୁଜ୍ୟ ଓ ଲିଖିତ ।

ମୁଁ କଟକ ସହରକୁ ଆସିଲି ପାଠ ପଢ଼ିବା ପାଇଁ ୧୯୪୬-୪୭ ମସିହା ବେଳକୁ । ସେତେବେଳକୁ ଶଙ୍କରପୁର ଲାଲଦୁର୍ଗ ନାମରେ ଖ୍ୟାତ ହୋଇ ସାରିଲାଣି ।

ଶଙ୍କରପୁର କହିଲେ ଗୋଟିଏ ଗାଁକୁ ବୁଝାଏନା । ଛତ୍ରବଜାରରୁ ଲିଙ୍କରୋଡ଼ ପର୍ଯ୍ୟନ୍ତ ଅଂଚଳରେ କେତେଗୁଡ଼ିଏ ଗ୍ରାମ ରହିଥିଲା । ତା'ର ଅପ୍ରଭଂଶ ବର୍ତ୍ତମାନ ରହିଛି । ଏହା ଖାନନଗର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ବାଇଗଣ ପରିବା ପାଇଁ ଏହା ପ୍ରସିଦ୍ଧି ଲାଭ କରିଥିଲା । ବର୍ତ୍ତମାନ ବର୍ଦ୍ଧିଷ୍ଣୁ ସହର ସେଇ ଗ୍ରାମଗୁଡ଼ିକୁ ଗ୍ରାସ କରିଗଲାଣି । କିଛି କିଛି ରହିଛି । ଲିଙ୍କରୋଡ଼ ସେତେବେଳକୁ ନିର୍ମାଣ ହୋଇନାହିଁ । ଦୋଳମୁଣ୍ଡାଇ ପରେ ଖାନନଗରକୁ ବନ୍ଧ ଉପର ରାସ୍ତା, ପ୍ରାୟତଃ ଶବ ଶୋଭାଯାତ୍ରା ପାଇଁ । ବାଜି ରାଉତ ଠାରୁ ଆରମ୍ଭ କରି ସୁନୀଲ ଦେ ପର୍ଯ୍ୟନ୍ତ ବହୁ ସହୀଦ ମଧ ଏଇ ରାସ୍ତାରେ ଯାଇ ଏହାକୁ ପବିତ୍ର କରିଯାଇଛନ୍ତି ।

ଛତ୍ରବଜାର ମହତାବ ରୋଡ଼ ମୋର ମନେପଡୁଛି ହେଲା ୧୯୪୮ ମସିହାରେ । ପ୍ରଥମ ସିମେଣ୍ଟ ରାସ୍ତା । ବର୍ତ୍ତମାନ ତାକୁ ପାଇବା ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ହାତରେ ।

ଛତ୍ରବଜାର ନାମକରଣ ହେଲା ଛତ୍ରରୁ । ନଅଙ୍କ ଦୁର୍ଭିକ୍ଷବେଳେ ଏଇଠି କେଉଁଠି ଛତ୍ର ସ୍ଥାପନ କରାଯାଇଥିଲା, ବୋଧହୁଏ ମିସନାରୀମାନଙ୍କ ଦ୍ୱାରା । ସେଇ ଦିନଠାରୁ ଏହାର ନାମକରଣ ହୋଇଯାଇଛି ଛତ୍ରବଜାର । ଏମାନେ ତିନିପତି ତାସଖେଳରେ ଓସ୍ତାଦ୍ ଥିଲେ ।

''ସେଥିପାଇଁ ଲେନିନ୍, ଲେନିନ୍,
ସେଥିପାଇଁ ତିନିପତି ତାସଖେଳବାଲା
ତୁଟେ
ନେତାପଦେ ବରେ ମହାଚୀନ''

ଏଇ ତିନିପତି ତାସ ଖେଳୁଥିବା ବ୍ୟକ୍ତିମାନେ ଆସନ୍ତି କଠୋର ସଂଗ୍ରାମ ଭିତରକୁ । ସେମାନଙ୍କର ଚରିତ୍ର ବଦଳିଯାଏ । ଏମାନେ ପରିବା କରନ୍ତି, କିନ୍ତୁ ଖାଆନ୍ତି ଭଲ ମାଂସ । ଶଙ୍କରପୁରରେ ସାଥୀମାନେ କରନ୍ତି ଭୋଜି, ସମ୍ମିଳନୀ । ଡାକନ୍ତି ଆମକୁ । ମାଂସ ତରକାରୀ ଖାଇଲେ ପେଟ ପୂରିଯାଏ ।

୧୯୪୮ ମସିହାରେ ଆସିଥିଲା ପୁଣି ଦୁର୍ଭିକ୍ଷ । କଟକ ସହରରେ ଚାଉଳ ମିଳେନାହିଁ । ଯାହା ମିଳେ ଖାଇହୁଏ ନାହିଁ ଦୁର୍ଗନ୍ଧରେ । ଚାଉଳ ପାଇଁ ସଭାହୁଏ । ଚେୟାରମ୍ୟାନ୍ ଗୁଣ୍ଡା ଲଗାଇ ସଭା ଭାଙ୍ଗିବାକୁ ଚେଷ୍ଟା କରନ୍ତି, ଥରେ ନୁହେଁ, ବହୁବାର । ତାଙ୍କର ହିଂସ୍ର ଆକ୍ରମଣକୁ ପ୍ରତିରୋଧ କରନ୍ତି ଶଙ୍କରପୁରର ଜନସାଧାରଣ । ମାଧବ ସିଂ, ରାମଚନ୍ଦ୍ର ମିଶ୍ର, ଦୁର୍ଗା ମହାନ୍ତି, ରାମକୃଷ୍ଣ ପତି ପ୍ରଭୃତି ଆଉ ନାହାନ୍ତି । ବଂଚିଥିବା ଲୋକମାନଙ୍କ ଭିତରେ ବୋଧହୁଏ ଗୁରୁଚରଣ ପଟ୍ଟନାୟକ, ଗଙ୍ଗାଧର ରଥ, ବୈଦ୍ୟନାଥ ରଥ ଅଛନ୍ତି । ଆଉମାନଙ୍କ ନାମ ମନେପଡୁ ନାହିଁ । ତେବେ ପର୍ଶୁରାମ ଦାସ, ଗଗନ ବିହାରୀ ଜେନା, ପହଲି ଜେନା, ଦୁଃଶାସନ ଜେନା ବି ଆମ ଭିତରେ ଆଉ ନାହାନ୍ତି । ଏମାନେ ଶଙ୍କରପୁରର ପୁଅ ଥିଲେ, ଏବଂ ବୀରମାଟି ଶଙ୍କରପୁର ଥିଲା ସେମାନଙ୍କର ମାଆ । ସେମାନଙ୍କ ଠାରୁ ଶକ୍ତି ସଂଗ୍ରହ କରୁଥିଲେ ସେମାନେ । ମୁଁ କଲେଜକୁ ଆସିଲା ବେଳକୁ ଚାନ୍ଦନିଚୌକରେ ପାର୍ଟି କମ୍ୟୁନ ଥାଏ । ଗଙ୍ଗାଧର ରଥଙ୍କ ମାଆ, ସମସ୍ତଙ୍କର ବୋଉ ସେଇଠି ଥାଆନ୍ତି, ସମସ୍ତଙ୍କର ହେପାଜତ, ପରିଚର୍ଯ୍ୟା କରିବା ପାଇଁ । ଶଙ୍କରପୁରର ସାଥୀମାନେ ପରିବା, ଚାଉଳ ଯୋଗାନ୍ତି ପାର୍ଟି କ୍ୟାଡ଼ରମାନଙ୍କ ଚଳିବା ପାଇଁ ।

ଶଙ୍କରପୁର ବହୁ ସମ୍ମିଳନୀର ପୀଠ ।

''ଚାଷୀ ଭାଇରେ ମୁହିଁ ତୋ ପଦେ ଋଣୀ,
କରି ପୁରପଲ୍ଲୀ ଖାଲି ଆସିଛୁ ଚାଲି,
ହାତୁଡ଼ି ଦାଆ ପତାକା ଡାକରା ଶୁଣି ।''

ମନମୋହନ ମିଶ୍ରଙ୍କ ଉଦାତ୍ତ କଣ୍ଠର ଝଂକାର ଆଜି ବି ପ୍ରତିଧ୍ୱନିତ ହୁଏ ସେଇ ବାଟରେ ଗଲାବେଳେ ।

କମ୍ୟୁନିଷ୍ଟ ପାର୍ଟିର ପ୍ଲେନମ୍ ସେଠାରେ ବସିଛି ଯେପରି ପୁଲିସ ଖୋଜୁଥିବା କମ୍ୟୁନିଷ୍ଟ ପାର୍ଟିର ନେତା ଓ କର୍ମୀମାନଙ୍କୁ ଏହା ଆଶ୍ରୟ ଦେଇଛି ସେଇପରି । ବ୍ରଜ ପଟ୍ଟନାୟକ, ଦୀନବନ୍ଧୁ ମିଶ୍ର, ଦୁର୍ଗା ମହାନ୍ତି ପୁଲିସର ହାତକଡ଼ା ଥାଇ ଖସି ପଳାଇଛନ୍ତି ସେଇଠି ଏବଂ ସମଗ୍ର ଶଙ୍କରପୁର ଅଞ୍ଚଳକୁ ସାମରିକ ବାହିନୀ ଘେରଉ କରି ସେମାନଙ୍କର ସଂଧାନ ପାଇ ନାହାନ୍ତି । ପୁଲିସ ଘେରଉ ଶଙ୍କରପୁର ବାସୀଙ୍କର ନିତିଦିନିଆ ଘଟଣାରେ ପରିଣତ ହୋଇଛି । ସ୍ତ୍ରୀ, ଝିଅ, ପିଲା, ଛୁଆ ସମସ୍ତେ ପୁଲିସ ଆକ୍ରମଣରେ ଅଭ୍ୟସ୍ତ ହୋଇଯାଇଛନ୍ତି ।

ଶଙ୍କରପୁର ଠାରୁ କାଠଯୋଡ଼ୀ କୂଳରେ ଥିବା ନବ ମହାନ୍ତିଙ୍କ ପୁରୁଣା କଡ଼େଇ କାରଖାନା (ବଂଧୁଘର ନାମରେ ଯାହା କମ୍ୟୁନିଷ୍ଟ ପାର୍ଟିରେ ପରିଚିତ) ଅଞ୍ଚଳ ଦୁର୍ଭେଦ୍ୟ ପାଲଟିଥିଲା । କାଠଯୋଡ଼ୀ, କୁଆଖାଇ ପୋଲ ହୋଇ ନାହିଁ । ଖରାଦିନେ ତାକୁ ଟପିଗଲେ ପଡ଼ିବ ପଟିଆ ଯାହା କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ଦୁର୍ଗ ନାମରେ ଖ୍ୟାତ ଥିଲା ।

''ଚଳ କୋଦାଳ, ଚଳ କୋଦାଳ,
ପଟିଆବନ୍ଧେ, ଛନ୍ଦେ ଛନ୍ଦେ
ଭରିଦେ ମାଟି ଲାଲ''

ମନମୋହନ ମିଶ୍ର-ମାଧବ ସିଂଙ୍କ କଣ୍ଠରେ ଧ୍ୱନିତ ଏଇ ଗୀତ ବାରଙ୍ଗରୁ ଶୁଭେ ମଞ୍ଚେଶ୍ୱର ପର୍ଯ୍ୟନ୍ତ । ତାହାର ସିଲୁ ହୋଇ ଠିଆହୁଏ ଶଙ୍କରପୁର । ତା'ର ଅନ୍ୟତମ ନେତା ହେଉଛନ୍ତି ଶମ୍ଭୁ ବିଶ୍ୱାଳ ।

ବହୁ ସଂଗ୍ରାମର ସ୍ମୃତି ଚିହ୍ନ ବହନ କରେ ଏଇ ଶଙ୍କରପୁର । ଖାଲି କମ୍ୟୁନିଷ୍ଟ ପାର୍ଟିର ସଂଗ୍ରାମରେ ନୁହେଁ ଚାଷୀ, ମଜଦୁର, ଛାତ୍ର, ଜାତୀୟ ଆନ୍ଦୋଳନରେ ଶଙ୍କରପୁରର ଅବଦାନ ଅବିସ୍ମରଣୀୟ ।

ଆଇ.ଏନ.ଏ. ସୈନ୍ୟମାନଙ୍କ ମୁକ୍ତି ପାଇଁ ଶୋଭାଯାତ୍ରା, ଧର୍ମଘଟ, ଡୁବୁମାକୁ ଓଡ଼ିଶାର ବୋଲି ଦାବି କରି ଶୋଭାଯାତ୍ରା, ବାରଙ୍ଗ କାଚ କାରଖାନା ଧର୍ମଘଟ ସହିତ ଐକ୍ୟବଦ୍ଧ ସଂଗ୍ରାମରେ ଶଙ୍କରପୁରର ଅବଦାନ ବିପୁଳ । ୧୯୫୧ ଛାତ୍ର ଧର୍ମଘଟ ।

ଛାତ୍ରମାନଙ୍କ ଉପରେ ମିଲିଟାରୀ ପୁଲିସର ଆକ୍ରମଣର ପ୍ରତିରୋଧ କରି ଛାତ୍ରମାନଙ୍କ ପାଖରେ ଠିଆ ହୋଇଥିଲେ ଶଙ୍କରପୁରର ଜନସାଧାରଣ । ଏହି ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଯୁବ କଂଗ୍ରେସ ନେତା ପ୍ରବୀର ପାଲିତଙ୍କୁ କମ୍ୟୁନିଷ୍ଟ ହେବାରେ ପରିଣତ କରିଥିଲା । ୧୯୫୬ର ସୀମା ଆନ୍ଦୋଳନ ବେଳେ ଗୁର୍ଖା, ମାଲବାର ସ୍ପେଶିଆଲ ପୋଲିସର ଆକ୍ରମଣ ବେଳେ ଶଙ୍କରପୁରବାସୀ ବୀରତ୍ୱର ସହିତ ସଂଗ୍ରାମ କରିଥିଲେ ତାହାର ପ୍ରତିରୋଧ କରି । ରକ୍ତମୁଖା ସୈନ୍ୟବାହିନୀର ସମ୍ମୁଖୀନ ହେବାପାଇଁ ସେମାନେ ଆସିଥିଲେ ହଜାର ହଜାର ସଂଖ୍ୟାରେ ରାଜରାସ୍ତା ଉପରକୁ, ଜୀବନକୁ ବାଜି ରଖି । ସେମାନଙ୍କର ନେତା ଥିଲେ ଶମ୍ଭୁ ବିଶ୍ୱାଳ ।

ଇତିହାସ ତାକୁ କେତେ ମନେରଖିବ ମୁଁ କହିପାରିବି ନାହିଁ । କିନ୍ତୁ ଆମେ ସବୁ ଯେଉଁମାନେ ସେଇ ସଂଗ୍ରାମରେ ସ୍ନାତ ସେମାନଙ୍କ ସ୍ମୃତିରୁ ତାହା ଭୁଲିବ ନାହିଁ ।

''ଆମେ ପଟିଆ ପୁଏ ଭୋକିଲା,
ଘରେ ଘରେ ତୁମ ହାରକିନି କାଚ,
ଆମ ଲହୁରେ ଭିଜିଲା''

ଶଙ୍କରପୁରର ଯୁବକମାନେ ଏଇ ଗୀତ ଗାଇ କଟକ ସହର ପରିକ୍ରମା କରୁଥିଲେ ବାରଙ୍ଗ କାଚ ଶ୍ରମିକମାନଙ୍କ ସହିତ । ତାହା କ'ଣ କେହିକେବେ ଭୁଲି ପାରିବ ?

ଶଙ୍କରପୁର ହୋଇଆସିଛି କମ୍ୟୁନିଷ୍ଟ ପାର୍ଟିର ସମ୍ମିଳନୀ ପୀଠ । ବିଶେଷତଃ ବେଆଇନ ସଭା ସମିତିର । ବହୁଥର ଶଙ୍କରପୁର ମୋତେ ଆଶ୍ରୟ ଦେଇଛି । ମୋ ଭଳି ବହୁ ପଳାତକଙ୍କ ପାଇଁ ଏହା ଆଶ୍ରୟସ୍ଥଳୀ ପାଲଟିଛି । ଶିବାଜୀ ପଟ୍ଟନାୟକ, ନନ୍ଦିନୀ ଶତପଥୀ, ନିରୂପମା ରଥ, ପ୍ରହ୍ଲାଦ ସେଠୀ, ପ୍ରହ୍ଲାଦ ପଣ୍ଡା ବହୁ ବ୍ୟକ୍ତିଙ୍କର ପ୍ରଭୂତ ଅଭିଜ୍ଞତା ରହିଛି ।

ପ୍ରବାଦ ପୁରୁଷ ପୁଲିସ ଅଫିସର ୰ ଗୌରକୃଷ୍ଣ ମହାନ୍ତି ଘର କରି ରହିଛନ୍ତି ସେଇଠି । ଏବେ ତାହା ଗହଳିଆ ହୋଇଗଲାଣି । ସେତେବେଳେ ସେ ଘରଟି ଥିଲା ଏକୁଟିଆ । ସେ ଥିଲେ ମୋର ଶୁଭେଚ୍ଛୁ ଏବଂ ବାନ୍ଧବ । ବହୁତ ଥର ପଳାତକ ଭାବରେ ମୁଁ ତାଙ୍କ ଘରକୁ ଯାଇଛି ଏବଂ ଖସି ପଳାଇଛି ସେଇଠାରୁ ପୁଲିସ ଦେଖି । ଗୌରବାବୁ ପୁଲିସକୁ କହନ୍ତି, ସେ ଆସିଥିଲା, ଏଇ ତ ପଳାଉଛି, ଦୌଡୁନା ତା ପଛରେ ? ଉତ୍ତର ମିଳିବ– ସାର୍, ସେଇଟା ପରା ଶଙ୍କରପୁର । ହଜାରେ ଖଣ୍ଡେ ନହେଲେ ପଶିବୁ କେମିତି ? ତା'ହେଲେ ବୁଝୁଛତ ମୋ ଅବସ୍ଥା ? ଗୌରବାବୁ କହିବେ ସେମାନଙ୍କୁ ।

ଏସବୁ ପଛରେ ଥିବେ ନିଶ୍ଚିତ ଭାବରେ ଶମ୍ଭୁ ବିଶ୍ୱାଳ, ଅରୁଣ ବିଶ୍ୱାଳ, ଅଧିକାରୀ

ପ୍ରଭୃତି । ସେମାନେ ବିଭିନ୍ନ ଗୁପ୍ତ ଡେନ୍ ସହିତ ସଂଯୋଗକାରୀ ମଧ୍ୟ । ଲାବଣ୍ୟ ଅଛି କି ନାହିଁ ଜାଣି ନାହିଁ, ଲାବଣ୍ୟ ଏଇ ସଂଯୋଗକାରୀଙ୍କ ଲିଡର । କିନ୍ତୁ ସୁପ୍ରିମୋ ହେଲେ ଶମ୍ଭୁ ବିଶ୍ୱାଳ ।

ତାଙ୍କ ସହିତ ଏକାଠି ଅନେକ ଦିନ କଟିଛି ଜେଲଖାନା ଭିତରେ । ଜେଲ ଭିତରେ କାରିକେଡ଼ ରଚନା କରିଛୁ, ଅନଶନ କରିଛୁ । ଶମ୍ଭୁ ଦା କିନ୍ତୁ ଜଗିଥିବ ଆମ ଭଳି ପିଲାମାନଙ୍କୁ । ସେ ପରା ବଡ଼ ଆମଠାରୁ । ମାଛ ଝୋଳରେ ମାଛକୁ ବୁଡ଼ାଇ ଖୁଆଇବ । ଆଉ ହସିବ ଏକ ପ୍ରାଣ ଖୋଲା ହସ ।

ପୁଅ ବିବାହକୁ ଡାକିଥିଲା । ମନା କରିହେବ କେମିତି ? ବୋହୂକୁ ନେଇକରି ଯିବୁ । ତାଗିଦ୍ କରିବ । ଆମ ବୋହୂ କେତେ ପାଠପଢ଼ିଛି, କେଡ଼େ ବଡ଼ ପବ୍ଲିକ ସର୍ଭିସ କମିଶନର ସଭ୍ୟ ହୋଇଛି । ସମସ୍ତଙ୍କୁ ପରିଚୟ କରାଇଦେବ ଶମ୍ଭୁ ଦା । ଆପଣାର ଲୋକ ସତେ ଯେପରି । ତାକୁ ହିଁ କହନ୍ତି ସାଥୀ, ସହଯୋଦ୍ଧା, କମ୍ରେଡ଼ ।

ସେ ଆଉ ନାହାନ୍ତି ।



# ଚଳଚିତ୍ରର ମୋଗଲ

ଚଳଚିତ୍ର ଜଗତର ମୋଗଲ ଶିବାଜୀ ଗଣେଶନ୍ ଆଉ ନାହାନ୍ତି । ୨୧ ଜୁଲାଇ ୨୦୦୧ ମସିହା ହେଉଛି ତାଙ୍କ ଜୀବନର ଅନ୍ତିମ ଦିନ ।

ଶିବାଜୀ ଗଣେଶନ୍ ୧୯୨୭ ମସିହା ଅକ୍ଟୋବର ୧ ତାରିଖରେ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ବାପା ଥିଲେ ସ୍ୱାଧୀନତା ସଂଗ୍ରାମୀ ଏବଂ ଭାରତୀୟ ଜାତୀୟ କଂଗ୍ରେସର ସଭ୍ୟ । ସେତେବେଳର କଂଗ୍ରେସ କର୍ମୀ, ସୁତରାଂ ପରିବାରର ସ୍ୱଚ୍ଛଳତା ଆଦୌ ନଥିଲା । ଘରେ ପାଞ୍ଚଭାଇ, ତିନି ଭଉଣୀ । ପ୍ରାଥମିକ ସ୍କୁଲରେ ଶିବାଜୀ ଗଣେଶନ ପାଠ ପଢୁଥିଲା ବେଳେ ବାପାଙ୍କର ପରଲୋକ ହୋଇଯାଏ ଏବଂ ଘରର ଦାୟିତ୍ୱ ପଡ଼ିଯାଏ ତାଙ୍କ ମୁଣ୍ଡ ଉପରେ । ପାଠପଢ଼ାରେ ଡୋର ବଂଧାହୁଏ । ସେ ଏକ କମାରଶାଳାରେ ସହଯୋଗୀ ଭାବରେ କାମ କରନ୍ତି ଏବଂ ପରିବାର ପୋଷଣ କରନ୍ତି ।

ସମୟ ଅତିକ୍ରାନ୍ତ ହୁଏ । ଶିବାଜୀଙ୍କର ପିଲାଦିନୁ ଥିଲା ନାଟକ ପ୍ରତି ଆଗ୍ରହ । ମାତ୍ର ନଅବର୍ଷ ବୟସରେ ସେ ଅଭିନୟ କରିବା ଆରମ୍ଭ କରିଥିଲେ । ସେତେବେଳେ ୱାଇ.ପି. ପିଲାଇ ବାଳ ଗଣସଭା ନାମରେ ଏକ ନାଟ୍ୟଦଳ ଗଠନ କରିଥାନ୍ତି । ଏହାର ପ୍ରସିଦ୍ଧି ଥିଲା ବେଶ୍ । ଶିବାଜୀଙ୍କ ଉପରେ ଆଖି ପଡ଼େ ପିଲାଇଙ୍କର । ସେ ତାଙ୍କୁ ତାଙ୍କ ନାଟ୍ୟ ଗ୍ରୁପରେ ସାମିଲ କରିନିଅନ୍ତି । ଶିବାଜୀ ଆଉ ପଛକୁ ଫେରି ଅନେଇ ନାହାନ୍ତି । କାରଣ ଏହି ନାଟ୍ୟଦଳ ସେତେବେଳେ ଅଭିନୟର 'ନାଳନ୍ଦା' ନାମରେ ପରିଚିତ ଥିଲା ।

୧୯୫୨ ମସିହାରେ ସେ ପ୍ରଥମେ ଚଳଚିତ୍ରରେ ଅଭିନୟ କରନ୍ତି । ଡିଏମ୍‌କେର ସଭାପତି ଏମ୍. କରୁଣାନିଧିଙ୍କ ଦ୍ୱାରା ଲିଖିତ 'ପରାଶକ୍ତି' ନାମକ ଚଳଚିତ୍ର ତାଙ୍କୁ ଏଇ ସୁଯୋଗ ଦେଇଥିଲା । ଜୀବନରେ ତିନିଶହରୁ ଉର୍ଦ୍ଧ୍ୱ ଚଳଚିତ୍ରରେ ଅଭିନୟ କରିଛନ୍ତି ଶିବାଜୀ ଗଣେଶନ୍ । ଅଭିନୀତ ଚରିତ୍ରମାନଙ୍କର ଆଧାତ୍ମିକ ସ୍ଫୁରଣ, ତୀବ୍ର ବିଦ୍ରୁପ, ସରଳ ଅଭିନୟ ତାଙ୍କୁ ତାମିଲ ଚଳଚିତ୍ରର ମୋଗଲରେ ପରିଣତ କରିଥିଲା ।

ଦାଦାସାହେବ ଫାଲ୍‌କେ ଆୱାର୍ଡ଼ ଠାରୁ ଆରମ୍ଭ କରି ଫରାସୀ ସରକାରଙ୍କର ସେଭାଲିଅର (Chevalior) ଆୱାର୍ଡ଼ ପର୍ଯ୍ୟନ୍ତ ବହୁ ଆୱାର୍ଡ଼ ତାଙ୍କୁ ମଣ୍ଡନ କରିଛନ୍ତି । ଫରାସୀ ଦେଶର ସର୍ବୋତ୍ତମ ଆୱାର୍ଡ଼ ତାଙ୍କୁ ମୁଗ୍ଧ କରିଛି କାରଣ ତାଙ୍କ ମତରେ ''କଳା ଓ ସଂସ୍କୃତିର ମାଟି'' ଫରାସୀ ମାଟିର ଏଇ ଉପହାର ତାଙ୍କର ଅଭିନୟର ପ୍ରକୃତ ସ୍ୱୀକୃତି । ଦାଦାସାହବ ଫାଲ୍‌କେ ଆୱାର୍ଡ଼ ମିଳିଥିଲା ୧୯୯୭ ମସିହାରେ, ତା' ପୂର୍ବରୁ ୧୯୯୫ ମସିହାରେ ସେ ଫରାସୀ ଦେଶର ପୁରସ୍କାର ପାଇ ସାରିଥିଲେ । ତେଣୁ ଦାଦାସାହେବ ଫାଲ୍‌କେ ଆୱାର୍ଡ଼କୁ ସେ ତିକ୍ତତାର ସହିତ ଗ୍ରହଣ କରିଥିଲେ କାରଣ ଏହି ଆୱାର୍ଡ଼ ତାଙ୍କୁ ବହୁ ବର୍ଷ ପୂର୍ବରୁ ମିଳିବା ଉଚିତ ଥିଲା ।

ଶିବାଜୀ ଗଣେଶନ୍ ଅନେକ ତାମିଲ ଅଭିନେତା ଅଭିନେତ୍ରୀଙ୍କ ପରି ଚଳଚିତ୍ର ସହିତ ରାଜନୀତିରେ ମଧ୍ୟ ଅଂଶଗ୍ରହଣ କରିଥିଲେ କିନ୍ତୁ ସେଥିରେ ବିଶେଷ ସାଫଲ୍ୟ ଅର୍ଜନ କରିପାରି ନଥିଲେ । ପ୍ରଥମେ ସେ ଆନ୍ନାଦୁରାଇଙ୍କ ସହିତ ଡ୍ରାଭିନ୍ କାଝାଗାମର ପ୍ରତିଷ୍ଠାତା ଇ.ଭି.ରାମସ୍ୱାମୀ ପ୍ରେରିଆରଙ୍କ ସହିତ ରାଜନୀତିରେ ଯୋଗ ଦେଇଥିଲେ । କିନ୍ତୁ ରାଜନୀତି ତାଙ୍କୁ ସୁହାଇଲା ନାହିଁ । କଂଗ୍ରେସ ଦଳ ବା ଜନତା ଦଳ ସବୁଦଳ ସହିତ ସେ ଯୋଗ ଦେଇଛନ୍ତି କିନ୍ତୁ ତିକ୍ତ ଅନୁଭୂତି ସହିତ ସେଥିରୁ ନିଷ୍କ୍ରାନ୍ତ ହୋଇଯାଇଛନ୍ତି ।

ଲତା ମୁଙ୍ଗେସ୍କରଙ୍କର ସେ ଥିଲେ 'ରାକ୍ଷୀ ଭାଇ' । ରାକ୍ଷୀ ପୂର୍ଣ୍ଣମୀ ପୂର୍ବରୁ ତାଙ୍କର ପରଲୋକ ସଂବାଦ ପାଇ ଲତା ଦୁଃଖରେ ମ୍ରିୟମାଣ ହୋଇ କହିଛନ୍ତି ଯେ ଏବର୍ଷ ଆଉ ରାକ୍ଷୀ ବାନ୍ଧିବା ପାଇଁ ଭାଇଟିଏ ମିଳିବେ ନାହିଁ ।

ଶିବାଜୀ ଗଣେଶନ୍ ଥିଲେ କଲୋସସ୍ । ଚଳଚିତ୍ର ଜଗତର କଲୋସସ୍ । ତାଙ୍କର ପରଲୋକରେ ସେଇ କଲୋସସ୍ ଅନ୍ତର୍ହିତ ।



# ମହାକାଳର ଦଲକାଏ ପବନ

ହଠାତ୍ ଖବର ମିଳିଲା ଯେ ବନ୍ୟ ବିଭାଗର ଅବସରପ୍ରାପ୍ତ ପଦସ୍ଥ ଅଧିକାରୀ ଶ୍ରୀ ଶ୍ୟାମସୁନ୍ଦର ଦାସ ଆଉ ନାହାନ୍ତି । ହୃଦଯନ୍ତ୍ର କ୍ରିୟା ବନ୍ଦ ହୋଯିବା ଯୋଗୁଁ ସେ ତାଙ୍କର ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ ବାସଗୃହରେ ମଇ ମାସ ୧୨ ତାରିଖ, ୨୦୦୧ ମସିହାରେ ଆମକୁ ଛାଡ଼ି ଚାଲିଯାଇଛନ୍ତି ।

ମନ ପହଁରିଗଲା ବହୁଦିନ ତଳକୁ । ଆମେ ଏକା ହାଇସ୍କୁଲର ଛାତ୍ର । ଭଂଜନଗର (ତତ୍‌କାଳୀନ ରସେଲକୋଣ୍ଡା) ସହରର ହାଇସ୍କୁଲ (ଯାହା ବର୍ତ୍ତମାନ ଉପେନ୍ଦ୍ରଭଂଜ ହାଇସ୍କୁଲ ନାମରେ ପରିଚିତ) ସେ ଆଉ ମୁଁ ଏକା ସ୍କୁଲରେ ପଢୁଥିଲୁ । ସେ ମୋ ଠାରୁ ଦୁଇ ଶ୍ରେଣୀ ଉପରେ ପାଠ ପଢୁଥିଲେ । ମୋର ଠିକ୍ ମନେ ପଡୁନାଇଁ । କିନ୍ତୁ ମନେହେଉଚି ଟିକିଏ ଟିକିଏ ଯେ ସେ ପ୍ରସିଦ୍ଧ ଇଞ୍ଜିନିଅର ୰ ମମତାଜ ଅଲ୍ଲୀଙ୍କ ସହପାଠୀ ଥିଲେ ।

୧୯୪୭-୪୯ ମସିହା ବ୍ୟାଚରେ ସେ ଭାରତୀୟ ଫରେଷ୍ଟ ସର୍ଭିସରେ ଯୋଗ ଦିଅନ୍ତି ଏବଂ ପରବର୍ତ୍ତୀ କାଳରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟକୁ ଯାଆନ୍ତି ଉଚ୍ଚତର ଶିକ୍ଷା ପାଇବା ପାଇଁ ।

ବନ୍ୟ ବିଭାଗରେ ସେ ଜଣେ ଏକାଡେମିକ୍ ବା ତାତ୍ତ୍ୱିକ ଭାବରେ ଗଣା ହେଉଥିଲେ । ଅରଣ୍ୟର ତତ୍ତ୍ୱ ସଂପର୍କରେ ତାଙ୍କର ଜ୍ଞାନ ଥିଲା ପ୍ରଭୂତ । ହୃଦୟ ଏବଂ ମସ୍ତିଷ୍କର ସେ ଥିଲେ ଏକ ବିରାଟ ସମନ୍ୱୟ ।

ଶାନ୍ତ, ଧୀର ଶ୍ୟାମସୁନ୍ଦର ନିଜର ଭାରସାମ୍ୟକୁ ସବୁବେଳେ ଅତୁଟ ରଖିପାରୁଥିଲେ । କୌଣସି କଥା ତାଙ୍କୁ ଉତ୍ତେଜିତ କରୁ ନଥିଲା । କାହାରି ବିଷୟରେ କିଛି ଗପିବା ତାଙ୍କର ନୀତି ବିରୁଦ୍ଧ ଥିଲା । ତଳ ଉପର ସବୁ ଶ୍ରେଣୀର କର୍ମଚାରୀଙ୍କ ସେ ପ୍ରିୟଭାଜନ ଥିଲେ । କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ସେ ଥିଲେ ଶୃଙ୍ଖଳିତ ଏବଂ କଠୋର ପରିଶ୍ରମ ଥିଲା ତାଙ୍କର ଜୀବନର ବ୍ରତ ।

କାର୍ଯ୍ୟରେ ଅବହେଳାକୁ ସେ ଆଦୌ ବରଦାସ୍ତ କରିପାରୁ ନଥିଲେ ।

ଜଳ ସୃଷ୍ଟି ସଂପର୍କରେ ତାଙ୍କର ଜ୍ଞାନଥିଲା ପ୍ରଭୂତ । ସେଇଯୋଗୁଁ ସେ ଜଳଉତ୍ସ ଖୋଜିବା ପାଇଁ ନିମନ୍ତ୍ରଣ ପାଇଥିଲେ ବିଭିନ୍ନ ସ୍ଥାନରୁ । ଦେଶବିଦେଶ ବହୁ ସ୍ଥାନ ସେ ବୁଲିଛନ୍ତି କାମରେ ଓ ଭ୍ରମଣରେ ।

ହସଖୁସିଆ ମଣିଷ । ସେ ଥିଲେ ମୋର ପାରିବାରିକ ବଂଧୁ । ଯଦିଓ ସେ ମୋ ବାପାଙ୍କର ସହକର୍ମୀ ଥିଲେ କିନ୍ତୁ ବୟସରେ ଆମମାନଙ୍କର ସମସାମୟିକ ଥିବା ହେତୁ ଆମ ସହିତ ସଂପର୍କ ଥିଲା ଘନିଷ୍ଠ, ବାପାଙ୍କ ସହିତ ସଂପର୍କ ଅଫିସିଆଲ ।

ଅବସର ନେଇଛନ୍ତି, ଚିଫ୍ କନ୍‌ଜରଭେଟର ପଦବୀରୁ । କିଛିକାଳ ସେ ସିଡ଼ା (SIDA)ର ସାମାଜିକ ବନୀକରଣ ପ୍ରକଳ୍ପର ଉପଦେଷ୍ଟା ଥିଲେ । ତାଙ୍କ ଦ୍ୱାରା ପ୍ରଣୀତ ପ୍ଲାଣ୍ଟେସନ ମାନୁଆଲ (Plantation manual) ବନ୍ୟ ବିଭାଗର ଅନ୍ୟତମ ଗାଇଡିଙ୍ଗ ଲାଇଟ୍ ବା ଦିଗବାରେଣୀ ଆଲୁଅ ।

ସେ ଚାଲିଯାଇଛନ୍ତି ସେଇଠାକୁ, ଯେଉଁଠାରୁ ଆଉ କେବେ ଫେରି ନାହାନ୍ତି । କିନ୍ତୁ ସମୟର ଅରଣ୍ୟରେ ସେ ହଜିଯିବେ ନାହିଁ । ସେଇ ଅରଣ୍ୟ ଭିତରେ ତାଙ୍କର କଥା ଶୁଭିବ, ଗାଇଡିଂ କରିବ ତାଙ୍କର ସହକର୍ମୀ ମାନଙ୍କୁ ।

ତାଙ୍କର ପରଲୋକରେ ହଠାତ୍ ଯେପରି ଦମକାଏ ପବନ ବୋହିଗଲା । ଅରଣ୍ୟର ବୁକୁ ଉପରେ । ଦମକାଏ ପବନ, ମହାକାଳର ପବନ ।

ଅସ୍ତମିତ ଜୀବନର ସୂର୍ଯ୍ୟ ।



# ବର୍ଣ୍ଣାଢ୍ୟ ଅଧ୍ୟାପକର ବିଦାୟ

ସଦାନନ୍ଦ ମିଶ୍ର ଆଉ ନାହାନ୍ତି । ୧୯ ଜୁନ୍, ୨୦୦୧ । ସକାଳ ହୋଇ ନାହିଁ । ଇମିତି ଏକ ଖବର ପାଇ ଚମକ ଲାଗିଲା ।

କାଲି ବିଳମ୍ବିତ ରାତ୍ରିରେ ଖବର ପାଇଥିଲି ଯେ ସେ ଗୁରୁତର ମୋଟର ଦୁର୍ଘଟଣାରେ ସଂଜ୍ଞାହୀନ ଅବସ୍ଥାରେ ମୃତ୍ୟୁ ସହିତ ସଂଗ୍ରାମ କରୁଛନ୍ତି କଟକ ମେଡ଼ିକାଲରେ ।

ଶ୍ରୀମତୀ ମନୋରମା ମହାପାତ୍ର ଫୋନ କରୁଛନ୍ତି ଏଇ ଦୁଃସମ୍ବାଦର କଥା । ବହୁ ବଂଧୁ ଫୋନରେ ପଚାରୁଛନ୍ତି । କାରଣ କେହି ବିଶ୍ୱାସ କରିପାରୁ ନାହାନ୍ତି ଏଇ ସମ୍ବାଦକୁ ।

ମନ ପହଁରିଗଲା ଦୂର ଅତୀତକୁ । ଯାଇ ତ ପାରିବି ନାହିଁ ଦେଖିବାକୁ । କିନ୍ତୁ ମନ କ'ଣ ମାନୁଚି ? ରେଭେନ୍ସା କଲେଜ, ୧୯୫୬ ମସିହାର କଥା ବୋଧହୁଏ । ପିଲାଟିଏ ଆସି ଠିଆ ହେଲା । ପଚାରିଲା ସାର୍, ଆପଣ ଆଜି ବକ୍ତୃତା ଦେଉଥିଲେ । ଗୋଟିଏ ଇଂରାଜୀ ଶବ୍ଦ କହିଲେ Water-tight compartment. ସେ ଶବ୍ଦର ପ୍ରକୃତ ଅର୍ଥ କ'ଣ ? ଅନେଇଲି ପିଲାଟିକୁ । ଶବ୍ଦର ଅର୍ଥ ବୁଝାଇଦେଇ ପଚାରିଲି, ନାଁ କଅଣ ? ସେ କହିଲା ସଦାନନ୍ଦ ମିଶ୍ର ।

ତମେ ନିଶ୍ଚୟ ଦିନେ ଇଂରାଜୀ ସାହିତ୍ୟରେ ପାଣ୍ଡିତ୍ୟ ଲାଭ କରିବ ।

ସମୟ ଗଡ଼ି ଚାଲିଛି । ସଦାନନ୍ଦ ମିଶ୍ର ଇଂରାଜୀ ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କରିଛନ୍ତି । ଇଂରାଜୀ ସାହିତ୍ୟରେ ଅଧ୍ୟାପକ ହୋଇଛନ୍ତି ।

ସେ ନିଜେ ଡକ୍ଟରେଟ କଲେ ବହୁ ବିଳମ୍ବରେ । କିନ୍ତୁ ମୁଁ ନିଜେ ଦେଖିଛି ଅନେକ ଅଧ୍ୟାପକ, ଛାତ୍ର ତାଙ୍କ ଠାରୁ ଲେଖେଇ ନେଇଛନ୍ତି ଆପଣାର ସନ୍ଦର୍ଭ । ସଂଶୋଧନ କରିବାକୁ ଦେଇଛନ୍ତି ଆପଣାର ଥିସିସ୍‌କୁ । ଅନେକ ଅଧ୍ୟାପକ ତାଙ୍କ ଅଧୀନରେ ଗବେଷଣା କରୁଥିବା ଛାତ୍ରଛାତ୍ରୀମାନଙ୍କୁ ପଠାଇଛନ୍ତି ସଦନନ୍ଦ ମିଶ୍ରଙ୍କ ପାଖକୁ ସଂଶୋଧନ

କରେଇନେବା ପାଇଁ ବା କ'ଣ ଯୋଡ଼ାଯିବ, କ'ଣ କଟାଯିବ ତାହା ଦେଖାଇନେବା ପାଇଁ ଅନୁରୋଧ କରିଥିବା ମୁଁ ନିଜେ ଦେଖିଛି ।

ସେ କେବଳ ଇଂରାଜୀ ସାହିତ୍ୟରେ ପ୍ରବୀଣ ନଥିଲେ । ଜାତୀୟ ଆନ୍ତର୍ଜାତୀୟ ସମ୍ମିଳନୀ ସଂଗଠିତ କରିବାରେ ମଧ ପ୍ରବୀଣ ଥିଲେ । ତାଙ୍କର ଆନ୍ତର୍ଜାତିକ ଓ ଜାତୀୟସ୍ତରରେ ବହୁ ସଂଗଠନ ଓ ବ୍ୟକ୍ତିଙ୍କ ସହିତ ନିବିଡ଼ ସଂପର୍କ ଥିଲା । ସେଥିପାଇଁ ସେ ଅନେକ ବ୍ୟକ୍ତିଙ୍କର ଶ୍ରଦ୍ଧା ଓ ସମ୍ମାନ ଯେପରି ପାଉଥିଲେ, ବେଶ୍ କିଛି ଲୋକଙ୍କର ଚକ୍ଷୁଶୀଳ ମଧ ଥିଲେ । ସେ ବହୁ ଜାତୀୟ, ଆନ୍ତର୍ଜାତୀୟ ସମ୍ମିଳନୀରେ ପ୍ରତିନିଧିତ୍ୱ କରିଥିଲେ, ନିବନ୍ଧ ପାଠ କରିଥିଲେ, ବହୁ ଦେଶ ମଧ ପରିଭ୍ରମଣ କରିଥିଲେ । ବହୁ ବ୍ୟକ୍ତିଙ୍କୁ ନେଇ ସେ ବିଭିନ୍ନ ଦେଶ ପରିଭ୍ରମଣ କରିଥିଲେ । ଇନ୍ଦୋନେସିଆ, ଜାଭା, ଶ୍ରୀଲଙ୍କା ପ୍ରଭୃତି ଦେଶ ପରିଭ୍ରମଣ କରିବାର ସୁଯୋଗ ବହୁ ବ୍ୟକ୍ତି ତାଙ୍କର ସାହାଯ୍ୟ ଯୋଗୁଁ ପାଇଥିଲେ । ମାତ୍ର କିଛି ମାସ ତଳେ ସେ ଏକ ଭ୍ରମଣକାରୀ ଦଳକୁ ନେଇ ନେପାଳ ଯାଇଥିଲେ ।

ଆଗାମୀ ମାସରେ ତାଙ୍କର ଇଉରୋପକୁ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । କିଛି ପ୍ରତିନିଧିଙ୍କୁ ସାଙ୍ଗରେ ନେଇଯିବାର କାର୍ଯ୍ୟକ୍ରମ ଚୂଡ଼ାନ୍ତ କରିବା ପାଇଁ ସେ ପୁରୀରୁ ଭୁବନେଶ୍ୱର ଆସୁଥିବା ସମୟରେ ତାଙ୍କର ମୋଟରକାର ଏକ ଆମ୍ବ ବୋଝେଇ ଟ୍ରକ ସହିତ ସଂଘର୍ଷରେ ତାଙ୍କର ଓ ତାଙ୍କ ଡ୍ରାଇଭରର ମୃତ୍ୟୁ ହୋଇଗଲା । ଆନ୍ତର୍ଜାତିକ ସଂପର୍କ ପ୍ରତିଷ୍ଠାରେ ତାଙ୍କ ଭଳି ବ୍ୟକ୍ତି ଓଡ଼ିଶାରେ ଖୁବ୍ କମ୍ ଅଛନ୍ତି ।

ସଦାନନ୍ଦ ମିଶ୍ର ବର୍ଣ୍ଣାଢ଼୍ୟ ଥିଲେ । ତାଙ୍କର ଡ୍ରେସ୍, ରୁଚି ସବୁ ବର୍ଣ୍ଣାଢ଼୍ୟ ଥିଲା । କିନ୍ତୁ ସେ ସାଂସାରିକ ଦୃଷ୍ଟିରୁ ସଫଳ ହୋଇପାରି ନାହାନ୍ତି । ଇଂରାଜୀ ସାହିତ୍ୟର ଅଧାପକ ଭାବରେ ଅବସର ଗ୍ରହଣ କରିଥିଲେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରୁ । କିନ୍ତୁ ରହିବା ପାଇଁ ନିଜର ଘରଟିଏ କରିପାରି ନଥିଲେ । ବିଗତ ମହାବାତ୍ୟାରେ ତାଙ୍କର ସଯତ୍ନବର୍ଦ୍ଧିତ ବଗିଚା ସଂପୂର୍ଣ୍ଣ ବିଧ୍ୱସ୍ତ ହୋଇଯାଇଥିଲା ନିଜ ଗ୍ରାମରେ । ତାଙ୍କର ଜନ୍ମିତ ଗ୍ରାମ ଚାଟରା, ବାଲିଚନ୍ଦ୍ରପୁର ପାଖରେ । ପୁଅକୁ ସେ ପଠାଇଥିଲେ ସୁଇଡେନ୍‌କୁ, ସେଠାରେ ଇକୋ-ଫାର୍ମିଙ୍ଗ ଦେଖି ଗ୍ରାମରେ ସେଇ ପ୍ରକାର ଚାଷକରି ଲୋକଙ୍କୁ ଶିକ୍ଷାଦେବା ସକାଶେ । ତାଙ୍କର ଅନ୍ୟତମ ପୁତ୍ର ଦୁଲାଲ ଇଂଲଣ୍ଡରେ ସାମ୍ବାଦିକ ଏବଂ ସେଇ ସଂଲଗ୍ନ ବିଷୟରେ ଅଧାପକ ।

ସଦାନନ୍ଦଙ୍କ ପୁସ୍ତକ ପ୍ରତି ଥିଲା ଅସୀମ ଦୁର୍ବଳତା । ତେଣୁ ତାଙ୍କର ଲାଇବ୍ରେରୀ ଥିଲା ଏକ ଉନ୍ନତ ଲାଇବ୍ରେରୀ । ଖୁବ୍ କମ ଅଧାପକଙ୍କ ଘରେ ଏପରି ଲାଇବ୍ରେରୀ ଦେଖିବାକୁ ମିଳେ ।

ସମାଜର ବିଭିନ୍ନ ବିଭାବର ବହୁ ବ୍ୟକ୍ତିଙ୍କ ସହିତ ତାଙ୍କର ପରିଚିତି ଥିଲା ନିବିଡ଼ । ବହୁ ଅନୁଷ୍ଠାନ ସହିତ ମଧ୍ୟ ସେ ନିବିଡ଼ ଭାବରେ ଜଡ଼ିତ ଥିଲେ । ତାଙ୍କର ଏକମାତ୍ର କନ୍ୟା ଅଳକନନ୍ଦା ଇଂରାଜୀ ସାହିତ୍ୟର ଅଧ୍ୟାପିକା ରାଜଧାନୀ କଲେଜରେ ।

ଏଇମାତ୍ର କିଛିମାସ ତଳେ ସେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିଥିଲେ ଏବଂ ଓଡ଼ିଶାର ସାମାଜିକ-ସାଂସ୍କୃତିକ କାର୍ଯ୍ୟରେ ସଫଳ ଭାବରେ କାମକରିବା ପାଇଁ ଯୋଜନା ପ୍ରସ୍ତୁତ କରିଥିଲେ । ତାଙ୍କର କର୍ମମୁଖର ଜୀବନର ଏପରି କରୁଣ ପରିସମାପ୍ତି ସମସ୍ତଙ୍କୁ ସ୍ତବ୍ଧ କରିଦେଇଛି । ତାଙ୍କ ପରିବାର ସହିତ ମୋର ବ୍ୟକ୍ତିଗତ ସଂପର୍କ ଥିଲା ନିବିଡ଼ । ତାଙ୍କର ପରଲୋକରେ ମୁଁ ଜଣେ ଆତ୍ମୀୟଙ୍କୁ ହରାଇ ସ୍ତବ୍ଧ ହୋଇଛି, ଯେପରି ହେଉଛନ୍ତି ତାଙ୍କର ଅଗଣିତ ବନ୍ଧୁ, ଛାତ୍ର, ସହକର୍ମୀ ।

ଓଡ଼ିଶାର ସାଂସ୍କୃତିକ ଜଗତ ତାଙ୍କୁ ହରାଇ ଦରିଦ୍ର ହୋଇଯାଇଛି ।



# ଓଡ଼ିଶାର ପ୍ରଥମ ମହିଳା ରାଜବନ୍ଦୀ

ଓଡ଼ିଶାର ନାରୀଜାଗରଣର ଅନ୍ୟତମ ମହାରଥୀ ସରଳାଦେବୀ କାଲି ବିଦାୟ ନେଇଗଲେ ସଂସାରରୁ । ତାହା ପୂର୍ବରୁ ତାଙ୍କର ସ୍ୱାମୀ ପ୍ରଥିତଯଶା ଭାଗିରଥୀ ମହାପାତ୍ରଙ୍କର ପରଲୋକ ହୋଇଯାଇଛି ।

ସରଳାଦେବୀ ଏକାଧାରରେ ବାଗ୍ମୀ, ଲେଖିକା, ସ୍ୱାଧୀନଚେତା ଏବଂ ସ୍ୱାଧୀନତା ସଂଗ୍ରାମୀ । ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ତାଙ୍କର ଜନ୍ମ । ପିତା ବାଳମୁକୁନ୍ଦ କାନୁନଗୋ ଥିଲେ ଡେପୁଟି କଲେକ୍ଟର । ଆଭିଜାତ ସମାଜରେ ତାଙ୍କର ଜନ୍ମ । ବିବାହ ମଧ ହୋଇଥିଲା ଆଭିଜାତ ପରିବାରରେ । କିନ୍ତୁ ଆଭିଜାତର ଶିଖରରୁ ସ୍ୱାମୀ-ସ୍ତ୍ରୀ ଉଭୟେ ଓହ୍ଲାଇ ଆସିଥିଲେ ତଳକୁ, ସାଧାରଣ ରାଜପଥକୁ । ଜୀବନର ନୂତନ ସ୍ୱାଦର ମହକ ତାଙ୍କୁ ପାଗଳ କରିଥିଲା । ଉଭୟେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ଏବଂ ଜମିଦାର ପରିବାରର ଆଭିଜାତ୍ୟ ଠାରୁ ସେମାନେ ଦୂରେଇ ଯାଇଥିଲେ । ବିବାହ ହୋଇ ଯାଇଥିଲା ଖୁବ୍ କମ୍ ବୟସରେ । ବିଦ୍ୟାଳୟ ଶିକ୍ଷାର ସୁଯୋଗ ପାଇ ନଥିଲେ ସତ୍ୟ କିନ୍ତୁ ଜୀବନର ଶିକ୍ଷା ତାଙ୍କୁ ଉଦ୍‌ଭାସିତ କରିଥିଲା । ସେ ଆପଣାର ନିଜସ୍ୱ ଉଦ୍ୟମରେ ଇଂରାଜୀ, ସଂସ୍କୃତ, ବଙ୍ଗଳା, ହିନ୍ଦୀ, ଓଡ଼ିଆରେ କହି ଏବଂ ଲେଖି ପାରିଲେ । ତାଙ୍କର ବାଗ୍ମୀତାର ପ୍ରଭାବ ଜାତୀୟ ସ୍ୱାଧୀନତା ପାଇଁ ସଂଗ୍ରାମରେ ପରଖ ହୋଇଗଲା । ନାରୀ ମୁକ୍ତିର ଏହି ମହାନେତ୍ରୀ ଆଜିଜାତ ଛାଡ଼ିଲେ, ପରଦା ଛାଡ଼ିଲେ, ଛୁଆଁ ଅଛୁଆଁ ଭେଦଭାବ ଛାଡ଼ିଲେ । ଦେଶର ମୁକ୍ତିପାଇଁ ସର୍ବସ୍ୱ ତ୍ୟାଗ କରିବାର ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହେଲେ । ବିଶ୍ୱସାହିତ୍ୟର ପଠନ, ରବୀନ୍ଦ୍ରନାଥଙ୍କ ''ନା ଜାଗିଲେ ସବ୍ ଭାରତଲଳନା ଏ ଭାରତ ଆର୍ ଜଗେନା ଜାଗେନା'' ତାଙ୍କୁ ମହାମନ୍ତ୍ରରେ ବିମୋହିତ କରିଥିଲା । କୁନ୍ତଳାକୁମାରୀ ସାବତ୍‌ଙ୍କ ଲେଖା ତାଙ୍କୁ ଦେଇଥିଲା ପ୍ରେରଣା । ଓଡ଼ିଆ ଭାଷାରେ ବର୍ତ୍ତମାନର ବିସ୍ମୃତ 'ବାସନ୍ତୀ' ଉପନ୍ୟାସ ଛଅ ସାତଜଣ ଲେଖକଙ୍କର ସାମୁହିକ ସୃଷ୍ଟି । ସବୁଜ ସାହିତ୍ୟର ଏହା ଏକ ମାଇଲଖୁଣ୍ଟ । ସେଇ ଲେଖକ ଲେଖିକାମାନଙ୍କ ମଧରେ କାଳିନ୍ଦୀ ଚରଣ, ବୈକୁଣ୍ଠନାଥ, ଅନ୍ନଦାଶଙ୍କର ମଧରେ

ସରଳା ଦେବୀ ଆପଣାର ଅବଦାନରେ ଏହି ଉପନ୍ୟାସକୁ ନେଇ ଯାଇଥିଲେ ଅଗଣିତ ଓଡ଼ିଆ ଭାଷାର ପାଠକ ପାଠିକାମାନଙ୍କ ପାଖକୁ ।

ସ୍ୱାଧୀନତାର ଦୁନ୍ଦୁଭି ନିନାଦିତ । ମାତ୍ର ଷୋହଳବର୍ଷ ବୟସରେ ସେ ବାପୁଜୀଙ୍କ ଆହ୍ୱାନରେ ପ୍ରଥମ ନାରୀ ସୈନିକ ଭାବରେ ଆପଣାକୁ ଅନ୍ତର୍ଭୁକ୍ତ କଲେ । ବାଲ୍ୟବିବାହ, ପରଦାପ୍ରଥା, ଯୌତୁକ ବିରୁଦ୍ଧରେ ସେ ଓଡ଼ିଶାର ଗ୍ରାମେ ଗ୍ରାମେ ଅଭିଯାନ ଚଳାଇଲେ । ଗାନ୍ଧିଜୀ ଆସିଥିଲେ ଓଡ଼ିଶା । ନାରୀମାନଙ୍କ ପାଇଁ ଗାନ୍ଧିଜୀଙ୍କର ଦୁର୍ବାର ଡାକରା ସରଳାଙ୍କ ଭିତରେ ସୃଷ୍ଟି କରିଥିଲା ଶିହରଣ, ଦେଇଥିଲା ପ୍ରେରଣା ।

୧୯୩୦ ମସିହା ମାର୍ଚ୍ଚ ୧୬ ତାରିଖ । ପ୍ରାଦେଶିକ କଂଗ୍ରେସ କମିଟିର ଲୁଣମାରିବା ପାଇଁ ନିଷତ୍ତି । ନାରୀନେତ୍ରୀ ସରଳା ଦେବୀ ସତ୍ୟାଗ୍ରହର ବାର୍ତ୍ତା ଗ୍ରାମ ଗହଳରେ ପହଞ୍ଚାଇବା ପାଇଁ ନିଷତ୍ତି କଲେ । ଯୌବନଭରା ଦେହ । ପୁଲିସ ଅତ୍ୟାଚାରର ଭୟ ତଥାପି ତାଙ୍କୁ ସ୍ପର୍ଶକଲା ନାହିଁ । ସରଳା ଦେବୀ ଗିରଫ ହୋଇ ରହିଲେ କାରାଗାରରେ । ତାଙ୍କର ଗିରଫଦାରିର ପ୍ରତିବାଦରେ ବ୍ରହ୍ମପୁର ସହରରେ ହରତାଳ ହେଲା, ବ୍ରିଟିଶ ସରକାର ଭିତରେ ଆତଙ୍କ ସୃଷ୍ଟିକରି, ସେ ହେଲେ ଓଡ଼ିଶାର ପ୍ରଥମ ମହିଳା ରାଜନୈତିକ ବନ୍ଦୀ । ତାଙ୍କୁ ସୁଦୂର ଭେଲୋର ଜେଲରେ ବନ୍ଦୀ କରାଗଲା ।

୧୯୩୬ ମସିହା ନିର୍ବାଚନରେ ସେ ବିଜୟିନୀ ହେଲେ କଟକ ସହରରୁ । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ଲତିକା ଦେବୀ । ସେ ପ୍ରସିଦ୍ଧ ଆଡ଼ଭୋକେଟ ଏବଂ ଓଡ଼ିଶା ହାଇକୋର୍ଟର ପ୍ରଥମ ମୁଖ୍ୟ ବିଚାରପତି ୰ ଜଷ୍ଟିସ ବୀରକିଶୋର ରାୟଙ୍କ ସହଧର୍ମିଣୀ । ଭାଗ୍ୟକୁ ଶ୍ରୀ ବୀରକିଶୋର ରାୟ ଜଗତସିଂହପୁର ନିର୍ବାଚନ ମଣ୍ଡଳୀରେ ପ୍ରାର୍ଥୀ ଥିଲେ ଏବଂ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଭାଗିରଥୀ ମହାପାତ୍ର, ସରଳାଦେବୀଙ୍କ ସ୍ୱାମୀ । କଟକ ସହରରେ ଦୁଇ ସ୍ତ୍ରୀ ଏବଂ ଜଗତସିଂହପୁର ନିର୍ବାଚନ ମଣ୍ଡଳୀରେ ଦୁଇ ସ୍ୱାମୀଙ୍କ ଭିତରେ ଲଢ଼େଇ ସେତେବେଳେ ବେଶ୍ ଚହଳ ସୃଷ୍ଟି କରିଥିଲା । କୋଡ଼ିଏ ତାରିଖଦିନ ନିର୍ବାଚନ ହେଲା ଜଗତସିଂହପୁରରେ ଏବଂ ଶ୍ରୀ ଭାଗିରଥୀ ମହାପାତ୍ର ନିର୍ବାଚନରେ ବିପୁଳ ବିଜୟ ହାସଲ କଲେ । 'ନିଆଁଖୁଣ୍ଟା' ଲେଖିଲା—

''ଆଜି ରଣେ ପ୍ରାଣପ୍ରିୟ ହୋଇଲେ ନିହତ<br>ପ୍ରାଣପ୍ରିୟେ ବଂଚିଛନ୍ତି ପହିଲା ପର୍ଯ୍ୟନ୍ତ''

ପରମାସ ପହିଲା ଦିନ କଟକ ନିର୍ବାଚନ ମଣ୍ଡଳୀରେ ସରଳା ଦେବୀ ବିପୁଳ ବିଜୟଲାଭ କରିଥିଲେ ।

ସରଳା ଦେବୀ ଲେଖିକା ଥିଲେ ଏବଂ ଲେଖକର ସଂବେଦନଶୀଳତା ତାଙ୍କ

ଭିତରେ ଭରି ରହିଥିଲା । ଅନେକ ପୁସ୍ତକର ରଚୟିତା ସରଳାଦେବୀଙ୍କୁ ସାହିତ୍ୟିକ ଭାବରେ ଯେତିକି ପ୍ରତିଷ୍ଠା ଲାଭ କରିବାର କଥା, ସେ ତା' ପାଇପାରି ନାହାନ୍ତି । ସାହିତ୍ୟ ହେଉ ବା ରାଜନୀତି ହେଉ ବା ସମାଜସେବା ହେଉ ପାଇଓନିଅର ବା ଆଗଛାମୁଆ ଭାବରେ ସେ ସ୍ମରଣୀୟା ହୋଇ ରହିବେ ଚିରକାଳ, ପ୍ରତିଷ୍ଠିତ ବୋଲି ନୁହେଁ ।

ସ୍ୱାମୀ ଭାଗିରଥୀ ମହାପାତ୍ର ଜଣେ ଦକ୍ଷ ରାଜନୀତିଜ୍ଞ, ନିରବ କିନ୍ତୁ ଶକ୍ତିଶାଳୀ । ଭାଇ ନିତ୍ୟାନନ୍ଦ କାନୁନଗୋ ସବୁଠାରୁ ଦୀର୍ଘକାଳ, ସ୍ଥାୟୀ କ୍ଷମତାରେ ରହିବାରେ ଓଡ଼ିଶାର ପ୍ରଥମ ବ୍ୟକ୍ତି (ରାଜ୍ୟପାଳ, ରାଜ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ) । କିନ୍ତୁ ସରଳାଦେବୀ ସ୍ୱାମୀଙ୍କର ଦକ୍ଷତା, କୁଶଳୀ ଚରିତ୍ର ବା ଭାଇଙ୍କର ଆଗତ ପାଗକୁ କଳନା କରିବା ଦକ୍ଷତାର ସୁଯୋଗ ପାଇପାରି ନାହାନ୍ତି ।



# ସଂଗୀତ ଯାହାର ଥିଲା ଅର୍ଦ୍ଧାଙ୍ଗିନୀ

'ବାଟରେ ଚାଲୁ ଚାଲୁ କେବେ କିଏ ଦେଖାହୁଏ' ର ସଙ୍ଗୀତଜ୍ଞ ବାଟରେ ଚାଲୁ ଚାଲୁ ବମ୍ବେ ସହରରେ ଚାଲିଯାଇଛନ୍ତି ସେଇଠାକୁ ଯେଉଁଠି ଦେଖାହେବ କି ନାହିଁ କେହି ଜାଣନ୍ତି ନାହିଁ ।

ସରୋଜଙ୍କ ଘର ବଲାଙ୍ଗୀର । କିନ୍ତୁ କଳାର ସାଧନା ପାଇଁ ସେ ଆସି ରହିଥିଲେ କଟକରେ । ବିବାହ କରିବାକୁ ସମୟ ପାଇ ନଥିଲେ । ସଙ୍ଗୀତ ତାଙ୍କର ଅର୍ଦ୍ଧାଙ୍ଗିନୀ ପାଲଟି ଯାଇଥିଲା ।

ଆକାଶବାଣୀ କଟକ କେନ୍ଦ୍ରର ସେ ଥିଲେ 'କ' ଶ୍ରେଣୀ ସଂଗୀତଜ୍ଞ । 'ତୁ ଚାଲିଯିବୁ ତୋ ଶାଶୁଘର'ର ମୂର୍ଚ୍ଛନା ଏବେ ବି ଶୁଣାଯାଏ । ଆଧୁନିକ ଗୀତର ସଂଯୋଜନା ଓ ନିର୍ଦ୍ଦେଶନା ତାଙ୍କୁ ଜନପ୍ରିୟ କରି ତୋଳିଥିଲା ।

ବୟସ ହୋଇଥିଲା ମାତ୍ର ୪୧ ବର୍ଷ । କଟକର ଏକ ଭଡ଼ାଘରେ ସେ ରହୁଥିଲେ । ସ୍ୱପ୍ନ ଥିଲା ସୁଦୂରପ୍ରସାରୀ । ତେଣୁ ଘର କରିବା ପାଇଁ ବୋଧହୁଏ ନଜର ଦେଇପାରି ନଥିଲେ ।

ବାଲ୍ୟାବସ୍ଥାରୁ ତାଙ୍କର ସଂଗୀତ ପ୍ରତି ଥିଲା ଅମୋଘ ଆକର୍ଷଣ । ଦୂରଦର୍ଶନରେ ମଧ୍ୟ ସେ ଥିଲେ 'ଏ' ଶ୍ରେଣୀ କମ୍ପୋଜର । 'ତମ କଥା ମନେପଡ଼େ'ର ସୁରକାର, ନିର୍ଦ୍ଦେଶକ ସରୋଜ ନନ୍ଦଙ୍କ ବିୟୋଗରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟିହେଲା, ତାହା 'ତାଙ୍କ କଥା ମନେପଡ଼େ'ରେ ହିଁ ପୂରଣହେବ ।

ପରମବ୍ରହ୍ମ, ମୟୂରଚନ୍ଦ୍ରିକା ପ୍ରଭୃତି ଓଡ଼ିଆ ଭଜନ ପାଇଁ ସେ ବହୁକାଳ ସ୍ମୃତହୋଇ ରହିବେ । ୟୁନିଭର୍ସ ସହିତ ସେ ଜଡ଼ିତ ଥିଲେ ନିବିଡ଼ ଭାବରେ । ତାଙ୍କର ବିୟୋଗରେ ୟୁନିଭର୍ସ ପରିବାର ମର୍ମାହତ, ଦୁଃଖିତ ଏବଂ ସ୍ତମ୍ଭୀଭୂତ ।



# ଜୀବନର ଶେଷ ନାଟକରେ
# ନାଟ୍ୟଜଗତର ପ୍ରବାଦ ପୁରୁଷ

ନାଟ୍ୟଜଗତର ପ୍ରବାଦ ପୁରୁଷ ସାମୁଏଲ ସାହୁ ଆଉ ନାହାନ୍ତି । ୮୨ ବର୍ଷ ବୟସରେ ଆଜି ୧୯.୧୧.୨୦୦୦ରେ ତାଙ୍କର ପରଲୋକ ହୋଇଯାଇଛି । ବାବି ନାମରେ ପରିଚିତ ଏଇ ପ୍ରବାଦ ପୁରୁଷଙ୍କ ଜୀବନ ନାଟକର ଶେଷ ଅଙ୍କ ଅଭିନୀତ ହୋଇଯାଇଛି । ଗଲା କେତେଦିନ ଧରି ସେ ଅସୁସ୍ଥ ଥିଲେ ଏବଂ ଘର ଭିତରେ ହିଁ ପଦଚାଳନ କରୁଥିଲେ ଅଭିନୀତ ବହୁ ନାଟକର ସ୍ମୃତିକୁ ରୋମନ୍ଥନ କରି ।

ବାବି ୧୯୧୮ ମସିହା ମାର୍ଚ୍ଚ ୨୨ ତାରିଖରେ କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ମିଶନ ସ୍କୁଲରୁ ମାଟ୍ରିକ ପାଶ କରି ସେ ୧୯୪୦ ମସିହାରେ ବିହାରର ଚକ୍ରଧରପୁରରେ ଇଂଜିନିଅର ଭାବେ ଚାକିରି ଜୀବନ ଆରମ୍ଭ କରିଥିଲେ । କିନ୍ତୁ ଜୀବନରେ ଅଭିନୟ ଇଂଜିନିଅରିଙ୍ଗରେ ଯା'ର ଅଭିଲେଖ ରହିବାର କଥା ସେ କ'ଣ ରାସ୍ତାଘାଟ କୋଠା ଗଢ଼ିବାରେ ତୃପ୍ତ ହୋଇ ପାରନ୍ତା ?

ସେ କାମ ତାଙ୍କୁ ପୋଷାଇଲା ନାହିଁ । ଏଇ ସମୟରେ ଚକ୍ରଧରପୁରରେ ତାଙ୍କ ସହିତ ମୋର ସାକ୍ଷାତ କଥା ଏବେ ବି ମୋର ହେତୁ ଅଛି । ୧୯୪୫ରେ ସେ କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍ସରେ ଯୋଗଦେଲେ । କାଳୀବାବୁଙ୍କ ସଫଳ ପରିଚାଳନାରେ ବାବି ହୋଇଗଲେ ପାକଳ । କିନ୍ତୁ କାଳୀବାବୁଙ୍କ ସହିତ ତାଙ୍କର ମତଭେଦ ହେଲା । ସେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପରେ ଯୋଗଦେଲେ ଏବଂ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଓଡ଼ିଶାର ନାଟ୍ୟ ଜଗତରେ ଆପଣାର ପ୍ରତିଷ୍ଠା ସ୍ଥାପନ କରିଗଲେ । ନାଟ୍ୟଜଗତର ଏଇ ମଉଡ଼ମଣି ଦର୍ଶକର ପ୍ରାଣକୁ ଯେପରି ଛୁଇଁଗଲେ ଠିକ୍ ସେଇପରି ବହୁ ତରୁଣ ତରୁଣୀଙ୍କୁ

ନାଟ୍ୟଜଗତରେ ପ୍ରବେଶ କରିବା ପାଇଁ ପ୍ରେରଣା ଦେଇଗଲେ ।

୧୯୫୦ ମସିହାରେ ବାବି ଚଳଚିତ୍ର ଅଭିନୟ ଆରମ୍ଭ କରନ୍ତି, ଏବଂ 'ଶ୍ରୀ ଲୋକନାଥ' ଚଳଚିତ୍ରରେ ଆପଣାର ଶ୍ରେଷ୍ଠ ଅଭିନୟ ପୁରସ୍କାର ଲାଭ କରନ୍ତି ରାଷ୍ଟ୍ରପତିଙ୍କ ଠାରୁ ।

ଜନମାନସ ଓ ଦର୍ଶକଙ୍କୁ ବହୁବର୍ଷଧରି ମୁଗ୍ଧ କରିଥିବା ଏଇ ନାଟ୍ୟକାର ଜୟଦେବ ପୁରସ୍କାର ଲାଭ କରିଥିଲେ । ଅନେକ ଅନୁଷ୍ଠାନ ତାଙ୍କୁ ପୁରସ୍କୃତ କରି ଓ ସମ୍ମାନ ଦେଖାଇ ଆପଣାକୁ ଗର୍ବିତ ମନେ କରିଛନ୍ତି । ସେମାନଙ୍କ ମଧ୍ୟରେ ଓଡ଼ିଶା ସାହିତ୍ୟ ଏକାଡେମୀ, ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ପାଠକ ସଂସଦ ଅନ୍ୟତମ । ନାଟ୍ୟ ଅଭିନେତା ବାବି ଚଳଚିତ୍ର ଅଭିନେତା ଭାବରେ ମଧ୍ୟ ସାଫଲ୍ୟ ଅର୍ଜନ କରିଛନ୍ତି ଏବଂ ତିରିଶରୁ ଉର୍ଦ୍ଧ୍ୱ ଚଳଚିତ୍ରରେ ଅଭିନୟ କରିଯାଇଛନ୍ତି ।

ଗଲା କେତେଦିନ ହେବ ସେ ସଂଜ୍ଞାହୀନ ଅବସ୍ଥା (କୋମା)ରେ ଥିଲେ ଏବଂ ଆଜି ସକାଳେ ତାଙ୍କର ଚଣ୍ଡୀରୋଡ଼ ବାସଭବନରେ ତାଙ୍କର ପରଲୋକ ହୋଇଗଲା ।

ତାଙ୍କର ଗମ୍ଭୀର ଶବ୍ଦ, ତାଙ୍କର ମଞ୍ଚ ଉପରେ ଦୃପ୍ତ ପଦଚାଳନା ଧ୍ୱନିତ ହୋଇ ରହିବ ବହୁକାଳ ।

ମାସକୁ ଆଠଟଙ୍କା ଦରମାରେ ସେ ନାଟ୍ୟକାର ଜୀବନ ଆରମ୍ଭ କରିଥିଲେ । ତିରିଶରୁ ଉର୍ଦ୍ଧ୍ୱ ଚଳଚିତ୍ର, ଦେଢ଼ଶହରୁ ଉର୍ଦ୍ଧ୍ୱ ନାଟକରେ ସେ ଅଭିନୟ କରି ଯାଇଛନ୍ତି । ତା' ସତ୍ତ୍ୱେ ଦାରିଦ୍ର୍ୟର କଷାଘାତରୁ ମୁକ୍ତି ହୋଇପାରି ନଥିଲେ, ବହୁ ଶିଳ୍ପୀଙ୍କ ପରି ।

ନାଟକର ପ୍ରବାଦ ପୁରୁଷ ବାବି ଆଉ ନାହାନ୍ତି । କିନ୍ତୁ ତାଙ୍କର ଦୃପ୍ତ କଣ୍ଠ, କ୍ଲାସିକାଲ ଷ୍ଟାଇଲ ପାଇଁ ସେ ସ୍ମୃତହୋଇ ରହିବେ ଜନମାନସରେ । ଆଗାମୀ ପୀଢ଼ିର ବହୁ ଯୁବକ ତାଙ୍କଠାରୁ ପ୍ରେରଣା ପାଇଛନ୍ତି । ସେଇମାନେ ରଖିଯିବେ ତାଙ୍କର ପରମ୍ପରା ଓ ଐତିହ୍ୟକୁ ।

ବାବି କିନ୍ତୁ ନଥିବେ ତାହା ଦେଖିବାକୁ ।



# ସିଦ୍ଧ ଗଲ କୁଆଡ଼େ ?

ଡାକ୍ତର ସିଦ୍ଧେଶ୍ୱର ମିଶ୍ର ଆଉ ନାହାନ୍ତି । ଜନ୍ମ ହୋଇଥିଲେ ୧୯୩୬ ମସିହା ଫେବୃଆରୀ ୧୩ ତାରିଖରେ, ଓଡ଼ିଶା ପ୍ରଦେଶ ଗଠନର କିଛିଦିନ ପୂର୍ବରୁ । ଚାଲିଗଲେ ଜୁନ୍ ୧୩, ୨୦୦୧ ମସିହାରେ ।

ବାପା ବାମଦେବ ମିଶ୍ର ଜଣେ ଦକ୍ଷ ପ୍ରଶାସକ ଭାବରେ ପରିଚିତ ଥିଲେ । ତାଙ୍କ ବାପାଙ୍କ ସହିତ ଥିଲା ଆମର ପାରିବାରିକ ପରିଚିତି, ଆତ୍ମୀୟତା । ମୋର ଠିକ୍ ମନେପଡୁ ନାହିଁ, କିନ୍ତୁ ଯେତେଦୂର ମନେହୁଏ ତାଙ୍କୁ ମୁଁ ଚିହ୍ନିଥିଲି ସ୍କୁଲ ଜୀବନରୁ, ରେଭେନ୍ସା କଲେଜିଏଟରୁ ।

ପ୍ରତିଭାଶାଳୀ ସିଦ୍ଧେଶ୍ୱର ସୁଧାର ପିଲା ନଥିଲେ । ଚଗଲା ଥିଲେ ଏବଂ ସେଇ ଯୋଗୁଁ ଆଖିରୁ ଏଡ଼ାଇଯାଇ ନଥିଲେ । କୌଣସି ଏକ ଆନ୍ଦୋଳନରେ ସେ ବେଶ୍ ଆଖିଦୃଶିଆ ସାହସିକ କାର୍ଯ୍ୟ କରି ଆମ ଆଖିରେ ପଡ଼ିଥିଲେ ।

ପରେ ରେଭେନ୍ସା କଲେଜରେ ସେଇ ଆତ୍ମୀୟତା ବଢ଼ିଥିଲା । ତାଙ୍କର ଭାଇ ସୋମନାଥ (ପରେ ଡାଇରେକ୍ଟର ଜେନେରାଲ ପୁଲିସ) ମୋର ପ୍ରାୟ ସମସାମୟିକ । ତେଣୁ ଆତ୍ମୀୟତା ବଢ଼ିଥିଲା । ସିଦ୍ଧେଶ୍ୱର ବେଶ୍ ଚଗଲା ଥିଲେ । ଟିକଲ କରିବା, ମାଷ୍ଟ୍ର ଓ ଝିଅପିଲାଙ୍କ ସହିତ ନବଜିଆ କଥାବାର୍ତ୍ତା କରିବାରେ ସେ ବେଶ୍ ଧୂରୀଣ ଥିଲେ । ସେ ଦୃଷ୍ଟିରୁ ପିଲାଙ୍କ ଭିତରେ ତାଙ୍କର ଜନପ୍ରିୟତା । ଏଣେ ଭଲ ପାଠ ମଧ ପଢୁଥିଲେ । ମୋର ଯେତିକି ହେତୁ ହେଉଛି ଖେଳ ପଡ଼ିଆ ବିଶେଷତଃ ହକି, କ୍ରିକେଟ ଖେଳ ତାଙ୍କର ପ୍ରିୟ ଥିଲା ।

ରେଭେନ୍ସା କଲେଜରୁ ଶ୍ରୀ ରାମଚନ୍ଦ୍ର ଭଂଜ ମେଡ଼ିକାଲ କଲେଜ । ସେ ଡାକ୍ତରୀ ପାଠ ପଢ଼ିଲେ, ସର୍ଜରୀରେ ଏମ୍.ଡି. କଲେ । କ୍ଲାସ ରୁମରେ ତାଙ୍କର ପରିଚିତି ଯେପରି, କ୍ଲାସ ରୁମ ବାହାରେ ତାଙ୍କର ପରିଚିତି ବେଶି । ସେ ବୟସ ମାନନ୍ତି ଖୁବ୍ କମ୍ । ବୟସରେ

କମ୍ ଛାତ୍ରମାନଙ୍କୁ ସାହସୀ, ନିର୍ଭୀକ ହେବାପାଇଁ ତାଙ୍କର ପ୍ରେରଣା ଥିଲା ବେଶ୍ ଉତ୍ସାହଜନକ । ତାଙ୍କ ସାଙ୍ଗରେ ବହୁ ମେଡ଼ିକାଲ କନଫରେନ୍ସ ମାନଙ୍କରେ ଏକାଠି କାମ କରିବାର ସୁଯୋଗ ମିଳିଛି । ଥରେ ହଁ କଲେ, ତାଙ୍କୁ ଆଉ ଭୋକଶୋଷ କିଛି ମାଲୁମ ହୁଏ ନାହିଁ ।

ମୋର ମନେପଡୁଚି । ଦିନେ ହଠାତ୍ ସେ ଆମ ଘରେ ଆସି ପହଞ୍ଚି ଘୋଷଣା କଲାପରି କହିଲେ ଯେ, ''ଆପଣ ଆଜିଠୁ ମୋର ବାନ୍ଧବ ହୋଇଗଲେ ।'' ମୁଁ କିଛି ବୁଝିପାରିଲି ନାହିଁ । ମୋର ସ୍ତ୍ରୀ ତା'ର ସହପାଠୀ । ତେଣୁ ସେ ମୋର ବାନ୍ଧବ । ସିଦ୍ଧ, ତମେ ଭୁଲିଗଲ । ତମ ବାପା ଏବଂ ମୋ ବାପା ଓ ମଉସା ବନ୍ଧୁ । ତେଣୁ.....

ସିଦ୍ଧ ତିନୋଟିଯାକ ମେଡ଼ିକାଲ କଲେଜରେ କାମ କରିଛି । ପ୍ରଶଂସା ପାଇଛି ସାହସୀ ସର୍ଜନ ଭାବରେ । ୧୯୯୪ ମସିହାରେ ଚାକିରିରୁ ଅବସର ନେଇଛି ।

ମଣିଷ ନିର୍ଭୁଲ ନୁହେଁ । ସେ ବି ନଥିଲା । କିନ୍ତୁ ସେ ଓ ଅନ୍ୟମାନଙ୍କ ଭିତରେ ଫରକ ଏତିକି ଯେ ସେ ସ୍ପଷ୍ଟବାଦୀ ଥିଲା । କୌଣସି କଥା ଲୁଚାଉ ନଥିଲା । ଯାହା ଅନ୍ୟମାନେ କରନ୍ତି ।

ହଠାତ୍ ଦିନେ ପହଞ୍ଚିଥିଲା, ''ଭାଇନା, ମୁଁ ଭଲ ମଣିଷ ହୋଇଗଲି ।'' ତୁ କ'ଣ କେବେ ଖରାପ ଥିଲୁ ନା କ'ଣ, ମୋର ଉତ୍ତର । ତା' ଆଖିରେ ଲୁହ ଜକେଇ ଆସିଲା ।

ସିଦ୍ଧ ଆଉ ନାହିଁ । ତା'ର ମୃତ୍ୟୁ ଖବର ପାଇଲୁ ଖବରକାଗଜରୁ । ମୋ ସ୍ତ୍ରୀ ହେଜିବାକୁ ଆରମ୍ଭ କଲେ ଫନୀ, କ୍ଷେତ୍ରମଣୀ, ସିଦ୍ଧ..... ତାଲିକା ବଢ଼ିଚାଲିଲା । ଅଛନ୍ତି ବିଲି, ଭକ୍ତି...... ଅଟକି ଗଲେଣି । ନାଁ ହେଜୁଛନ୍ତି ।

କେହି ରହିବେ ନାହିଁ । କିନ୍ତୁ ସିଦ୍ଧକୁ ମନେରଖିବେ ତା'ର ବହୁ ବନ୍ଧୁ, ଶୁଭେଚ୍ଛୁ । ସେମାନେ ଦି'ଟୋପା ଲୁହ ଢାଳିବେ । ପାଟିରୁ ବାହାରିବ ଧାଡ଼ିଏ କଥା, ପ୍ରତିଭାଟା କେମିତି ଇମିତି ନଷ୍ଟ ହୋଇଗଲା, ଆହା !

ସିଦ୍ଧ, ଶୁଣୁଚ !



# ପୃଥିବୀର ସର୍ବପ୍ରଥମ ନିର୍ବାଚିତ ମହିଳା ପ୍ରଧାନମନ୍ତ୍ରୀ

ଶ୍ରୀମତୀ ସିରିମାଭୋ ବନ୍ଦରନାୟକ ଆଉ ନାହାନ୍ତି । ଭୋଟ ଗ୍ରହଣ କେନ୍ଦ୍ରରୁ ଭୋଟ ଦେଇ ଫେରିଲା ବାଟରେ ହିଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ୮୪ ବର୍ଷ ବୟସ୍କ ଏହି ମହାନ୍ ନେତ୍ରୀ ଗଲା କିଛି ଦିନ ଧରି ଅସୁସ୍ଥ ଥିଲେ ଏବଂ ସକ୍ରିୟ ରାଜନୀତିରୁ ବିଦାୟ ନେଇସାରିଥିଲେ । ବିଶେଷତଃ ପୁଅ ଅନୁ ଏବଂ ଝିଅ ଚନ୍ଦ୍ରିକା ଭିତରେ ମତ ପାର୍ଥକ୍ୟ ଏବଂ ପରସ୍ପର ବିରୋଧୀ ଶିବିରର ନେତୃତ୍ୱ ତାଙ୍କୁ ବାଧୁଥିଲା । ଯଦିଓ ସେ ନୀତି ଦୃଷ୍ଟିରୁ ଝିଅ ଚନ୍ଦ୍ରିକାଙ୍କ ଦଳ ସହିତ ରହିବା ପାଇଁ ସ୍ଥିର କରିଥିଲେ ତାହା ଏକ ପ୍ରତୀକ ଥିଲା । ଗଣତନ୍ତ୍ରରେ ବିଶ୍ୱାସୀ ସିରିମାଭୋଙ୍କର ନିର୍ବାଚନରେ ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ ହିଁ ତାଙ୍କ ଜୀବନର ଶେଷ କାର୍ଯ୍ୟ । ଆଉ କିଛି କରିବାକୁ ନଥିଲା, କାରଣ ଗଲା କିଛିବର୍ଷ ହେଲା ସେ ଅଚଳ ହୋଇଯାଇଥିଲେ ଏବଂ ହୁଇଲ ଚେୟାର ହିଁ ତାଙ୍କର ଆଶ୍ରୟ ଥିଲା । ଦୁରାରୋଧ ବହୁମୂତ୍ର ରୋଗ ଏବଂ ଆଣ୍ଠୁଗଣ୍ଠି ବାତ ତାଙ୍କୁ ଅଚଳ କରି ଦେଇଥିଲା ସଂପୂର୍ଣ୍ଣ ଭାବରେ । କିନ୍ତୁ ମସ୍ତିଷ୍କ ଥିଲା ସତେଜ ଶେଷ ପର୍ଯ୍ୟନ୍ତ ।

ନାରୀ ରାଜନୈତିକ ନେତାମାନଙ୍କ ଭିତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଅନ୍ୟ ସବୁ ନେତ୍ରୀଙ୍କୁ ନିଷ୍ପ୍ରଭ କରିଦେଇଛନ୍ତି ସତ କିନ୍ତୁ ଇତିହାସର ପୃଷ୍ଠାରେ ଶିରିମାଭୋଙ୍କ ଅବଦାନ ତାଙ୍କୁ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ସ୍ମରଣୀୟ କରି ରଖିବ ।

ତାଙ୍କର ସ୍ୱାମୀ ସୋଲାମନ ଡିଆସ୍ ବନ୍ଦରନାୟକ ଥିଲେ ସିଂହଳର ପ୍ରଧାନମନ୍ତ୍ରୀ ଏବଂ ପ୍ରବାଦପୁରୁଷ । ଏକ ବୌଦ୍ଧ ଭିକ୍ଷୁର ଗୁଳିରେ ତାଙ୍କର ମୃତ୍ୟୁ ହୋଇଯାଏ ସେପ୍ଟେମ୍ବର ୧୯୫୯ ମସିହାରେ ।

ସିରିମାଭୋ ଯଦିଓ ସିଂହଳର ଏକ ଧନାଢ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ ସେ ଥିଲେ ଏକ ଘରଣୀ ମାତ୍ର । ରାଜନୀତି ସହିତ ତାଙ୍କର ସଂପର୍କ କିଛି ନଥିଲା । କିନ୍ତୁ ସ୍ୱାମୀଙ୍କର ଆକସ୍ମିକ ମୃତ୍ୟୁ ପରେ ତାଙ୍କୁ ନେତୃତ୍ୱ ନେବାକୁ ହେଲା ଶ୍ରୀଲଙ୍କା ଫ୍ରିଡମ୍ ପାର୍ଟିର ।

ଏହା ଥିଲା ତାଙ୍କ ପାଇଁ ସଂପୂର୍ଣ୍ଣ ଆକସ୍ମିକ । ବୋଧହୁଏ ସ୍ୱାମୀଙ୍କ ମୃତ୍ୟୁର ସମବେଦନା-ସହାନୁଭୂତି ସୂଚକ ଭୋଟ ପାଇଁ ତାଙ୍କର ଦଳ ସିରିମାଭୋଙ୍କ ଉପରେ ନେତୃତ୍ୱ ଢାଳିବାକୁ ସ୍ଥିର କରିଥିଲା ।

ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । ପଛକୁ ଅନେଇବାର ଅବକାଶ ବି ପାଇ ନାହାନ୍ତି । ଉତ୍ଥାନ ଓ ପତନ ତାଙ୍କର ଜୀବନର ରାସ୍ତାକୁ ବନ୍ଧୁର କରିଦେଇଛି ।

୧୯୬୦ ମସିହା ଜୁଲାଇ ମାସରେ ସେ ସିଂହଳ ସରକାରର ପ୍ରଥମ ପ୍ରଧାନମନ୍ତ୍ରୀ ହୁଅନ୍ତି ।

ବାମପନ୍ଥୀ ଦୃଷ୍ଟିଭଂଗୀ ତାଙ୍କର ଥିଲା ବୋଲି କୁହାଯାଏ । କିନ୍ତୁ ସିଂହଳର ରାଷ୍ଟ୍ରପତି ଭାବରେ ତାଙ୍କର କନ୍ୟା ଚନ୍ଦ୍ରିକା ବର୍ତ୍ତମାନ ସିରିମାଭୋ ନେଇଥିବା ସବୁ ପଦକ୍ଷେପକୁ ବାତିଲ କରିବା ପାଇଁ ପଦକ୍ଷେପ ନେଉଛନ୍ତି । ଏହା ସତ୍ତ୍ୱେ ସିରିମାଭୋ କେବଳ ସେ ଦଳରେ ନାହାନ୍ତି, ପ୍ରଧାନମନ୍ତ୍ରୀ ହେବା ପାଇଁ ମଧ ସମ୍ମତି ଦେଇଛନ୍ତି, ଯଦିଓ ସଂବିଧାନର ସଂଶୋଧନ ପରେ ଶ୍ରୀଲଙ୍କା ବସ୍ତୁତଃ ରାଷ୍ଟ୍ରପତି ପ୍ରଧାନ ସରକାରରେ ପରିଣତ ହୋଇଛି । ପ୍ରଧାନମନ୍ତ୍ରୀ ପଦବୀର କୌଣସି ମୁଖ୍ୟ ଭୂମିକା ନାହିଁ ।

ସିରିମାଭୋ ସରକାରକୁ ଭାଙ୍ଗିଦେବା ପାଇଁ ଉଦ୍ୟମ ଥିଲା । ସେ ସଂଦେହ କଲେ ଆମେରିକାର ଶାନ୍ତିବାହିନୀ ବା ପିସ୍ କୋର୍କୁ । ଆମେରିକାର ପିସ୍ କୋର୍କୁ ଶ୍ରୀଲଙ୍କାରୁ ବହିଷ୍କାର କଲେ ଏବଂ ଠିକ୍ ସେଇ ସଂଦେହରେ ଇସରାଏଲ ରାଷ୍ଟ୍ରଦୂତାବାସକୁ ବନ୍ଦ କରିଦେବାକୁ ଆଦେଶଦେଲେ । ଇତିହାସର କ୍ରୁର ପରିହାସରେ ଆଜି ଏଲ.ଟି.ଟି.ଇ. ବିରୁଦ୍ଧରେ ଶ୍ରୀଲଙ୍କା ସୈନ୍ୟବାହିନୀକୁ ଅତ୍ୟାଧୁନିକ ଅସ୍ତ୍ର ଯୋଗାଉଛି ଇସରାଏଲ ।

୧୯୭୨ ମସିହାରେ ସିରିମାଭୋ ଆପଣାର ଦେଶକୁ ଏକ ସାଧାରଣତନ୍ତ୍ରରେ ପରିଣତ କଲେ । ବ୍ରିଟିଶ ସରକାରଙ୍କର ସହିତ ଶେଷ ସଂପର୍କ ତୁଟିଗଲା । ସବୁ ପ୍ରାଇଭେଟ୍ କଂପାନୀ, ଚର୍ଚ୍ଚମାନଙ୍କ ଦ୍ୱାରା ପରିଚାଳିତ ସ୍କୁଲ, ବ୍ୟାଙ୍କ ପ୍ରଭୃତିର ଜାତୀୟକରଣ ହେଲା ଏବଂ ଦେଶଭିତରକୁ ସବୁ ପ୍ରକାର ଆମଦାନୀ ନିଷିଦ୍ଧ ହେଲା । ୧୯୭୨ ମସିହାରେ ଏକ ନୂତନ ସଂବିଧାନ ଗୃହୀତ ହୋଇ ଶ୍ରୀଲଙ୍କା ଏକ ସାଧାରଣତନ୍ତ୍ରରେ ପରିଣତ ହେଲା । ଏହି ପଦକ୍ଷେପଗୁଡ଼ିକୁ ବୈପ୍ଳବିକ ବୋଲି କୁହାଯାଉଥିଲା କିନ୍ତୁ ଏହାର ଫଳ ଲାଭପ୍ରଦ ହେଲାନାହିଁ । କାରଣ ଜାତୀୟକରଣ ହୋଇଥିବା ଅନୁଷ୍ଠାନମାନଙ୍କୁ ଯେପରି ଚଳାଇବା କଥା ତାହା ହୋଇପାରିଲା ନାହିଁ । ପୃଥିବୀରେ ସର୍ବତ୍ର ଏହା ଦେଖାଦେଇଛି । ଭାରତବର୍ଷ ସେଥିରୁ ମୁକ୍ତ ନୁହେଁ । ଏହା ଫଳରେ ଦେଶର ଅର୍ଥନୀତିରେ ବିପର୍ଯ୍ୟୟ ଦେଖାଦେଲା । ଜନତା ଭିମୁକ୍ତି ପେରୁମ୍ଭନା (ଜେଭିଏମ୍)ର ପତାକାତଳେ ଶ୍ରୀଲଙ୍କାରେ

ମାର୍କ୍ସବାଦୀମାନଙ୍କର ବିଦ୍ରୋହ ଦେଖାଗଲା । ଏହାର ପୁରୋଭାଗରେ ଥିଲେ ଛାତ୍ର ଓ ଯୁବ ସଂପ୍ରଦାୟ । କିନ୍ତୁ ଏହା ଶ୍ରୀଲଙ୍କା କମ୍ୟୁନିଷ୍ଟ ପାର୍ଟିର ସମର୍ଥନ ଲାଭକରି ନଥିଲା । ଏହି ବିଦ୍ରୋହ ସୁସଂଗଠିତ ନଥିଲା ତେଣୁ ସେମାନଙ୍କୁ ନିର୍ମମ ଭାବରେ ଦମନ କରିଦେଇ ପାରିଲେ ସିରିମାଭୋ । କିନ୍ତୁ ୧୯୭୭ ମସିହା ନିର୍ବାଚନରେ ସେ ପରାଜୟ ଲଭ କଲେ । ତା'ପୂର୍ବରୁ ସେ କଲମ୍ବୋରେ ଅନୁଷ୍ଠିତ ନିରପେକ୍ଷ ରାଷ୍ଟ୍ରଗୋଷ୍ଠୀ ମୁଖ୍ୟମାନଙ୍କର ସମ୍ମିଳନୀରେ ପୌରୋହିତ୍ୟ କରିଥିଲେ ଏବଂ ତୃତୀୟ ବିଶ୍ୱର ଏକ ମୁଖର ବାବଦୂକ ହୋଇଥିଲେ ।

କ୍ଷମତାର ଅପବ୍ୟବହାର ଅଭିଯୋଗରେ ଅଭିଯୁକ୍ତ ସିରିମାଭୋଙ୍କ ହାତରୁ ନାଗରିକ କ୍ଷମତା କାଢ଼ି ନିଆଗଲା ୧୯୮୦ ମସିହାରେ ଏବଂ ୧୯୮୬ ମସିହାରେ ହିଁ ଜୟବର୍ଦ୍ଧନେଙ୍କ ରାଷ୍ଟ୍ରପତିତ୍ୱ କାଳରେ ସେ ତାଙ୍କର ନାଗରିକ କ୍ଷମତା ଫେରି ପାଇଥିଲେ । ସେତେବେଳକୁ ତାଙ୍କର କନ୍ୟା ଚନ୍ଦ୍ରିକା କାର୍ଯ୍ୟନିର୍ବାହୀ ରାଷ୍ଟ୍ରପତି ଭାବରେ ନିର୍ବାଚିତ ହୋଇ ସାରିଥିଲେ ଏବଂ ସିରିମାଭୋଙ୍କ ନାଗରିକ ଅଧିକାର ପୁନଃପ୍ରାପ୍ତି ଏକ ପ୍ରତୀକ ଥିଲା ମାତ୍ର ।

ଦିନେ ସେ ଥିଲେ କ୍ଷମତାର କେନ୍ଦ୍ରବିନ୍ଦୁ । କିନ୍ତୁ ସମୟ ଅତିକ୍ରାନ୍ତ ହୋଇଥିଲା । ବହୁମୂତ୍ର ଏବଂ ଆଣ୍ଠୁଗଣ୍ଠି ବାତରେ ସେ ପୀଡ଼ିତ ହୋଇ କେବଳ ହୁଇଲଚେୟାର ହିଁ ଥିଲା ତାଙ୍କର ଆଶ୍ରୟ ।

ତାଙ୍କର ରାଜନୈତିକ ଜୀବନର ୪୦ ବର୍ଷ ପୂର୍ଣ୍ଣ ହୋଇଛି । ତାହାର ପୂରଣ ସହିତ ସେ ପ୍ରଧାନମନ୍ତ୍ରୀ ପଦରୁ ଅବ୍ୟାହତି ନିଅନ୍ତି । କ୍ରମେ ସେ ଅପସରି ଯାଆନ୍ତି ରାଜନୈତିକ କ୍ଷେତ୍ରରୁ ଏବଂ ଏକଦା ଶ୍ରୀମତୀ ବି ନାମରେ ଜନପ୍ରିୟତା ଲାଭ କରିଥିବା ସିରିମାଭୋ ପାଲଟି ଯାଆନ୍ତି ଇତିହାସ । ଭୋଟଦେଇ ଫେରିବା ବାଟରେ ହିଁ ସେ ଇହଲୋକରୁ ବିଦାୟ ନିଅନ୍ତି ।

ଏକ ବର୍ଣ୍ଣାଢ଼୍ୟ ଜୀବନର ସମାପ୍ତି ହୋଇଯାଏ ।



# ଚତୁର ରାଜନୀତିଜ୍ଞଙ୍କ ବିଦାୟ

ସୀତାରାମ କେଶରୀ ଆଉ ନାହାନ୍ତି । ୨୪ ତାରିଖ ଅକ୍ଟୋବର, ୨୦୦୦ ମସିହା ମଧ୍ୟ ରାତ୍ରିପରେ ତାଙ୍କର ପରଲୋକ ହୋଇଯାଇଛି ଏ.ଆଇ.ଏମ୍.ଏସ୍., ନୂଆଦିଲ୍ଲୀରେ । ମୃତ୍ୟୁ ବେଳକୁ ତାଙ୍କୁ ୮୧ ବର୍ଷ ବୟସ ହୋଇଥିଲା । ଚାଚା ନାମରେ ପରିଚିତ ସୀତାରାମ ଆସିଥିଲେ ଦଳିତ ଶ୍ରେଣୀରୁ । ସମାଜର ସବୁଠାରୁ ତଳ ଶ୍ରେଣୀରେ ଜନ୍ମଗ୍ରହଣ କରିଥିବା ସୀତାରାମ କେଶରୀ କିନ୍ତୁ ସବୁବେଳେ କହୁଥିଲେ ଯେ ଭଗବାନ କେବଳ ଉଚ୍ଚ ଜାତିର ସୌଭାଗ୍ୟ ପାଇଁ ଯୋଜନା କରିଛନ୍ତି । ଏକଥା କହିଲାବେଳେ ଅବଶ୍ୟ ତାଙ୍କ ମୁହଁରୁ ହସ ଉଚ୍ଛୁଳୁଥିଲା । କାରଣ ଏହା ତାଙ୍କପାଇଁ ଯେ ଅନ୍ତତଃ ପ୍ରଯୁଜ୍ୟ ନୁହେଁ, ଏକଥା ସେ ଜାଣିଥିଲେ ହୁଏତ । ଆଉ କିଛିଦିନ ପରେ କଂଗ୍ରେସ ଦଳର ସଭାପତି ପଦପାଇଁ ନିର୍ବାଚନ । ସୀତାରାମଙ୍କ ଇଚ୍ଛାଥିଲା ଯେ ସେ ହୁଏତ ଏଇ ପଦବୀ ପାଇଁ ସୋନିଆଙ୍କ ବିରୁଦ୍ଧରେ ପ୍ରାର୍ଥୀ ହେବେ କିମ୍ବା ତାଙ୍କୁ ଚେଖାଁଏ ଦେବେ ।

କାରଣ ୧୯୮୮ ମସିହା ମାର୍ଚ୍ଚ ୧୪ ତାରିଖରେ ସୋନିଆ ଗାନ୍ଧୀ ଯେପରି ତାଙ୍କୁ କଂଗ୍ରେସ ସଭାପତି ପଦରୁ ଜବରଦସ୍ତ ବାହାର କରିଦେଇ ନିଜକୁ ସେ ପଦବୀରେ ଅଭିଷିକ୍ତ କରିଥିଲେ ତାହା ସେ ଭୁଲି ନଥିଲେ । କିନ୍ତୁ ମହାକାଳ ତାହା କରାଇ ଦେଲା ନାହିଁ ।

କଂଗ୍ରେସ ସଭାପତି ପଦବୀରୁ ଗଲାପରେ ତାଙ୍କର କାଟ୍‌ତି ଆଉ ରହିଲା ନାହିଁ । ଦିନେ ସେ ଭାରତର ପ୍ରଧାନମନ୍ତ୍ରୀ ହେବାର ସ୍ୱପ୍ନ ଦେଖିଥିଲେ ଏବଂ ''ଆସନ୍ତା ବର୍ଷ ସାଧାରଣତନ୍ତ୍ର ଦିବସରେ ଲାଲକିଲ୍ଲାରେ ପତାକା ଉତ୍ତୋଳନ କରିବେ ବୋଲି'' ଘୋଷଣା ମଧ୍ୟ କରିଥିଲେ । ସେ ନା ହୋଇପାରିଲେ ପ୍ରଧାନମନ୍ତ୍ରୀ ନା ରହିପାରିଲେ କଂଗ୍ରେସ ସଭାପତି ହୋଇ ।

ସେ ବିଚକ୍ଷଣ ଏବଂ ଧୂର୍ତ୍ତ ରାଜନୀତିଜ୍ଞ ଥିଲେ ଏଥିରେ କୌଣସି ସନ୍ଦେହ ନାହିଁ । କେଉଁ ପାଣି କେଉଁ ଆଡ଼କୁ ଯାଉଛି, କେଉଁ ପବନ ଅନୁକୂଳ ତାହା ଜାଣିବାରେ ସେ ପାରଙ୍ଗମ ଥିଲେ । କିନ୍ତୁ ସବୁଦିନ ସମାନ ଯାଏନାହିଁ । ସମୟ ଏପରି ଆସେ ଯେ ତାହା ସବୁ ଧୂର୍ତ୍ତତା, ବିଚକ୍ଷଣତାକୁ ଧୂଳିସାତ୍ କରିଦିଏ । ସୀତାରାମ କେଶରୀଙ୍କ କ୍ଷେତ୍ରରେ

ସେଇଆ ଘଟିଥିଲା । ଦିନେ ତାଙ୍କ ଘରେ ଭିଡ଼ ଜମୁଥିଲା । ବହୁ ପ୍ରଶାସକ, ସ୍ତାବକ, ଅନୁଗ୍ରହ ପ୍ରାର୍ଥୀ, କର୍ମୀ ଓ ନେତା ତାଙ୍କ ଘରେ ଭିଡ଼ ଜମାଉଥିଲେ । ସେମାନେ ଆଣୁଥିଲେ ଅସଂଖ୍ୟ ଉପହାର, ବଢ଼ିଆ ବଢ଼ିଆ ଖାଇବା ଜିନିଷ, ତାଙ୍କ ପାଇଁ, ଏପରିକି ତାଙ୍କର ସାତୋଟି କୁକୁରଙ୍କ ପାଇଁ ।

କିନ୍ତୁ ସମୟ ବଦଳିଗଲା । ତାଙ୍କୁ ଆଉ କେହି ଲୋଡ଼ିଲେ ନାହିଁ । ଘର ହୋଇଗଲା ଜନଶୂନ୍ୟ । ସ୍ତ୍ରୀଙ୍କର ପରଲୋକ ହୋଇଯାଇଥିଲା କିଛି ବର୍ଷ ତଳେ । ଛଅଟି କୁକୁର ମଧ୍ୟ ମରିଗଲେ । କେବଳ ଥିଲା ବିଶ୍ୱସ୍ତ ପୋମେରିୟନ କୁକୁର ରୁଚି । ସେ ହିଁ ତାଙ୍କର ଏକମାତ୍ର ସାଥୀ ଥିଲା । ତାଙ୍କ ସାଂଗରେ ବସି ଟି.ଭି. ଦେଖୁଥିଲା । ତାକୁଇ ଧରି ସେ ଯାଉଥିଲେ ପାଖ ନେହେରୁ ପାର୍କ ବା ପ୍ରଗତି ମଇଦାନକୁ ପ୍ରାତଃ ଭ୍ରମଣରେ । ପିଲାମାନେ ସବୁ ଥାଆନ୍ତି ପାଟନାରେ । ଘରେ ସେ ଏକୁଟିଆ, ଏକମାତ୍ର ସାଥୀ ରୁଚି । କ୍ଷମତାରୁ 'ବହିଷ୍କୃତ' ହେବା ପରେ ତାଙ୍କର ବଜାରରେ କାଟ୍‌ତି ଆଉ ନଥିଲା । କ୍ଷମତାରୁ ଗଲେ ଆଉ କିଏ କାହିଁକି ପଚାରିବ ? ସୀତାରାମଙ୍କର ଚୈତନ୍ୟୋଦୟ ହୋଇଥିଲା, ତଥାପି ସେ ପ୍ରତିଶୋଧ ନେବା ଅପେକ୍ଷାରେ ଥିଲେ । ତାଙ୍କର ମୃତ୍ୟୁ ସହିତ ରୁଚିର ବି ପରଲୋକ ହୋଇଗଲା । ମଣିଷ ନୁହେଁ କୁକୁର ହିଁ ଖାଉନ୍ଦ ପାଇଁ ଆପଣାର ବିଶ୍ୱସ୍ତତା ହରାଇ ନଥିଲା ।

ସୀତାରାମ ହେଜୁଥିଲେ ଏକଦା କାମନା କରିଥିବା ଅନେକ ଉଚ୍ଚ ନୀତିକୁ । ବିଭିନ୍ନ କଂଗ୍ରେସୀ ନେତାମାନଙ୍କର ଆଚାର ବିଚାର ମଧ୍ୟ ତାଙ୍କୁ ଘାରୁଥିଲା । କିନ୍ତୁ ସମୟ ଅତିକ୍ରାନ୍ତ ହୋଇସାରିଥିଲା । ସେ ଆଉ ଉଠିପାରିଲେ ନାହିଁ ।

ଏଇ ସମୟରେ ସେ ସୁଭାଷ ଚନ୍ଦ୍ର ବୋଷ ଏବଂ ବି.ଆର୍.ଆମ୍ବେଦକରଙ୍କୁ ଆପଣାର ନେତା ଭାବରେ ହେଜିବାକୁ ଲାଗିଲେ । ମମତା ବାନାର୍ଜୀଙ୍କୁ ସେ ହେଜିଲେ ଦୁର୍ଗା ଭାବରେ, ଭାରତୀୟ ସାରଲ୍ୟର ପ୍ରତିନିଧି ଭାବରେ । ହଠାତ୍ ଯେପରି ତାଙ୍କର ଘଟ ପରିବର୍ତ୍ତନ ଘଟିଥିଲା । କିନ୍ତୁ ସେ ନିଜେ କଂଗ୍ରେସର ସଭାପତି ଥିଲାବେଳେ ହିଁ ମମତା ବାନାର୍ଜୀ କଂଗ୍ରେସରୁ ବିଦାୟ ନେଇଥିଲେ ।

ବର୍ତ୍ତମାନ ସେ ତାହାକୁ ତାଙ୍କର ଉପଦେଷ୍ଟା ମାନଙ୍କର 'ଭୁଲ୍ ଉପଦେଶ' ବୋଲି ବିଚାର କରିବାକୁ ଆରମ୍ଭ କରିଥିଲେ ।

ସୀତାରାମ କେଶରୀ ରାଜନୈତିକ ବିଚକ୍ଷଣତା ହାସଲ କରିଥିଲେ ନିଜେ ନିଜେ । କାହାରି ଠାରୁ ସେ ତାଲିମ ପାଇ ନଥିଲେ । କିନ୍ତୁ ସେ ନିଜେ ଯେଉଁମାନଙ୍କୁ ସବୁଠାରୁ ବିଶ୍ୱସ୍ତ ଭାବୁଥିଲେ ସେଇମାନେ ହିଁ ତାଙ୍କୁ ଠକିଦେଲେ ପରିଶେଷରେ । ତାଙ୍କ ପାଇଁ ଏହାଥିଲା କ୍ରୁର ପରିହାସ । ମ୍ୟାନିପୁଲେଶନ ବା ହଟଚମଟ କରିବାରେ ସେ ଥିଲେ ପାରଙ୍ଗମ । ଜାତିକୁ ରାଜନୈତିକ କ୍ଷେତ୍ରରେ ସଫଳ ଭାବରେ ପ୍ରୟୋଗ କରିବାରେ ସେ ଥିଲେ ଧୁରନ୍ଧର । କିନ୍ତୁ ସେ ନେତୃତ୍ୱରେ କୌଣସି ପ୍ରତିଭା ପ୍ରଦର୍ଶନ କରିପାରି ନଥିଲେ ।

ବହୁକାଳ ଧରି ସେ ଥିଲେ କଂଗ୍ରେସର କୋଷାଧ୍ୟକ୍ଷ ଏବଂ ପାର୍ଟି ପାଇଁ ପାଣ୍ଠି ଆଦାୟ କରିବାରେ ସେ ଥିଲେ ପାରଙ୍ଗମ । ଏଇ ଭୂମିକାରେ ସେ ଅନେକ ଗୁପ୍ତ କଥା ଓ କାହାଣୀର

ଗନ୍ତାଘର ପାଲଟିଥିଲେ । ଅନେକ ଗୁପ୍ତ ତଥ୍ୟ ଥିଲା ତାଙ୍କ ପାଖରେ । କିନ୍ତୁ ସେ ଭିତରୁ ଅଧିକାଂଶ ଆଉ ଆଲୋକକୁ ଆସିପାରିବ ନାହିଁ, ତାଙ୍କର ମୃତ୍ୟୁ ଯୋଗୁଁ ।

ସୋନିଆଙ୍କୁ ସେ ବ୍ୟବହାର କରିଛନ୍ତି ସଫଳତାର ସହିତ ନରସିଂହ ରାଓଙ୍କ ବିରୁଦ୍ଧରେ । କିନ୍ତୁ ଯେତେବେଳେ ସୋନିଆ ନିଜେ ପ୍ରତ୍ୟକ୍ଷ ରାଜନୀତି ପାଇଁ ଆଗ୍ରହ ପ୍ରକାଶ କଲେ ସେତେବେଳେ ସେ ତାଙ୍କଠାରୁ ଦୂରେଇ ଯିବାକୁ ଆରମ୍ଭ କଲେ । କାରଣ ସେ ଭାବିଥିଲେ ନରସିଂହ ରାଓଙ୍କ ପରେ ଯେଉଁ ଶୂନ୍ୟତା ସୃଷ୍ଟିହେବ, ସେ ତାକୁ ପୂରଣ କରିବେ । କଂଗ୍ରେସର ପାଣ୍ଠି, ପାଣ୍ଠି ସଂଗ୍ରହର ଗୁପ୍ତ ତଥ୍ୟ ତାଙ୍କ ପାଇଁ ସହାୟକ ହେବ । କିନ୍ତୁ ତାହା ହୋଇପାରିଲା ନାହିଁ ।

କଂଗ୍ରେସ ଭିତରେ ଭଲ ପଡ଼ିଲା ନାହିଁ ସରଦ୍ ପାୱାର ବା ଅର୍ଜୁନ ସିଂଙ୍କ ସହିତ । ସେମାନଙ୍କୁ ସେ କ୍ଷମତା ଦଖଲ ପାଇଁ 'ଅନ୍ତଦୃଷ୍ଟି ସମ୍ପନ୍ନ' ନେତା ବୋଲି ବୟାନ କରୁଥିଲେ । କିନ୍ତୁ ଦେବଗୌଡ଼ଙ୍କୁ ଚିତାକାଟି ଦେଲାବେଳେ ମନେହେଲା ଯେଭଳି ଏଇ ବୃଦ୍ଧ ବର୍ତ୍ତମାନ କ୍ଷମତା ପାଇଁ ଅତ୍ୟନ୍ତ ଆଗ୍ରହୀ ଓ ତରତର ହେଉଥିବା ବ୍ୟକ୍ତି ।

ଆପଣାକୁ ଗାନ୍ଧିବାଦୀ ଭାବରେ ଅଭିହିତ କରୁଥିବା ଏଇ ନେତା କିନ୍ତୁ ନିଜେ ନିରାମିଶାଶୀ ନଥିଲେ । ଚିଲି ଚିକେନ୍ ଏବଂ ଚୀନା ପ୍ରଣାଳୀରେ ପ୍ରସ୍ତୁତ ଖାଦ୍ୟ ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । କଲିକତା ତାଙ୍କର ଥିଲା ପ୍ରିୟ ସହର ।

କ୍ଷମତାରୁ ବିଚ୍ୟୁତ ହେବାପରେ ଆଉ ଚିଲି ଚିକେନର ଭେଟି ଆସୁ ନଥିଲା, ନା ତାଙ୍କ ପାଇଁ ନା ତାଙ୍କର କୁକୁର ପାଇଁ ।

ହାସ୍ୟରସ ମୁଖର ସୀତାରାମ ବେଶ୍ ବନ୍ଧୁବତ୍ସଳ ଥିଲେ । ପାକୁଆ ପାଟିରେ ତାଙ୍କର ହସ ସାଧାରଣ ମଣିଷ, ପ୍ରେସ, ଏବଂ କାର୍ଟୁନିଷ୍ଟମାନଙ୍କ ପାଖରେ ବେଶ୍ ଆଦୃତ ଥିଲା ।

ଏଇଭଳି ଏକ ବର୍ଣ୍ଣାଢ଼୍ୟ ନେତାଙ୍କର ପରଲୋକ ହୋଇଗଲା ସେଦିନ । ସେବାଦଳରେ ଆପଣାର ରାଜନୈତିକ ଜୀବନ ଆରମ୍ଭ କରିଥିବା ସୀତାରାମ କେଶରୀ ଆପଣାର ପାରିବାରପଣିଆ ଏବଂ ବିଚକ୍ଷଣତା ବଳରେ ଉଠିଥିଲେ ଶୀର୍ଷ ସ୍ଥାନକୁ ।

ଅନେକ କଥା ସେ କହି ଯାଇପାରିଥାନ୍ତେ, ଲେଖିଯାଇ ପାରିଥାନ୍ତେ । ସୁଭାଷ ବୋଷଙ୍କ ଠାରୁ ଆରମ୍ଭ କରି ରାଜେନ୍ଦ୍ର ପ୍ରସାଦଙ୍କ ସମେତ ସେ ବହୁ ନେତାମାନଙ୍କ ସହିତ କାମ କରିଥିଲେ । କଂଗ୍ରେସର କୋଷାଧ୍ୟକ୍ଷ ଭାବରେ ସେ ଅନେକ ଗୁପ୍ତ ତଥ୍ୟ ଜାଣିଥିଲେ । ସେସବୁ ପ୍ରକାଶ କରିଥିଲେ ଭାରତୀୟ ଜାତୀୟ କଂଗ୍ରେସର ତଥା ସ୍ୱାଧୀନତା ଆନ୍ଦୋଳନର ଇତିହାସ ଉପରେ ଆଲୋକପାତ ହୋଇପାରିଥାନ୍ତା । କିନ୍ତୁ ତାହା ରହିଗଲା ସେଇପରି ।

ସୀତାରାମ କେଶରୀ ଆଉ ନାହାନ୍ତି ।



# ଭାଇନା ଆଉ ନାହିଁ

ଖବରକାଗଜର ପୃଷ୍ଠାରୁ ହିଁ ଜାଣିବାକୁ ମିଳିଲା ଯେ ଡାକ୍ତର ସୁଧାକର ଆଚାର୍ଯ୍ୟ ଆଉ ନାହାନ୍ତି । କଳିଙ୍ଗ ହସପିଟାଲରେ ବାର୍ଦ୍ଧକ୍ୟଜନିତ ରୋଗ ଯୋଗୁଁ ସେ ଚାଲିଯାଇଛନ୍ତି ଚିରଦିନ ପାଇଁ । କିନ୍ତୁ ସେ କ'ଣ ବୁଢ଼ା ହୋଇଯାଇଥିଲେ ସତରେ ? କେବେ ? ଏଇତ କିଛିଦିନ ତଳେ ତାଙ୍କ ସହିତ ଭେଟ ହୋଇଥିଲା । ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ଉପରେ ଅଗାଧ ବିଶ୍ୱାସୀ ସୁଧାକର ଭାଇନା ବେଶ୍ ଉତ୍‌ଫୁଲ୍ଲ ଥିଲେ । ଦେହ ଅବଶ ହୋଇ ଆସୁଥିଲା ହୁଏତ କିନ୍ତୁ ମନ ତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲା । ତଥାପି ସେ ସ୍ୱପ୍ନ ଦେଖୁଥିଲେ ଏକ ଦୂର ଭବିତବ୍ୟର ! ବୋଧହୁଏ ଆଉରି ଦୂରର ସ୍ୱପ୍ନ ତାଙ୍କୁ ମତୁଆଲା କରି ସାରିଥିଲା । ଯାହା ଅନ୍ୟମାନେ ଜାଣିବାର ସୁଯୋଗ ପାଇ ନଥିଲେ । କିମିତି ଜାଣନ୍ତେ ? ଜାଣିପାରନ୍ତି ନାହିଁ ବୋଲି ତ ମରଣର ଗୁରୁତ୍ୱ ଏତେ ବେଶି !

ଗଲା କିଛିବର୍ଷ ହେଲା ସୁଧାକର ଭାଇନା ପ୍ରାୟ କଟକରେ ରହୁ ନଥିଲେ । ରହୁଥିଲେ ହିନ୍ଦୋଳରେ, ଯେଉଁଠି ସେ ଆପଣାର ପୈତୃକ ସମ୍ପତ୍ତିକୁ ଏକ ଆଶ୍ରମରେ ପରିଣତ କରିଥିଲେ ଏବଂ ପ୍ରାୟ ଧ୍ୟାନରେ ସମୟ କଟାଉଥିଲେ ।

ସୁଧାକର ଭାଇନା ମୋ ଠାରୁ ବୟସରେ କିଛି ବର୍ଷ ବଡ଼ । ମୋର ଯାହା ମନେପଡୁଛି ମୁଁ ରେଭେନ୍ସା କଲେଜରେ ପଢ଼ିବାକୁ ଆସିଲାବେଳକୁ ସେ ମେଡ଼ିକାଲ କଲେଜର ଛାତ୍ର । ସେଇ ସମୟରୁ ହିଁ ପରିଚିତି, ଆତ୍ମୀୟତା ଜନ୍ମିଥିଲା କାରଣ ଦୁହେଁ ରାଜନୈତିକ ଆନ୍ଦୋଳନ ସହିତ ଗଭୀର ଭାବରେ ଜଡ଼ିତ ଥିଲୁ । ତାଙ୍କର ରାଜନୈତିକ ଆନୁଗତ୍ୟ ଥିଲା ଭାରତୀୟ ଜାତୀୟ କଂଗ୍ରେସ ପ୍ରତି । ତେଣୁ ସେ ଛାତ୍ର କଂଗ୍ରେସର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ । ଆମର ଆନୁଗତ୍ୟ ହେଉଛି ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପ୍ରତି । ତେଣୁ ନିଖିଳ ଭାରତ ଛାତ୍ର ସଂଘ ପ୍ରତି ଆମର ଆନୁଗତ୍ୟ । ସେତେବେଳେ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟି ଭିତରେ ତାତ୍ତ୍ୱିକ ଏବଂ ସାଂଗଠନିକ ସଂଘର୍ଷ ତୀବ୍ର । ସୋସଲିଷ୍ଟ ପାର୍ଟିର ନେତା ଓ କର୍ମୀମାନେ ସେ ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସରୁ ଅଲଗା ହୋଇଯାଇ

ନାହାନ୍ତି । ତେଣୁ ଗୋଟିଏ ପଟରେ କଂଗ୍ରେସ ଓ ସୋସଲିଷ୍ଟ ପାର୍ଟି ଏବଂ ଅନ୍ୟ ପଟରେ କମ୍ୟୁନିଷ୍ଟ ପାର୍ଟି ଭିତରେ ସଂଘର୍ଷ ତୀବ୍ର । ଏହା ସତ୍ତ୍ୱେ ବ୍ୟକ୍ତିଗତ ସଂପର୍କ ଟିକିଏ ବି କ୍ଷୁର୍ଣ୍ଣ ହୋଇନାହିଁ । ଯେହେତୁ ସୁଦୂର ପ୍ରସାରୀ ଲକ୍ଷ୍ୟ ଉପରେ ସମସ୍ତ ଶକ୍ତି କେନ୍ଦ୍ରୀଭୂତ ଥିଲା ସେଇଯୋଗୁଁ ବ୍ୟକ୍ତିଗତ ବିଦ୍ୱେଷର ପ୍ରଶ୍ନ ନଥିଲା ।

ସୁଧାକର ଆଚାର୍ଯ୍ୟ ଏମ୍.ବି.ବି.ଏସ୍. ପାଶ କରି କଟକରେ ପ୍ରାକ୍‌ଟିସ ଆରମ୍ଭ କଲେ । ମୋର ଯାହା ମନେପଡୁଚି ଚୌଧୁରୀ ବଜାରରେ ତାଙ୍କର ଏକ କ୍ଲିନିକ ଥିଲା । କିଏ କେତେ ଫିସ ଦେଲା ବା ନଦେଲା ସେଥିପାଇଁ ସେ ଚିନ୍ତିତ, ଆଗ୍ରହୀ ନଥିଲେ । ମନେ ହେଉଥିଲା ଯେପରି ଏହା ଏକ ମାଧମ ମାତ୍ର, ଲକ୍ଷ୍ୟ ନୁହେଁ । ସୁଧାକର ବାବୁ କଂଗ୍ରେସ ଦଳ ବିଶେଷତଃ 'ସମାଜ' ସଂପାଦକ ରାଧାନାଥ ରଥ ଏବଂ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ଖୁବ୍ ନିକଟତର ଥିଲେ । 'ସମାଜ' ପରିବାରର ସେ ଏକ ସଦସ୍ୟ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଧାନାଥ ବାବୁଙ୍କ ପରିବାରର ସେ ଥିଲେ ଡାକ୍ତର ଏବଂ ଶୁଭେଚ୍ଛୁ ଉପଦେଷ୍ଟା । ଅନେକ ବିଷୟରେ ରାଧାନାଥ ବାବୁ ତାଙ୍କଠାରୁ ଉପଦେଶ ଗ୍ରହଣ କରିବା ମୁଁ ଦେଖିଛି । ନନ୍ଦିନୀ ଦେବୀ ହେଲେ ତାଙ୍କ ଧାର୍ମିକ ପରିବାରର ସଭ୍ୟ । ଦୁହେଁ ଶ୍ରୀ ମା ଓ ଶ୍ରୀ ଅରବିନ୍ଦଙ୍କ ଭକ୍ତ । ସେଇ ଭାବରେ ସେ ନନ୍ଦିନୀ ଦେବୀଙ୍କର ଥିଲେ ଏକ ଆୟୁଧ । ନନ୍ଦିନୀ ଦେବୀଙ୍କର କଟକ ଉପ ନିର୍ବାଚନରେ ବିଜୟଲାଭ ପାଇଁ ସୁଧାକର ଭାଇନା ସମଗ୍ର ଶ୍ରୀ ଅରବିନ୍ଦ-ଶ୍ରୀମା ଭକ୍ତ ପରିବାରକୁ ବ୍ୟବହାର କରିବାରେ ଥିଲେ ଅନ୍ୟତମ ମୁଖ୍ୟ ନାୟକ ।

କିନ୍ତୁ ରାଜନୀତି ତାଙ୍କୁ ବେଶି ପୋଷାଇପାରି ନାହିଁ । କିଛି ସମୟ ସେ ଜଡ଼ିତ ଥିବା ସତ୍ତ୍ୱେ, ପରେ ନିଷ୍କ୍ରାନ୍ତ ହୋଇ ଯାଇଛନ୍ତି ସକ୍ରିୟ ରାଜନୀତିରୁ । ପଣ୍ଡିଚେରୀ ଠାରୁ ତାଳିଯୋଡ଼ା ଶ୍ରୀକ୍ଷେତ୍ର ଆଶ୍ରମ ପର୍ଯ୍ୟନ୍ତ, ମାତୃମନ୍ଦିର ଠାରୁ ତାଙ୍କର ହିନ୍ଦୋଳ ଆଶ୍ରମ ପର୍ଯ୍ୟନ୍ତ ସ୍ଥାନ ତାଙ୍କୁ ଦେଇଛି ଶାନ୍ତି ଓ ପ୍ରଶାନ୍ତି ।

ଏଇ ସାଧକ ଅପେକ୍ଷା କରୁଥିଲେ ଅତିମାନସ ଶକ୍ତିର ଅବତରଣ ପାଇଁ, ଯାହାର ସ୍ପର୍ଶରେ ମଣିଷ ଲାଭ କରିବ ଅମରତ୍ୱ । କିନ୍ତୁ ତା ପୂର୍ବରୁ ସେ ନିଜେ ସେଇଠିକୁ ଚାଲିଯାଇଛନ୍ତି, ଯେଉଁଠାରୁ କେହି କେବେ ଫେରିନାହାନ୍ତି ।



# କୁଶଳୀ ଇଂଜିନିୟରର ଅନ୍ତିମ ଅଭିଲେଖ

ସୁବ୍ରତ ରାୟ ଆଉ ନାହାନ୍ତି । ମାତ୍ର ୬୪ ବର୍ଷ ବୟସରେ ଏଇ ଦକ୍ଷ ଇଂଜିନିୟର, ପ୍ରଶାସକର ପରଲୋକ ହୋଇଯାଇଛି ଜୁଲାଇ ୧୫ ତାରିଖ, ୨୦୦୦ ମସିହାରେ । ତାଙ୍କର ପରାକାଷ୍ଠା ଛଡ଼ା ସେ ପରିଚିତ ଥିଲେ ତାଙ୍କର ପରିଚାଳନା ଦକ୍ଷତା, ମାନବିକ ସ୍ପର୍ଶ ଏବଂ ଉଷ୍ଣ ସଂପର୍କ ପାଇଁ ।

ସୁବ୍ରତଙ୍କୁ ମୁଁ ଜାଣିଥିଲି ତାଙ୍କର ଛାତ୍ରାବସ୍ଥାରୁ । ପୁରୀ ସହରରେ ତାଙ୍କର ଜନ୍ମ ଏବଂ ଭିଲାଇ ଇସ୍ପାତ କାରଖାନା ଥିଲା ତାଙ୍କର ଆଦ୍ୟ କର୍ମସ୍ଥଳୀ । ସେଇଠି ଏଇ ଲୁହା ଇସ୍ପାତରେ ପରିଣତ ହୋଇଥିଲା ଏବଂ କାର୍ଯ୍ୟଦକ୍ଷତା ତାଙ୍କୁ ନେଇ ଯାଇଥିଲା ପ୍ରତିଷ୍ଠା ଓ ସାଫଲ୍ୟର ଶିଖରକୁ ।

ସୁବ୍ରତ ରୁଷ ଓ ଜର୍ମାନୀରେ ଇଂଜିନିଅରିଙ୍ଗରେ ଉଚ୍ଚ ଶିକ୍ଷା ଏବଂ ତାଲିମ ପାଇଥିଲେ । ସେ କେବଳ ଜଣେ ଇଂଜିନିଅର ନଥିଲେ । ତାଙ୍କର ଥିଲା ଦୂରଦୃଷ୍ଟି, କାର୍ଯ୍ୟ ପାଇଁ ଦୁରନ୍ତ ଆଗ୍ରହ ଓ ନିଷ୍ଠା । ତାଙ୍କର ସ୍ୱପ୍ନ ଥିଲା– ସେ ଯେପରି ନିଜେ ଗଳିତ ଇସ୍ପାତରେ ପରିଣତ ହୋଇ ଏକ ନୂତନ ଭାରତବର୍ଷର ଭିତ୍ତିଭୂମି ପ୍ରତିଷ୍ଠା କରିଯିବେ ।

ସୁବ୍ରତ ଚାକିରିରୁ ଅବସର ନେଲାପରେ ନୀଳାଚଳ ଇସ୍ପାତ ନିଗମର ଦାୟିତ୍ୱ ବହନ କରିଥିଲେ । ଏହି ଇସ୍ପାତ କାରଖାନାକୁ ସେ ଗଢ଼ିବାକୁ ଚାହିଁଥିଲେ ଏକ ସମୃଦ୍ଧିଶାଳୀ ଓଡ଼ିଶା ଗଠନର ଅଂଶ ଭାବରେ ।

ଓଡ଼ିଶାର ପ୍ରତିଭାଶାଳୀ ଇଂଜିନିଅରମାନଙ୍କ ମଧ୍ୟରେ ସେ ଗଣା ହେଉଥିଲେ । କାମ ଭିତରେ ସେ ଅବସର କଥା ଚିନ୍ତାକରୁ ନଥିଲେ । ମନେ ହେଉଥିଲା ଯେପରି ସେ ଖୁବ୍ ତରତର ଥିଲେ ସେ ଦାୟିତ୍ୱନେବା କାମଗୁଡ଼ିକୁ ସାରିବା ପାଇଁ । ସେ ଫୁରସତ

ପାଉ ନଥିଲେ କାମରୁ, ନେଉ ନଥିଲେ ବିଶ୍ରାମ । ସମୃଦ୍ଧିଶାଳୀ ଓଡ଼ିଶା ଗଠନର ସ୍ୱପ୍ନ ତାଙ୍କୁ ବିଭୋର କରିଥିଲା ।

ସେ ସ୍ୱପ୍ନ ରହିଗଲା ଅଧୁରା, କିନ୍ତୁ ତାହା ଉଜ୍ଜିବୀତ କରିଗଲା ଉତ୍ତର ପୀଢ଼ିକୁ । ମେଟାଲର୍ଜିର ସେ ଥିଲେ ପ୍ରବାଦ ପୁରୁଷ । ସେ ନୀଳାଚଳ ଇସ୍ପାତ ନିଗମର ଦାୟିତ୍ୱ ନେଲା ବେଳକୁ ଏହି ପରିକଳ୍ପନା ବିପର୍ଯ୍ୟସ୍ତ ଅବସ୍ଥାରେ ଥିଲା । ଏଥିରୁ ଇସ୍ପାତ ଉତ୍ପାଦନ ହୋଇପାରିବ କି ନାହିଁ ତାହା ଥିଲା ସଂଦେହର ବଳୟରେ । ଅମଲାତନ୍ତ୍ରର ଶିଥିଳତା, କେନ୍ଦ୍ର ସାହାଯ୍ୟର ଅନିଶ୍ଚିତତା ସମଗ୍ର ପରିକଳ୍ପନାକୁ ଆଚ୍ଛାଦିତ କରିଦେଇଥିଲା ଅନିଶ୍ଚିତତାର କୁଜ୍ଝଟିକାରେ ଠିକ୍ ଡୁବୁରି ପାହାଡ଼ ଉପରେ ଜମିଥିବା କୁହୁଡ଼ି ପରି ।

ନୈରାଶ୍ୟ ସୁବ୍ରତଙ୍କୁ ଘାରି ନଥିଲା । ସବୁ ନାହିଁ ମଧ୍ୟରେ ଟିକିଏ ହଁ ପାଇଁ ସେ ଆତୁର ଥିଲେ । ଲୋକ ସଂପର୍କ ତାଙ୍କର ଥିଲା ଉଷ୍ମ ଏବଂ ପ୍ରଗାଢ଼ । ତଳୁ ଉପର ପର୍ଯ୍ୟନ୍ତ ସବୁ ମଣିଷଙ୍କୁ ଚିହ୍ନିଥିଲେ । ସେଇଥିଲା ତାଙ୍କର ଅଭିନବତ୍ୱ ଏବଂ ସ୍ୱାତନ୍ତ୍ର୍ୟ ।

ସଜାଡ଼ି ଆଣିଲା ବେଳକୁ ସୁବ୍ରତ ଆଉ ନାହାନ୍ତି । କେହି ତ ରହିବେ ନାହିଁ । କିନ୍ତୁ ତାଙ୍କର କ'ଣ ଯିବାବେଳ ହୋଇଯାଇଥିଲା ? ମେଧାବୀ ଛାତ୍ର, କୁଶଳୀ ଇଂଜିନିଅର, ଦକ୍ଷ ପ୍ରଶାସକ ଏବଂ ସର୍ବୋପରି ଜଣେ ଅଙ୍ଗୀକାରବଦ୍ଧ ମଣିଷ ହଠାତ୍ ଚାଲିଗଲା ଆମ ଭିତରୁ ।

ତାଙ୍କର ସେଇ ସ୍ୱପ୍ନ ସାର୍ଥକ ହେବ ତ ?



# ନିର୍ମଳ ଚରିତ୍ରର ବିରଳ ରାଜନୈତିକ ନେତା

ମନମୋହନ ଅଧିକାରୀଙ୍କର ହଠାତ୍ ପରଲୋକ ହୋଇଯାଇଛି, ନେପାଳର ପାର୍ଲ୍ୟାମେଣ୍ଟ ପାଇଁ ନିର୍ବାଚନ ଭିତରେ । ସେ ଥିଲେ ନେପାଳ କମ୍ୟୁନିଷ୍ଟ ପାର୍ଟିର ନେତା ଏବଂ ଚଳିତ ନିର୍ବାଚନରେ ନେପାଳ କମ୍ୟୁନିଷ୍ଟ ପାର୍ଟି ସରକାର ଗଠନର ସମ୍ଭାବନା ଥିଲା ବିପୁଳ । କିନ୍ତୁ ମନମୋହନଙ୍କ ପରଲୋକରେ ଯେଉଁ କ୍ଷତି ହେଲା ତାକୁ ଭରଣା କରି ନେପାଳ କମ୍ୟୁନିଷ୍ଟ ପାର୍ଟି ସଂଖ୍ୟା ଗରିଷ୍ଠତା ପାଇପାରିବ ନାହିଁ ବୋଲି ଆଶଙ୍କା ପ୍ରକାଶ ପାଇଛି । କାରଣ ହାତରେ ସମୟ ସ୍ୱଳ୍ପ ।

ସେ ଶ୍ୱାସ ରୋଗରେ ପୀଡ଼ିତ ଥିଲେ । ଉଚ୍ଚ ମାଳଭୂମି ଅଂଚଳରେ ନିର୍ବାଚନ ପ୍ରଚାର କରୁ କରୁ ସେ ଶ୍ୱାସ ରୋଗରେ ଆକ୍ରାନ୍ତ ହେଲେ ଏବଂ ସେ ଅଚେତ ଅବସ୍ଥାରୁ ଆଉ ଉଧୁରି ପାରିଲେ ନାହିଁ । ସେଇ ଅଚେତ ଅବସ୍ଥାରେ ହିଁ ତାଙ୍କର ପରଲୋକ ହୋଇଗଲା ।

ନେପାଳର ରାଜନୀତି ଖୁବ୍ ପଙ୍କିଳ ଏବଂ ଦ୍ୱିଧା ବିଭକ୍ତ । ଭାରତବର୍ଷଠାରୁ ବେଶି । ଅଧିକାଂଶ ରାଜନୈତିକ ନେତା, ସବୁ ଦଳର ନେତା, ଭ୍ରଷ୍ଟାଚାରୀ, ସ୍ୱାର୍ଥାନ୍ୱେଷୀ ଏବଂ ନ୍ୟସ୍ତସ୍ୱାର୍ଥସର୍ବସ୍ୱ । ତାରି ଭିତରେ, ସେଇ ପଙ୍କ ଭିତରେ ଯେଉଁ କେତୋଟି ପଙ୍କଜ, ସେମାନଙ୍କ ଭିତରେ ମନମୋହନ ଅନ୍ୟତମ । ଆପଣାର ନିର୍ମଳ ଚରିତ୍ର ପାଇଁ ସେ ସବୁ ଦଳର ସମ୍ମାନାସ୍ପଦ ଥିଲେ ଏବଂ ତାଙ୍କର ବ୍ୟକ୍ତିଗତ ପ୍ରଭାବ ନିଜ ଦଳର ସୀମାଟପି ପ୍ରସାରିତ ହୋଇଥିଲା ଅନ୍ୟ ଦଳମାନଙ୍କୁ ।

ସେଇ ଯୋଗୁଁ ତାଙ୍କର ବିଦାୟରେ ପ୍ରାୟ ସବୁ ଦଳର ନେତୃବୃନ୍ଦ ସେଇ ଗୋଟିଏ କଥା କହିଛନ୍ତି ଯେ ମନମୋହନ ଅଧିକାରୀଙ୍କ ବିଦାୟ କେବଳ ନେପାଳର କମ୍ୟୁନିଷ୍ଟ ପାର୍ଟି (ମାର୍କିଷ୍ଟ-ଲେନିନିଷ୍ଟ) ପାଇଁ ନୁହେଁ ସମଗ୍ର ରାଜନୈତିକ ଜୀବନ ପାଇଁ ବିରାଟ କ୍ଷତି । କାରଣ ବ୍ୟକ୍ତିଗତ ଜୀବନରେ ଆଦର୍ଶ ସ୍ଥାନୀୟ ରହିବାର ନେତା ଖୁବ୍ କମ ।

ମନମୋହନ ପାଠ ପଢ଼ିଥିଲେ ଭାରତବର୍ଷରେ । ଏବଂ ଏଇଠାରେ ହିଁ ସେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପ୍ରତି ଆପଣାର ପ୍ରଗାଢ଼ ଅନୁରକ୍ତି ପ୍ରତିଷ୍ଠା କରଥିଲେ । ନିଖିଳ ଭାରତ ଛାତ୍ର ସଂଘ ସହିତ ତାଙ୍କର ସଂପର୍କ ଥିଲା ଖୁବ୍ ଘନିଷ୍ଠ ଏବଂ ସେଇଦିନ ଠାରୁ ତାଙ୍କ ସହିତ ପରିଚିତି । ନେପାଳର ଅଧିକାଂଶ ରାଜନୈତିକ ନେତା ଭାରତବର୍ଷରେ, ବିଶେଷତଃ ବନାରସ ଏବଂ ଆଲାହାବାଦରେ ଶିକ୍ଷାଲାଭ କରିଛନ୍ତି ।

ପାଠପଢ଼ିବା ସମୟରେ ମନମୋହନ ଅନ୍ୟାନ୍ୟ ବହୁ ନେପାଳୀ ନେତାଙ୍କ ଭଳି କମ୍ୟୁନିଷ୍ଟ ପାର୍ଟିର ପ୍ରବାଦ ପୁରୁଷ ପି.ସି. ଯୋଶୀଙ୍କ ସଂପର୍କରେ ଆସନ୍ତି ଏବଂ ମାର୍କ୍ସବାଦୀ ଲେଲିନବାଦୀ ଦର୍ଶନରେ ଦୀକ୍ଷିତ ହୁଅନ୍ତି । ସେ ନେପାଳ ଫେରନ୍ତି ରାଣାସାହୀ-ରାଜଶାହୀ ବିରୁଦ୍ଧରେ ସଂଗ୍ରାମରେ ଯୋଗଦେବା ପାଇଁ ଏବଂ ଏକ ସମାଜବାଦୀ ନେପାଳ ଗଠନ କରିବା ପାଇଁ । ବହୁ ଅତ୍ୟାଚାର, କଷଣ ତାଙ୍କୁ ଶାଣିତ କରିଛି, ଲୁହା ଇସ୍ପାତରେ ପରିଣତ ହୋଇଛି । ତାଙ୍କ ସାଂଗରେ ଦେଖାହେଲେ ସେ ଗପନ୍ତି ବିଜୁପଟ୍ଟନାୟକଙ୍କ କଥା । ନେପାଳ ଗଣ-ସଂଗ୍ରାମକୁ ସାହାଯ୍ୟ କରିବା ପାଇଁ ବଂଧୁକ ଯୋଗାଇବାର କାହାଣୀ ।

ନେପାଳର ଦକ୍ଷିଣରେ ଭାରତ, ଉତ୍ତରରେ ଚୀନ । ନେପାଳ (ବିଶେଷତଃ କାଠମାଣ୍ଡୁରେ) ବହୁ ଭାରତୀୟ– ପରିବ୍ରାଜକ, ଦୋକାନୀ, ବ୍ୟବସାୟୀ । ନେପାଳ ମାର୍କେଟରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଭାରତୀୟମାନଙ୍କର । ସ୍ୱାଭାବିକ ଭାବରେ ସେଇ ଯୋଗୁଁ ନେପାଳ ଜନସାଧାରଣଙ୍କର କିଛି ପରିମାଣରେ ବୈରତା ରହିଛି ଭାରତୀୟମାନଙ୍କ ପାଇଁ । ଭାରତୀୟ ମୁଦ୍ରା ସେଠାରେ ଚଳେ, ନେପାଳୀ ମୁଦ୍ରା ଭଳି ଖୋଲାଖୋଲି । ବହୁ ଦୋକାନ ବଜାର, ବ୍ୟବସାୟ, ହୋଟେଲ ଭାରତୀୟମାନଙ୍କ ହାତରେ । ସେଇଯୋଗୁଁ ନେପାଳର ବୈରତା ଭାରତ ସହିତ, ପାକିସ୍ଥାନ ସହିତ ନୁହେଁ । କଦବା କ୍ୱଚିତ୍ ଦେଖାଯାଉଥିବା ପାକିସ୍ଥାନୀମାନେ ମଧ ଭାରତୀୟ ନାମରେ ପରିଚିତ । ନେପାଳ ସହିତ କେତେକ ଚୁକ୍ତି ରହିଛି ଭାରତବର୍ଷର । ଏଗୁଡ଼ିକ ମଧରୁ ଅନେକ ନେପାଳର ସ୍ୱାଭିମାନ ଉପରେ ଆଘାତ । ଉଦାହରଣ ସ୍ୱରୂପ ଏକ ପୁରୁଣା ମରହଟ୍ଟିଆ ଚୁକ୍ତି ବଳରେ ନେପାଳ ମାଟିରେ ଭାରତୀୟ ସୈନ୍ୟବାହିନୀର ଏକ ଘାଟୀ ରହିଛି । ଭାରତୀୟ ସୈନ୍ୟବାହିନୀ ସେଠାରେ ମହଜୁଦ୍ ଅଛନ୍ତି । ଯେଉଁ ଐତିହାସିକ ପରିସ୍ଥିତିରେ ଏହାର ଅବସ୍ଥାପନ ହୋଇଥିଲା ତାହା ବଦଳି ଗଲାଣି । କିନ୍ତୁ ଭାରତ ସେ ଚୁକ୍ତିକୁ ବାତିଲ କରୁନାହିଁ । ସେଇପରି ଏକ ଜଳବିଦ୍ୟୁତ ଯୋଜନା ରହିଛି ଯାହା ନିଶ୍ଚିତ ଭାବରେ ନେପାଳ ପାଇଁ କ୍ଷତିକାରକ । ଏହା ସତ୍ତ୍ୱେ ଭାରତ ତାକୁ ବାତିଲ ବା ସଂଶୋଧନ କରୁନାହିଁ । ଏହିସବୁ ଫଳରେ ନେପାଳର ରାଜନୈତିକ ଶକ୍ତିମାନେ ଭାରତୀୟମାନଙ୍କ ପ୍ରତି ଅନୁକୂଳ ନୁହନ୍ତି । ନେପାଳର ଉତ୍ତରରେ ଚୀନ । ଚୀନ ସହିତ ଭାରତବର୍ଷର ସଂପର୍କରେ ଅବନତି ହେବା ପରଠାରୁ ଚୀନ ନେପାଳର ରାଜନୈତିକ ଶକ୍ତିମାନଙ୍କ ପ୍ରତି ଅନୁକୂଳ ମନୋଭାବ ଏବଂ ସମର୍ଥନ ଜଣାଇଆସିଛି ।

ସେଇଯୋଗୁଁ ନେପାଳର ବାମପନ୍ଥୀ ଶକ୍ତିମାନେ ମଧ୍ୟ ଭାରତର ସଂପୂର୍ଣ୍ଣ ସମର୍ଥକ ନୁହନ୍ତି । ମନମୋହନ ଠିକ୍ ଏଇ ଧାରାର ନୁହନ୍ତି । ତାଙ୍କର ଭାରତପ୍ରତି ପ୍ରତିକୂଳ ମନୋଭାବ ପୋଷଣ ନାସ୍ତିମୂଳକ ନୁହେଁ । ସେଇଯୋଗୁଁ ସେ 'ଭାରତର ବଂଧୁ' ଭାବରେ ପରିଚିତ ଆପଣା ଦେଶରେ । ଏହାଛଡ଼ା ଭାରତର ବହୁ ରାଜନୈତିକ ନେତା ତାଙ୍କର ବ୍ୟକ୍ତିଗତ ବଂଧୁ ।

ନେପାଳରେ ମାଓବାଦୀ (ଭାରତବର୍ଷର ନକ୍ସଲବାଦୀମାନଙ୍କ ପରି) ମାନେ ବେଶ୍ ଶକ୍ତିଶାଳୀ ଓ ସକ୍ରିୟ । ନେପାଳର ଗୋଟାଏ ଅଂଶରେ ସେମାନଙ୍କର ଆଧିପତ୍ୟ ବେଶ୍ ବେଶି । ନେପାଳର କମ୍ୟୁନିଷ୍ଟ ଶକ୍ତି ଏହାଛଡ଼ା ବି ଦ୍ୱିଧାବିଭକ୍ତ । ଏହାର ମିଳିତ ପ୍ରକ୍ରିୟାର ସଂଯୋଜକ ଥିଲେ ମନମୋହନ । କାରଣ ତାଙ୍କର ନିଷ୍ଠା ପ୍ରତି କାହାରି ସଂଦେହ ନଥିଲା ।

ନେପାଳର ରାଜନୀତିର ଏକ ସନ୍ଧିକ୍ଷଣରେ ସେ ବିଦାୟ ନେଇଯାଇଛନ୍ତି ଏବଂ ଏହା ବାମପନ୍ଥୀ ଆନ୍ଦୋଳନ ପ୍ରତି ଏକ ଗୁରୁତର ଆଘାତ । ଏହା ପୂର୍ବରୁ ନେପାଳ ରାଜନୀତିର ଉଦୀୟମାନ ପ୍ରବାଦ ପୁରୁଷଙ୍କର ଦୁର୍ଘଟଣାରେ ପରଲୋକ ହୋଇଯାଇଥିଲା । ନେପାଳର ସାମ୍ୟବାଦୀ ଶକ୍ତି ଏହାକୁ କିପରି ଭାବରେ ଗ୍ରହଣ କରୁଛି ଏବଂ କ୍ଷତିର ସମ୍ମୁଖୀନ ହେଉଛି ?

ମୂଲ୍ୟବୋଧ ରାଜନୀତିର ଦ୍ରୁତ ଅବକ୍ଷୟ ଘଟୁଛି । ଉଭୟ ନେପାଳରେ ଏବଂ ଭାରତରେ । ଏତିକିବେଳେ ମନମୋହନଙ୍କର ମହାପ୍ରୟାଣ ଏକ ଏଭଳି କ୍ଷତି ଯାହା ପୂରଣ ହେବା ପାଇଁ ବହୁବର୍ଷ ଲାଗିଯିବ ।



# ରାଜ୍ୟ ନଥାଇ ରାଜା

ଇତିହାସର ଏକ ବିସ୍ମୃତ ଚରିତ୍ର ଶ୍ରୀ ସୌରେନ୍ଦ୍ର ପ୍ରତାପ ସିଂହଦେଓଙ୍କର ୮୩ ବର୍ଷ ବୟସରେ ଢେଙ୍କାନାଳ କଲୋନୀ, ତୁଳସୀପୁରରେ ଅବସ୍ଥିତ ତାଙ୍କର ବାସଭବନରେ ନଭେମ୍ବର ୨୯, ୧୯୯୮ ମସିହା ସକାଳ ସାଢ଼େ ନଅଟାରେ ପରଲୋକ ହୋଇଯାଇଛି । ବର୍ଷାଧିକ କାଳ ସେ ଅସୁସ୍ଥ ଥିଲେ ଏବଂ ଆଲଜେମିର ରୋଗରେ ତାଙ୍କର ସ୍ମୃତିଶକ୍ତି ବିଲୁପ୍ତ ହୋଇଯାଇଥିଲା । ୧୯୧୫ ମସିହା ସେପ୍ଟେମ୍ବର ୧୦ ତାରିଖରେ ଢେଙ୍କାନାଳ ରାଜ ପରିବାରରେ ତାଙ୍କର ଜନ୍ମ ଏବଂ ଇତିହାସ ପ୍ରସିଦ୍ଧ ରାଜା ଶଂକର ପ୍ରତାପ ଏବଂ ଢେଙ୍କାନାଳ ପଟ୍ଟାୟତଙ୍କର ସେ ଚତୁର୍ଥ ଭ୍ରାତା ତଥା ରାଜା ସୁରପ୍ରତାପଙ୍କର ଚତୁର୍ଥ ପୁତ୍ର । ଢେଙ୍କାନାଳ ରାଜା ଏବଂ ପଟ୍ଟାୟତ ଯେପରି ଆପଣାର ଶାସନ ପାଇଁ ସମଗ୍ର ଭାରତବର୍ଷରେ ପରିଚିତ ଥିଲେ, ତଳ ଦୁଇଭାଇ ନିନି ଏବଂ ଟିକି, ନା ସେ ଶାସନ ସହିତ ଜଡ଼ିତ ଥିଲେ, ନା ସେ ପ୍ରକାର ଖ୍ୟାତି ତାଙ୍କର ଥିଲା ! ସେଇଯୋଗୁଁ ହିଁ ସେ ଅଧିକ ସ୍ମରଣୀୟ ହୋଇ ରହିବେ ।

ସୌରେନ୍ଦ୍ର (ଟିକି) ଢେଙ୍କାନାଳ ହାଇସ୍କୁଲରୁ ମାଟ୍ରିକ ପାଶ କରି ରେଭେନ୍ସା କଲେଜ, କଲିକତା ପ୍ରେସିଡେନ୍ସି କଲେଜରେ ଅଧ୍ୟୟନ କରିଥିଲେ । ପରେ ସେ ଯାଇଥିଲେ ଇଂଲଣ୍ଡ । ଲିଡସ୍ କଲେଜରେ ବାରିଷ୍ଟରୀ ପଢ଼ିବା ପାଇଁ । ମହାଯୁଦ୍ଧ ଆରମ୍ଭ ହୋଇଯାଏ ଏବଂ ରାଜା ଶଙ୍କର ପ୍ରତାପ ସାନ ଭାଇ ଉପରେ ହୁକୁମ ଜାରି କରନ୍ତି ''ପାଠପଢ଼ା ଅଧାରେ ରଖି ଫେରିଆସ, ନଚେତ୍ ଖର୍ଚ୍ଚବନ୍ଦର ସମ୍ମୁଖୀନ ହୁଅ'' । ସେ ଫେରିବାକୁ ବାଧ ହୋଇଥିଲେ । ରାଜାଦେଶର କଠୋରତା ତାଙ୍କୁ ବୋଧହୁଏ ଭଲଲାଗି ନ ଥିଲା ଏବଂ ସେ ଏଇ ପ୍ରକାର ଶାସନ ସହିତ ଆପଣାକୁ ଜଡ଼ିତ କରିବା ପାଇଁ ସୁଖ ମଣି ନଥିଲେ ।

ଇତିହାସର ଗତି ବିଚିତ୍ର । ରାଜପୁତ୍ର, ଟିକି ପୂଜାପାଠରେ ନିମଗ୍ନ ରହିଲେ । ସ୍ୱାମୀ ଚିନ୍ମୟାନନ୍ଦଙ୍କ ଉଦାତ୍ତବାଣୀ ତାଙ୍କୁ ମୁଗ୍ଧ କରିଥିଲା । ସବା ବଡ଼ଭାଇ ଶଙ୍କର ପ୍ରତାପ ବା

ପଟ୍ଟନାୟକଙ୍କ ଅପେକ୍ଷା ଠିକ୍ ଉପର ନିନିଙ୍କ ଭିତରେ ନିବିଡ଼ତା ବଢ଼ିଥିଲା । ଦୁହେଁ ମିଶି ଶମ୍ଭୁକ୍ଷେତ୍ର କପିଳାସ ପୁସ୍ତକ ରଚନା କରିଥିଲେ । କପିଳାସ ପାହାଡ଼ ଉପରେ ଅବସ୍ଥିତ ଶିବ ମନ୍ଦିର ଶ୍ରୀଧର ସ୍ୱାମୀଙ୍କୁ ଅଭିଭୂତ କରିଛି । ତାହାରି ଉପରେ ରଚିତ ଏହି ପୁସ୍ତକ ଲେଖିବାରେ ସହଯୋଗ କରିଥିଲେ ତାଙ୍କର ଗୃହଶିକ୍ଷକ ରାଜକିଶୋର ପଟ୍ଟନାୟକ । ହଠାତ୍ ସେ ଦିନ । ଖବର ମିଳିଲା ଯେ ବ୍ରିଟିଶ ସରକାରକୁ ଦେଶରୁ ହଟାଇବା ପାଇଁ ସେ ଷଡ଼ଯନ୍ତ୍ରରେ ଲିପ୍ତ । ରାଜପୁତ୍ର ପାଲଟିଲେ ପଳାତକ ଏବଂ ସେଇପରି ପଳାତକ ଅବସ୍ଥାରେ ହିଁ ସୁଦୂର କାଶ୍ମୀରରେ ତାଙ୍କର ଦ୍ୱିତୀୟ ପୁତ୍ରର ଜନ୍ମହୁଏ ।

କିନ୍ତୁ ବ୍ରିଟିଶ ସରକାରଙ୍କର ସୂର୍ଯ୍ୟ ଅସ୍ତମିତ ହେଲା ଏବଂ ଟିକି ଫେରିଲେ ଜନ୍ମଭୂମିକୁ । କଟକ ସହର ହିଁ ତାଙ୍କର ନିବାସ ସ୍ଥଳୀ ହୋଇଗଲା । ଏଇଠି ସେ ଚଳଚିତ୍ର ନିର୍ମାଣରେ ମନୋନିବେଶ କରନ୍ତି । ପ୍ରଥମ ଚଳଚିତ୍ର 'ଲଳିତା' ଆତ୍ମ-ପ୍ରକାଶ କରେ ଏବଂ ଦ୍ୱିତୀୟ ଚିତ୍ର 'ସପ୍ତଶଯ୍ୟା' ନିର୍ମିତ ହୁଏ । ଲଳିତା ଚଳଚିତ୍ରରେ, ପରେ ଆସାମରେ ରାଜ୍ୟପାଳ ହୋଇଥିବା ଲୋକନାଥ ମିଶ୍ର ଅଭିନୟ କରନ୍ତି ଏବଂ ପରେ ତାଙ୍କର ସ୍ତ୍ରୀ ବୀଣାପାଣୀ ଦେବୀ ଗୀତ ଗାଆନ୍ତି । ସେମାନଙ୍କ ମଧ୍ୟରେ ପରିଚିତି ପରିଣୟରେ ପରିଣତ ହୁଏ । 'ସପ୍ତଶଯ୍ୟା' ଚଳଚିତ୍ରର କାହାଣୀ ଆହୁରି ବିଚିତ୍ର । ବାମପନ୍ଥୀ ଭାବରେ ସୁପରିଚିତ ଲେଖକ ଅନନ୍ତ ପଟ୍ଟନାୟକ, ଅଭିନେତା ତଥା ଶ୍ରମିକ ନେତା ରାମଚନ୍ଦ୍ର ଭଂଜ, ଚଳଚିତ୍ର ନିର୍ଦ୍ଦେଶକ ବାମପନ୍ଥୀ ଗୋପାଳ ଘୋଷ ଏହା ସହିତ ଜଡ଼ିତ ଥିଲେ । କିନ୍ତୁ ଦୁଃଖର କଥା ଯେ, 'ସପ୍ତଶଯ୍ୟା' ଚଳଚିତ୍ରର କପି ମିଳୁ ନାହିଁ । ଚଳଚିତ୍ରର ବିକାଶର ଇତିହାସରେ ଏହା ଏକ ଗୁରୁତର କ୍ଷତି ।

ଟିକି ସାହେବ ନାମରେ ଖ୍ୟାତ ସୌରେନ୍ଦ୍ର ପ୍ରତାପ ଏକ ଭିନ୍ନ ପ୍ରକାର ମଣିଷ ଥିଲେ । ଚିନ୍ମୟାନନ୍ଦଙ୍କ ଭକ୍ତ ସୌରେନ୍ଦ୍ର ଚିନ୍ମୟାନନ୍ଦଙ୍କ ଦର୍ଶନ ଉପରେ ବହି ଯେପରି ରଚନା କରିଛନ୍ତି କବି ବ୍ରଜନାଥ ବଡ଼ଜେନାଙ୍କ ବହି ସମର ତରଂଗକୁ ଇଂରାଜୀରେ ଅନୁବାଦ ମଧ୍ୟ କରିଛନ୍ତି ।

ଚଳଚିତ୍ର ନିର୍ମାଣ ପାଇଁ ଦୁଇଟି ଆୱାର୍ଡ଼ ପାଇଛନ୍ତି, ୧୯୮୮ ଏବଂ ୧୯୯୬ ମସିହାରେ । ରାଜପରିବାରରେ ଜନ୍ମ ସୌରେନ୍ଦ୍ର ପ୍ରତାପ ଏକ ଭିନ୍ନ ସ୍ୱାଦର ମଣିଷ ଥିଲେ ଏବଂ ସେଇପରି ଭିନ୍ନ ମଣିଷ ହୋଇ ପରିଣତ ବୟସରେ ଇହଲୀଳା ସମ୍ବରଣ କରିଛନ୍ତି ।

ମହାକାଳ ଏହିପରି ଭାବରେ ହିଁ ତାଙ୍କୁ ସ୍ମୃତକରି ରଖିବ ବହୁକାଳ ।



# ମଣିଷ ଭଳି ମଣିଷଟିଏ

ସୁରେନ୍ଦ୍ର ପଟ୍ଟନାୟକଙ୍କର ୮୫ ବର୍ଷ ବୟସରେ ପରଲୋକ ହୋଇଗଲା ତାଙ୍କର ପୁଅ ଦେବେନ୍ଦ୍ର ମୋହନ ପଟ୍ଟନାୟକଙ୍କ ବାସଭବନରେ । ଦେବେନ୍ଦ୍ର (କୁନି) ଓଡ଼ିଶା ହାଇକୋର୍ଟର ବିଚାରପତି । ସେଇଯୋଗୁଁ ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କର ମୃତ୍ୟୁ ସଂବାଦ ପାଇ ତାଙ୍କୁ ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପାଇଁ ଉପସ୍ଥିତ ହୋଇପାରିଲେ । ମୋ ଭଳି ସାଧାରଣ ମଣିଷ ପକ୍ଷରେ ସେ ସଂବାଦ ଖବରକାଗଜର ପୃଷ୍ଠାରୁ ହିଁ ମିଳିଲା ଏବଂ ଖବର ପାଇଲାବେଳକୁ ତାଙ୍କର ମରଦେହ ତାଙ୍କର ଜନ୍ମସ୍ଥାନ ଢେଙ୍କାନାଳରେ ପୋଡ଼ି ପାଉଁଶ ହୋଇ ସାରିଛି । ଏକ ଦୀର୍ଘ କର୍ମମୟ ଜୀବନ ଇତିହାସରେ ପରିଣତ ହୋଇସାରିଛି ।

ନିଜର ମତରେ ଅଟଳ ରହିବେ, କିନ୍ତୁ କାହାରି ପ୍ରତିବନ୍ଧକ ହେବେ ନାହିଁ, କାହାରି ମନରେ ଦୁଃଖ ଦେବେ ନାହିଁ –ଜୀବନର ଏଇ ମୂଲ୍ୟବୋଧକୁ ସେ ଅତୁଟ ରଖିଯାଇଛନ୍ତି ମୃତ୍ୟୁ ପର୍ଯ୍ୟନ୍ତ । ଏବଂ ସେଇ କାରଣରୁ ହିଁ ସେ ଯାହା ହେବାର କଥା ତାହା ହୋଇପାରି ନାହାନ୍ତି । ସେଥିଲାଗି ଦୁଃଖ ବି କରିନାହାନ୍ତି । ହସ ହସ ମୁହଁରେ ସେ ବାସ୍ତବତାକୁ ସ୍ୱୀକାର କରିଯାଇଛନ୍ତି ।

ଚାକିରି ଆରମ୍ଭ କରିଥିଲେ ଓଡ଼ିଶା ସେକ୍ରେଟେରିଏଟରେ । ଏହା ଉଠିଯାଇଥିଲା ଯୁଦ୍ଧ ସମୟରେ ସମ୍ବଲପୁରକୁ । ସହକର୍ମୀ ବଂଧୁ ଭୈରବଚନ୍ଦ୍ର ମହାନ୍ତି ଚାକିରିରୁ ଇସ୍ତଫା ଦେଇ କାରାବରଣ କଲେ ସେଇଠି । ଦୈବାତ୍ ଖସିଯାଇଥିଲେ ସୁରେନ୍ଦ୍ର ମୋହନ । କିନ୍ତୁ ଚାକିରି ଜୀବନ ତାଙ୍କୁ ଆଉ ପୋଷାଇ ନଥିଲା । ସେ ଯେତେ ଶୀଘ୍ର ପାରିଲେ ଚାକିରି ଛାଡ଼ି ଢେଙ୍କାନାଳରେ ଓକିଲାତି ଆରମ୍ଭ କଲେ । ଖଦଡ଼ ପିନ୍ଧିବା ସେ ସେତିକିବେଳୁ ଆରମ୍ଭ କରିଥିଲେ । ଅନେକ ସ୍ୱାଧୀନତା ସଂଗ୍ରାମୀ ତାହା ଛାଡ଼ି ସାରିଥିଲେ ମଧ୍ୟ ସେ ତାକୁ ଛାଡ଼ିପାରି ନ ଥିଲେ । ଜଣେ ଓକିଲ ଭାବରେ ତାଙ୍କୁ ସାଫଲ୍ୟ ମିଳିଥିଲା । ସେ ପ୍ରତ୍ୟେକ ମୋକଦ୍ଦମାରେ ସଂପୂର୍ଣ ଭାବରେ ପ୍ରସ୍ତୁତ ହୋଇ ଯାଉଥିଲେ କଚେରୀକୁ । ନିଜର ଜୁନିଅରମାନଙ୍କୁ ମଧ୍ୟ ସେ ସେଇପରି ପ୍ରସ୍ତୁତ କରୁଥିଲେ, କିନ୍ତୁ ଆପଣାର ବିନୟ ବ୍ୟବହାରରେ ।

ରାଜନୀତି ତାଙ୍କ ପାଇଁ ପେଶା ନଥିଲା । ଥିଲା ଏକ ଅଙ୍ଗୀକାର । ସେ ସୋସଲିଷ୍ଟ ପାର୍ଟି ଟିକେଟରେ ପ୍ରଥମେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପରେ ସେ କଂଗ୍ରେସ

ଦଳରେ ଯୋଗ ଦେଇଥିଲେ । କିନ୍ତୁ ଟିକେଟ ପାଇଁ ଧାଇଁ ନାହାନ୍ତି ବା ଗୋଡ଼ଭାଙ୍ଗି ଠିଆହୋଇ ନାହାନ୍ତି । ବରଂ ନିଜେ ନ ଲଢ଼ି ସେ ଦେବେନ୍ଦ୍ର ଶତପଥୀଙ୍କୁ ଟିକେଟ ପାଇବା ପାଇଁ ଏବଂ ବିଜୟଲାଭ କରିବା ପାଇଁ ସାହାଯ୍ୟ କରିଛନ୍ତି । ନନ୍ଦିନୀ ଦେବୀଙ୍କୁ ଢେଙ୍କାନାଳରୁ ନିର୍ବାଚିତ ହେବାପାଇଁ ସାହାଯ୍ୟ କରିଛନ୍ତି । ତାଙ୍କୁ ମନ୍ତ୍ରୀ ପଦବୀ ମିଳୁ ମିଳୁ ବନ୍ଦ ହୋଇଯାଇଛି ଷଡ଼ଯନ୍ତ୍ର ଦ୍ୱାରା । ଏହାପରେ ସେ ବାଚସ୍ପତି ପଦବୀ ପାଇଁ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି । ଓଡ଼ିଶା ଆଇନ ସଂଶୋଧନ କମିଟିର ଚେୟାରମ୍ୟାନ୍ ଭାବରେ ଓଡ଼ିଶାର ବିଭିନ୍ନ ଆଇନ୍‌ର ଉପଯୁକ୍ତ ସଂଶୋଧନ କରି ଆପଣାର ଆଲେଖ୍ୟ ରଖିଯାଇଛନ୍ତି । ଯେଉଁ ଦାୟିତ୍ୱ ତା' ମନକୁ ମିଳିଛି, ସେ ଦାୟିତ୍ୱ ତୁଲାଇବାକୁ କୁଣ୍ଠିତ ହୋଇନାହାନ୍ତି । କିନ୍ତୁ ଉପରେ ପଡ଼ି କୌଣସି ପଦବୀ ମାଗିନାହାନ୍ତି ବା ସେଥିପାଇଁ ଉଦ୍ୟମ ବି କରିନାହାନ୍ତି ।

ସେ ଜଣେ କ୍ରୀଡ଼ାବିତ୍ । ଟେନିସ୍ ତାଙ୍କର ସବୁଠାରୁ ପ୍ରିୟ ଖେଳ । କ୍ରୀଡ଼ାବିତ୍ ଛଡ଼ା ସେ ଜଣେ କ୍ରୀଡ଼ା ସଂଗଠକ ଏବଂ କ୍ରୀଡ଼ାର ପ୍ରେରଣାଦାତା । ବାରବାଟୀ ଷ୍ଟାଡିୟମର ଜଣେ ପ୍ରତିଷ୍ଠାତା ସଭ୍ୟ । ଓଡ଼ିଶାର ବହୁ କ୍ରୀଡ଼ାନୁଷ୍ଠାନର କର୍ମକର୍ତ୍ତା । ତରୁଣମାନଙ୍କୁ ଉତ୍ସାହିତ କରିବା, ସେମାନଙ୍କୁ ଶିକ୍ଷାଦେବା ତାଙ୍କର ସବୁଠାରୁ ବଡ଼ ଅବଦାନ । ଉତ୍ତର ପୀଢ଼ିକୁ କ୍ରୀଡ଼ା ସଂପର୍କରେ ପ୍ରେରଣା ଦେବା, ଉତ୍ସାହିତ କରିବା ଏବଂ ସେମାନଙ୍କୁ ତାଲିମ ଦେବା ପାଇଁ ସେ ସର୍ବଦା ଆଗଭର ହୋଇଛନ୍ତି ଏବଂ ସେଥିପାଇଁ ନିଜର ପ୍ରତିଷ୍ଠା ବା ସ୍ୱାର୍ଥକୁ ଅନେଇ ନାହାନ୍ତି । ଫୁଟବଲ ଠାରୁ ଟେନିସ୍, ବାଡ଼ମିଣ୍ଟନ ଠାରୁ ଆରମ୍ଭ କରି ଭଲିବଲ ପର୍ଯ୍ୟନ୍ତ ତାଙ୍କର ଆଗ୍ରହ ପରିବ୍ୟାପ୍ତ । କିନ୍ତୁ ସବୁବେଳେ "play the game is the spirit of the game" ତାଙ୍କର ମଟୋ ହୋଇ ରହିଛି ।

ସେ ଥିଲେ ଜଣେ ଉତ୍କୃଷ୍ଟ ମଣିଷ । ମିଛ କହନ୍ତି ନାହିଁ, କେହି ତାଙ୍କୁ ରାଗିବା ଦେଖି ନାହାନ୍ତି । କାହାକୁ ଗାଳିଦେବା, କୌଣସି ସୁଖରେ ଅଭିଭୂତ ହେବା ବା ଦୁଃଖରେ ଭାଙ୍ଗିପଡ଼ିବା କେହି ଜାଣି ନାହାନ୍ତି । ପତ୍ନୀ, ଗୋଟିଏ ପୁତ୍ର ଚାଲିଯାଇଛନ୍ତି ତାଙ୍କୁ ଛାଡ଼ି । ପୁତ୍ର ବିଚାରପତି ଦେବେନ୍ଦ୍ର ମୋହନ ରୋଗାକ୍ରାନ୍ତ ହୋଇଛି ଗୁରୁତର ଭାବରେ । ନିଜେ ଶଯ୍ୟାଶାୟୀ ହୋଇରହିଛନ୍ତି ବହୁବର୍ଷ ଧରି । କିନ୍ତୁ ମୁହଁରୁ ହସ ଲିଭି ନାହିଁ, ବିଷାଦ ଗ୍ରାସକରି ନାହିଁ ।

ମାଟି ଓ ମଣିଷକୁ ସେ ଭଲ ପାଇଥିଲେ ଏବଂ ସେଇ ମାଟିରେ ହିଁ ଶେଷରେ ମିଶିଗଲେ ମଣିଷକୁ ଭଲ ପାଇ ପାଇ । ତାଙ୍କର ଜୀବଦ୍ଦଶାରେ ଏକ 'ଅଭିନନ୍ଦନିକା' ପ୍ରସ୍ତୁତ ହୋଇ ପାରିଥିଲା । ଅଟକି ରହିଥିଲା କେତେକ ଟେକ୍‌ନିକାଲ କାରଣ ଯୋଗୁଁ । ତାହା ଉନ୍ମୋଚିତ ହେଲା କି ନାହିଁ ଜାଣେ ନାହିଁ । ହୋଇଥିଲେ, ଏହା ତାଙ୍କର 'ସ୍ମରଣିକା' ହୋଇ ବହୁ ବିଭାବକୁ ସ୍ପର୍ଶ କରୁଥିବା ତାଙ୍କର ଜୀବନ ଉପରେ ଆଲୋକପାତ କରିବ ।

ସେ ଭଳି ମଣିଷଟିଏ ଆଉ ସହଜରେ ମିଳିବ ନାହିଁ ।



# ଶ୍ରମଜୀବୀ ମଣିଷର ଦୁର୍ବାର ସାରଥୀ

ସୌରୀନ୍ଦ୍ର ଆଉ ନାହାନ୍ତି । ସେ ଶ୍ରମଜୀବୀ, ସହଯୋଦ୍ଧା ମହଲରେ ସୌରୀନ ଦା ବା ସରକାର ବାବୁ ନାମରେ ପରିଚିତ ଥିଲେ । ଶ୍ରମଜୀବୀ ଶ୍ରେଣୀର ସେ ଏକ ଭିନ୍ନ ପ୍ରକାରର ନେତା ଥିଲେ ଏବଂ ବାରିହୋଇ ପଡୁଥିଲେ । ପଇସାଟିଏ କାହାଠାରୁ ନେଇ ନାହାନ୍ତି ଏପରିକି ଔଷଧ ପାଇଁ ମଧ୍ୟ । ମୋର ରୋଜଗାର ଅଛି– ତେଣୁ ମୁଁ ମାଗଣାରେ କିଛି ନେବି ନାହିଁ । ଏହା ଥିଲା ତାଙ୍କର ପ୍ରଥମ ସ୍ୱାତନ୍ତ୍ର୍ୟ । ନିଜ କାର୍ଯ୍ୟରେ ସେ ହେଳାକରନ୍ତି ନାହିଁ । ଅନେକ ଟ୍ରେଡ଼ୟୁନିଅନ ନେତା ଅଫିସରେ ଖାଲି ହାଜିରା ପକାଇ 'ନେତୃତ୍ୱ' କରନ୍ତି । ସୌରୀନ୍ଦ୍ର ସରକାର ସେପରି ନୁହନ୍ତି । ମୁଁ ଟ୍ରେଡ଼ ୟୁନିଅନିଷ୍ଟ, ମୁଁ ଶ୍ରମଜୀବୀ ମଣିଷର ସଂଗଠକ, ଠକମାନଙ୍କର ନୁହେଁ । ଏହା ଥିଲା ତାଙ୍କର ଦ୍ୱିତୀୟ ସ୍ୱାତନ୍ତ୍ର୍ୟ । ଶ୍ରମଜିବୀ ମଣିଷର ସଂଗଠକ, ଆନ୍ଦୋଳନ ଦେଶର ସାମୂହିକ କଲ୍ୟାଣ ପାଇଁ ଆନ୍ଦୋଳନ, ଏହାକୁ ସଂଗଠନମାନଙ୍କଠାରୁ ବାଦ ବା ଭିନ୍ନ କରାଯାଇ ପାରିବ ନାହିଁ । ସେଇଯୋଗୁଁ ସେ ସାମ୍ପ୍ରଦାୟିକତାବାଦ ବିରୋଧୀ ଆନ୍ଦୋଳନ, ବିଶ୍ୱ ଶାନ୍ତିପାଇଁ ଆନ୍ଦୋଳନ ପ୍ରଭୃତିରେ ମଧ୍ୟ ନେତୃତ୍ୱ ନେବାପାଇଁ ଆଗଭର ହୋଇଛନ୍ତି ସବୁବେଳେ । ଏ ଥିଲା ତାଙ୍କର ତୃତୀୟ ସ୍ୱାତନ୍ତ୍ର୍ୟ ।

ସମାଜରେ ବା ଟ୍ରେଡ଼ୟୁନିଅନମାନଙ୍କ ମଧ୍ୟରେ ସେମିତି ମଣିଷଟିଏ ମିଳିବା କଠିନ । ନୂତନ ଶତାବ୍ଦୀ ଦେଖିବାକୁ ସେ ରହିଲେ ନାହିଁ । ମନେହେଲା, ଯେପରି ତାଙ୍କର କାମ ବିଂଶ ଶତାବ୍ଦୀରେ ହିଁ ସରିଯାଇଛି । ଏକବିଂଶ ଶତାବ୍ଦୀର ଦୃଶ୍ୟ ଓ ସଂଗ୍ରାମ ସେ ଦେଖିବାକୁ ରହିପାରିଲେ ନାହିଁ । ନୂତନ 'ମୂଲ୍ୟବୋଧ' ତାଙ୍କୁ ସୁହାଇ ନଥାନ୍ତା ବା ନୂତନ 'ସଂଗ୍ରାମ' ସହିତ ସେ ଆପଣାକୁ ଖାପଖୁଆଇ ପାରନ୍ତା ନାହିଁ ନା କ'ଣ ?

ସୌରୀନ୍ଦ୍ର ଆସିଥିଲେ ବାସ୍ତୁହରା ହୋଇ । ପୂର୍ବ ବଂଗର ଯଶୋର ଜିଲ୍ଲାରେ ୧୯୩୭ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ଜ୍ୟୋତିନ୍ଦ୍ରନାଥ ଏବଂ ସୁବର୍ଣ୍ଣଲତାଙ୍କ ତୃତୀୟ ସନ୍ତାନ ସୌରୀନ୍ଦ୍ରଙ୍କ ବାଲ୍ୟ ଜୀବନ କଟିଥିଲା କଠୋର ଦୁର୍ବିସହତା ଭିତରେ ।

ଭିଟାହରା ଜ୍ୟୋତିନ୍ଦ୍ର ଆଶ୍ରୟ ନିଅନ୍ତି କଟକରେ ଏବଂ ଏକ ବଂଗଳା ସ୍କୁଲରେ ସ୍ୱଳ୍ପ ବେଦନରେ ପରିବାର ଚଳାନ୍ତି । ସୌରୀନ୍ଦ୍ର ପିଲାଦିନରୁ ଦାରିଦ୍ର୍ୟତାର କଷଣ ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲେ । ଲୁହା ଇସ୍ପାତରେ ପରିଣତ ହୁଏ ।

୧୯୫୬ ମସିହାରେ ସେ ସଦ୍ୟ ଗଠିତ ଜୀବନ ବୀମା ନିଗମରେ ଦିନ ମଜୁରିଆ ଭାବରେ କାମ ପାଆନ୍ତି । ଦିନକୁ ମଜୁରୀ ଚାରି ଟଂକା । ଶନିବାର ଅଧା, ରବିବାର ନାହିଁ । କାମର କୌଣସି ସ୍ଥାୟୀତ୍ୱ ମଧ୍ୟ ନାହିଁ । ଆଜି ଅଛି ତ, କାଲିକି ନାହିଁ । ଘରୋଇ କଂପାନୀର ଶୋଷଣ ରୂପାନ୍ତରିତ ହୋଇଥାଏ ଜାତୀୟବାଦୀ ଶୋଷଣରେ ।

ଆରମ୍ଭ ହେଲା ଦ୍ୱିତୀୟ ପର୍ଯ୍ୟାୟର ସଂଗ୍ରାମ ସୌରୀନ୍ଦ୍ରଙ୍କ ପାଇଁ । ଅସ୍ଥାୟୀମାନେ ସ୍ଥାୟୀ ହେଲେ, ନିଯୁକ୍ତି ଦିନରୁ ଚାକିରି ଗଣନା ହେଲା । ସୌରୀନ୍ଦ୍ରଙ୍କର ନେତୃତ୍ୱ ପ୍ରତିଷ୍ଠିତ ହେଲା । ସେ ଆଉ ପଛକୁ ଫେରି ଚାହିଁ ନାହାନ୍ତି ।

ଜୀବନ ବୀମା ନିଗମ କର୍ମଚାରୀ ସଂଘର ନେତୃତ୍ୱ ସହିତ, କଟକ ସହରର ବ୍ୟାଙ୍କ, ଜୀବନ ବୀମା ନିଗମ, ଜେନେରାଲ ଇନସୁରାନ୍ସ ସଂସ୍ଥା କର୍ମଚାରୀ ସଂଘର ସଂଯୋଜକ ସମିତିର ନେତୃତ୍ୱ ଏବଂ ସର୍ବୋପରି ଓଡ଼ିଶାର ଜନସାଧାରଣଙ୍କ ନେତୃତ୍ୱ ତାଙ୍କ ଉପରେ ନ୍ୟସ୍ତ କରାହୋଇଛି । ଦୀର୍ଘ ବତିଶ ବର୍ଷ କାଳ ସେ ବୀମା କର୍ମଚାରୀ ସଂଘର ସଭାପତିତ୍ୱ ପଦବୀ ତୁଲାଇଛନ୍ତି । ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ, ଜୀବନବୀମା ଅଟୋମେଶନ ବିରୁଦ୍ଧରେ ସଂଗ୍ରାମ, କର୍ମଚାରୀମାନଙ୍କ ଉପରେ ଅନ୍ୟାୟ ପଦକ୍ଷେପ, ଆକ୍ରମଣ ବିରୁଦ୍ଧରେ ସଂଗ୍ରାମ ଏବଂ ସର୍ବୋପରି ଜରୋରୀ ପରିସ୍ଥିତି ଘୋଷଣା ବିରୁଦ୍ଧରେ ସଂଗ୍ରାମ ତାଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା । ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧି ଭାବରେ ସେ ଭିଏତନାମ, କ୍ୟୁବା ପ୍ରଭୃତି ରାଷ୍ଟ୍ର ପରିଭ୍ରମଣ କରିଥିଲେ । ପରିଶେଷରେ ସେ ଜୀବନବୀମା ନିଗମରୁ ଅବସର ନେଇଥିଲେ କିନ୍ତୁ ତାଙ୍କର ସଂଗ୍ରାମ ଶେଷ ପର୍ଯ୍ୟନ୍ତ ଚାଲୁ ରହିଥିଲା ।

ଦାରିଦ୍ର୍ୟ, ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ଲଢ଼ି ଲଢ଼ି ତାଙ୍କର ଦେହ ଅସୁସ୍ଥ ହୋଇଯାଇଥିଲା ଏବଂ ତୃତୀୟ ସଂଗ୍ରାମ ଆରମ୍ଭ ହେଲା ମୃତ୍ୟୁ ବିରୁଦ୍ଧରେ । ହୃଦଯନ୍ତ୍ରକ୍ରିୟାରେ ଗଣ୍ଡଗୋଳ ଦେଖାଦେଇଥିଲା । ବିନା ବିଶ୍ରାମରେ କାମ କରିଚାଲିଥିବା ସୌରୀନ୍ଦ୍ରଙ୍କର ହୃଦଯନ୍ତ୍ର ମଧ୍ୟ ବିଶ୍ରାମ ଲୋଡୁଥିଲା ବୋଧହୁଏ, ଯାହା ସୌରୀନ୍ଦ୍ର ଆପଣାର ହୃଦଯନ୍ତ୍ରକୁ ଦେଇ ନଥିଲେ ବା ନିଜେ ନେଇ ନଥିଲେ ।

ଡାକ୍ତରଖାନାରୁ ଫେରିଥିଲେ ପୂର୍ବଦିନ । ସବୁ କୁଆଡ଼େ ଠିକ୍ ଥିଲା । ତା'ପରେ ହଠାତ୍ ଆସିଲା ୩୧ ଡିସେମ୍ବର, ୧୯୯୯ । ଶତାବ୍ଦୀର ଶେଷ ସୂର୍ଯ୍ୟ ବୁଡ଼ିଯିବା ସହିତ, ସୌରୀନ୍ଦ୍ରଙ୍କର ଜୀବନ ସୂର୍ଯ୍ୟ ମଧ୍ୟ ବୁଡ଼ିଗଲା ଚିରଦିନ ପାଇଁ ।



# ହେ ବନ୍ଧୁ ବିଦାୟ

ବନ୍ଧୁ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଆଉ ନାହାନ୍ତି । ଦୀପାବଳୀର ଦୀପ ଲିଭିଯିବା ସହିତ ତାଙ୍କର ଜୀବନର ଦୀପ ମଧ୍ୟ ଲିଭିଯାଇଛି । କିଛି ଦିନତଳେ ଦିଲ୍ଲୀ ଯାଇଥିଲେ । ଶୀଘ୍ର ଫେରିବେ, ଫେରି ବିଶ୍ୱ ଓଡ଼ିଆ ସମ୍ମିଳନୀ କାର୍ଯ୍ୟରେ ଲାଗିବେ ପୂରା ଦମ୍‌ରେ । ତାଙ୍କର ମରଦେହ ଫେରିଲା, କିନ୍ତୁ ସେ ? ସେ ଆଉ ଫେରିବେ ନାହିଁ ।

ମୃତ୍ୟୁ ସଂବାଦ ପାଇଲି ଅଚାନକ । ହଠାତ୍ ଯେପରି ଦିହ ଅବଶ ହୋଇଗଲା । ଆଖିରୁ ଲୁହ ଗଡ଼ିପଡ଼ିଲା । ଯେପରି ପଥର ଫାଟି ପାଣି ବୋହୁଛି ଆଉ ! ସେ ଗଲେ– ଡାକ ଶୁଭୁଛି ମୁଁ ଚାଲିଲି, ତମେ କେବେ ଆସୁଛ ? ପ୍ରବୀର ଦା, ବ୍ରଜ ଭାଇନା ସମସ୍ତେ ଅପେକ୍ଷା କରୁଛନ୍ତି । ଏ କ'ଣ ପ୍ରଳାପ ନା ବିଳାପର ପ୍ରତିକ୍ରିୟା !

ସେ ଜନ୍ମ ହୋଇଥିଲେ ରାୟଗଡ଼ାରେ । ବାପା ଗୋପୀନାଥ ବକ୍ସିପାତ୍ର ଥିଲେ ଉତ୍କଳ ସମ୍ମିଳନୀର ଅନ୍ୟତମ ସେନାପତି । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି ମିଶାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ତାଙ୍କର ସଂଗ୍ରାମ ତାଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା । ଏବଂ ତାହା ହିଁ ଆସିଯାଇଥିଲା ହରିଶ୍ଚନ୍ଦ୍ରଙ୍କ ରକ୍ତରେ ।

ଭାଇ ଶ୍ରୀ କୃଷ୍ଣଚନ୍ଦ୍ର ବକ୍ସିପାତ୍ର ଭାରତୀୟ ଜାତୀୟ କଂଗ୍ରେସର ସକ୍ରିୟ ନେତା ଥିଲେ । ପରବର୍ତ୍ତୀ କାଳରେ ସେ ଜନତା ଦଳ, ବିଜୁ ଜନତା ଦଳରେ ଯୋଗ ଦେଇଥିଲେ । ବର୍ତ୍ତମାନ ସେ ରାୟଗଡ଼ା ପୌରସଂସ୍ଥାର ଚେୟାରମାନ୍ । ଏକ ସ୍ୱାଧୀନ, ସାମ୍ୟର ଭାରତବର୍ଷ ଗଢ଼ିବାର ସ୍ୱପ୍ନକୁ ହରିଶ୍ଚନ୍ଦ୍ର ବହନକରି ଆଣିଲେ ଉତ୍ତରାଧିକାରୀ ସୂତ୍ରରେ ।

ଏଇ ପରମ୍ପରାରେ ବର୍ଦ୍ଧିତ ହରିଶ୍ଚନ୍ଦ୍ର କିନ୍ତୁ ପିଲାଦିନରୁ ସାମ୍ୟବାଦ, ବାମପନ୍ଥୀ ଆନ୍ଦୋଳନ ପ୍ରତି ଅନୁରକ୍ତ ହୋଇଯାଇଥିଲେ । ସେତେବେଳେ ଆନ୍ଧ୍ର ପ୍ରଦେଶରେ କମ୍ୟୁନିଷ୍ଟ ପାର୍ଟି ଥିଲା ବେଶ୍ ଶକ୍ତିଶାଳୀ ଏବଂ ଯୁଝୁଁଟୁ । ତାହାରି ପ୍ରଭାବରେ ଆସିଥିଲେ ହରିଶ୍ଚନ୍ଦ୍ର । ତାଙ୍କର ରାୟଗଡ଼ା ଷ୍ଟେସନ ପାଖରେ ଆଉ ଏକ ଘର ଥିଲା । ତାହା କ୍ରମଶଃ ତେଲେଙ୍ଗାନା ସଂଗ୍ରାମରେ ଆହତ ବା ପଳାୟିତ ନେତାମାନଙ୍କର ଆଶ୍ରୟସ୍ଥଳ ଓ ଚିକିତ୍ସାସ୍ଥଳରେ ପରିଣତ ହୋଇଥିଲା । ସେଇ କାରଣରୁ ଓଡ଼ିଶାର କମ୍ୟୁନିଷ୍ଟ ପାର୍ଟି ବା ନିଖିଳ ଭାରତ ଛାତ୍ରସଂଘ

ସହିତ ତାଙ୍କର ସଂପର୍କ ବେଶି ବା ଘନିଷ୍ଠ ନଥିଲା । ତାଙ୍କର ସେଇ ଷ୍ଟେସନ ପାଖ ଘରୁ ପାଞ୍ଚ ସାତଜଣ ପ୍ରଖ୍ୟାତ ନେତାଙ୍କୁ ଆନ୍ଧ୍ର ପୋଲିସ ଧରିନେଇ ଗୁଳିକରି ଦେଲାପରେ, ହରିଶ୍ଚନ୍ଦ୍ରଙ୍କର 'ଅଣ୍ଡରଗ୍ରାଉଣ୍ଡ' ଚରିତ୍ର ଆଉ ରହିପାରିଲା ନାହିଁ ।

ପାରଳାଖେମୁଣ୍ଡି ଗଜପତି କଲେଜରେ ସେ ସଭାପତି ନିର୍ବାଚିତ ହୁଅନ୍ତି ଏବଂ ରେଭେନ୍ସା କଲେଜ ତଥା ମଧୁସୂଦନ ଆଇନ କଲେଜକୁ ପଢ଼ିବାକୁ ଆସନ୍ତି ବି.ଏ. ପାଶ କଲାପରେ ।

୧୯୫୬ ମସିହାରେ ସେ ରେଭେନ୍ସା କଲେଜ ୟୁନିୟନର ସଭାପତି ନିର୍ବାଚିତ ହୁଅନ୍ତି । ତାଙ୍କର ସଭାପତିତ୍ୱ ସମୟରେ ଐତିହାସିକ ସୀମା ଆନ୍ଦୋଳନ ଏବଂ ସେଥିରେ ଛାତ୍ରସମାଜର ଉଜ୍ଜ୍ୱଳ ଭୂମିକା ଆଜି ମଧ ଲୋକେ ମନେରଖିଛନ୍ତି । ଆମ ଦୁଇଜଣଙ୍କ ନାମରେ ଥିଲା ୱାରେଣ୍ଟ ଏବଂ ଦେଖିଲାମାତ୍ରେ ଗୁଳିକର ନିର୍ଦ୍ଦେଶ । କିନ୍ତୁ ତାହା ସଫଳ ହୋଇପାରିଲା ନାହିଁ । ପୁଲିସ ଆମକୁ ଗିରଫ କରିପାରିଲା ନାହିଁ । ସେତିକିବେଳେ ୧୯୫୫ ମସିହା । ଦଳେଇ ଘାଇ ବିପର୍ଯ୍ୟୟ ବେଳେ ତାଙ୍କର ଭୂମିକା ମଧ ସ୍ମରଣୀୟ ହୋଇ ରହିବ । ସେଇ କାଳ ରାତ୍ରିରେ ସେ ଏକ ବିରାଟ ଛାତ୍ର ସ୍ୱେଚ୍ଛାସେବକ ବାହିନୀ ରହିଯାଇଥିଲେ ଦଳେଇଘାଇର ଆରପଟରେ ଏବଂ ତାଙ୍କୁ ଉଦ୍ଧାର କରିବାକୁ ପଡ଼ିଥିଲା ବହୁକଷ୍ଟରେ ।

ତମେ ତ ଦୁଇ ଦୁଇ ଥର ମରଣ ମୁହଁରୁ ବର୍ତ୍ତିଯାଇଛ । ମୃତ୍ୟୁ ତୁମକୁ ଗ୍ରାସ କରିବାକୁ ଚାହିଁ ମଧ ଗ୍ରାସ କରିପାରି ନାହିଁ । ଆଉ ଆଜି କ'ଣ ତମେ ଫେରିବ ନାହିଁ । ଆଜି କ'ଣ ତମେ ଫେରିବ ନାହିଁ ମୃତ୍ୟୁ ମୁଖରୁ ? କହିଁକି କହିଲ ଦେଖି ?

ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓକିଲାତି ଆରମ୍ଭ କରିଥିଲେ ଜୟପୁରରେ । ଯେଉଁଠି ତାଙ୍କର ଆଉ ଏକ ପୈତୃକ ବାସଗୃହ ଥିଲା । ଜୟପୁରକୁ କର୍ମକ୍ଷେତ୍ର କରିବାର ଅନ୍ୟତମ କାରଣ ହେଲା ଯେ ରାୟଗଡ଼ା ତାଙ୍କ ପାଇଁ ନିଷିଦ୍ଧ ଅଂଚଳ ପାଲଟିଥିଲା ।

ବ୍ରାହ୍ମଣ କୁଳରେ ଜାତ ହୋଇ ସେ ଆଦିବାସୀମାନଙ୍କ ପାଇଁ ଯେତେ କାମ କଲେ ମଧ ସେ ରାୟଗଡ଼ାର ପ୍ରତିନିଧିତ୍ୱ କରିପାରିବେ ନାହିଁ । ଏ ସଂପର୍କରେ ସେ ସଚେତନ ଥିଲେ ।

ହରିଶ୍ଚନ୍ଦ୍ର ବକ୍ସିପାତ୍ର ଆମ ପାଇଁ ଥିଲେ କେବଳ 'ବକ୍ସି' ସେଇ ଡାକ ନାମରେ ସେ ଆମ ପାଖରେ ପରିଚିତ ।

ଶ୍ରମଜୀବୀ ମଣିଷ ପାଇଁ ବିଲରେ କାମକରୁଥିବା ଚାଷୀ ମୂଲିଆ ପାଇଁ ତାଙ୍କର କେବଳ ଦରଦ ନଥିଲା, ଥିଲା ଏକ ଅଙ୍ଗୀକାର । ସେଇଯୋଗୁଁ ସେମାନଙ୍କ ସଂଗଠନ ସେ ଗଢ଼ି ତୋଳିଥିଲେ ଏବଂ ପରବର୍ତ୍ତୀ କାଳରେ ସେ ପରିବହନ ଶ୍ରମିକ ସଂଘର ସଭାପତି ମଧ ହୋଇଥିଲେ ।

ତାଙ୍କର କାରାବାସ ହୁଏ ଏବଂ ସେତିକିବେଳେ କମ୍ୟୁନିଷ୍ଟ ପାର୍ଟିର ବିଭାଜନ ଆରମ୍ଭ ହୁଏ । ବିଭାଜନ ତାଙ୍କର ତାତ୍ତ୍ୱିକ ବିଶ୍ୱାସକୁ ଭାଙ୍ଗି ଦିଏ ଏବଂ ସେ କମ୍ୟୁନିଷ୍ଟ ପାର୍ଟି ପରିତ୍ୟାଗ କରନ୍ତି । ମୋର ଯେତେଦୂର ମନେପଡୁଛି କୋରାପୁଟ ଜେଲରୁ ।

ରାଜନୈତିକ ବ୍ୟବସ୍ଥିତତା ଥରେ ଦୋହଲିଗଲେ ଯାହା ହୁଏ ତାଙ୍କର ସେଇଆ ଘଟିଥିଲା । କମ୍ୟୁନିଷ୍ଟ ପାର୍ଟିରୁ ଉତ୍କଳ କଂଗ୍ରେସ, ଜନତା ଦଳ ଏବଂ ପରିଶେଷରେ ଭାରତୀୟ ଜନତା ପାର୍ଟି । କଟ୍ଟର ବାମପନ୍ଥୀ ହରିଶ୍ଚନ୍ଦ୍ର କିପରି କଟ୍ଟର ଦକ୍ଷିଣପନ୍ଥୀମାନଙ୍କ ସହିତ ଯୋଗଦେଇ ପାରିଲେ ତାହା ଅନେକ ବନ୍ଧୁଙ୍କୁ ବିସ୍ମିତ କରିଛି । କିନ୍ତୁ ଏହା କେବଳ ତାଙ୍କ କ୍ଷେତ୍ରରେ ଘଟିଛି ? ନା, ରଙ୍ଗରାଜନ କୁମାରମଙ୍ଗଲମଙ୍କ ଠାରୁ ଆରମ୍ଭ କରି ଆଡ଼ଭୋକେଟ ବିପିନ ବିହାରୀ ରଥଙ୍କ କ୍ଷେତ୍ରରେ ମଧ୍ୟ ସେ'ୟା ଘଟିଛି ।

ହରିଶ୍ଚନ୍ଦ୍ର ବକ୍ସିପାତ୍ର ଦୁଇଥର ମନ୍ତ୍ରୀ ହୋଇଛନ୍ତି । ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଏବଂ ନୀଳମଣି ରାଉତରାୟଙ୍କ ମନ୍ତ୍ରିମଣ୍ଡଳରେ । କିନ୍ତୁ ସେମାନଙ୍କ ସହିତ ମଧ୍ୟ ସେ ରହିପାରି ନାହାନ୍ତି । ଭାରତୀୟ ଜନତା ପାର୍ଟିରେ ଯୋଗ ଦେଇଥିଲେ ମଧ୍ୟ ସେଥିରେ ସେ ଖୁବ୍ ବେଶି ସକ୍ରିୟ ହୋଇ ରହିପାରି ନାହାନ୍ତି ।

ସେ ଫେରିଛନ୍ତି ପୁଣି ଆପଣାର 'ପୈତୃକ' ବା ପରମ୍ପରାଗତ ଆହ୍ୱାନକୁ । ଓଡ଼ିଆ ଭାଷାର ଉନ୍ନତି ପାଇଁ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସେ ପୁଣି ଉତ୍କଳ ସମ୍ମିଳନୀକୁ ଫେରିଛନ୍ତି ।

ରାଜନୈତିକ ମତବାଦ ପାଇଁ ନୁହେଁ, ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଷଢ଼େଇକଳା-ଖରସୁଆଁର ପୁନଃମିଶ୍ରଣ ପାଇଁ ତାଙ୍କର କଠୋର ପରିଶ୍ରମ ତଥା ଅବଦାନ ପାଇଁ ସେ ସ୍ମୃତହୋଇ ରହିବେ ଚିରକାଳ ଏ ଜାତିର ମାନସପଟରେ ।

ବନ୍ଧୁବତ୍ସଳ ହରିଶ୍ଚନ୍ଦ୍ରଙ୍କୁ ମୁଁ ଏବଂ ମୋର ସ୍ତ୍ରୀ ଆମ ପରିବାରର ମଣିଷ ବୋଲି ବିଚାର କରି ଆସିଛୁ । ଜୀବନର ବହୁ ଦୁଃଖ ଏବଂ ସୁଖ ଜଡ଼ିତ ରହିଛି ତାଙ୍କର ସହଯୋଦ୍ଧୃତା ସହିତ । ଦେଖାହୁଏ ବେଳେବେଳେ ଏବଂ ଆମେ ରାଜନୀତି ବିଷୟ ଆଲୋଚନା କରିବା ପାଇଁ ସମୟ ପାଇ ନାହୁଁ । ରେଭେନ୍ସା କଲେଜରେ ସେତେବେଳେ ପାଠ ପଢୁଥିବା (କେବଳ ସହପାଠୀ ନୁହନ୍ତି) ଅନେକଙ୍କୁ ସେ ଜାଣିଥିଲେ ବ୍ୟକ୍ତିଗତ ଭାବରେ । ଏଭଳି ଗୁଣ ଖୁବ କମ ଲୋକଙ୍କ ପାଖରେ ଦେଖିଛି ମୁଁ । ତାଙ୍କର ମୃତ୍ୟୁରେ ଆମେ ହରାଇ ବସିଛୁ ଆମ ପରିବାରର ଜଣକୁ ।

ବ୍ରଜବନ୍ଧୁ ମିଶ୍ର, ଅଖିଳମୋହନ ପଟ୍ଟନାୟକ, ପ୍ରବୀର ପାଲିତ, କାଳୀଚରଣ ପଣ୍ଡା ଆମକୁ ଛାଡ଼ି ଯାଇଥିଲେ । ବର୍ତ୍ତମାନ ଗଲେ ହରିଶ୍ଚନ୍ଦ୍ର ବକ୍ସିପାତ୍ର । ପଣ୍ଡିଚେରୀ ଆଶ୍ରମରେ ସାଧକ ମନୋଜ ଦାସ, ବିଶ୍ୱମ୍ଭର ସାମନ୍ତଙ୍କ ଆଖିରୁ ଯେପରି ଲୁହ ଝରୁଛି, ଠିକ୍ ସେଇପରି ଝରୁଛି ଆଡ଼ଭୋକେଟ ଜଗନ୍ନାଥ ପଟ୍ଟନାୟକ, ରଣପୁରର ରମେଶ ଚନ୍ଦ୍ର ପଣ୍ଡାଙ୍କ ଆଖିରୁ ।

ମୁଁ ଖାଲି ଅନେଇଚି ଆକାଶକୁ । ସ୍ମୃତି ଢେଉ ପିଟୁଛି । ମନେହେଉଛି, ସେ ତ ଗଲା, ମୁଁ ଆଉ କେତେ ଦିନ ?

ମୋ ଆଖିରେ ଲୁହ ନାହିଁ ।



# ଅଜାତଶତ୍ରୁ

କାହାକୁ କିଛି କହନ୍ତି ନାହିଁ । ସ୍ୱଳ୍ପ ଭାଷୀ । ସବୁ ଶୁଣିବେ, ଗୋଟିଏ ହୁଁରେ ତାଙ୍କର ଉତ୍ତର ଶେଷ । କିନ୍ତୁ କାର୍ଯ୍ୟ ଠିକ୍ ହୋଇଯିବ । ସେଥିରେ ହେଳାହେବ ନାହିଁ କି ହୋଇନାହିଁ ।

ଏଇଭଳି ମଣିଷ ଥିଲେ ଅଧ୍ୟାପକ ଡକ୍ଟର କ୍ଷୀରୋଦ କୁମାର ପଟ୍ଟନାୟକ ।

ତତ୍‌କାଳୀନ ପ୍ରସିଦ୍ଧ ଶିକ୍ଷକ ଦିବାକର ପଟ୍ଟନାୟକଙ୍କର ଜ୍ୟେଷ୍ଠପୁତ୍ର । ୧୯୨୬ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ରେଭେନ୍ସା କଲେଜରୁ ରସାୟନ ଶାସ୍ତ୍ରରେ ଏମ୍.ଏସସି. ପାଶ କରିବା ପରେ ଡକ୍ଟରେଟ କରିଥିଲେ ଜୈବ ରସାୟନ ଶାସ୍ତ୍ରରେ ।

ରେଭେନ୍ସା କଲେଜରେ ଅଧ୍ୟାପନା, ୧୯୮୧ ରୁ ୧୯୮୩ ପର୍ଯ୍ୟନ୍ତ । ଉକ୍ତ କଲେଜର ପ୍ରିନ୍ସିପାଲ ଭାବରେ କାର୍ଯ୍ୟ କଲାପରେ ସେ ୧୯୮୩ ରୁ ୧୯୮୮ ପର୍ଯ୍ୟନ୍ତ ଓଡ଼ିଶା ପବ୍ଲିକ ସର୍ଭିସ କମିଶନର ସଭ୍ୟ ଭାବରେ କାର୍ଯ୍ୟକରି ଅବସର ଗ୍ରହଣ କରି ତାଙ୍କ ଭୁବନେଶ୍ୱରସ୍ଥ ସହୀଦନଗର ବାସଭବନରେ ରହୁଥିଲେ । ତା ପୂର୍ବରୁ ସେ ରାଜ୍ୟ ଫୋରେନ୍‌ସିକ୍ ଲାବରେଟୋରୀର ଡାଇରେକ୍ଟର ଭାବରେ ଏବଂ ଖଲିକୋଟ କଲେଜର ଅଧ୍ୟକ୍ଷ ଭାବରେ ପ୍ରାୟ ଦଶବର୍ଷ କାର୍ଯ୍ୟ କରିଥିଲେ ।

ସଚ୍ଚୋଟ, ଶାନ୍ତ, ଧୀର କିନ୍ତୁ ଦୃଢ଼ମନା କ୍ଷୀରୋଦକୁମାର ଶୃଙ୍ଖଳାର ପ୍ରତୀକ ଥିଲେ । ତାଙ୍କ ସମୟ କାଳରେ ରେଭେନ୍ସା କଲେଜରେ କୌଣସି ଛାତ୍ର ଗଣ୍ଡଗୋଳ ହୋଇନାହିଁ । ଛାତ୍ରମାନଙ୍କର ସବୁ ସମସ୍ୟାକୁ ସେ ବିନା ଦ୍ୱିଧାରେ ଶୁଣୁଥିଲେ ଏବଂ ତାଙ୍କ ହାତରେ ଯାହା ସମ୍ଭବ ତାହା କରିବାପାଇଁ ସେ ପଶ୍ଚାତପଦ ହେଉ ନଥିଲେ । ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ଫେରାଦ ହେବା ତାଙ୍କ ଜାତକରେ ନଥିଲା ।

ଅମାୟିକ, ନିରଳସ, ସ୍ୱଳ୍ପଭାଷୀ କ୍ଷୀରୋଦକୁମାର ଆପଣାର ସହକର୍ମୀମାନଙ୍କର ମଧ୍ୟ ପ୍ରିୟଭାଜନ ଥିଲେ । କୌଣସି ଲୋକକୁ ରୁକ୍ଷ ଭାଷାରେ କହିବା ବା ଗାଳିଦେବା ତାଙ୍କର ନଥିଲା ।

କିନ୍ତୁ ଅନେକ ନିଷ୍ପତ୍ତି, ଅନେକ ସାହାଯ୍ୟ ସେ ଚୁପ୍‌ଚାପ୍ କରିଯାଉଥିଲେ, ଅନ୍ୟମାନଙ୍କ ଅଗୋଚରରେ ଏବଂ କୌଣସି ବାହାବାହା ନନେଇ ।

ସେ ପ୍ରସିଦ୍ଧ ଐତିହାସିକ ୰ ସୁଧାକର ପଟ୍ଟନାୟକ ଏବଂ ଗାଣିତିକ ୰ ବିଶ୍ୱେଶ୍ୱର ପଟ୍ଟନାୟକ ତାଙ୍କର ଦାଦା । ବୋଧହୁଏ ସୁଧାକର ବାବୁଙ୍କ ଠାରୁ ନମନୀୟତା ଏବଂ ବିଶ୍ୱେଶ୍ୱର ବାବୁଙ୍କ ଠାରୁ ନୀରବ ଶୃଙ୍ଖଳା ସେ ଶିକ୍ଷା କରିଥିଲେ ।

ଭାରତୀୟ ପାର୍ଲ୍ୟାମେଣ୍ଟର ଜନକ ଭାବରେ ବିଦିତ ୰ ଭୁବନାନନ୍ଦ ଦାସଙ୍କର ସେ ଥିଲେ ଜାମାତା । ଏକ ଦୁଃଖାବହ ଦୁର୍ଘଟଣାରେ ସେ ଆପଣାର ଜ୍ୟେଷ୍ଠପୁତ୍ରଙ୍କୁ ହରାଇଥିଲେ । ତାଙ୍କର ସ୍ତ୍ରୀଙ୍କର ମନୋବଳ ପୂରା ଭାଙ୍ଗି ପଡ଼ିଥିଲା । କିନ୍ତୁ ସେ ରହିଥିଲେ ଅଚଳ ମହାମେରୁ ପରି ।

ସେ ଆଉ ନାହାନ୍ତି । ଏପ୍ରିଲ ୩୦ ତାରିଖ, ୨୦୦୧ ମସିହା ତାଙ୍କୁ ଦେଖିଥିଲା ପୃଥିବୀରେ ଶେଷଥର ପାଇଁ ।



# ଆମ ସାର୍

ଅଧ୍ୟାପକ କ୍ଷେତ୍ରମୋହନ ପଟ୍ଟନାୟକ ଆଉ ନାହାନ୍ତି । ଏଇ ସଂବାଦ ଶୁଣି ମନ ପଛକୁ ଫେରି ଯାଇଥିଲା । ଏଇ କିଛିଦିନ ତଳେ ତାଙ୍କ ସାଂଗରେ ଦେଖା ହୋଇଥିଲା ଏକ ବିବାହ ଉତ୍ସବରୁ ଫେରିବା ବାଟରେ । ସାର୍ ଯାଉଥିଲେ, ମୁଁ ଫେରୁଥିଲି । ଶୁଖି ଯାଇଥିଲେ ଖୁବ୍ । ତାଙ୍କର ଚିରାନୁଚରିତ ମୋଟାମୋଟି ଚେହେରା ନଥିଲା । ପାଦର ଗତି ବି ଶିଥିଳ ହୋଇ ଆସିଥିଲା । ପଚାରିଲି ସାର୍‌ଙ୍କୁ, କିମିତି ଅଛନ୍ତି ? ସେଇ ବୁଲେଟ ଭଳି ଶବ୍ଦରେ ସେ ଉତ୍ତର ଦେଲେ, ଆମ କଥା ପଚାରି ଲାଭ କ'ଣ ? ଆମର କାମ ସରିଗଲାଣି । ତମେ କିମିତି ଅଛ କୁହ ! ସମାଜରେ କେତେ କାମ କରୁଛ, ତମେ ଆମର ଆୟୁଷ ନେଇ ବଂଚ ହେ ! ସାର୍ ଗଂଜାମ ଜିଲ୍ଲାର ଲୋକ । ଓଡ଼ିଆରେ କହିଲେ ସେଇ ଆକ୍‌ସେଣ୍ଟ ରହେ । ଆମେ ସବୁ ଏଇ କହିବାର ଭଂଗୀ ସହିତ ପରିଚିତ, ପାଠପଢ଼ିବା ଦିନରୁ । ହଠାତ୍ ସେ ଚାଲିଯିବେ ଇମିତି କଳ୍ପନା·ମୋର ନଥିଲା । କିନ୍ତୁ ମହାକାଳ କ'ଣ ମଣିଷର କଳ୍ପନା ବା ଆଶାକୁ ଅପେକ୍ଷା କରେ ?

ସାର୍‌ଙ୍କ ମୃତ୍ୟୁ ସଂବାଦ ପାଇ ମନ ଭାଙ୍ଗି ପଡ଼ିଥିଲା । ଭାବିଥିଲି ଲେଖାଟିଏ ଲେଖିବି ତାଙ୍କ ଉପରେ ଆପଣାର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ନିବେଦନ କରି । ତା'ବି ସମ୍ଭବ ହେଲା ନାହିଁ । ମୋତେ ଡାକ୍ତରଖାନାରେ ରହିବାକୁ ହେଲା କିଛିକାଳ ଅଚେତ ଅବସ୍ଥାରେ ଏବଂ ଶଯ୍ୟାଶାୟୀ ହୋଇ ରହିବାକୁ ହେଲା ବେଶ୍ କିଛିକାଳ ।

ସାର୍ ଆମର ଶିକ୍ଷକ ଥିଲେ । ବି.ଏ. ଅନର୍ସ ଏବଂ ଏମ୍.ଏ. କ୍ଲାସରେ ପବ୍ଲିକ ଫାଇନାନ୍ସ ଓ ମନି, ବ୍ରିଟିଶ ସଂବିଧାନ ତାଙ୍କର ଥିଲା ବିଷୟବସ୍ତୁ । ସେତେବେଳ ପର୍ଯ୍ୟନ୍ତ ଅର୍ଥନୀତି ଥିଲା ଏକ ମିଶ୍ରିତ ବିଷୟବସ୍ତୁ ରାଜନୀତି ବିଜ୍ଞାନ ସହିତ । ତେବେ ଆକସ୍ମିକ ଭାବରେ ସାର୍‌ଙ୍କୁ ମୁଁ ଜାଣିଥିଲି ପାରଳାଖେମୁଣ୍ଡି କଲେଜରେ ତାଙ୍କର ଛାତ୍ର କାଳରୁ । ତାଙ୍କୁ ଆମେ 'ରକ୍ଷଣଶୀଳ' ବୋଲି କହୁଥିଲୁ କାରଣ ତାଙ୍କର ମତକୁ ସେ କେବଳ ସ୍ପଷ୍ଟ

ଭାବରେ ପ୍ରକାଶ କରୁ ଥିଲେ ନୁହେଁ, ସେ ମତକୁ ତଥାକଥିତ ଜନପ୍ରିୟତା ପାଇଁ ପରିବର୍ତ୍ତନ କରୁ ନଥିଲେ । ଅନେକ ସମୟରେ ଏଥିପାଇଁ ତାଙ୍କୁ ତୀବ୍ର ମତଭେଦର ସମ୍ମୁଖୀନ ହେବାକୁ ପଡ଼ିଛି । ସେ କିନ୍ତୁ ଅଟଳ ରହିଛନ୍ତି ତାଙ୍କ ମତ ଉପରେ । ସେ ଦୃଷ୍ଟିରୁ ସେ ଜନପ୍ରିୟତା ପ୍ରତି ଆଦୌ ଦୃଷ୍ଟି ଦେଉନଥିଲେ । ଆପଣାର ପଠନ ଏବଂ ପଢ଼ାଇବା ଶୈଳୀ ହିଁ ଶିକ୍ଷକର ମାପକାଠି, ଆଉ କିଛି ନୁହେଁ ବୋଲି ତାଙ୍କର ମତ ।

ପଢ଼ାନ୍ତି ଚମତ୍କାର । ପାଟିରୁ ଶବ୍ଦ ଛୁଟେ ବୁଲେଟ ପରି । ଷ୍ଟେଣ୍ଟୋରିଆନ କଣ୍ଠ । ମନେପଡୁଛି । କେନେଥ କେ କୁରିହାରା ସେଡ୍..... ପ୍ରଥମ ଦିନର କ୍ଲାସରେ ତାଙ୍କର ଲେକ୍‌ଚର । ଡକ୍ଟର ସଦାଶିବ ମିଶ୍ରଙ୍କ ଭାଷଣ ପରି ତାହା ମନଛୁଆଁ ନୁହେଁ । ଡକ୍ଟର ବୈଦ୍ୟନାଥ ମିଶ୍ରଙ୍କ ଲେକ୍‌ଚର ପରି ତାହା ସାବଲୀଳ ନୁହେଁ । ତୀକ୍ଷ୍ଣ, ମନକୁ ବିନ୍ଧିଲା ଭଳି ଶବ୍ଦ ଛୁଟିଆସେ । ସେ ସେତେବେଳେ ପ୍ରାୟ ସୁଟ୍ ପିନ୍ଧି ଆସୁଥିଲେ, ପରେ ଡ୍ରେସ ହାଓ୍ୱାଇକୁ ପରିବର୍ତ୍ତନ ହୋଇଥିଲା । ସେ ପ୍ରତି ଶବ୍ଦ ଉପରେ ଏତେ ଜୋରରେ କହନ୍ତି ଯେ କ୍ଲାସ ସରିଲା ବେଳକୁ ପୂରା ଝାଳନାଳ ହୋଇ ଯାଆନ୍ତି, ଯଦିଓ ମୁଣ୍ଡ ଉପରେ ପଂଖା । ପତ୍ୟେକ ଶବ୍ଦ, ପ୍ରତ୍ୟେକ ପଏଣ୍ଟ ଯେଭଳି ମନ ଭିତର ନିଗଡ଼କୁ ଭେଦକରି ପଶିଯିବ କି ଆଉ !

ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ବିଦ୍ୟାଧର ମିଶ୍ର, ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର, ଡକ୍ଟର ବୈଦ୍ୟନାଥ ମିଶ୍ର ଏବଂ ଡକ୍ଟର କ୍ଷେତ୍ରମୋହନ ପଟ୍ଟନାୟକଙ୍କୁ ନେଇ ଗଠିତ ଅର୍ଥନୀତି ବିଭାଗ ସାରା ଭାରତବର୍ଷରେ ଖ୍ୟାତିଲାଭ କରିଥିଲା । ସର୍ବଭାରତୀୟ ଅର୍ଥନୀତି ସମ୍ମିଳନୀରେ ମଧ୍ୟ ସମ୍ମାନ ଲାଭ କରିଥିଲା । କହିବା ବାହୁଲ୍ୟ ଯେ ମୋ ଭଳି କେତେକ ଛାତ୍ରଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ଏବଂ ତାହାର କ୍ରେଡ଼ିଟ୍ ନିଶ୍ଚିତ ଭାବରେ ସେଇ ଶିକ୍ଷକମାନଙ୍କର ।

କ୍ଲାସକୁ ନିୟମିତ ଆସିବେ, ମିନିଟିଏ ମଧ୍ୟ ବିଳମ୍ବ ହେବ ନାହିଁ, ପୂରା ୫୫ ମିନିଟ (ସେତେବେଳେ ପିରିଅଡ୍ ଥିଲା ୫୫ ମିନିଟ) ପଢ଼ାଇବେ, ସେଥିରେ କୌଣସି ତ୍ରୁଟି ହେବନାହିଁ । ଗମ୍ଭୀର ମୁହଁ, ଦେଖିଲେ ଡରମାଡ଼େ । କିନ୍ତୁ ଟିଉଟୋରିଆଲ କ୍ଲାସ (ସେଗୁଡ଼ାକ ଆଜିକାଲି କୁଆଡ଼େ ହେଉନାହିଁ)ରେ ସେ ଠିକ୍ ଓଲଟା । ପାଠପଢ଼ାଇବାରେ ସେ ଥିଲେ ସଂପୂର୍ଣ୍ଣ ମେଥଡ଼ିକାଲ ।

ସାର୍ ଅବସର ନେଲେ । ଅବସର ପରେ ଦେଖାହୋଇଛି ବହୁବାର । ପାରିବାରିକ ସଂପର୍କ ଥିଲା । ସେ ସମ୍ବୋଧନ କରନ୍ତି ପ୍ରାୟତଃ ପୂରା ନାମରେ– ଗିରିଜା ଭୂଷଣ । ଖୁବ୍ କମ ଶୁଣିଚି ତାଙ୍କଠାରୁ ଗିରିଜା ନାମରେ । ମୋ ସ୍ତ୍ରୀଙ୍କୁ ମଧ୍ୟ ସେ ଡାକନ୍ତି କମଳକୁମାରୀ

ବୋଲି । ପାଠ ପଢ଼ାଇବାରେ ଅବହେଳା କଦାପି କରି ନାହାନ୍ତି, ତ୍ରୁଟି କରିନାହାନ୍ତି । ତେଣୁ ସମ୍ମାନରେ ବି ତ୍ରୁଟି ହୋଇନାହିଁ । ମୁଁ ଥିଲି ତାଙ୍କର (ଏବଂ ଅନ୍ୟମାନଙ୍କର ବି) ଦୁଷ୍ଟ ଛାତ୍ର । ମୋର ଅନ୍ୟ ବିଷୟରେ ଦକ୍ଷତା ଥାଇପାରେ, କିନ୍ତୁ ପାଠ ପଢ଼ିବାରେ ଦକ୍ଷତା ସଂପର୍କରେ ସବୁ ଶିକ୍ଷକମାନଙ୍କର ସନ୍ଦେହ ଥିଲା । ସୀମା ଆନ୍ଦୋଳନ ପରେ ୱାରେଣ୍ଟ ଉଠିଲା ବେଳକୁ ପରୀକ୍ଷା ଥିଲା ମାତ୍ର ଆଉ ୧୫/୨୦ ଦିନ । ବି.ଏ. ପରୀକ୍ଷା । ସବୁ ଶିକ୍ଷକ ଧରି ନେଇଥିଲେ ଯେ ମୁଁ ପରୀକ୍ଷାରେ ଭଲ କରିବି ନାହିଁ । ଏହା ଭାବିବା ସ୍ୱାଭାବିକ । କିନ୍ତୁ ଯେତେବେଳେ ସେ ଶୁଣିଲେ ଯେ ମୁଁ ଅନର୍ସ ପାଇଛି ଏବଂ ଅନ୍ତତଃ ତିନୋଟି ପେପରରେ ଶତକଡ଼ା ସତୁରୀ ନମ୍ବର ରଖିଛି, ସାର୍ ମୋତେ କୁଣ୍ଢାଇ ପକାଇ ଆଶୀର୍ବାଦ କରିଥିଲେ ଏବଂ ତାଙ୍କ ଆଖିରୁ ଲୁହ ଗଡ଼ି ଯାଇଥିଲା ।

ସାର୍ ଆଉ ନାହାନ୍ତି । କେହି ଚିରକାଳ ରହିବେ ନାହିଁ । କିନ୍ତୁ ସାର୍‌ଙ୍କ ଅଗଣିତ ଛାତ୍ରମାନଙ୍କ ଭିତରେ ସେ ପ୍ରତିଭାତ ଏବଂ ସ୍ମରଣୀୟ ହୋଇବେ ଚିରକାଳ ।



# ସ୍ୱପ୍ନହରା କ୍ଷେତ୍ରମୋହନ

ଡିସେମ୍ବର ୧୦, ୧୯୯୮ । ମଧ୍ୟାହ୍ନର କିଛି ସମୟ ପୂର୍ବରୁ । ଟେଲିଫୋନ ବାଜିଲା ହଠାତ୍ । ତୁହାକୁ ତୁହା । ବାପା କ୍ଷେତ୍ରମୋହନ ଶତପଥୀ ଚାଲିଗଲେ ଏଇନା । ବାପା କହିଯାଇଛନ୍ତି ମୁଁ ଚାଲିଗଲା ପରେ ଗିରିଜାକୁ ଖବର ଦେବୁ ଆଗ । ସେ ସବୁ ବନ୍ଦୋବସ୍ତ କରିଦେବ.... ପୁଅ କହୁଛି ଟେଲିଫୋନରେ । କ୍ଷେତ୍ରମୋହନ ବାବୁ ଯାଇଥିଲେ ଦିଲ୍ଲୀ ଚିକିତ୍ସିତ ହେବାପାଇଁ । ମୁଖ୍ୟମନ୍ତ୍ରୀ ଅନୁଦାନ ଦେଇଥିଲେ, ରାମକୃଷ୍ଣ ହେଗଡ଼େ ପ୍ରତିଶ୍ରୁତି ଦେଇଥିଲେ ସାହାଯ୍ୟ ପାଇଁ, ବନ୍ଧୁବତ୍ସଳ ଛାତ୍ରବତ୍ସଳ କ୍ଷେତ୍ରମୋହନଙ୍କୁ ମିଳିଥିଲା ବନ୍ଧୁମାନଙ୍କର ସାହାଯ୍ୟର ପ୍ରତିଶ୍ରୁତି । ସମସ୍ତେ ଭାବିଥିଲେ ସେ ଫେରି ଆସିବେ ଶୀଘ୍ର । କ'ଣ ଗୋଟାଏ ଯନ୍ତ୍ରଣା ଦେଖାଦେଇଛି, ଚିକିତ୍ସିତ ହୋଇ ଫେରିଆସିବେ ଦିଲ୍ଲୀରୁ । ସେ ଫେରିଥିଲେ କିନ୍ତୁ ଫେରିବାଟା ଅଧବାଟ.... ତା'ପରେ ତାଙ୍କୁ ଯିବାକୁ ହେବ ଦୀର୍ଘବାଟ । ସେଠାରୁ ଆଉ କେହି କେବେ ଫେରି ନାହାନ୍ତି । ସେ ଫେରିଥିଲେ କଟକ, ଗଲା ମାସ ୨୦ ତାରିଖରେ, ଜୀବନ୍ମୃତ ହୋଇ । ସେ ଧିରେ ଧିରେ ଆଗେଇ ଯାଉଥିଲେ ମୃତ୍ୟୁ ମୁହଁକୁ । ସେ ବିଷୟରେ ମଧ ରେସନାଲିଷ୍ଟ କ୍ଷେତ୍ରମୋହନ ସଚେତନ ଥିଲେ । କିନ୍ତୁ ଏ ଖବର ତାଙ୍କର ବହୁ ବନ୍ଧୁଙ୍କ ପାଖରେ ପହଞ୍ଚି ନଥିଲା । ତାଙ୍କର ମୃତ୍ୟୁ ସଂବାଦ ଚକିତ କଲା ଆମ ସମସ୍ତଙ୍କୁ... ଦୈବାତ୍ ବହୁ ବନ୍ଧୁ ଉପସ୍ଥିତ ଥିଲେ ସେତେବେଳେ । ସମସ୍ତେ ଅନେଇଲେ ପରସ୍ପରକୁ । କାହାରି ପାଟିରେ କଥା ନାହିଁ ।

୧୯୨୮ ମସିହା ଜୁଲାଇ ୨୮ ତାରିଖରେ କ୍ଷେତ୍ରମୋହନ ଜନ୍ମ ହୋଇଥିଲେ ସାଲେପୁର ଥାନା କଟିକଟା ଗ୍ରାମର ଏକ ମଧ୍ୟବିତ୍ତ ପରିବାରରେ । ପିଲାଦିନୁ ସେ ସ୍ୱାଧୀନତା ଆନ୍ଦୋଳନ ସହିତ ତଥା ସମାଜବାଦୀ ଆନ୍ଦୋଳନ ସହିତ ଗଭୀର ଭାବରେ ସଂପୃକ୍ତ ହୋଇଯାଇଥିଲେ । ୧୯୪୩ ମସିହାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ଓଡ଼ିଶା ଶାଖାର ସଂପାଦକ ଭଗବତୀ ଚରଣ ପାଣିଗ୍ରାହୀଙ୍କର ଚିତାଗ୍ନି ପାଖରେ ତାଙ୍କୁ ଦେଖିବାକୁ ମିଳେ । ରେଭେନ୍ସା କଲେଜର ଛାତ୍ର ଭାବରେ କ୍ଷେତ୍ରମୋହନ ସମାଜବାଦୀ ଆନ୍ଦୋଳନ

ସହିତ ନିବିଡ଼ ଭାବରେ ଜଡ଼ିତ ହୁଅନ୍ତି ଏବଂ ନବଗଠିତ ସୋସଲିଷ୍ଟ ପାର୍ଟିର ଯୁବପୀଢ଼ିର ଅନ୍ୟତମ ମହାରଥୀ ପାଲଟନ୍ତି । ସେ ସ୍ୱପ୍ନ ଦେଖିଥିଲେ ଏକ ସମାଜବାଦୀ ଭାରତବର୍ଷର, ଏକ ଦୃଢ଼ ଶକ୍ତିଶାଳୀ ଭାରତବର୍ଷର ତଥା ଏକ ଶାନ୍ତିପୂର୍ଣ୍ଣ ପୃଥିବୀର ।

ସ୍ୱପ୍ନକୁ ସାକାର କରିବାପାଇଁ ଶକ୍ତି କୁଳାଇଲା ନାହିଁ । କିନ୍ତୁ ସ୍ୱପ୍ନ ତାଙ୍କୁ ଘାରି ରଖିଲା ସବୁ ଦିନ । ଶିକ୍ଷା ବିଭାଗରେ ଚାକିରି କଲେ କିନ୍ତୁ ସ୍ୱପ୍ନ ଛାଡ଼ିଲା ନାହିଁ ତାଙ୍କୁ । ତାଙ୍କର ବିଷୟ ଥିଲା 'ଶିକ୍ଷା' । ସେଥିରେ ଡକ୍ଟରେଟ କଲେ । 'ଶିକ୍ଷା' ବିଷୟରେ ବହି ଲେଖିଲେ । ସ୍ୱାଭାବିକ ଭାବରେ ସେ ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ସଂପାଦକ ହେଲେ । ଶିକ୍ଷା ବିଭାଗର ସମସ୍ୟାର ବାବଦୂକ ହେଲେ । କିନ୍ତୁ ଗଣିତ, ବିଶେଷତଃ ଜୀବନ-ଗଣିତରେ ସେ ଥିଲେ ଅପାରଗ । ସେ ହିସାବ ତାଙ୍କୁ ମାଲୁମ ନଥିଲା । ସେଇଯୋଗୁଁ ହଇରାଣ ହୋଇଛନ୍ତି ବହୁତ । ଏପରିକି ଶେଷ ପର୍ଯ୍ୟନ୍ତ ପୂରା ପେନସନ୍ ମଧ୍ୟ ସେ ପାଇ ପାରିଲେ ନାହିଁ । ସେ ଅନ୍ୟମାନଙ୍କର ବାବଦୂକ ଥିଲେ କିନ୍ତୁ ତାଙ୍କର ବାବଦୂକ କିଏ ?

ତଥାପି ସ୍ୱପ୍ନ ଛାଡ଼ିଲା ନାହିଁ । ସର୍ବୋଦୟ ଆନ୍ଦୋଳନଠାରୁ ଆରମ୍ଭ କରି ଦେଉଳ ସାହି କମିଟି ପର୍ଯ୍ୟନ୍ତ, ଲୋକଶକ୍ତି ଠାରୁ ଆରମ୍ଭ କରି ସୋସଲିଷ୍ଟ ପାର୍ଟି ପର୍ଯ୍ୟନ୍ତ ସବୁକୁ ସେ ଆବୋରି ଥିଲେ ଏବଂ ତାହା ପ୍ରାଣଭରା ଥିଲା । ଖାଲି ମାମୁଲି ନଥିଲା । 'ଲୋକଙ୍କ ପାଇଁ କ'ଣ କାର୍ଯ୍ୟକ୍ରମ ?', 'ସାଧାରଣ ମଣିଷ ପାଇଁ କ'ଣ ମିଳିବ ?' ସବୁଥିରେ ତାଙ୍କର ଏଇ ପ୍ରଶ୍ନ । ଅନେକ ସମୟରେ ବିରକ୍ତ ଲାଗେ । କାହାପାଇଁ ଆମେ ସବୁ କରୁଛୁ କି ? ଲୋକଙ୍କ ପାଇଁ ନା ଆଉ କାହା ପାଇଁ ? କିନ୍ତୁ ତାଙ୍କର ଆବେଗ ଦେଖିଲେ, ସ୍ପନ୍ଦନ ଦେଖିଲେ ସବୁ ହାର ମାନିଯାଏ, ଯୁକ୍ତି ମାନେନା କିଛି ।

କ୍ଷେତ୍ରମୋହନ ବଂଧୁବତ୍ସଳ । ଉପକାର ପାଇଥିଲେ ମନେ ରଖିଥିବେ, ସମସ୍ତଙ୍କୁ କହିବେ । ଉପକାର ଦେଇଥିବା ଲୋକକୁ ଲାଜ ମାଡ଼ିବ । ଅପକାର କରିଥିଲେ ମନେ ରଖନ୍ତି ନାହିଁ । ଇମିତି ମଣିଷ ମିଳିବେ ନାହିଁ ସହଜରେ । ସେ ଭଳିଆ ମଣିଷ ହଜି ହଜି ଯାଉଛନ୍ତି ପୃଥିବୀରୁ, ପୃଥିବୀ ଦରିଦ୍ର ହୋଇଯାଉଛି ।



# ସୁରରେ ଯାହାର ସ୍ୱୟଂ ଭଗବାନ ପ୍ରତିଭାତ

ଯେହୁଦୀ ମେନ୍‌ହୁଇନ୍ ବହୁକାଳରୁ ଆଉ ଏକ ବ୍ୟକ୍ତିହୋଇ ରହି ନଥିଲେ । ବ୍ୟକ୍ତିର ଊର୍ଦ୍ଧ୍ୱରେ ସେ ସୁରର ଏକ ସ୍ୱର୍ଗୀୟ ଝଂକାରରେ ପରିଣତ ହୋଇସାରିଥିଲେ । ମାନବୀୟ କଳା, ସାହିତ୍ୟ, ବିଜ୍ଞାନ, ଦର୍ଶନ କ୍ଷେତ୍ରରେ ୟୁହୁଦୀମାନଙ୍କର ଅବଦାନ ବିପୁଳ । ଜୀବନର ଏଭଳି କୌଣସି ବିଭାବ ନାହିଁ ଯେଉଁଥିରେ ସେମାନେ ଆପଣାର ଅଭିଲେଖ ରଖିଯାଇ ନାହାନ୍ତି । ସେଇ ବିରାଟ ଅବଦାନର ଧାରାର ଅନ୍ୟତମ ଉଜ୍ଜ୍ୱଳ ତାରକା ହେଉଛନ୍ତି ଯେହୁଦୀ ମେନ୍‌ହୁଇନ । ଏକ ରୁଷୀୟ ୟୁହୁଦୀ ପରିବାରରେ ତାଙ୍କର ଜନ୍ମ ହୋଇଥିଲା ୧୯୧୬ ମସିହା ଏପ୍ରିଲ ୨୨ ତାରିଖରେ ନ୍ୟୁୟର୍କ ସହରରେ । କାରଣ ଅକ୍ଟୋବର ବିପ୍ଳବର ବହୁ ପୂର୍ବରୁ ତାଙ୍କର ପିତାମାତା ଦେଶ ଛାଡ଼ିଥିଲେ । ସମଗ୍ର ଇଉରୋପରେ ୟୁହୁଦୀମାନଙ୍କ ଉପରେ ଆକ୍ରମଣର ପର୍ବ ଆରମ୍ଭ ହୋଇ ସାରିଥିଲା । ପରବର୍ତ୍ତୀ କାଳରେ ୟୁହୁଦୀ ବିରୋଧୀ ଆକ୍ରମଣର ଶିକାର ହୋଇ ପ୍ରାଣ ହରାଇଥିଲେ ଲକ୍ଷଲକ୍ଷ ୟୁହୁଦୀ । ଫଳରେ ପୃଥିବୀ ଦରିଦ୍ର ହୋଇଛି ।

ଯେହୁଦୀ ମେନ୍‌ହୁଇନ୍ ବାଲ୍ୟକାଳରୁ ହିଁ ଭାୟୋଲିନ୍ ବଜାଇବାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ପୂର୍ବସୁରୀ ବିଥୋଭିଇନ୍ ଏବଂ ମୋଜାର୍ଟଙ୍କ ଭଳି ତାଙ୍କୁ କୌଣସି ତାଲିମର ଆବଶ୍ୟକତା ପଡ଼ି ନଥିଲା । ସତେ ଯେପରି ଭାୟୋଲିନ୍ ବାଦନ ତାଙ୍କ ରକ୍ତରେ ଆସିଯାଇଥିଲା ଜନ୍ମ ସହିତ । ତାଙ୍କର ୧୩ ବର୍ଷ ପୂରିବାକୁ ବାକିଥାଏ । ବର୍ଲିନ ସହରରେ ଭାୟୋଲିନ୍ ବାଦନ କରୁଥାନ୍ତି ଶିଶୁ-ପ୍ରତିଭା ମେନ୍‌ହୁଇନ୍ । ଦର୍ଶକମାନଙ୍କ ଭିତରେ ଥାଆନ୍ତି ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ । ବେହେଲା ବାଦନ କାର୍ଯ୍ୟକ୍ରମ ସରିଲାପରେ ବୈଜ୍ଞାନିକ ଆଇନଷ୍ଟାଇନ ଶିଶୁକଳାକାର ଯେହୁଦୀ ମେନ୍‌ହୁଇନଙ୍କୁ ଆଲିଙ୍ଗନ କରି ଭାବ ଗଦ୍‌ଗଦ୍ ସ୍ୱରରେ କହିଲେ ''ବର୍ତ୍ତମାନ ମୁଁ ଅନୁଭବ କରୁଚି ଯେ ଭଗବାନ ସ୍ୱର୍ଗରେ ଅଧିରୂଢ଼'' । ପାଞ୍ଚବର୍ଷ ବୟସରୁ ସେ ଭାୟୋଲିନ୍ ବଜାଇବା ଆରମ୍ଭ କରନ୍ତି ଏବଂ ସାତବର୍ଷ

ବୟସରେ ସେ କନସର୍ଟରେ ପ୍ରଥମଥର ପାଇଁ ଭାୟୋଲିନ୍ ବାଦନ କରନ୍ତି ।

ଭାରତବର୍ଷରେ ତାଙ୍କର ପରିଚିତି ସ୍ୱତନ୍ତ୍ର । ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ସୀତାରବାଦକ ରବିଶଙ୍କରଙ୍କ ସହିତ ତାଙ୍କର ଦୈତ ବାଦନ ତାଙ୍କୁ ଭାରତୀୟ ତଥା ବିଦେଶରେ ଆଣିଦେଇଥିଲା ସ୍ୱତନ୍ତ୍ର ପରିଚିତି । ମାତ୍ର ସାତବର୍ଷ ବୟସରେ ସେ ସାନ୍‌ଫ୍ରାନସିସ୍କୋର ସିମ୍ଫୋନି ଅର୍କେଷ୍ଟ୍ରାରେ ଯୋଗ ଦିଅନ୍ତି ଏବଂ ମାତ୍ର ଦଶବର୍ଷ ବୟସରେ ନିୟୁର୍କର କାର୍ନେଗିକ୍ ହଲରେ ଭାୟୋଲିନ ବଜାନ୍ତି । ବିଥୋଭେନ୍, ବ୍ରାହମସ୍ ଏବଂ ବାକ୍‌ଙ୍କର ସୁର ଧ୍ୱନିତ ହୁଏ ତାଙ୍କର ହସ୍ତ ଚାଳନାରେ । ସଂଗୀତର ମଧୁର ଝଂକାର ମିଶ୍ରିତ ହୁଏ ମାତ୍ର ତେର ବର୍ଷ ବୟସରେ ।

ସେ କେବଳ ଜଣେ ସୁରକାର ନଥିଲେ । ମଣିଷ ଜାତି ପାଇଁ ତାଙ୍କର ଦରଦ, ଜଣେ ଶିକ୍ଷାଦାତା ଭାବରେ ତାଙ୍କର ନିପୁଣତା ତାଙ୍କୁ ମହାନ୍ କରି ତୋଳିଥିଲା । ପ୍ରତିଭା ଏବଂ ସମୟ, ଉଭୟରେ ସେ ଉଦାର ଥିଲେ ଅନ୍ୟମାନଙ୍କର ଉପକାର ପାଇଁ । ମେନହୁଇନ ଇଂଲଣ୍ଡରେ ଏକ ସଂଗୀତ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ ଏବଂ ବ୍ରୁସେଲସ୍‌ରେ ସଂଗୀତ ଶିକ୍ଷା ପାଇଁ ଏକ ଫାଉଣ୍ଡେସନ ପ୍ରତିଷ୍ଠା କରିଥିଲେ । "କଳା ହେଉଛି ଏକ ସଭ୍ୟତାର ମାର୍ଜିତ ପ୍ରତିଫଳନ । ସଂଗୀତ ହେଉଛି ଉଭୟ ଦାନ ଓ ପ୍ରତିଦାନ ଉପରେ ପୁଷ୍ଟ । ତୁମେ ଶୁଣାଅ ଏବଂ ଶୁଣ– ତା'ହେଲେ ହିଁ ସଂଗୀତର ଅବଦାନ ସଂପୂର୍ଣ୍ଣ ହେବ"– ଏଇଥିଲା ତାଙ୍କର ବାଣୀ ।

ମେନହୁଇନ କେନ୍ସିଲଣ୍ଡନକୁ ଆପଣାର ରହିବା ସ୍ଥାନ ଭାବରେ ବାଛି ନେଇଥିଲେ । ସାଂଗରେ ଦ୍ୱିତୀୟ ପତ୍ନୀ– ଡିଆନାଗାଉଲଡ୍ ଏବଂ ତାଙ୍କ ଔରସରେ ଦୁଇଟି ପୁତ୍ର । ୧୯୬୫ରେ ତାଙ୍କୁ ସାର୍ ଉପାଧିରେ ଭୂଷିତ କରାଯାଏ କିନ୍ତୁ ୧୯୮୫ ମସିହାରେ ସେ ବ୍ରିଟିଶ ନାଗରିକ ହେଲା ପରେ ହିଁ ଉକ୍ତ ଉପାଧିକୁ ବ୍ୟବହାର କରି ପାରନ୍ତି । ୧୯୯୩ ମସିହାରେ ତାଙ୍କୁ ଲର୍ଡ଼ ଉପାଧିରେ ଭୂଷିତ କରାଯାଏ । ମେନହୁଇନ ୧୯୩୮ ମସିହାରେ ଅଷ୍ଟ୍ରେଲିଆର ଏକ କୋଟିପତିଙ୍କ କନ୍ୟା ମେଲା ନିକୋଲାସଙ୍କୁ ବିବାହ କରିଥିଲେ ଏବଂ ତାଙ୍କର ଔରସରୁ ଗୋଟିଏ ପୁତ୍ର ଏବଂ ଗୋଟିଏ କନ୍ୟା ମଧ ଥିଲେ ତାଙ୍କର । କିନ୍ତୁ ଏଇ ବିବାହ ବିଚ୍ଛେଦ ହୋଇଯାଇଥିଲା ୧୯୪୭ ମସିହାରେ ଏବଂ ସେଇ ବର୍ଷ ହିଁ ସେ ଦ୍ୱିତୀୟ ପତ୍ନୀ ଗ୍ରହଣ କରନ୍ତି ।

ମେନହୁଇନଙ୍କ ଦ୍ୱିତୀୟ ପତ୍ନୀ ବାଲେରିନା ଡିଆନା ଗୋଲ୍ଡ (Ballerina Diana Gould) ପତିଙ୍କ ପାଖରେ ଦୃଢ଼ ଭାବରେ ଠିଆହୁଅନ୍ତି, ମେନହୁଇନଙ୍କ ସଂକଟ ସମୟରେ । କିଛି ଜର୍ମାନ୍‌ମାନଙ୍କ ପ୍ରତି ସମର୍ଥନ ଜ୍ଞାପନ କରିବା ହେତୁ ତାଙ୍କୁ ଆମେରିକା ଏବଂ ଇସରାଏଲ ଉଭୟ ରାଜ୍ୟରେ ତୀବ୍ର ସମାଲୋଚନା କରାଯାଏ । ଏହା ସତ୍ତ୍ୱେ ମେନହୁଇନ ଯୁଦ୍ଧ ସରିବାର ମାତ୍ର ଦୁଇବର୍ଷ ପରେ ୧୯୪୭ ଜର୍ମାନ୍‌ମାନଙ୍କ ପାଇଁ ବର୍ଲିନ ସହରରେ

ବେହେଲା ବାଦନ କରନ୍ତି ଏବଂ ତୀବ୍ର ସମାଲୋଚନାରେ ତାଙ୍କର ଜୀବନରେ ଗଭୀର ଅବସାଦ ନଇଁ ଆସେ । କିନ୍ତୁ ଅବସାଦର କୃଷ୍ଣଛାୟା ଅପସରିଯାଏ ୧୯୫୦ ମସିହା ଏବଂ ତତ୍ ପରବର୍ତ୍ତୀ ସମୟରେ । ୧୯୫୦ରେ ସେ ଇସରାଏଲରେ ବେହେଲା ବାଦନ କରନ୍ତି ଏବଂ ପରବର୍ତ୍ତୀ କାଳରେ ସେ ଇସରାଏଲର ଗେହ୍ଲାପୁଅ ହୋଇଯାଆନ୍ତି ।

"କଳା ହେଉଛି ସଭ୍ୟତାର ପରିଚ୍ଛନ୍ନ ପ୍ରଶାନ୍ତି । ସଂଗୀତ ଦୁଇଟି ଦିଗରୁ ତୃପ୍ତି ଆଣେ । ତମେ ଶୁଣିପାର ଏବଂ ଶୁଣାଇ ବି ପାର ।"

କ୍ଲାସିକାଲ ଚରିତ୍ର । କ୍ଲାସିକାଲ ସଂଗୀତ । କିନ୍ତୁ ଅନେକ ସମୟରେ ତାଙ୍କୁ ବିଚିତ୍ର ପରିବେଶରେ ଦେଖାଯାଇଥାଏ । ବିଟଲମାନଙ୍କ ସଂଗୀତ ଶୁଣିବା ପାଇଁ ତାଙ୍କର ଆଗ୍ରହ ପ୍ରଚୁର । କିନ୍ତୁ ରୋଲିଂ ଷ୍ଟୋନମାନଙ୍କର କନସର୍ଟ ତାଙ୍କୁ କ୍ଳାନ୍ତ କରିଦିଏ । ଏହି ସଂଗୀତର ନା ଅଛି ସୂକ୍ଷ୍ମତା, ନା ଅଛି ବ୍ୟାପ୍ତି, ନା ଅଛି ଧୀମତ୍ତା– ଏହା ହେଉଛି ରୋଲିଙ୍ଗ ଷ୍ଟୋନମାନଙ୍କର ସଂଗୀତ ଉପରେ ତାଙ୍କର ଅଭିବ୍ୟକ୍ତି ।

ମେନହୁଇନ ବେଶ୍ ଗଭୀର ଆଧାତ୍ମ୍ୟବାଦୀ । ଭାରତୀୟ ଦର୍ଶନର ରହସ୍ୟବାଦ ତାଙ୍କୁ ମୁଗ୍ଧ କରେ । ଜୀବନ ଓ ମୃତ୍ୟୁକୁ ସେ ସେଇ ରହସ୍ୟବାଦୀ ଦୃଷ୍ଟିକୋଣରୁ ହିଁ ଗ୍ରହଣ କରନ୍ତି ।

"ଶୀଘ୍ର ହେଉ ବା ବିଳମ୍ବରେ ହେଉ ପ୍ରତ୍ୟେକ ଜୀବନ ମୃତ୍ୟୁରେ ପରିଣତ ହେବାକୁ ବାଧ୍ୟ । ଜୀବନର ଉତ୍ସ ସହିତ ସଂଗୀତ ଓ ନୃତ୍ୟ ସହିତ ତୁରନ୍ତ ମିଳିତହେବା ହେଉଛି ମୋର ଇଚ୍ଛା.... ଏବଂ ପୁଣି ଥରେ ପୃଥିବୀକୁ ଫେରି କୌଣସି ଏକ ବୃକ୍ଷଛାୟା ବା ନଦୀତଟରେ ଜନ୍ମଗ୍ରହଣ ହେଉଛି ମୋର ଅଭିପ୍ରାୟ ।"

ମେନହୁଇନ କୌଣସି ଦେଶର ନୁହନ୍ତି । ତାଙ୍କର ସଂଗୀତ ପୃଥିବୀର ସବୁ ଦେଶର ମଣିଷକୁ ମୁଗ୍ଧ କରିଛି । ମହାକାଳ ବକ୍ଷରେ ସେଇ ବେହେଲାର ସ୍ୱର ଧ୍ୱନିତ ହେବ ଚିରକାଳ । ମେନହୁଇନ ନଥିବେ କିନ୍ତୁ ।



# ମଣିଷ ଓ ପ୍ରକୃତି ଆଖିରେ ଲୁହ

ସମାଜବାଦୀ ଚିନ୍ତକ, କୁଶଳୀ ରାଜନୀତିଜ୍ଞ, ପରିବେଶବିଦ୍ ବାଙ୍କବିହାରୀ ଦାସ ଆଉ ନାହାନ୍ତି । ୨୮ ଜୁନ୍, ୨୦୦୧ ମସିହା ମଧ୍ୟାହ୍ନରେ ଭୁବନେଶ୍ୱର ଡାକ୍ତରଖାନାରେ ତାଙ୍କର ପରଲୋକ ହୋଇଗଲା ହୃଦରୋଗରେ । ଗଲା କେତେଦିନ ହେବ ସେ ଗୁରୁତର ଅସୁସ୍ଥ ଥିଲେ । ମୃତ୍ୟୁ ବେଳକୁ ତାଙ୍କୁ ୭୯ ବର୍ଷ ବୟସ ହୋଇଥିଲା ।

କଟକ ଜିଲ୍ଲା କଲ୍ୟାଣପୁର ଗ୍ରାମରେ ବାଙ୍କବାବୁ ଜନ୍ମ ହୋଇଥିଲେ । ୧୯୨୨ ମସିହା ଜାନୁଆରୀ ଆଠ ତାରିଖରେ । ମାଟ୍ରିକୁଲେଶନ ପ୍ରଥମ ଶ୍ରେଣୀରେ ପାସ କରି ରେଭେନ୍ସା କଲେଜରେ ବି.ଏ. ପଢୁଥିବା ସମୟରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଚାରିବର୍ଷ କାରାବରଣ କରିଥିଲେ ।

ବାଙ୍କବାବୁ 'ଭାରି ଚାଲାକ ଓ ଧୂର୍ତ୍ତ' ବ୍ୟକ୍ତି ଥିଲେ ବୋଲି ସେ କଂଗ୍ରେସ ବା ଜନତା ପାର୍ଟିରେ ପ୍ରାଧାନ୍ୟ ପାଇ ନାହାନ୍ତି ବୋଲି କୁହାଯାଏ । ସତେ ଯେପରି ଚାଲାକ ଏବଂ ଧୂର୍ତ୍ତ ହେବା ଏକ ଅପରାଧ ବା ଅଯୋଗ୍ୟପଣିଆ । ରାଜନୀତି କରିବାକୁ ଆସିବା ଲୋକ ହେଉ ବା ଆଇ.ଏ.ଏସ୍. ଚାକିରି କରିବାକୁ ଯିବା ଲୋକ ହେଉ ବା ବ୍ୟବସାୟ କରିବାକୁ ଯିବା ମଣିଷ ହେଉ ଯଦି 'ଚାଲାକ ଏବଂ ଧୂର୍ତ୍ତ' ନହେଲା ତା'ହେଲେ ଖୁବ୍ ଉପରକୁ ଉଠିପାରିବ ନାହିଁ, ଏହା କ'ଣ ସତ୍ୟ ନୁହେଁ ?

ବାଙ୍କବାବୁ ମେଧାବୀ ଥିଲେ ଏବଂ ପାରିବାର ବ୍ୟକ୍ତି ଥିଲେ । କୌଣସି କାମକୁ ସେ ବିନା ନିଷ୍ଠାର ସହିତ ଗ୍ରହଣ କରିପାରି ନାହାନ୍ତି ।

ବାଙ୍କବାବୁ କଂଗ୍ରେସ ଦଳର ଥିଲେ କିନ୍ତୁ ପରେ ସେ ସୋସଲିଷ୍ଟ ପାର୍ଟିରେ ଯୋଗଦେଲେ । କାରଣ କଂଗ୍ରେସ ଦଳରେ ତାଙ୍କର ବୌଦ୍ଧିକ ତୃପ୍ତି ମିଳିନଥିଲା ।

ଯେଉଁମାନେ ଓଡ଼ିଶାରେ ସୋସଲିଷ୍ଟ ପାର୍ଟିର ଗଠନକଲେ ସେମାନଙ୍କ ମଧ୍ୟରେ

ବାଙ୍କବିହାରୀ ଦାସ ଅନ୍ୟତମ । ପାର୍ଟିର ତାତ୍ତ୍ୱିକ-ସଂଗଠକ ଭାବରେ ତାଙ୍କର ଖ୍ୟାତି ଥିଲା । ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ଆତ୍ମୀୟତା ବଢ଼ିଥିଲା ବହୁଦିନରୁ । ନବବାବୁ ସୋସଲିଷ୍ଟ (ପୂର୍ବରୁ କଂଗ୍ରେସ ସୋସଲିଷ୍ଟ ଭାବରେ ଯେଉଁମାନେ ବିଦିତଥିଲେ) ମାନଙ୍କର ଗୁରୁ ଥିଲେ । କିନ୍ତୁ ନବଗଠିତ ସୋସଲିଷ୍ଟ ପାର୍ଟିରେ ସେ ଯୋଗଦେଇ ନଥିଲେ, କିନ୍ତୁ ସେମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା ବହୁତ ।

ବାଙ୍କବାବୁ ଚାରିଥର ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ପବ୍ଲିକ ଫାଇନାନ୍ସ ଏବଂ ପାର୍ଲ୍ୟାମେଣ୍ଟାରୀ ପଦ୍ଧତିରେ ସେ ଧୂରୀଣ ଥିଲେ । ତାଙ୍କର ଭାଷଣ ବା ବକ୍ତବ୍ୟକୁ ସରକାରୀ ତଥା ବିରୋଧୀ ଦଳର ନେତାମାନେ ଧ୍ୟାନର ସହିତ ଶୁଣୁଥିଲେ ।

କିନ୍ତୁ ସୋସଲିଷ୍ଟ ପାର୍ଟି (ପରେ ପ୍ରଜା ସୋସଲିଷ୍ଟ ପାର୍ଟି) ଆପଣାର ବିପୁଳ ପ୍ରାଥମିକ ବିଜୟ ସତ୍ତ୍ୱେ ରହିପାରିଲା ନାହିଁ ଏବଂ କ୍ରମଶଃ ଦ୍ୱିଧାବିଭକ୍ତ ହୋଇଗଲା ।

ବାଙ୍କବାବୁ କଂଗ୍ରେସ ଦଳରେ ଯୋଗଦେଲେ । କିନ୍ତୁ ଗୋଟିଏ ଦଳ ଛାଡ଼ି ଅନ୍ୟଦଳରେ ଯୋଗଦେଲେ ଅଧିକାଂଶ ଲୋକଙ୍କ ଭାଗ୍ୟରେ ଯାହା ଘଟିଛି ତାହା ହିଁ ତାଙ୍କ କ୍ଷେତ୍ରରେ ହେଲା । ସେ ମନ୍ତ୍ରୀ ହେଲେ, ଦକ୍ଷତା ପ୍ରମାଣିତ କଲେ ମନ୍ତ୍ରୀଭାବରେ । କିନ୍ତୁ ଦଳର ତତ୍‌କାଳୀନ ନେତୃତ୍ୱର ବିଶ୍ୱାସଭାଜନ ହୋଇପାରିଲେ ନାହିଁ, ତାଙ୍କର 'ଆନୁଗତ୍ୟ' ଉପରେ ନେତୃତ୍ୱର ବିଶ୍ୱାସ ରହିଲା ନାହିଁ । ତାଙ୍କୁ ଆନୁଗତ୍ୟର ପରୀକ୍ଷା ଦେବାକୁ କୁହାଗଲା ।

ସେଇଟା ଜରୋରୀକାଳୀନ ପରିସ୍ଥିତି ସମୟ । ବାଙ୍କବାବୁଙ୍କ ମସ୍ତିଷ୍କ ଥିଲା କଂଗ୍ରେସ ଦଳରେ କିନ୍ତୁ ହୃଦୟ ଥିଲା ଜୟପ୍ରକାଶଙ୍କ ଆନ୍ଦୋଳନ ସହିତ । କେତେଦିନ ସେ ରହିପାରନ୍ତେ ଏଇ ସଂଗ୍ରାମ ଭିତରେ । ତାଙ୍କୁ ବିଦା ହେବାକୁ ହେଲା, ବିଦାୟ ନେବାପାଇଁ କୁହାଗଲା ।

ବାଙ୍କବାବୁ କୌଣସି ଦଳ ସହିତ ସମତାଳ ବା ସମଝୋତା କରିପାରିଲେ ନାହିଁ ।

ତେଣେ ରାଜନୀତିରେ ଯେଉଁ ପୀଢ଼ିର ଅଭ୍ୟୁଦୟ ହେଲା ବାଙ୍କବାବୁ ସେ ପୀଢ଼ି ସହିତ ଖାପଖୁଆଇ ପାରିଲେ ନାହିଁ । ସେ ବିଚକ୍ଷଣ, ଚତୁର ଏବଂ ଧୂର୍ତ୍ତ ଥିବା ସତ୍ତ୍ୱେ ଏହା ସମ୍ଭବ ହେଲା ନାହିଁ । ଏହା ଖାଲି ତାଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ । ଓଡ଼ିଶାର ସବୁ ରାଜନୈତିକ ଦଳରେ ବହୁ କର୍ମୀ, ରଥୀ, ଏପରିକି ମହାରଥୀମାନଙ୍କ କ୍ଷେତ୍ରରେ ସେଇଆ ଘଟିଛି । ଏହାର ଭୂରି ଭୂରି ଉଦାହରଣ ରହିଛି ।

ବାଙ୍କବାବୁ କିଛିକାଳ ରାଜ୍ୟସଭାର ସଦସ୍ୟଥିଲେ । ବେଶ୍ କିଛିକାଳ ସାମ୍ବାଦିକ ମଧ୍ୟଥିଲେ । ଯେତେବେଳେ ସେ ଯାହା କରିଛନ୍ତି ତାକୁ ଆପଣେଇ ନେଇଛନ୍ତି । ମୋର

ମନେପଡୁଛି । ସ୍ୱାଭାବିକ ଭାବରେ ସେ ସାମ୍ବାଦିକମାନଙ୍କ ପରିବାରଭୁକ୍ତ ବୋଲି ଆପଣାକୁ ମନେ କରୁଥିଲେ । ବିଧାନସଭାର ସଦସ୍ୟ ଭାବରେ ସେ ପାର୍ଲ୍ୟାମେଣ୍ଟାରୀ କନ୍‌ଭେନସନ୍ ଏବଂ ପଦ୍ଧତିକୁ ମୁଖସ୍ଥ କରିଦେଇଥିଲେ । ସେଇଯୋଗୁଁ କେବଳ ବିଧାନସଭାର ସଦସ୍ୟମାନେ ନୁହନ୍ତି, ବିଧାନସଭାର କର୍ମଚାରୀମାନଙ୍କର ମଧ୍ୟ ସେ ସମ୍ମାନର ପାତ୍ର ଥିଲେ ।

କିନ୍ତୁ ଏହା ସତ୍ତ୍ୱେ ସେ ଚଳନ୍ତି ରାଜନୀତିର ସୁଅରେ ରହିପାରିଲେ ନାହିଁ । ତାଙ୍କର ସବୁ ବୁଦ୍ଧି ବିଚକ୍ଷଣତା ହାର ମାନିଗଲା, ନୂଆ ରାଜନୀତିର ଜୁଆରରେ । ରାଜନୀତି ପ୍ରତି ଆଗ୍ରହ ରହିଲା କିନ୍ତୁ ସେଇ ସୁଅରେ ସେ ଆଉ ପହଁରି ପାରିଲେ ନାହିଁ ।

ସେ ଫେରିଗଲେ ଏକ ନୂଆ ପରିବେଶକୁ । ତାହା ହେଲା 'ପରିବେଶ' ସୁରକ୍ଷା । ଏବଂ ପରବର୍ତ୍ତୀ କାଳରେ ଆପଣାର କଠୋର ପରିଶ୍ରମ ଏବଂ ନିଷ୍ଠା ଯୋଗୁଁ ସେ ପରିବେଶବିଦ୍ ଭାବରେ ଖ୍ୟାତ ହେଲେ । ମୋର ମନେପଡୁଛି । 'ପରିବେଶ ଏବଂ ଏକବିଂଶ ଶତାବ୍ଦୀ' ଉପରେ ଆମେ ଏକ ଆନ୍ତର୍ଜାତିକ ସେମିନାର କରୁଥାଉଁ । ବିଜୁ ପଟ୍ଟନାୟକ ମୋତେ କହିଲେ ଆରେ ପରିବେଶ ସଂପର୍କରେ ବାଙ୍କ ପାଖକୁ ଯାଅ । ସେ କହିବ । ଅଥଚ ବିଜୁ ପଟ୍ଟନାୟକଙ୍କ ସହିତ ବାଙ୍କବାବୁଙ୍କ ତୀବ୍ର ମତଭେଦ କଥା ସମସ୍ତେ ଜାଣନ୍ତି । ଏହି ହେଉଛି ବାଙ୍କବାବୁଙ୍କ ସ୍ୱୀକୃତି ।

ବାଙ୍କୁବାବୁ ପରିବେଶକୁ କ୍ରମେ ଜନ ଆନ୍ଦୋଳନ ସହିତ ଜଡ଼ିତ କରାଇଦେଲେ । କାରଣ ସେ ଜାଣିପାରିଲେ ଯେ ପରିବେଶ ରକ୍ଷା ପାଇଁ ଜନ ଆନ୍ଦୋଳନ ବ୍ୟତିରେକ, କେବଳ ତାତ୍ତ୍ୱିକ ଆଲୋଚନାରେ ପରିବେଶ ରକ୍ଷା କରାଯାଇ ପାରିବ ନାହିଁ । ତେଣୁ ସେ କୃଷକ ମହାସଂଘ ଗଠନକଲେ । ବାଲ୍‌କୋ ଆନ୍ଦୋଳନ ଠାରୁ ଆରମ୍ଭକରି ରାୟଗଡ଼ାରେ ଆଲୁମିନା ଶିଳ୍ପ ପ୍ରତିଷ୍ଠା ବିରୁଦ୍ଧରେ ସଂଗ୍ରାମ, ଚିଲିକାରେ ଚିଙ୍ଗୁଡ଼ି ଘେରି ବିରୁଦ୍ଧରେ ଆନ୍ଦୋଳନ ଠାରୁ ଆରମ୍ଭ କରି ଭିତର କନିକାରେ କଙ୍କଡ଼ା ରକ୍ଷା ପାଇଁ ଆନ୍ଦୋଳନ ତାଙ୍କର ସକ୍ରିୟ ସମର୍ଥନ ଲାଭକଲା ।

ଏମ୍.ଏଲ୍.ଏ. ବା ମନ୍ତ୍ରୀ ଭାବରେ ତାଙ୍କର କାର୍ଯ୍ୟ ତାଙ୍କୁ କେତେ ମନେରଖିବ କହିପାରିବି ନାହିଁ । କିନ୍ତୁ ତାଙ୍କର ପରଲୋକରେ ଓଡ଼ିଶାରେ ପରିବେଶର ଯେଉଁ କ୍ଷତି ହେଲା ତାହା ପୂରଣ ହେବା ପାଇଁ ବହୁ ସମୟ ଲାଗିବ । ବାଙ୍କବାବୁଙ୍କୁ ସେ ସମୟରେ ଦେଖି ମନେହୋଇଛି ଯେ ଏଇ ମଣିଷ ରାଜନୀତିର ପଙ୍କ ଭିତରେ ସମୟ ନଷ୍ଟ ନକରି ପରିବେଶ ରକ୍ଷାରେ ଯଦି ଆଗରୁ ମନୋନିବେଶ କରିଥାନ୍ତେ ତା'ହେଲେ ଦେଶ ତ ଯାହା ଲାଭ କରିଥାନ୍ତା, ସେ ମଧ୍ୟ ଆପଣାକୁ ସ୍ମୃତ କରିରଖି ପାରିଥାନ୍ତେ ଜନମାନସରେ ଆହୁରି ଦୀର୍ଘକାଳ ।

ପରିଣତ ବୟସରେ ତାଙ୍କୁ ଏଇ ନୂଆ ନିଶା ଘାରିଥିଲା । କିନ୍ତୁ ବୟସ ହାରମାନିବ ବୋଲି ସେ ଭାବିଥିଲେ । ''ମୁଁ କାହାରି ଦୟାର ପାତ୍ର ହୋଇ ରହିବାକୁ ଚାହେଁ ନା'' ଏଇଥିଲା ତାଙ୍କର ଦମ୍ଭୋକ୍ତି । ଆପଣାର ଯୋଗ୍ୟତା ଓ ନିଷ୍ଠା ହିଁ ତାଙ୍କୁ ଯାହା ଦେଇଛି, ସେ ତାକୁଇ ଗ୍ରହଣକରି ନେଇଛନ୍ତି ।

କିନ୍ତୁ ମହାକାଳ ଆଗରେ ସବୁ ହାର ମାନିବାକୁ ବାଧ । ବୟସ ଅତିକ୍ରାନ୍ତ ହେବାକୁ ଲାଗିଲା । ପାଦରେ ଚାଲି ଚାଲି ଗ୍ରାମକୁ ଗ୍ରାମ ଯାଉଥିବା ବାଙ୍କବାବୁ ବାଡ଼ିଧରି ଚାଲିଲେ । ହାରମାନିଲେ ନାହିଁ । ସ୍ତ୍ରୀ ଛାଡ଼ି ଚାଲିଗଲେ । ତଥାପି ହାରମାନିଲେ ନାହିଁ, ଅଟକିଗଲେ କ୍ଷଣକ ପାଇଁ, ଏକୁଟିଆ ହୋଇ । କିନ୍ତୁ ପୁଣି ଚାଲିଲେ ଗତିପଥରେ । ପୁଅ ଦୁହେଁ ରହିଲେ ବିଦେଶରେ । ବାଙ୍କବାବୁ ଏକୁଟିଆ ଅନୁଭବ କଲେ । ଝିଅତ ଅଛି । ବାଙ୍କବାବୁ ଅଟକିବାର ଲୋକ ନୁହନ୍ତି । ସାଙ୍ଗସାଥୀମାନେ ଚାଲିଗଲେଣି । ତଥାପି 'ଏକେଲା ଚଲୋ'ର ଧ୍ୱନି ତାଙ୍କୁ ପ୍ରେରଣା ଦେଲା । ଅନେକ କାମ ବାକି ଅଛି । ଯିବି କୁଆଡ଼େ ?

ଦେଖାହୁଏ ମଝିରେ ମଝିରେ । ବାଙ୍କବାବୁ ବେଶ୍ ସୋସିଆଲ । ଚା'କପ୍ ଉପରେ ବେଶ୍ ଜମେ କଥା ତାଙ୍କ ସାଂଗରେ । ଢେଙ୍କାନାଳ ଠାରୁ ଡିଙ୍କିଶାଳ ପର୍ଯ୍ୟନ୍ତ ।

ପରିଶେଷରେ ସେଇଦିନ ଆସିଗଲା । ସମ୍ବାଦ ବିଜୁଳି ବେଗରେ ଖେଳିଗଲା । ରାୟଗଡ଼ା ଜଂଗଲର ଆଦିବାସୀ ଆଖିରେ ଯେମିତି ଦେଖାଦେଲା ଲୁହ, ଠିକ୍ ସେଇପରି ନୃସିଂହନାଥ ଜଂଗଲର ଗଛର ପତ୍ରରୁ ଝରିଲା ଲୁହ । ଚିଲିକାର ମାଛ, ଭିତର କନିକାର କଙ୍କଡ଼ା ସମସ୍ତେ ଲୁହ ଢାଳିଲେ ।

ଏଇ ହେଲା ସାର୍ଥକ ମଣିଷର ପରିଣତି । ସେ ବାହୁଡ଼ିଗଲେ ଏକ କର୍ମମୟ, ବିରାମହୀନ ଜୀବନର ପରିସମାପ୍ତି ଘଟାଇ ।

କିନ୍ତୁ ତାଙ୍କର ବିୟୋଗରେ ପ୍ରକୃତି ଓ ମଣିଷ ଉଭୟେ କ୍ଷଣକ ପାଇଁ ସ୍ତବ୍ଧ ହୋଇ ଠିଆହେଲେ ତାହା ହିଁ ତ ପ୍ରମାଣିତ କରେ ତାଙ୍କ ଜୀବନର ସାର୍ଥକତା ।

